ଉତ୍କଳ ସାହିତ୍ୟ ପ୍ରଚାର ମଣ୍ଡଳୀ

କବି ସମ୍ରାଟ

୰ଉପେନ୍ଦ୍ର ଭଞ୍ଜଙ୍କ କୃତ

# ଲାବଣ୍ୟବତୀ

ସମ୍ପୂର୍ଣ୍ଣ ସରଳ ବୋଧଗମ୍ୟ ଅର୍ଥ ସହିତ

( ପ୍ରଥମ ରାଜ ସଂସ୍କରଣ )

ପ୍ରକାଶକ—

ଶ୍ରୀନାରାୟଣ ଚନ୍ଦ୍ର ଦାସ

ଶ୍ରୀଆନନ୍ଦ ଚନ୍ଦ୍ର ଦାସ ଓ

ଶ୍ରୀପ୍ରଫୁଲ୍ଲ କୁମାର ଦାସ

Printed by Mohan Charan Das
AT THE MANMOHAN PRESS
CUTTACK.
1939

ସୁଲଭ ମୂଲ୍ୟ ଟ ୧୷ ଦେଢ଼ ଟଙ୍କା ମାତ୍ର ।

# ସୂଚୀପତ୍ର ।






Digitized by srujanika@gmail.com

ବିଷୟ | ପୃଷ୍ଠା



——o——


Digitized by srujanika@gmail.com

# ସମ୍ପୂର୍ଣ୍ଣ ଅର୍ଥ ସହ

# ଲାବଣ୍ୟବତୀ

## ପ୍ରଥମ ଛାନ୍ଦ

ରାଗ ନଳିନୀଗୌଡ଼ା ।

( ଲାବଣ୍ୟବତୀର ପୂର୍ବଜନ୍ମ ଓ ଚନ୍ଦ୍ରଭାନୁର ଜନ୍ମ ବୃତ୍ତାନ୍ତ )

ଜୟ ଜୟ ଜୟ ରାମ ଜନକ-ସୁଖଦ । ଭୀମ ହରଷ ଦାନରେ
ସଦା ବିଶାରଦ ଯେ ।୧। ଚନ୍ଦ୍ରହାସେ ନିଶାକର ସମସ୍ତ କାଳର ।

---

୧ । ଭୀମ ହରଷ ଦାନରେ ସଦା ବିଶାରଦ ଜନକ ସୁଖଦ ରାମ ଜୟ ଜୟ ।

ଭୀମ—ଭୟଙ୍କର, ରାକ୍ଷସ, ଭୀମସେନ, ମହାଦେବ । ହରଷ—ଆନନ୍ଦ, ଦାନ—ଦେବା । ବିଶାରଦ—ସକ୍ଷମ; ଜନକ—ପିତା, ଜନକ ଋଷି, ଅନ୍ୟାର୍ଥେ ମନୁଷ୍ୟ, ସୁଖଦ—ସୁଖଦାୟକ, ରାମ—ଦଶରଥଙ୍କ ପୁତ୍ର ଶ୍ରୀରାମ, ଯମଦଗ୍ନି ସୁତ ପରଶୁରାମ ଓ ବଳରାମ; ଜୟ ଜୟ—ପ୍ରଶଂସନୀୟ, ନମସ୍କାର ।

ପ୍ରଧାନ ପ୍ରଧାନ କବିମାନେ କୌଣସି ଗ୍ରନ୍ଥ ରଚନା ସମୟରେ ପ୍ରଥମେ ନିଜ ନିଜର ଆରାଧ୍ୟ ଦେବାଦେବୀଙ୍କୁ ବନ୍ଦନା କରି ଗ୍ରନ୍ଥ ଆରମ୍ଭ କରିବା ବିଧି, ସେହି ବିଧି ଅନୁସାରେ କବିଶ୍ରେଷ୍ଠ ଉପେନ୍ଦ୍ର ଭଞ୍ଜ ଏହି ଲାବଣ୍ୟବତୀ ଛାନ୍ଦ ରଚନା କଲାବେଳେ ତାଙ୍କ ବଂଶର ପାରମ୍ପରିକ ଆରାଧ୍ୟ ଦେବ ଶ୍ରୀରାମଚନ୍ଦ୍ରଙ୍କୁ ପ୍ରଥମେ ବନ୍ଦନା କରି ଅଛନ୍ତି ଯଥା :—

(କ) ରାମଚନ୍ଦ୍ର ଭୟଙ୍କର ରାକ୍ଷସମାନଙ୍କ ଆନନ୍ଦ ( ଦାନ ଅର୍ଥାତ୍ ) ଦେବା, ରାକ୍ଷସଙ୍କ ଆନନ୍ଦକୁ କାଟି ନେବାରେ ସକ୍ଷମ ଥିଲେ ଏବଂ ଶିବଧନୁ ଭାଙ୍ଗି ସୀତାଙ୍କୁ ବିବାହ କରିବା ଦ୍ୱାରା ଜନକ ରାଜାଙ୍କୁ ସୁଖୀ କରିଥିଲେ । ଏପରି ରାମଚନ୍ଦ୍ରଙ୍କୁ ନମସ୍କାର କରୁଅଛି ।

(ଖ) ଅନ୍ୟାର୍ଥେ—ପରଶୁରାମ ସେବା ଦ୍ୱାରା ମହାଦେବଙ୍କୁ ସନ୍ତୋଷ କରିବାରେ ପାରଗ ଥିଲେ ଏବଂ ପିତାଙ୍କ ଆଦେଶରେ ନିଜର ମାତାଙ୍କୁ ବଧ କରିବା ଦ୍ୱାରା ଏବଂ ପିତାଙ୍କ ବରରେ ପୁନଃ ଜୀବଦାନ ଦ୍ୱାରା ପିତାଙ୍କୁ ଅତ୍ୟନ୍ତ ସୁଖୀ କରିଥିଲେ, ଏହାଙ୍କୁ ନମସ୍କାର ।


Digitized by srujanika@gmail.com

ଲକ୍ଷଣବନ୍ତ ଅଲକ୍ଷ୍ୟ ମୁଖ ମନୋହର ଯେ । ୨ । କବିଭାରତୀଙ୍କ ଅଗୋଚର ଛବି ଯାର । ସୁମନାବୃନ୍ଦବନ୍ଦନ ଏଣୁ ନିରନ୍ତର ଯେ ।୩। ମହାଶୟ ବଲ-

(ଗ) ବଳରାମ ବଡ଼ ବଡ଼ ଦୁଷ୍ଟ ରାକ୍ଷସଙ୍କୁ ମାରି ଭୟଙ୍କର କ ବେଣୀ ଆନନ୍ଦ ଲୋକମାନଙ୍କୁ ଦେଇ ସୁଖୀ କରିବାରେ ଅତ୍ୟନ୍ତ ପାରଦର୍ଶୀ ଥିଲେ କମ୍ଵା ବାନରାମ ଭୀମସେନର ଆନନ୍ଦକୁ ଦାନ ଅର୍ଥାତ୍ ଖଣ୍ଡନ କରିବାରେ ଯୁଦ୍ଧରେ ଭୀମକୁ ହରାଇ ତାର ଆନନ୍ଦ ବିନାଶରେ ସକ୍ଷମ ଥିଲେ ଲୋକ-ମାନଙ୍କର ଆନନ୍ଦ ଦାୟକ ଥିଲେ, ଏହାଙ୍କୁ ନମସ୍କାର ।

୨ । ଚନ୍ଦ୍ରହାସେ ସମସ୍ତ କାଳର ଶୋଭାକର, ଲକ୍ଷଣବନ୍ତ ମନୋହର ମୁଖ ଅଲକ୍ଷ୍ୟ ।

ଚନ୍ଦ୍ରହାସେ—ପ୍ରଫୁଲ୍ଲ ହର୍ଷରେ, ଚନ୍ଦ୍ରହାସ ନାମକ ଖଣ୍ଡା, ଶୋଭା-କର—ସୁନ୍ଦର, ଶୋଭା—ସୁନ୍ଦର, କର—ହସ୍ତ, ଲକ୍ଷଣବନ୍ତ—ଉପଯୁକ୍ତ ଭଲ ଚିହ୍ନଯୁକ୍ତ, ଅଲକ୍ଷ୍ୟ—ଉପମା ଶୂନ୍ୟ, ମନୋହର—ସୁନ୍ଦର ।

(କ) ରାମଚନ୍ଦ୍ରଙ୍କର ହସ୍ତରେ ଚନ୍ଦ୍ରହାସ ନାମକ ଖଣ୍ଡା ସର୍ବଦା ଥିବାରୁ ସୁନ୍ଦର ଦିଶୁଥିଲା. ସର୍ବ ସୁଲକ୍ଷଣଯୁକ୍ତ ସୁନ୍ଦର ମୁଖ ତୁଳନାରେ ସଂସାରରେ କେହି ନ ଥିଲେ ।

(ଖ) ପର୍ଶୁରାମଙ୍କ ହସ୍ତରେ ଅର୍ଦ୍ଧଚନ୍ଦ୍ର ପରି ଫାରଶା ସର୍ବଦା ଥିଲା । କିବା ଯେ ମହାଦେବଙ୍କ ଶିଷ୍ୟ ଥିବାରୁ ମହାଦେବ ତ ଚନ୍ଦ୍ର ଧାରଣ କରିଛନ୍ତି, ପର୍ଶୁରାମ ଚନ୍ଦ୍ର ଚିହ୍ନ ସନ୍ତକ ସ୍ୱରୂପ ଧାରଣ କରି ସର୍ବଦା ସୁନ୍ଦର ଦିଶୁଥିଲେ । ଧ୍ୱଜ, ବଜ୍ର, ଅଙ୍କୁଶାଦି ଲକ୍ଷଣ ଥିଲା ହେତୁ ସୁନ୍ଦର ଦିଶୁଥିଲେ ।

(ଗ) ବଳରାମ ସର୍ବଦା ଚନ୍ଦ୍ରମା ତୁଲ୍ୟ ହର୍ଷଯୁକ୍ତ ଥିଲେ । ତାହାଙ୍କର ସୁନ୍ଦର ମୁଖ ଜଗତରେ ଅତୁଳନୀୟ ଥିଲା ।

୩ । ଯାର ଛବି କବି ଭାରତିଙ୍କ ଅଗୋଚର ଏଣୁ ସେ ନିରନ୍ତର ସୁମନାବୃନ୍ଦ ବନ୍ଦନ ଅଟନ୍ତି ।

ଛବି—ରୂପ, କବି ଭାରତୀ—କବିର ଲେଖନୀ, ଶୁକ୍ର ଓ ସରସ୍ୱତୀ, ଅଗୋଚର – ଅଜଣା, ନିରନ୍ତର—ସର୍ବଦା, ସୁମନାବୃନ୍ଦ—ଦେବତା ସମୂହ, କବିମାନେ, ଦିବ୍ୟସ୍ତ୍ରୀମାନେ, ବନ୍ଦନ—ପୂଜ୍ୟ ।

ଯେଉଁ ରାମଚନ୍ଦ୍ରଙ୍କ ଛବି କି ରୂପ, କବିର ଲେଖନୀକୁ ଅଜଣା ଅର୍ଥାତ୍ ଯାହାଙ୍କର ସୌନ୍ଦର୍ଯ୍ୟକୁ କବି ବର୍ଣ୍ଣିନା କରି ପାରିବ ନାହିଁ ଓ ଶୁକ୍ର ସରସ୍ୱତୀ ମଧ ଲେଖି ପାରିବେ ନାହିଁ, ସେ ରାମଚନ୍ଦ୍ର ଦେବତାମାନଙ୍କର ପୂଜ୍ୟ ଅଟନ୍ତି ଓ କବିମାନଙ୍କର ମଧ ପୂଜ୍ୟ ଅଟନ୍ତି । ତାହାଙ୍କର ଶୋଭାରେ ଯୁବତୀମାନେ ମଧ ନିଜକୁ ତୁଚ୍ଛ ମନେ କରି ପୂଜା କରନ୍ତି । ଅର୍ଥାତ୍ ରାମଚନ୍ଦ୍ରଙ୍କୁ ଦେବତା ଓ କବିମାନେ, ପର୍ଶୁରାମଙ୍କୁ କବିମାନେ, ବଳରାମଙ୍କୁ ଯୁବତୀମାନେ ( ଗୋପୀମାନେ ) ପୂଜା କରୁଥିଲେ ।

ରିପୁ ପରେ ତାପକର । ଛନ୍ଦଭଙ୍ଗ କୁଢରୁ କାତର ଅରିପୁର ହେ । ୪ ।
ସହସ୍ର କର ଉନ୍ନତହର ତେଜୋବାନ । ହରପକ୍ଷ ସଦାନନ୍ଦ ତୋଷ
ବିବର୍ଦ୍ଧନ ହେ । ୫ । ସେ ପ୍ରଭୁ ଲଙ୍କତରଣେ ଭବ ତତପର । ଭଙ୍କ ସୀର-

---

୪ । ମହାଶୟ ବଳରିପୁ ପରେ ତାପକର, ଅରିପୁର ଛନ୍ଦଭଙ୍ଗ କୁଢରୁ କାତର ।

ମହାଶୟ—ମହିମା, ସମ୍ମାନ ସୂଚକ ବାକ୍ୟ; ବଳରିପୁ—ବଳଶ୍ଳ ଶତ୍ରୁ, ପରେ—ଉପରେ, ତାପକର—ତେଜ ଦେଖାଅ, ପରାସ୍ତ କର; ଅରିପୁର—ଶତ୍ରୁମାନେ, ଛନ୍ଦଭଙ୍ଗ—ଛନ୍ନ ବିଛନ୍ନ, କାତର—କାକୁସ୍ଥ ।

ରାମଚନ୍ଦ୍ର ପ୍ରଧାନ ଶତ୍ରୁମାନଙ୍କୁ ପରାସ୍ତ କରିବାରୁ ଶତ୍ରୁମାନେ ଛନ୍ଦଭଙ୍ଗ ହୋଇ କାତର ହୁଅନ୍ତି । ରାମଚନ୍ଦ୍ର ତ୍ରିପୁର ବିଜୟୀ ରାବଣଙ୍କୁ ଯୁଦ୍ଧରେ ପରାସ୍ତ କରିବାରୁ ସେହି ଶତ୍ରୁ ଓ ତାର ସମସ୍ତ ସୈନ୍ୟ ଛନ୍ଦଭଙ୍ଗ ହୋଇ କାତର ହୋଇଥିଲେ । ପର୍ଶୁରାମ କାର୍ତ୍ତବୀର୍ଯ୍ୟାର୍ଜୁନଙ୍କୁ ପରାସ୍ତ କରିବାରୁ ସମସ୍ତ କ୍ଷତ୍ରିୟମାନେ ଛନ୍ଦଭଙ୍ଗ ହୋଇ କାତର ହୋଇଥିଲେ । ବଳରାମ, ତାଙ୍କର ଶତ୍ରୁ ଦୁର୍ଯ୍ୟୋଧନଙ୍କୁ ପରାସ୍ତ କରିବାକୁ ତାଙ୍କ ହସ୍ତିନାପୁରୀ ଟାଣିବାରୁ ଦୁର୍ଯ୍ୟୋଧନାଦି ସମସ୍ତେ ଭୟରେ କାତର ହୋଇ ଛନ୍ଦଭଙ୍ଗ ହୋଇ ଶରଣ ପଶିଥିଲେ ।

୫ । ସହସ୍ରକର ଉନ୍ନତହର ତେଜୋବାନ, ହରପକ୍ଷ ସଦାନନ୍ଦ ତୋଷ ବିବର୍ଦ୍ଧନ—

ସହସ୍ରକର—ସୂର୍ଯ୍ୟ, ସହସ୍ରାର୍ଜୁନ, ବାଣାସୁର; ତେଜୋବାନ—ତେଜଯୁକ୍ତ । ହରିପକ୍ଷ—ମର୍କଟ, ଋକ୍ଷ, ସିଂହାଦିପକ୍ଷ, ବିଷ୍ଣୁପକ୍ଷ, ଶ୍ରୀକୃଷ୍ଣପକ୍ଷ; ସଦାନନ୍ଦ—ସର୍ବଦା ଆନନ୍ଦ, ମହାଦେବ, ଯୋଗୀ; ତୋଷ—ସନ୍ତୋଷ, ବିବର୍ଦ୍ଧନ—ବଢ଼ାଇବା ।

ରାମଚନ୍ଦ୍ର ତେଜରେ ସୂର୍ଯ୍ୟଙ୍କୁ ବଳିଥିଲେ—ସୂର୍ଯ୍ୟ ବଂଶରେ ଜନ୍ମ ହୋଇ ସୂର୍ଯ୍ୟ ଯାହା ଉନ୍ନତ କରିଥିଲେ ତାଙ୍କ ଅପେକ୍ଷା ଅଧିକ କରିବାରୁ ତାଙ୍କର ଉନ୍ନତିକୁ ହରଣ କରିଥିଲେ କି ବଳି ଯାଇଥିଲେ ଏବଂ ସୁଗ୍ରୀବ ଓ ହନୁମାନାଦି ମାଙ୍କଡ଼ମାନଙ୍କ ସାହାପକ୍ଷ ଥିଲେ, ସଦାନନ୍ଦ ଯେ ମହାଦେବ ତାଙ୍କର ଆନନ୍ଦ ବଢ଼ାଇ ଥିଲେ—ଅର୍ଥାତ୍ ବନବାସ ସମୟରେ ମହାଦେବ ରାମଚନ୍ଦ୍ରଙ୍କୁ ବିଷ୍ଣୁ ବୋଲି ଜାଣି ପରମଆନନ୍ଦ ହୋଇଥିଲେ ।

ପର୍ଶୁରାମ—ସହସ୍ରାର୍ଜୁନର ତେଜକୁ ନିହତ କରିଥିଲେ, ବନସ୍ତରେ ତପସ୍ୱୀ ରୂପରେ ଥିବାରୁ ସିଂହାଦି ପଶୁଙ୍କର ପକ୍ଷ ଥିଲେ ଓ ବିଷ୍ଣୁଙ୍କୁ ସେବା କରି କଳାଗ୍ରହଣ କରିଥିଲେ, ମହାଦେବଙ୍କୁ ଆରାଧନା କରି ତାଙ୍କର ପ୍ରଧାନ ଶିଷ୍ୟ ହୋଇବାରୁ ତାଙ୍କର ଆନନ୍ଦ ବଢ଼ାଇ ଥିଲେ—


Digitized by srujanika@gmail.com

ବୀର କବି ମାନସ-ଭ୍ରମର ହେ ।୬। ମୂର୍ତ୍ତିମନ୍ତ କରି ମୃଦୁଗୀତ ବର୍ଣ୍ଣିରଇ ।
ଏଣୁ କରି ଥିବ ଅଳଙ୍କାର ଯୁକ୍ତ ହୋଇ ଯେ ।୭। ପଦ ସରଳ ଧ୍ୱନିରେ
ମାନସ ମୋହିବ । ଅର୍ଥ ଜନ ପ୍ରବରଙ୍କୁ ଆନନ୍ଦ କରିବ ହେ ।୮।
ଡ-ର-ଲରେ ସାବର୍ଣ୍ଣ୍ୟ ଯା ବ୍ୟାକରଣେ ଲିହି । ସୁଚିତ୍ତେ କରଇ ଗୀତ
ଏଣୁ ହିତପାଇଁ ଯେ ।୯। ବୁଝାଇଲେ ଜଡ଼ଜନ ଭାବକୁ ପାଇବ । ଖଳ-
ଖର ଚୂତାଙ୍କୁର ପ୍ରାପ୍ତେ ନ ଗ୍ରାସିବ ହେ ।୧୦। ପଶୁପକ୍ଷି ଉଚ୍ଛିଷ୍ଟେ ଅମୃତା-

---

ବଳରାମ—ସହସ୍ର କର ବାଣାସୁରଙ୍କୁ ପରାସ୍ତ କରି ତାର ତେଜ ହରଣ କରିଥିଲେ—ଓ ସର୍ବଦା ଶ୍ରୀକୃଷ୍ଣଙ୍କ ପକ୍ଷରେ ଥିଲେ ଯୁଦ୍ଧରେ ମହାଦେବ ବିଷ୍ଣୁ ଅବତାର ବୋଲି ଜାଣି ଅତ୍ୟନ୍ତ ସନ୍ତୋଷ ହୋଇ ଫେରି ଯାଇଥିଲେ ।

୬ । କବି ଭଞ୍ଜ ବୀରବର ମାନସ ଭ୍ରମର, ସେ ପ୍ରଭୁ କଞ୍ଜଚରଣରେ ତତ୍-ପର କରେ—

ମାନସ—ମନ, ଭ୍ରମର—ଭଅଁର—କଞ୍ଜ—ପଦ୍ମ, ଚରଣ—ଗୋଡ଼ ତତ୍ପର—ପ୍ରାର୍ଥନା।

କବି ଭଞ୍ଜବୀରବରଙ୍କ ମନରୂପ ଭ୍ରମର—ପ୍ରଭୁଙ୍କ ପଦ୍ମଚରଣରେ ଥାଉ ଅର୍ଥାତ୍ ଭ୍ରମର ଯେପରି ପଦ୍ମଫୁଲକୁ ସର୍ବଦା ଆଶା କରି ସେଠାରେ ଥାଏ କବିର ମନ ସେହିପରି ପ୍ରଭୁଙ୍କ ପାଦରେ ଥାଉ ।

୭ । ମୃଦୁ ଗୀତ ମୂର୍ତ୍ତିବନ୍ତ କରି ବର୍ଣ୍ଣିରେ—ଏଣୁ କରି ଅଳଙ୍କାର ଯୁକ୍ତ ହୋଇଥିବ, 'ମୃଦୁ ଗୀତ—ମଧୁର ଗୀତ, ମୂର୍ତ୍ତିବନ୍ତ-ରୂପବନ୍ତ, ଅଳଙ୍କାର-ଗହଣା, ଅର୍ଥାତ୍ ଏହି ଗୀତଗୁଡ଼ିକ ଗୋଟିଏ ମୂର୍ତ୍ତି ବୋଲି ମନେ କଲେ—ମୂର୍ତ୍ତି ଯେପରି ଅଳଙ୍କାର ପିନ୍ଧିଥାଏ—ଏ ଗୀତ ମଧ୍ୟ ସେହିପରି ଅଳଙ୍କାରରେ ମଣ୍ଡିତ ହୋଇଥିବ । ଅର୍ଥାତ୍ ଏ ଗୀତରେ ଅଳଙ୍କାର ଥିବ

୮ । ଧ୍ୱନି—ଶବ୍ଦ, ମାନସ—ମନ; ମୋହିବ—ମୋହକରିବ, ହରଣ କରିବ; ଜନପ୍ରବର—ବିଜ୍ଞଲୋକ, ଜ୍ଞାନୀଲୋକ,

ଏହି ଗୀତ ସରଳ ଶବ୍ଦ ହେତୁ ମନକୁ ହରଣ କରିବ, ଏହାର ଅର୍ଥ, ପଣ୍ଡିତମାନଙ୍କୁ ଆନନ୍ଦ ଦେବ ।

୯ । ବ୍ୟାକରଣରେ ଡ଼, ର, ଲ ଯେପରି ସାବର୍ଣ୍ଣ୍ୟ ନିୟମମାନ ଅଛି—ସେହି ସବୁ ନିୟମକୁ ଲକ୍ଷ କରି ଭଲ ମନରେ, ଲୋକଙ୍କ ମଙ୍ଗଳ (ଆନନ୍ଦ) ପାଇଁ ଏ ଗୀତ କରୁଅଛନ୍ତି ।

୧୦ । ଜଡ଼ଜନଙ୍କୁ ବୁଝାଇଲେ ସେ ଭାବକୁ ପାଇବ । ଖଳ ଖର ଚ୍ୟୁତାଙ୍କୁର-ପରି ଗ୍ରାସିବ ନାହିଁ ।

ଦର ସୁରେ । କରନ୍ତି ଯେମନ୍ତ ସାଧୁଜନେ ସେ ପ୍ରକାରେ ହେ । ୧୧ ।
ଦୋଷ ଥିଲେ ରସ ବଶୁଁ କରିବେ ଆଦର । ଏଣୁ ଅତିଶୟ ସଂଶୟକୁ କରି
ଦୂର ହେ ।୧୨। ଏ ବିଚିତ୍ର ଚରିତ ରଚିତ ସୁମଧୁର । ଶ୍ରୁତି ବଦନରେ ପାନ
କର ବୁଧଜନର ହେ । ୧୩ । ଦିନେ କଇଲାସେ ବସି ଏକାନ୍ତେ ଗଉରୀ ।
ପଶାରଙ୍ଗେ ରସିବାକୁ ସ୍ୱସଙ୍ଗେ ଶଙ୍କର ହେ । ୧୪ । ଏକ କନ୍ୟାଏ

---

ଜଡ଼—ମୂର୍ଖ; ଭାବକୁ—ବିଷୟକୁ, ଖଳ—ଦୁଷ୍ଟ, ଖର—ଗଧ, ଚୂତ—ଆମ୍ବ; ଅଙ୍କୁର—ବଉଳ; ଗ୍ରାସିବ—ଖାଇବ ।

ମୂର୍ଖମାନଙ୍କୁ ବୁଝାଇ ଦେଲେ ସେ ମଧ ଭାବକୁ ବୁଝିପାରିବ । ଗଧ ଯେପରି ଆମ୍ବ ବଉଳକୁ ଖାଏ ନାହିଁ ତାକୁ ଗନ୍ଧାଏ ସେହିପରି ଦୁଷ୍ଟ ଲୋକଙ୍କୁ ଏହା ଭାବ ଭଲ ଲାଗିବ ନାହିଁ—

୧୧ । ୧୨ । ସୁରେ—ମଧୁମକ୍ଷୀଉଚ୍ଛିଷ୍ଟ ଯେପରି ଅମୃତାଦର କରନ୍ତି ସାଧୁଜନେ ସେହିପରି ଦୋଷଥିଲେ ମଧ ରସବଶୁଁ ଅତିଶୟ ସଂଶୟକୁ ଦୂର କରି, ଆଦର କରିବେ ।

ସୁରେ—ଦେବତାମାନେ, ମଧୁମକ୍ଷୀ—ମହୁମାଛି, ଉଚ୍ଛିଷ୍ଟ—ଅଇଁଠା, ଅମୃତ+ଆଦର—ଅମୃତାଦର, ସାଧୁ—ଜ୍ଞାନୀ, ଅତିଶୟ—ବେଶି, ସଂଶୟ—ସନ୍ଦେହ, ଦୂର—ପରିତ୍ୟାଗ,

ମହୁଫେଣାରେ ମହୁମାଛିର ଅଇଁଠାକୁ, ଅଇଁଠା ବୋଲି ନ ବାଛି ଦେବତାମାନେ ଯେପରି ତାହା ଗ୍ରହଣ କରନ୍ତି । ଏଥିରେ ଦୋଷଥିଲେ ସୁଦ୍ଧା ଆଦରସାତ୍ମକ ଭାବ ହେତୁ, ଜ୍ଞାନୀମାନେ ସେ ସବୁ ସନ୍ଦେହ ଦୂର କରି ଏ ଗୀତକୁ ଆଦର କରିବେ ।

୧୩ । ଏ ସୁମଧୁର ବିଚିତ୍ର ଚରିତ ରଚିତ ହୋଇଛି—ବୁଧଜନର ଶ୍ରୁତି ବଦନରେ ଏହା ପାନକର—

ସୁମଧୁର—ଅତ୍ୟନ୍ତ ମନୋହର, ବିଚିତ୍ର—ଆଶ୍ଚର୍ଯ୍ୟ, ଚରିତ—ପ୍ରସଙ୍ଗ ଜୀବନୀ, ରଚିତ—ଲେଖା ବା ଲିଖିତ, ବୁଧ—ଜ୍ଞାନୀ, ଶ୍ରୁତି—କର୍ଣ୍ଣ, ବଦନ—ମୁଖ, ପାନକର—ପିଅ ।

୧୪ । ୧୫ । ଗଉରୀ ଦିନେ କଇଲାସେ ଏକାନ୍ତେ ବସି ସ୍ୱସଙ୍ଗେ ପଶାରଙ୍ଗେ ରସିବାକୁ ସୁଷମରେ ତ୍ରିଲୋକରେ ସମରେ ନ ଥାଇ, ଏପରି ଏକ କନ୍ୟା ଅଦ୍ଭୁତେ ମନୁଜାତ ହୋଇ ବିଚାରିଲେ—

ଗଉରୀ—ଶିବଙ୍କ ସ୍ତ୍ରୀ ପାର୍ବତୀ, ଏକାନ୍ତେ—ଏକୁଟିଆ, ସ୍ୱସଙ୍ଗେ—ନିଜ ସଙ୍ଗରେ, ପଶାରଙ୍ଗରେ—ପଶା ମଉଜରେ, ରସିବାକୁ—ଖେଳିବାକୁ, ସୁଷମରେ—ସୌନ୍ଦର୍ଯ୍ୟତାରେ, ଅଦ୍ଭୁତେ—ଆଶ୍ଚର୍ଯ୍ୟଭାବେ, ସମରେ—ତୁଳନାରେ, ସମାନରେ; କନ୍ୟା—ଝିଅ,

ଅଛୁ ଛନ୍ତି ମନ୍ଦ୍ କାତ ହେଉ । ସ୍ୱପନରେ ସମରେ ନିର୍ଲୋକରେ ନ ଥାଉ ଯେ ।୧୫। ଯେ ଜଗତଜନନୀ ସେ କଲା ମନୋରଥ । ଜାତ ଦବ୍ୟସୁନ୍ଦରୀ ତାହାଙ୍କ ହେବ ବ୍ୟର୍ଥ ହେ । ୧୬ । ଅଉ କି ପ୍ରଶଂସିବା ଉମାରୁ ଜନ୍ମ ଯାର । ଶାମୁକ୍ରୁ ମୁକ୍ତା ଜାତ ହୋଇଲା ପ୍ରକାର ଯେ । ୧୭ । ବାଞ୍ଛାରୁ ଉତ୍ପତ୍ତି ବାଞ୍ଛାବତୀ ନାମ ଦେଇ । ଖେଳେ ଚଳାଇଲେ ମତ ଦୁହେଁ ବସି ତହୁଁ ଯେ । ୧୮ । ଏ ସମୟେ ଶୁଭିଲା ଡମ୍ବରୁ ଘୋର ନାଦ । ପାର୍ବତୀ ମତରେ ଜାତ ଏମନ୍ତ ବିଷାଦ ଯେ । ୧୯ । ହରନେତ୍ର ପାତ ଯେବେ ହେବ ଏ ଶୋଭାଙ୍ଗୀ । ମିବ ମିନା ମୋହର ସୁଭାଗୀପଣ ଭାଙ୍ଗି ଯେ ।୨୦।

---

ଦିନେ ପାର୍ବତୀଦେବୀ କୈଳାସରେ ଏକୁଟିଆ ବସି କପର୍ ନଜେ ନଜେ ପଶା ଖେଳବେ ଏହି ଇଚ୍ଛାକରି ମନରୁ ଗୋଟିଏ ଅତ୍ୟନ୍ତ ସୁନ୍ଦରୀକନ୍ୟା ଜାତ କଲେ ସୁନ୍ଦରପଣରେ ଯାହାର ସମକକ୍ଷ କି ସମାନ ତିନପୁରରେ କେହି ହେବ ନାହିଁ ।

୧୬ । ୧୭ । ଜଗତଜନନୀ—ସଂସାରର ମା, ମନୋରଥ—ଇଚ୍ଛା, ଜାତ—ଜନ୍ମ, ବ୍ୟର୍ଥ—ଅକାରଣ ।

ଯେ ସଂସାର ମାତା ସେ ଯେତେବେଳେ ଇଚ୍ଛା କଲେ, ତାହା କାହିଁକି ବା ଅକାରଣ ହେବ—ହେଲା ।

ଉମା—ପାର୍ବତୀ, ଶାମୁକ୍ରୁ—ଶାମୁକାରୁ—ଯେ ଦୁର୍ଗାଙ୍କଠାରୁ ଜନ୍ମ ତାଙ୍କୁ ବା କ'ଣ ପ୍ରଶଂସା କରିବା, ଶାମୁକାରୁ ଯେପରି ମୁକ୍ତା ଜାତ ହୋଇ ଶାମୁକା ଠାରୁ ବେଶୀ ସୁନ୍ଦର କି ଆଦରପାଏ ସେହିପରି ଦୁର୍ଗାଙ୍କଠାରୁ ଯେ କନ୍ୟା ଜନ୍ମହେଲା ସେ ସୌନ୍ଦର୍ଯ୍ୟରେ ଦୁର୍ଗାଙ୍କୁ ବଳିଗଲା ।

୧୮ । ବାଞ୍ଛା—କଲ୍ୟାଣ, ଇଚ୍ଛା; ଉତ୍ପତ୍ତି—ଜନ୍ମ, ବାଞ୍ଛାବତୀ—ଇଚ୍ଛବତୀ,

ଦୁର୍ଗା ଇଚ୍ଛା କରନ୍ତେ ତାଙ୍କ ଇଚ୍ଛାରୁ ବାଞ୍ଛାବତୀ ନାମରେ କନ୍ୟାଜାତ ହେଲା, ତହୁଁ ସେ ଦୁହେଁ ଖେଳ ବସିଲେ ।

୧୯ । ଘୋର—ଅଧିକ, ନାଦ—ଶବ୍ଦ, ବିଷାଦ—ଦୁଃଖ, ଖେଳଲାବେଳେ ଶିବଙ୍କ ଡ଼ମ୍ବରୁର ଭୟଙ୍କର ଶବ୍ଦ ଶୁଭିବାରୁ ପାର୍ବତୀଙ୍କ ମନରେ ଏପରି ଦୁଃଖ ହେଲା କି—

୨୦ । ହର ନେତ୍ର—ଶିବଙ୍କ ଆଖି, ପାତ—ପଡ଼ିବା, ଶୋଭାଙ୍ଗୀ—ସୁନ୍ଦରୀ, ସୁଭାଗ୍ୟପଣ—ସୁଖପଣିଆ ।

ମହାଦେବଙ୍କର ଆଖି ଯେବେ ଏ ସୁନ୍ଦରୀ କନ୍ୟା ଉପରେ ପଡ଼ିବ ତେବେ ମୋର ଆଉ ଆଦର ହେବ ନାହିଁ—ଅର୍ଥାତ୍ ମୋଠାରୁ ଏ ଏତେ ସୁନ୍ଦର ଶିବ ମୋତେ ଛାଡ଼ି ଏହାଠାରେ ଆକୃଷ୍ଟ ହେବେ ।

ବିଷବୃକ୍ଷ ସ୍ଥାପି ନାଶ କରିବାର ଦୋଷ । ଏ ସଂସାର ଅମ୍ଭ ଖେଳଘରର
ସଦୃଶ ଯେ । ୨୧ । କଷ୍ଟକାଳ ଅଗମ୍ୟ ଅରଣ୍ୟେ ଏହି ଥାଇ । ଜନ୍ମାନ୍ତେ
ପୁରୁଷ ସଙ୍ଗ-ବିଳାସକୁ ପାଇ ଯେ । ୨୨ । ବଣଦେବୀ ଜଣକୁ ଏମନ୍ତ ଆଜ୍ଞା
ଦେଲେ । ସେ ନେଇ ଘୋର କାନନେ ପ୍ରବେଶ କରିଲେ ଯେ । ୨୩ ।
ତହିଁ ରହି କହିଲେ ଲଙ୍ଘିବୁ ଯେତେ ଦିନ । କଷ୍ଟକାଳେ ପ୍ରାଣେ ହତ
ହୋଇବ ତୋହର ଯେ । ୨୪ । ଯେତେଣି ପୁରୁଷ କର ଗ୍ରହଣ କରିବ ।
ଆନ ତନୁ ପ୍ରାପତରେ ସେ ପତି ହୋଇବ ଯେ । ୨୫ । ଏତେ କହି ସେ
ଦେବୀ ହୋଇଲା ତିରୋହିତ । ଗହନରେ ବାଞ୍ଛାବତୀ ଦିବ୍ୟପୁରେ ସ୍ଥିତ
ଯେ । ୨୬ । ଏମନ୍ତରେ ଗଲା ତହିଁ କେତେ ସମ୍ବତ୍ସର । ପ୍ରବ୍ରଜିତ ନ୍ୟାସେ
ଏକ ଷଡ଼ିସ୍ତୁକୁମାର ଯେ ।୨୭। ତପ ତା ଅକଥନୀୟ ଦିବ୍ୟ ନାସି ଗ୍ରନ୍ଥେ ।
ପଞ୍ଚାଗ୍ନି ସ୍ଥାପନ କରେ ତପରତ୍ନ ମଧ୍ୟେ ଯେ । ୨୮ । ପ୍ରାବୃଟକାଳରେ
ଗୃହୋଦରକୁ ନ ଯାଇ । ଝଞ୍ଜାବାତ ଜଳଧାର କରକା ସହଇ ଯେ ।୨୯।
ଶୀତେ ଜଳଶାୟୀ ଭୂମିଶଯ୍ୟା ବସ୍ତ୍ରହୀନେ । ମୃତ୍ତିକାଶଙ୍କର ପୂଜା କରେ
ପ୍ରତିଦିନେ ଯେ । ୩୦ । ସେ ସୁକୃତରାଶି ଅସି ତୁଳ ହୋଇ ତାର ।
କେଦାରେଶ୍ୱର ଦର୍ଶନେ କଲା ବଳାତ୍କାର ହେ । ୩୧ । ଯାଉଁ ଯାଉଁ ସେ

---

୨୧-୨୨ । ଅଗମ୍ୟ—ନିବିଡ଼, ଅରଣ୍ୟ—ବନ, ଜନ୍ମାନ୍ତେ—ଅନ୍ୟ ଜନ୍ମରେ
ବିଳାସ—ସୁଖ, ସମ୍ଭୋଗ ।

ବିଷବୃକ୍ଷ—କଣ୍ଟକଗଛ ସ୍ଥାପିଲେ, ତାକୁ ତ ବିନାଶ କରିବା ମଧ୍ୟଦୋଷାବହ ଏ ସଂସାର ତ ଖେଳଘରତୁଲ୍ୟ ତେଣୁ ଏ କନ୍ୟା କଷ୍ଟଦିନ ବନସ୍ତରେ ଯାଇ ରହୁ ପରେ ଅନ୍ୟ ଜନ୍ମରେ ପୁରୁଷ ସଙ୍ଗ ସୁଖ ଭୋଗ କରିବ ।

୨୫ । ତନୁ—ଦେହ, ପତି—ସ୍ୱାମୀ ।

୨୬ । ତିରୋହିତ—ଅନ୍ତର୍ଦ୍ଧାନ ।

୨୭ । ସମ୍ବତ୍ସର—ବର୍ଷ ।

୨୮ । ଅକଥନୀୟ—ଅମାପ, ବେଶି; ଦିବ୍ୟ—ସୁନ୍ଦର; ପଞ୍ଚାଗ୍ନି—ଶୀତରେ କାକର ପାଣିରେ, ଖରାରେ ନିଆଁରେ ବର୍ଷାରେ ଜଳରେ ଇତ୍ୟାଦି ।

୨୯ । ପ୍ରାବୃଟ—ବର୍ଷା, ଗୃହୋଦର—ଘରଭିତର, ଝଞ୍ଜାବାତ—ତୋଫାନ, କରକା—କୁଆପଥର ।

୩୦ । ଜଳଶାୟୀ—ପାଣିରେ ବୁଡିବା, ଭୂମି ଶଯ୍ୟା—ମାଟିରେ ଶୋଇବା, ବସ୍ତ୍ରହୀନ—ଲୁଗା ନ ଥାଇ, ମୃତ୍ତିକାଶଙ୍କର—ମାଟିର ମହାଦେବ ।

୩୧ । ୩୨ । ସୁକୃତରାଶି—ପୁଣ୍ୟ ସମୂହ, ତୁଳ—ଏକତ୍ରିତ, ଏହିପରି ଏକାଗ୍ରତା କରୁ କରୁ କେଦାରେଶ୍ୱର ଦର୍ଶନ ସକାଶ ତାର ମନ ବ୍ୟାକୁଳ—

ଅଗମ୍ୟ ଅରଣ୍ୟେ ମିଳିଲା । ରତ୍ନମୟପୁର ଗୃହ୍ନଁ ଶଙ୍କରେ ଭାଳିଲା ସେ ।୩୨।
କନ୍ଦର୍ପ କନ୍ଦର ବା ତାହାର ଏଥି ସ୍ଥିତ । ଦେଖିବା ବଶୁରୁଁ ଦେଖେ ପ୍ରାଙ୍ଗଣେ ଯୁବତି ସେ । ୩୩ । ଚନ୍ଦ୍ରକୁ ନିନ୍ଦା କରୁଛି ମୁଖହାସ କାନ୍ତି । ସାରଙ୍ଗକୁ ନିନ୍ଦୁଛି ନୟନ ଭ୍ରୁଲତା ଯେ । ୩୪ । ନାସା ଓଷ୍ଠ ମଧ୍ୟ ନିନ୍ଦେ ତରୁଣ ହରିକେ । ଅପବାଦ ଅପସର ଲକ୍ଷ୍ୟ ସେ ନାୟିକା ଯେ । ୩୫ । ଅମରସମ୍ପତ୍ତି ଲଭେ ବଲୋକନ ମାତ୍ରେ । ନାୟିକ୍ଷ୍ରପ ପିତୁଳା ଲେଖନ ହେଲା ନେତ୍ରେ ତା । ୩୬ । ସେ ପ୍ରେମମଞ୍ଜରୀ ଶୋଭା ପଞ୍ଜରୀ ହୋଇଲା । ପୁଂସନେତ୍ର ଖଞ୍ଜରୀଟ ତହିଁରେ ବନ୍ଧିଲା ଯେ । ୩୭ । ରାମଶବ୍ଦ ବହୁ ବଚନରେ ଜଲ୍ଲ ଜପ । ରମା ବିପରୀତ ସେହିକାଳେ ବାନ୍ଧ କୋପ ଯେ ।୩୮। ଶରୀର ମଧ୍ୟଲୋପକୁ ଶରୀର ମଧ୍ୟକୁ । ଯୋଖି ହାଣିଲା ବଶୁରଣ ତା ବଧକୁ ଯେ ।୩୯। ତାକୁ ସ୍ତୁତି କଲା ତୋ ନାରୀରେ ଇଚ୍ଛା ମୋର । ଭ୍ରାବ କି ହୋଇଛ

---

ସେ ଅଗମ୍ୟ—ଘୋର ଭୟଙ୍କର ବନରେ ଯାଉଁ ଯାଉଁ ବଣ ମଧ୍ୟରେ (ରତ୍ନମୟ-ସ୍ୱର୍ଣ୍ଣମୟ) ସ୍ୱର୍ଣ୍ଣମୟ ପୁର ଦେଖି କରି ମନରେ ଚିନ୍ତା କଲା—

୩୩ । ଏ ପୁର କନ୍ଦର କି କନ୍ଦର୍ପଙ୍କର ଅଟେ, ଏହାକୁ ଦେଖିବା ଏହି ଇଚ୍ଛା କରି ଗମନ୍ତେ ଏକ ପ୍ରାଙ୍ଗଣ ଅତିକ ସୁନ୍ଦରୀ ଯୁବତିକୁ ସେଠାରେ ଦେଖିଲା ।

୩୪ । ସାରଙ୍ଗ—ଭ୍ରମର,ଧନୁ; ଖଞ୍ଜନ ଓ ପଦ୍ମ, ମୁହଁ ହସ ଚନ୍ଦ୍ରକୁ ନିନ୍ଦା କରୁଛି ଚକ୍ଷୁ ସାରଙ୍ଗ କି ଖଞ୍ଜନ ବା ପଦ୍ମକୁ ଓ ଭୃରୁ ଧନୁକୁ ନିନ୍ଦା କରୁଛି—

୩୫ । ହରି—ଚନ୍ଦ୍ର, ବାନର, ସିଂହ, ସର୍ଯ୍ୟ, ଶୁକ; ନାସା—ନାକ, ତରୁଣ-ଅଳ୍ପ ବୟସ୍କ ଟୋକା, ନାକ ଅଳ୍ପ ବୟସ ଶୁଆ ଥଣ୍ଟଠାରୁ ଓଷ୍ଠ ବାଲସୂର୍ଯ୍ୟ ଠାରୁ କଟି ଯୁବା ସିଂହ ଅଣ୍ଟଠାରୁ ସୁନ୍ଦର—ଅପବାଦ ଦୁର୍ଗୁଣ ଅପସରକି ଛାଡ଼ି, ଯାଇଛି ଅର୍ଥାତ ସମସ୍ତ ସୁଗୁଣରେ ପୂର୍ଣ୍ଣ ହୋଇଛି ଏହା ଲକ୍ଷ ହୋଇପାରେ ।

୩୬ । ଅମର ସମ୍ପତ୍ତି—ସ୍ୱର୍ଗ ସୁଖ, ବଲୋକନ—ଦେଖିବା, ପିତୁଳା, ଚିତ୍ର, ଛବି ଦେଖିଲା ମାତ୍ରେ ସ୍ୱର୍ଗ ସମ୍ପତ୍ତି ପାଇବ ଥରେ ଦେଖିଲେ ନେତ୍ରରେ ନାଚିବ ।

୩୭ । ସେହି ପ୍ରେମମଞ୍ଜରୀର ତାର ସୌନ୍ଦର୍ଯ୍ୟ ପିଞ୍ଜରାପରି ହେଲା, ପୁଂସନେତ୍ର—ପୁରୁଷ ଆଖି, ଖଞ୍ଜରୀଟ—ଖଞ୍ଜନ ପକ୍ଷୀପରି ସେ ପ୍ରେମ ପିଞ୍ଜରାରେ ବନ୍ଦ ହେଲା ।

୩୮ । ରାମ—ବହୁବଚନରେ ରାମା ଅର୍ଥାତ୍ ସ୍ତ୍ରୀ କରିବାକୁ ଜପ କଲା କାରଣ ରମା ବିପରୀତରେ ମାର ସେହି ସମୟରେ କୋପକରି ଆକର୍ଷଣ କଲା—

୩୯ । ଶରୀର ମଧ୍ୟ ଲୋପ ଶରକୁ ଶରୀର କି ଦେହ ମଧ୍ୟକୁ ଯୋଖି ବଧକୁ—ବିନାଶକୁ ବଶୁରି ପ୍ରହାର କଲା—

ପର ଏ ଅନ୍ୟପ୍ରକାର ଯେ । ୪୦ । ଜାଣୁ ନାହିଁ ଅଭିଧାନ ବିଧାନମାନଙ୍କୁ ।
କହନ୍ତି ବିଧୁ ଚନ୍ଦ୍ରମାବସ୍ତୁ କର୍ପୂରକୁ ଯେ । ୪୧ । ଏ କାଳରେ ପୁଂସଠାରେ
ରାମା ଦୃଷ୍ଟିପାତ । ଜନୁ ଅନ୍ଧ ନୟନକୁ ଲଭିଲେ ଯେମନ୍ତ ଯେ ।୪୨। ମନ-
ମଥମଥନେ ଥିବାରୁ ଦେଖି ଜାନୁ । କଦମ୍ବକୋରକ ଶୋଭା ଲଭି କଲା
ତନୁ ଯେ । ୪୩ । ନେତ୍ର ବଡ଼ଶୀରେ ସେ ଧଡ଼ସି ଅନୁରାଗେ । ପୁରୁଷ
ମନ ମୀନକୁ ଧରି ନେଲା ବେଗେ ଯେ । ୪୪ । ସେକାଳେ ସୁବର୍ଣ୍ଣୀମଣି
ଧୀବର ହୋଇଲା । ଉରଜ କୁବେଣୀ ଫପୁଟରେ ପକାଇଲା । ୪୫ ।
ସେ ସମୟେ ପୁରୁଷ କହିଲା ଯୋଡ଼ିକର । ହେ ରସହୃଦୟା ସୁହୃଦୟା
ଦୟା କର ॥ ତପତତପନୀୟାଙ୍ଗୀ ତପଫଳ ମୋର । ଦ୍ୱିହସିତେ ଇଷିତେ
ସଫଳ କର କର । ୪୬ । ଅତଦ୍ୱୀନ କ୍ଷୀଣ ହୀନ ମୁଁ ମଦନ ଶରେ ।
ରକ୍ଷା କର କଷା କର କୁଟିଳାକ୍ଷା ବାରେ । ୪୮ । ଏ ବଚନେ ସୀତକାର

---

୪୦ । ତହୁଁ ତାଙ୍କୁ ବ ସେ ସ୍ତ୍ରୀ କ ସୁତକଲା, କ ବନପୁରେକହିଲା, ତୋନାରବ
କନ୍ଦର୍ପରନାଶ ଯେ ରତିରେ ମୋର ଇଚ୍ଛା, ତୁମ୍ଭେ ଅନ୍ୟ କ'ଣ ଭାବ
ପର ହେଉଛ—

୪୧ । ଅଭିଧାନର କ ଯାହା ବନାଗ୍ରରୁରେ ବଶେଷ ଭାବେ ଜଣାଯାଏ ସେହି
ବଧାନ—ନୟମକୁ ଜାଣୁ ନାହିଁ ? ଯେ' କର୍ପୂର ଠାରୁ ସୁବାସିତ ଓ
ଉଜ୍ଜ୍ୱଳ, ଚନ୍ଦ୍ରମାଠାରୁ ଶୋଭା ଯୁକ୍ତ ବିଷ୍ଣୁଠାରୁ ଗମ୍ଭୀର ଅଟେ—

୪୨ । ଦୃଷ୍ଟିପାତ—ଆଖି ପଡ଼ିବା,

୪୩ । ମନମଥ—କନ୍ଦର୍ପ, ମଥନେ—ଦହିବାରେ, ଜାନୁ—ଜଙ୍ଘ, କଦମ୍ବ-
କୋରକ—କଦମ୍ବଫୁଲର କଢ଼ି, ତନୁ—ଦେହ, କନ୍ଦର୍ପ ଘାତରେ ସ୍ତ୍ରୀର
ଜାନୁ ଥିବାରୁ ପଦ୍ମକଢ଼ି ପରି ଲୋମସବୁ ଦେହର ରୋମସବୁ ଠାକୁର
ଉଠିଲା—

୪୪ । ବଡ଼ଶୀ—ବନସୀ, ଧଡ଼ସୀ—ଶୀଘ୍ର, ଅନୁରାଗ—ସ୍ନେହ, ସ୍ନେହବଶରେ
ଆଖି ବନସୀରେ, ଶୀଘ୍ର ପୁରୁଷର ମନମୀନକୁ ଧରନେଲା ।

୪୫ । ସୁବର୍ଣ୍ଣ ମଣି—ଉତ୍ତମ ସ୍ତ୍ରୀ, ଧୀବର—କେଉଟ, ଉରଜ—ସ୍ତନ, କୁବେଣୀ
—ଖାଲୋଇ, ଫପୁଟ—ଫରୁଆ ।

୪୬ । ରସହୃଦୟା—ରସବତୀ, ସୁହୃଦୟା—ଦୟାବତୀ,

୪୭ । ତପତ ତପନୀୟାଙ୍ଗୀ, କି ତପତ—ତପଲା, ତପନୀୟ—ସ୍ୱର୍ଣ୍ଣ, ଅଙ୍ଗୀ—
ଦେହୀ, ତପ୍ତସ୍ୱର୍ଣ୍ଣବର୍ଣ୍ଣୀ ମୋର ତପଫଳ ପୂର୍ଣ୍ଣ ହେବାରୁ ତୋତେ ଦେଖିଲି,
ଦରହାସରେ—ଇଷିତେ କି ଅଳ୍ପହାସରେ ମୋର ମନକାମନା ସଫଳ,—
ପୂର୍ଣ୍ଣ କର ।

୪୮ । ମଦନ—କାମ, କଷା—ଦୟା, କୁଟିଳାକ୍ଷା—ଇସତ୍ ବଙ୍କନେତ୍ରା;

କଣ୍ଠାଗ୍ରେ ଅର୍ପିଲା । ରସିକା ଭଜିଲା ଭାବ ରସିକ ଜାଣିଲା । ୪୯ । ଏବେ ତ ଏକାନ୍ତ ଦୁହେଁ ତରୁଣ ତରୁଣୀ । ଭେଟ ଯାହା ଲୋଡ଼ୁ ଥାଇ ଫୁଲଧନୁପାଣି । ୫୦ । ପଞ୍ଚବିଶିଖଙ୍କୁ କେତେ ଲକ୍ଷ୍ୟ ଅବା କଲା । ଭଲା ଲକ୍ଷ୍ୟ ନାଗର ନାଗରୀ ହୃଦ ହେଲା । ୫୧ । ପୁରୁଷ ନିକଟ ଲଭିବାକୁ କୃଶକଟି । ଭାବବତୀ ମନେ ତର ଅଇଲା ପାଛୋଟି । ୫୨ । ଯୁବା ଦେହ ବହି ଏ ଉନ୍ନତି ବଡ଼ ଜର । ଉଜ୍ଜ୍ୱଳ ଲୋଚ କାହିଁ ଥିକ କହୁ ବଳୁଛ । ଦାଢରେ ଦେହଳୀ ବଳି ତ୍ରିବଳୀଶୋଭିତା । ଆଲିଙ୍ଗନ କଲା ପୁଂସ ହୋଇଣ ଲୋଭିତା । ୫୪ । ଚୁମ୍ବିବାବେଳକୁ ମୁଖରାଜୀବ ତାହାର । ଜୀବହୀନ ହୋଇ ତା ରହିଲା କଳେବର । ୫୫ । ଗୃହେଁ ତରୁଣ ଅରୁଣ-ଓଷ୍ଠୀର ଏ ରୀତ । ବଦନପବନ କେତେ ଦତ୍ତ କଲା ଶ୍ରୀତ । ୫୬ । ଲୋତକ ଜଳରେ ଅଗ ଧୋଇ ଦେଲା ମୁଖ । ବୋଇଲା ମୁଁ ନ ମର ଦେଖିଲି ଏତେ ଦୁଃଖ । ୫୭ । ଏ ସମୟେ ଶୁଭିଲା ଅମ୍ବରୁ ଏହୁ ବାଣୀ । ଗଙ୍ଗାସାଗର ସଙ୍ଗମେ ତ୍ୟାଗ ପୁଂସମଣି । ୫୮ । ଏ ବଲ୍ଲଭୀକି ଲଭିବୁ ନୃପସୁତ ହୋଇ । ଅନଳରେ ନ ଦହୁ ସେଠାରେ ଯାଇ ଥୋଇ । ୫୯ ।

---

୪୯ । ସ୍ୱୀକାର—ସମ୍ମତ, କଣ୍ଠାଗ୍ରେ—ଗ୍ରହଣିରେ,
୫୦ । ଏକାନ୍ତ—ନିର୍ଜନ, ଫୁଲଧନୁପାଣି—ମଦନ, ଏକେ ନିର୍ଜନସ୍ଥାନ—ଦୁହେଁକି ଦ୍ୱିତୀୟରେ ତରୁଣ—ଯୁବକ, ତରୁଣୀ—ଯୁବତୀ, କେବଳ ମଦନ ଭେଟ ଗ୍ରହିଥିଲା ।
୫୧ । ପଞ୍ଚବିଶିଖ—ଫୁଲଧନୁ, କୃଶକଟି—ସରୁଅଣ୍ଟା, ପାଛୋଟି—ସମ୍ମାନ ସହିତ ନେଇଯିବା ।
୫୪ । ଦେହଳି—ଦୁଆରମୁହଁ, ତ୍ରିବଳୀ ଶୋଭିତା—ପେଟରେ ତିନୋଟି ରେଖା ଯୁକ୍ତା, ଆଲିଙ୍ଗନ—କୋଳ । ଦେବେ ଦୁଆରକୁ ବଳ ସେ ସ୍ତ୍ରୀ ଲୋଭରେ ପୁରୁଷକୁ ଆଲିଙ୍ଗନ କଲା—
୫୫ । ଚୁମ୍ବିବା ବେଳକୁ—ଚୋକ ଦେବାବେଳେ, ମୁଖରାଜୀବ—ପଦ୍ମମୁଖ, ଜୀବହୀନ—ପ୍ରାଣହୀନ, କଳେବର—ଦେହ, ସେ ସ୍ତ୍ରୀର ପଦ୍ମମୁଖରେ ଚୋକଦେବା ବେଳକୁ ସେ ମୃତ ପିଣ୍ଡପରି ହୋଇଲା ।
୫୬ । ଅରୁଣଓଷ୍ଠୀ—ବାଳସୂର୍ଯ୍ୟଓଷ୍ଠୀ ( ରକ୍ତିମାଓଷ୍ଠୀ ) ରୀତ—ଅବସ୍ଥା, ବଦନପବନ—ଫୁଙ୍କିବା,
୫୮ । ଅମ୍ବରୁ—ଆକାଶରୁ, ସାଗର—ସମୁଦ୍ର, ଗଙ୍ଗାସାଗର ସଙ୍ଗମ—ଗଙ୍ଗା ଯେଉଁଠାରେ ସମୁଦ୍ରରେ ପଡ଼ିଛି ।
୫୯ । ବଲ୍ଲଭୀ—ସ୍ତ୍ରୀ, ନୃପସୁତ—ରାଜପୁତ୍ର । ଅନଳ—ଅଗ୍ନି, ଦହୁ—ପୋଡ଼,

ଏ ବଚନେ ସନ୍ତାପଙ୍କୁ କରନ୍ତି ଶାନ୍ତ ଭଳି । ବଙ୍ଗଦେଶେ ଯାଇ ଗଙ୍ଗା-ସାଗରେ ସ୍ଥାପିଲି । ୬୦ । କର୍ଣ୍ଣାଟଦେଶରେ କାଞ୍ଚୀ ନାମେ ନଗ୍ର ସାର । ଶଶିଶେଖର ନାମରେ ତହିଁ ନରେଶ୍ୱର । ୬୧ । ଶଶିରେଖା ନାମେ ତାର ଯେ ପଟ୍ଟମହିଷୀ । ପୁତ୍ରାର୍ଥେ ଅନେକ ବ୍ରତେ ତୋଷି କାଶୀବାସୀ । ୬୨ । ତା ଉଦର ଆକାଶରେ ପ୍ରକାଶ ହୋଇଲି । ଅକଳଙ୍କ କଳାନିଧି ପରାୟେ ଶୋହିଲି । ୬୩ । ଅହ୍ଲାଦେ ଚନ୍ଦ୍ରଭାନୁ ତେଜ ଭାବି ଚିତ୍ତ । ଚନ୍ଦ୍ରଭାନୁ ନାମ ହୋଇଲ ବଜ୍ରୁବ ବଜ୍ରୁବ । ୬୪ । ବେଦ ବେଦାନ୍ତେ ବିଧାତା ବ୍ୟାକରଣେ ହର । ସଙ୍ଗୀତରେ ନାରଦ ଶୃଙ୍ଗାରଶାସ୍ତ୍ରେ ମାର । ୬୫ । କବିପଣେ ଗଣେଶ ଜ୍ୟୋତିଷେ ବୃହସ୍ପତି । ଅଶ୍ୱାରୋହେ ମିହିର ଭୈରବ ପରି ଗତି । ୬୬ । ଧନୁର୍ଦ୍ଧରେ ଅର୍ଜ୍ଜୁନ ଗଦାରେ ବୃକୋଦର । ଦାନରେ କର୍ଣ୍ଣ ମାନରେ କୁରୁ ଦଣ୍ଡଧର । ୬୭ । ବଳିଷ୍ଠରେ ବାଳୀ ଧାର୍ମିକରେ

୬୦ । ବଚନ—କଥା, ଶାନ୍ତ—ସ୍ଥିର,

୬୧ । କର୍ଣ୍ଣାଟ—ଦକ୍ଷିଣରେ ଥିବା ଦେଶ, ନଗ୍ର—ନଗର, ସାର—ପ୍ରଧାନ, ନରେଶ୍ୱର—ରାଜା;

୬୨ । ପଟ୍ଟ ମହିଷୀ—ପାଟରାଣୀ, ପୁତ୍ରାର୍ଥେ ( ପୁତ୍ର+ଅର୍ଥେ ) ପୁତ୍ର—ପୁଅ, ଅର୍ଥେ—ସକାଶରେ, ବ୍ରତେ—ଉପାସେ, ବାରାଣସୀ—ମହାଦେବ,

୬୩ । ଉଦର—ପେଟ, ଅକଳଙ୍କ—କଳଙ୍କହୀନ, କଳାନିଧି—ଚନ୍ଦ୍ର; ଚନ୍ଦ୍ରରେ କଳଙ୍କ ଅଛି, ମାତ୍ର ଏହା ଦେହରେ କଳଙ୍କ ରହିଲା ନାହିଁ,

୬୪ । ଅହ୍ଲାଦେ—ଆନନ୍ଦରେ, ଚନ୍ଦ୍ର—ଚନ୍ଦ୍ରମା, ଭାନୁ—ସୂର୍ଯ୍ୟ, ଚନ୍ଦ୍ର ଓ ସୂର୍ଯ୍ୟଙ୍କ ତେଜ ଦେଖାଯାଉ ଥିବାରୁ ଚନ୍ଦ୍ରଭାନୁ ନାମ ରଖିଲେ,

୬୫-୬୬-୬୭ । ବେଦ କି ବେଦାନ୍ତରେ—ବିଧାତା, ବ୍ରହ୍ମା; ବ୍ୟାକରଣରେ—ହର କି ଶିବ । ସଙ୍ଗୀତବିଦ୍ୟାରେ—ନାରଦ, ଶୃଙ୍ଗାର ଶାସ୍ତ୍ରରେ କି କାମ ଶାସ୍ତ୍ରରେ ମାର ଯେ କନ୍ଦର୍ପ, ଧନୁର୍ଦ୍ଧର—ଯୋଦ୍ଧା ପଣିଆରେ ଅର୍ଜ୍ଜୁନ, ଗଦା ଯୁଦ୍ଧରେ ବୃକୋଦର ଯେ ଭୀମ, ଜ୍ୟୋତିଷ ଶାସ୍ତ୍ରରେ—ବୃହସ୍ପତି କି ଦେବଗୁରୁ, ଅଶ୍ୱାରୋହେ—ଘୋଡ଼ା ଚଢିବାରେ ମିହିର ଯେ ସୂର୍ଯ୍ୟ, କବିପଣରେ ଗଣେଶ, ଦାନ କି ଦାତା ପଣରେ କର୍ଣ୍ଣ, ମାନ କି ସମ୍ମାନରେ ଦୁର୍ଯ୍ୟୋଧନ କୁରୁରାଜ, ବଳିଷ୍ଠରେ କି ବଳୁଆ ପଣରେ ବାଳୀ ବାନର, ଧାର୍ମିକ—ଧର୍ମଶୀଳ ପଣରେ ଯୁଧିଷ୍ଠିର ଏମାନଙ୍କ ପରି ପ୍ରତ୍ୟେକ ଗୁଣରେ ସେ ଚନ୍ଦ୍ରଭାନୁ ପରିପୂର୍ଣ୍ଣ ଏବଂ ସୁନ୍ଦର ପଣରେ ସଂସାରରେ କେହି ନ ଥିବାରୁ ତାଙ୍କୁ ସେ କହେ ତୁଳନା—

ପୃଥ୍ୱୀପତି ବର । ସୁନ୍ଦର ପଣତର ତାଙ୍କୁ ସେହି ପଟାନ୍ତର । ୬୯ । ମନ୍ତ୍ରୀ ଜ୍ୟୋତିଷ ସାଧୁତ ପୁରୋଧାକୁମର । ନାମ ଗୁଣନିଧି ବସନ୍ତକ ସୁନ୍ଦର । ୬୯ । ରତ୍ନଭୂଷଣ ସହିତେ ଏ ଗୃହସିଦ୍ଧିହିତ । ନିଶି ଦିନ ଭିନ୍ନ ନୋହେ ଏହାଙ୍କ ସଙ୍ଗତ ।୭୦। ହେ ରାମକୃଷ୍ଣ ସୁନ୍ଦରକଲାପ ମଣ୍ଡନ । ରାଧାପତି ରତି ହାସ ଅଘବିନାଶନ । ୭୧ । ଉପେନ୍ଦ୍ର ଭଞ୍ଜ ଗାରବର ମନୋରଥ । ଏ ଗୀତ ପୂର୍ଣ୍ଣ ହେବାରେ କର ଏହା ସାର୍ଥ ଯେ । ୭୨ ।

---

## ଦ୍ୱିତୀୟ ଛାନ୍ଦ ।

### ରାଗ ପଞ୍ଚମମଞ୍ଜରୀ ।

### ( ଲାବଣ୍ୟବତୀର ଜନ୍ମ ବୃତ୍ତାନ୍ତ )

ଶୁଣ ହେ ସୁଜନେ ରସ କର୍ଣ୍ଣ ମନ ଲୋଭା । ରତ୍ନାକର ମଧ୍ୟରେ ସିଂହଳଦ୍ୱୀପ ଶୋଭା । ୧ । କହିବାର ନୋହେ ସେ କଟକ-ଛଟକକୁ ।

---

୬୯ । ମନ୍ତ୍ରୀ—ପରାମର୍ଶ ଦାତା, ପୁରୋଧା—ପୁରୋହିତ,

୭୧ । କଲାପ—ମୟୂର ଚୂଳ; ରାମକୃଷ୍ଣ ମୟୂର ଚନ୍ଦ୍ରିକାରେ ଭୂଷିତ, ରାଧାପତି—ରାଧିକାର ସ୍ୱାମୀ; ଅଘ—ପାପ, ବିନାଶନ—ନାଶ କରିବା,

୭୨ । ମନୋରଥ—ମନକାମନା, ସାର୍ଥ—ସଫଳ,

ଭାବାର୍ଥ—ଦିନେ ପାର୍ବତୀ ଖେଳିବାକୁ ଇଚ୍ଛା କରି ନିଜ ମନରୁ ଗୋଟିଏ କନ୍ୟା ଜାତ କଲେ, ସେ କନ୍ୟା ପାର୍ବତୀଠାରୁ ସୁନ୍ଦରୀ ହେଲା, ମହାଦେବ ଦେଖିଲେ ଲୋଭ କରିବେ ଏହି ଭୟରେ ତାଙ୍କୁ ବନସ୍ତରେ ରଖିଲେ, ସେ କନ୍ୟାକୁ ବରଦେଲେ ଯେ ପୁରୁଷ ତୋତେ ଛୁଇଁବ ସେ ଆର ଜନ୍ମରେ ତୋର ସ୍ୱାମୀ ହେବ । ଏଣେ ଗୋଟିଏ ଲୋକ ସୁନ୍ଦରୀ ସ୍ତ୍ରୀ ପାଇବ ବୋଲି ଶିବଙ୍କୁ ତପସ୍ୟା କରି ପ୍ରୟାଗରେ ଝାସ ଦେବାକୁ ଯିବାବେଳେ ବନସ୍ତରେ ସେ ସ୍ତ୍ରୀ କି ଦେଖି ଉଭୟେ ସ୍ନେହବଦ୍ଧ ହୋଇ ଚୁମ୍ବନ ଦେବାବେଳେ ଛୁଅନ୍ତେ ସେ ସ୍ତ୍ରୀ ମରିଯିବାରୁ ପୁରୁଷ ଦୁଃଖିତ ହେବାରୁ ଶୂନ୍ୟବାଣୀ ହେଲା, ତୁ ପ୍ରୟାଗରେ ଝାସଦେ, ଅପର ଜନ୍ମରେ ଏହାକୁ ପାଇବୁ ତହୁଁ ସେହି ତପସ୍ୱୀ କର୍ଣ୍ଣାଟଦେଶ କାମ୍ବରାଜାଙ୍କର ପୁତ୍ରରୂପେ ଜନ୍ମ ହେଲା, ତାର୍ ନାମ ଚନ୍ଦ୍ରଭାନୁ ହେଲା ।

---

୧ । ରତ୍ନାକର—ସମୁଦ୍ର-ସାଗର, ସିଂହଳଦ୍ୱୀପ—ଲଙ୍କାଦ୍ୱୀପ କି ରାବଣର ପୁର,

ରତନ ସ୍ଫୁଟକ ହସେ ଅନ କଟକକୁ । ୨ । ଅଛନ୍ତି ଧନଦ ସମ ଧନବନ୍ତ
ମାନ । କର୍ଣ୍ଣେ ଶୁଣାଅଛୁ ସେମାନଙ୍କୁ ଏକା ଦୀନ । ୩ । ଯେତେ କୋଟି
ସୁବର୍ଣ୍ଣ ଯାହାକୁ ମିଳେ ତହିଁ । ତେତେ ଗୋଟି କଳଶ ସେ ମନ୍ଦିରେ
ବସାଇ । ୪ । ଗୋରୋଚନା ପ୍ରକାରେ ଯହିଁରେ ମୃଗମଦ । ନିତ୍ୟ ଜୀର୍ଣ୍ଣ-
ବସନକୁ ବଳନ୍ତି ପୁଳନ୍ଦ । ୫ । କୁଙ୍କୁମ ଉକୁଟାଇ ହୁଅନ୍ତି ନାରୀ ଯହିଁ ।
ହରିଦ୍ରାରେ ଆଦର କରିବେ ତାହିଁ ପାଇଁ । ୬ । ମାର୍ଗ ମାର୍ଜ୍ଜନେ ରଜ
ନିକର ଅଣାଯାଇ । ରଜନୀକର ଅଣାନ୍ତି ଶକଟରେ ବୋଝ । ୭ । ହରିତକୀ

---

୨ । କଟକ—ରାଜଧାନୀ, ଛଟକ—ଶୋଭା, ରତନ—ହୀରା ନୀଳା ମୋତି ମାଣିକ୍ୟାଦି, ସ୍ଫୁଟକ—ଦୀପ୍ତି, ଉଜ୍ଜ୍ୱଳ, ଅନ—ଅନ୍ୟ, କଟକ—ଖଡ଼୍ ବା ବଳୟ ଅର୍ଥାତ୍—ଖଡ଼ୁଆଦି ଗହଣା ଅଷ୍ଟରତ୍ନରେ ହୋଇଥିଲେ ଯେପରି ଉଜ୍ଜ୍ୱଳ ଦେଖାଯାଏ ଲଙ୍କାପୁର ଏତେ ରତ୍ନ ସବୁରେ ତିଆର ହୋଇଛି, ତାହାର ତେଜରେ ଏହି ସବୁ ତୁଚ୍ଛ ହୋଉଛି—

୩ । ଧନଦ—କୁବେର, ଧନବନ୍ତ—ଧନୀଲୋକ, ଦୀନ—ଦୁଃଖୀ ସେଠାରେ କୁବେର ସମାନରେ ବହୁତ ଧନୀ ଅଛନ୍ତି, ଗରିବ ହୋଇ ସେଠାରେ ଜଣେ କେହି ନାହିଁ—ଗରିବ ଅଛନ୍ତି, ଏକଥା ସେଠାରେ ଲୋକେ ଶୁଣନ୍ତି ମାତ୍ର ଦେଖି ନାହାନ୍ତି—କି କେବେ ଭୋଗି ନାହାନ୍ତି ।

୪ । ସୁବର୍ଣ୍ଣ—ସୁନା, କଳଶ—ମାଠିଆ । ସେଠାରେ ଯାହାକୁ ଯେତେକୋଟି ସୁବର୍ଣ୍ଣ ମିଳେ, କୋଟିକରେ ଗୋଟିଏ ହିସାବରେ ସେମାନେ ଘରେ କଳଶ କି ମାଠିଆ ବସାଇ ଥାନ୍ତି । ଏହି ମାଠିଆରୁ ଜଣାଯାଏ ଏହାକୁ ଏତେକୋଟି ସୁବର୍ଣ୍ଣ ମିଳେ ।

୫ । ଗୋରଚନା—ଗାଈଙ୍କ ଠାରୁ ଯେଉଁ ସୁବାସିତ ଦ୍ରବ୍ୟ ବାହାରେ, ମୃଗମଦ—କସ୍ତୁରୀ, ଏକଜାତି କୃଷ୍ଣାଜିନ ମୃଗ ଅଛନ୍ତି ତାଙ୍କଠାରୁ ଅତ୍ୟନ୍ତ ସୁଗନ୍ଧଯୁକ୍ତ ଗୋଲାକାର ଥଳି ବାହାରେ ତାକୁ କସ୍ତୁରୀ କହନ୍ତି । ଜୀର୍ଣ୍ଣ ବସନ—ପୁରୁଣା ଲୁଗା, ପୁଳନ୍ଦ—କେଳା । ସଠାଲୋକେ କସ୍ତୁରୀକୁ—ଗୋରଚନା ପରି ବ୍ୟବହାର କରନ୍ତି । ସାମାନ୍ୟ କେଳାମାନେ ପ୍ରତିଦିନ ପୁରୁଣା ଲୁଗାକୁ ଫୋପାଡ଼ି ଦେଇ ନୂଆଲୁଗା ପିନ୍ଧନ୍ତି । ଏଥୁ ଅନ୍ୟମାନଙ୍କ କଥା କହିବାର ନୁହେ—

୬ । କୁଙ୍କୁମ—ଜାଫ୍ରାନ କେଶର—ଓ ଏକ ଜାତୀୟ ସୁବାସିତ ହଳଦୀ, ହରିଦ୍ରା—ହଳଦୀ, ଉକୁଟାଇ—ଲଗାଇ; ସେଠାରେ ହଳଦୀ ପରିବର୍ତ୍ତେ କୁଙ୍କୁମ—ଜାଫ୍ରାନ କେଶରକୁ ଲଗାନ୍ତି ।

୭ । ମାର୍ଗ—ବାଟ, ମାର୍ଜ୍ଜନ—ଓଳାଇବା, ରଜ—ଧୂଳି, ରଜନୀକର—କର୍ପୂର, ଶକଟ—ଶଗଡ଼ ବା ବଳଦଗାଡ଼ି ।

ଯାଇଁ ଉଚାରିଲେ ବୈଦ୍ୟକୁଳ । ଭ୍ରମରବାହେ ଭ୍ରମରେ ଅଣନ୍ତି ଜାତି-ଫଳ । ୮ । ଶବରୀ ଶର୍ବରୀ ଶେଷୁଁ ଅରଣ୍ୟକୁ ଯାଇ । ହରି-ବିଦାରିତ କରି-ମୋତି ପଡିଥାଇ । ୯ । ବଦରୀ ଆଦରେ ନେଇ ସରୋବରେ ଧୋଇ ବିକା ତା ନ ଯିବ ବୋଲି ଅସନ୍ତି ପକାଇ । ୧୦ । ଖଣ୍ଡପରଶୁ-ଧାରଣ-ପୁର ପରିସ୍କାରେ । ନ ଦହନ୍ତି ଶାମ୍ବୁକ ମୁକୁତା ବହ୍ନିରେ । ୧୧ । ଯେଉଁ ହେମ କମନୀୟ କମ କରେ ହୋଇ । ସେ ଗ୍ରହଣୁ ବାରବାନେ ଦୃକପାତ ନାହିଁ । ୧୨ । ଶିଶୁକାଳରୁ ମେଧାବୀ ମଦନ ଶଲାକା । ଭକ୍ଷନ୍ତି ଲବଙ୍ଗ ନାଗବଲ୍ଲୀଦଳ ଏକା । ୧୩ । ଏଣୁ କଣ୍ଠରୋଧ ବାଧହୀନ

---

୮ । ହରିତକୀ—ହରଡ଼ା, ଜାତିଫଳ—ଜାଇଫଳ, ଭ୍ରମରବାହେ—ଭଅଁରମାନେ ଗଣ୍ଡମାନେ, ଉଚାରିବା—କହିବା:—

୯ । ଶବରୀ—ଶବରୁଣୀ, ଶର୍ବରୀ—ରାତି, ଅରଣ୍ୟ—ବନ, ହରି—ସିଂହ ବିଦାରିତ—ଛିନ୍ନଭିନ୍ନ କରି ଆମ୍ପୁଡ଼ି ପକାଇଥିବା, କରି—ହାତୀ, ଗଜ; କରିମୋତି—ଗଜମୋତି, ଶବରୀ ରାତି ଶେଷରେ ବଣକୁ ଯାଇ ଦେଖେ ସିଂହ ଯେଉଁ ସବୁ ହାତୀଙ୍କ ମାରି ତା ମୁଣ୍ଡ ଚିରି ପକାଇଥାଏ ସେସବୁ ହାତୀ ବଣରେ ପଡିଥାଏ ତା ମୁଣ୍ଡରୁ ମୋତିସବୁ ଗଡ଼ାହୋଇ ଥାଏ ।

୧୦ । ବଦରୀ—ବରକୋଳି, ଆଦରେ—ଯତ୍ନରେ, ସରୋବର—ପୋଖରୀ, ଶବରୁଣୀମାନେ ବରକୋଳି ସଙ୍ଗେ ସେ ମୋତିକୁ ଧୋଇ ତାହା ଅର୍ଥାତ୍ ସେ ମୋତି ସେଠାରେ ବିକ୍ରି ହବନାହିଁ ବୋଲି ଫୋପାଡି ଦିଅନ୍ତି ।

୧୧ । ଖଣ୍ଡପରଶୁ ଧାରଣ—ମହାଦେବ, ପୁର—ମନ୍ଦିର, ପରିସ୍କାର—ସଫାଇହେ ଶାମ୍ବୁକ—ଶାମୁକା, ଦହନ୍ତି—ପୋଡ଼ନ୍ତି, ସେଠାରେ ମହାଦେବଙ୍କ ଦେଉଳ ସଫା କରିବାରୁ ଶାମୁକା ପୋଡ଼ା ଚୂନରେ ନ କରି, ମୁକ୍ତା ପୋଡ଼ା ଚୂନରେ କରନ୍ତି ।

୧୨ । ହେମ—ସୁନା, କମନୀୟ—ସୁନ୍ଦର, କମ—କାରିଗରିଯୁକ୍ତ ଗହଣା ବାରବାନ—ସୁନା, ଦୃକ—ଚକ୍ଷୁ, ପାତ—ପକାଇବା, ସୁନାର—କାରୁକାର୍ଯ୍ୟ ଯୁକ୍ତ ଜଡ଼ାଉ ଗହଣା ଆଦର କରିବାରୁ ଅନ୍ୟ ସୁନାକୁ ପଚାରନ୍ତି ନାହିଁ ।

୧୩ । ୧୪ । ଶିଶୁକାଳରୁ—ପିଲାଦିନରୁ, ମେଧାବୀ—ବୁଦ୍ଧିମାନ ( ଶୁଆ ), ମଦନ ଶଲାକା—ସାରୀ, ସ୍ତ୍ରୀମାନେ । ନାଗବଲ୍ଲୀ—ପାନ, କଣ୍ଠରୋଧ—ଗଳାବନ୍ଦ, ବାଧହୀନ—ପରିଷ୍କାର, ଦିବ୍ୟ—ସୁନ୍ଦର, ତାନ—ସ୍ୱର, ଗାନ—ଗାଇବା, ଭ୍ରମି—ଭୁଲି ।

ଧବଂଛାନ । ଶିଖି ବସ୍ତ୍ର ଚବତ କରନ୍ତି ଭୂପ[illegible] ଯେ । ୧୪ । ଗଜ ହୟ ଉପଜୀବୀ ଭ୍ରମନ୍ତି କେଦାରେ । ମାର୍ଗ ଜ୍ୟୋତିକ କରି ଜବସ ମନରେ । ୧୫ । ବାସକରେ ଗ୍ରହଣ କରନ୍ତି ଯହିଁ ମନ୍ଥ । ଭ୍ରମନ୍ତି ଏହି ପଥରେ ପଥଚରେକ ସ୍ୱଚ୍ଛ ଯେ । ୧୬ । ବଜ୍ରକାନ୍ତ ବନା ଗଜ ନ ଅଶନ୍ତି ବନୁ । ଅଶ୍ୱଶାଳେ ବନ୍ଧା ନୋହେ ସିନ୍ଧୁକାନ୍ତ ବନୁ । ୧୭ । ମୂଷିକରେ ନେପାଳୀ ପାଳନ୍ତି ସୁଆଦରେ । ଗନ୍ଧମାର୍ଜ୍ଜାର ପୋଷିତ ବଡ଼ାଳ ପଦରେ ଯେ । ୧୮ । ମାଳଅଳ ଦକ୍ଷିଣାବର୍ତ୍ତିକ ବନା କମ୍ବୁ । ନ ଘେନନ୍ତି ଦେବାକୁ ହରଚରଣେ ଅମ୍ବୁ ଯେ । ୧୯ । ଏକମୁଖୀରୁଦ୍ରାକ୍ଷ ଗ୍ରହଣ ଯୋଗୀ କରନ୍ତି । ବାଳକେ କଣନ୍ତି ଦ୍ରାକ୍ଷା କେବଳ କୋଳରେ ଯେ ।୨୦। ଖଡ୍ଗ ଚର୍ମଅଢ଼େଣୀ ଧାରଣ ନ ପାଇ । ଖଡ୍ଗଚର୍ମରୁ ଅନ୍ୟ ଚର୍ମ ନ ଯୋଗାଇ ଯେ । ୨୧ । ଯହିଁ ବ୍ରହ୍ମକାନ୍ତ ବଜ୍ରକବଚ ମିଳଇ । ବଜ୍ର-

---

ସେଠାର ସ୍ତ୍ରୀମାନେ ପିକ୍ସବଦନୀ ବଡ଼ ବୁଦ୍ଧିମାନ । ସେମାନେ ଲବଙ୍ଗ ଓ ପାନପତ୍ର ଖାଇବାରୁ ତାଙ୍କର କଣ୍ଠ ପରିଷ୍କାର ହୋଇଥାଏ ତେଣୁ ସୁନ୍ଦର ସ୍ୱରରେ ବିଷ୍ଣୁ ବିଷୟର ଗୀତ ବୋଲନ୍ତି । ( ବିଶେଷରେ ଶୁଆ ଓ ସାରୀ ପିକ୍ସବଦନୀ ଲବଙ୍ଗ ପାନପତ୍ର ଖାଇ କଣ୍ଠ ପରିଷ୍କାର ହେବାରୁ ବିଷ୍ଣୁ ବିଷୟରେ ଗୀତ ବୋଲନ୍ତି ) ।

୧୫ । ଗଜ—ହାତୀ, ହୟ—ଘୋଡ଼ା, କେଦାର—କିଆର । ମାର୍ଗ—ସବୁଜବର୍ଣ୍ଣ ମଣି, ଜବସ—ଘାସ, ସେଠାରେ ମାର୍ଗ ସବୁ ଘାସରେ ପଡ଼ିଥାଏ । ହାତୀ ଘୋଡ଼ା ସବୁ ତାକୁ ଘାସ ଫସଲ ମନେ କରି ତା ଉପରେ ବୁଲନ୍ତି ।

୧୬ । ବାସ କରେ—ବାସନାରେ, ପଥରେ—ବାଟରେ, ପଥରେକ—ପଥର ସ୍ୱଚ୍ଛ—ପରିଷ୍କାର ।

୧୭ । ବଜ୍ର କାନ୍ତ – ସୁଲକ୍ଷଣବନ୍ତ, ଅଶ୍ୱଶାଳ—ଘୋଡ଼ାଶାଳ, ସିନ୍ଧୁକାନ୍ତ—ପବନ ପରି ଗତି କରିବା ।

୧୮ । ମୂଷିକ—ମୂଷା, ଗନ୍ଧ ମାର୍ଜ୍ଜାର—ଶାଳିଆ ପତନୀ, ବଡ଼ାଳ—ବିରାଡ଼ି ।

୧୯ । ମାଳଅଳ—ମାଳଘର ସ୍ତ୍ରୀମାନେ, କମ୍ବୁ—ଶଙ୍ଖ, ଦକ୍ଷିଣାବର୍ତ୍ତିକ—ଦକ୍ଷିଣ ଆଡ଼କୁ ଯାହାର ମୁହଁ ଥାଏ । ହର—ମହାଦେବ, ଚରଣ—ପାଦ; ଅମ୍ବୁ—ପାଣି ।

୨୦ । ଏକମୁଖୀ ରୁଦ୍ରାକ୍ଷ—ଗୋଟିଏ ମୁହଁଥିବା ରୁଦ୍ରାକ୍ଷ, ଏହା ବହୁ କଷ୍ଟରେ ମିଳେ ଦ୍ରାକ୍ଷା—ଅଙ୍ଗୁର ।

୨୧ । ଚର୍ମ ଅଢ଼େଣୀ—ଚମର ଢାଲ, ଖଡ୍ଗ ଚର୍ମ—ଗଣ୍ଡାଚମ ।

ବବଚରେ ଅନୁରାଗ ଥିବ ଜାହିଁ ଯେ । ୨୨ । ପଦ୍ମ୍ନୀ ଜନମସ୍ଥାନ ପଦ୍ମାକର ପୁରୀ । ଅନଳାଭ ନାରୀଏ ଯହିଁରେ ପରିପୂରୀ ଯେ । ୨୩ । କାଲସ୍ୱରୀତ ଶ୍ରବଣ ଯହିଁ ନିତ ନିତ । ମହୀ ମଧ୍ୟେ ସ୍ୱର୍ଗ ଯେ ହୋଇଛି ଭଉତ ଯେ । ୨୪ । ସେ ନଗର ନରବର ନାମ ଚନ୍ଦ୍ରେଶ୍ୱର । ଚନ୍ଦ୍ରିକ୍ଷମା ନାମେ ପଟ୍ଟମହିଷୀ ତାହାର ଯେ । ୨୫ । ପଞ୍ଚଶରସମେ ପଞ୍ଚସୁତ କଲେ ଜାତ । ଦବ୍ୟକୁମାରୀ ପ୍ରାପତେ କରେ ନାନା ବ୍ରତ ଯେ । ୨୬। ଚୈତ୍ର ମଙ୍ଗଳବାରେ ଅରମ୍ଭି ପୂଜାକୁ । ପଞ୍ଚଦପାଳରେ ତୋଷ କଲେ ଗିରିଜାଙ୍କୁ ଯେ । ୨୭ । ବାଞ୍ଛାବତୀ ପିଣ୍ଡ ଥିଲା ଅଗମ୍ୟ କାନନ । ଆପଣେ ଅମ୍ବିକା ଯାଇ କଲେ ସଞ୍ଜୀବନ ଯେ । ୨୮ । ବୋଇଲେ ସୁନ୍ଦରି ଭୁଞ୍ଜ ତୁ ରସାଳ ଫଳ । ଆଜ୍ଞା ଅବଧାରିଲା ସେ ରାମା ଛଳଛଳ ଯେ । ୨୯ । କରେ ଘେନି ସ୍ୱପ୍ନାବେଶେ ମହାଦେବୀ କରେ । ଦେଇଗଲେ ସେ ଆମ୍ବକୁ ପାର୍ବତୀ ସତ୍ୱରେ ଯେ । ୩୦ । ଚେତ ଯୁବତୀ ଦେଖିଲ ହସ୍ତେ ଅଛି ଚ୍ୟୁତ । ଭକ୍ଷି ମୃଗାକ୍ଷୀ ନାୟକ ସଙ୍ଗେ ହେଲାରତ ।୩୧। ଶୁଭବେଳେ ଗର୍ଭ ଦର୍ଭିହାସି ଶୁଭକେଶୀ । କେତେ ଦନେ ଶୋଭା ତାର ଅନ ଅନ ଦଶି ଯେ । ୩୨ । କାନ୍ତି ସୁବର୍ଣ୍ଣେ ଦୋହଦ ପାରଦ ମିଶିଲା ।

---

୨୨ । ବ୍ରହ୍ମକାନ୍ତ—ଅତ୍ୟନ୍ତ ଶ୍ରେଷ୍ଠ, ନାନାରତ୍ନ ବିଭୂଷିତ, କବଚ—ସାଞ୍ଜୁ, ବଜ୍ରକବଚ—ଅଭେଦ୍ୟ ସାଞ୍ଜୁ ।

୨୩ । ପଦ୍ମିନୀ—ଲକ୍ଷ୍ମୀପରି ଅତ୍ୟନ୍ତ ସୁନ୍ଦରୀ ନାରୀ, ପଦ୍ମାକର—ସମୁଦ୍ର, ପୁରୀ—ନଗର, ପଦ୍ମାକରପୁରୀ—ବରୁଣ ପୁରୀ, ସମୁଦ୍ରରାଜ—ବରୁଣ, ପରିପୂରୀ—ପୂର୍ଣ୍ଣ, ଲକ୍ଷ୍ମୀ ସମୁଦ୍ରରୁ ଜନ୍ମ—ଲଙ୍କାରେ ଯେତେ ସ୍ତ୍ରୀ ସମସ୍ତେ ଲକ୍ଷ୍ମୀ ଜାତୀୟା ସୁନ୍ଦରୀ ।

୨୪ । କିନ୍ନରୀ—ତୁରାଙ୍ଗିକା, ମହୀ—ପୃଥିବୀ ।

୨୫ । ନରବର—ରାଜା, ପଟ୍ଟମହିଷୀ—ପାଟରାଣୀ ।

୨୬ । ପଞ୍ଚଶର—କନ୍ଦର୍ପ, ପଞ୍ଚସୁତ—ପାଞ୍ଚପୁଅ, ଦବ୍ୟ କୁମାରୀ—ସୁନ୍ଦରୀ ଝିଅ, ବ୍ରତ—ଓଷା ।

୨୭ । ଗିରିଜା—ପାର୍ବତୀ ।

୨୮ । ପିଣ୍ଡ—ଦେହ, ସଞ୍ଜୀବନ—ଜୀବଦାନ, ଅଗମ୍ୟ—ଘୋର ।

୨୯ । ରସାଳ—ଆମ୍ବ, ଅବଧାରିଲା—ମାନିଲା ।

୩୧ । ଚ୍ୟୁତ—ଆମ୍ବ, ନାୟକ—ନିଜପୁରୁଷ ।

୩୨ । ଦର୍ଭିହାସୀ— ଦାଶହାସୀ, ଅନ ଅନ—କ୍ରମେ କ୍ରମେ ସୁନ୍ଦର ।

ରଜତପିତୁଳା ତୁଳା ଅବଳା ଦଶିଲ୍ଲ ଯେ । ୩୩ । କ୍ଷୀଣ ଯାଇଁ ପୀନ ହେଲ୍ଲ ରେକଫଖ୍ୟା କଟୀ । ଖସି ନିତମ୍ବବମ୍ବକୁ ଅଣେ ଦଲ୍ଲ ଶାଟୀ ଯେ । ୩୪ । ବେଶରେ ଆବେଶ ହେବା କମଶେ ତୁଟିଲ୍ଲ । ଅହାରେ ବିମନା ହୋଇ ଗମନେ ପୁଟିଲ୍ଲ ଯେ । ୩୫ । ବାହାର ହୋଇଲ୍ଲ ପତି-ବିହାରରୁ ମତି । ମହଲା ମହୀଶୟନେ ବଳାଇଲ୍ଲ ପ୍ରୀତି ଯେ । ୩୬ । ଦ୍ରବ୍ୟରୁଚିକି ରୁଚିଲ୍ଲ ମୃତ୍ତିକା ଭକ୍ଷଣ । ଚଞ୍ଚଳ ଚଳନମାନ ଘୁଞ୍ଚିଲ୍ଲ ଈକ୍ଷଣ ଯେ । ୩୭ । ପୃଥୁରୋମାନୟନୀ ଉଦର ପୃଥୁତର । ଅତି ଶୋଭି ନାଭି ଲେଉଟିଲ୍ଲ ପରକାର ଯେ । ୩୮ । କୌସ୍ତୁର ଦଶିଲ୍ଲ ଓଷ୍ଠ ତୁଟି ଯାଇ ରଙ୍ଗ । ଘନଘନ ଜୃମ୍ଭା ପୁନଃପୁନଃ ମୋଡ଼େ ଅଙ୍ଗ । ୩୯ । ଶ୍ୟାମଳ କୋମଳଅଙ୍ଗୀ ସ୍ତନଅଗ୍ର ବହୁ । ହରଧରଶୃଙ୍ଗେ ଜଳଧର ପରି ଶୋହି ଯେ । ୪୦ । ଦଶମାସ ଶେଷ ରସବତୀ ଅଶକତ । ଉତ୍ତମ ଲଗ୍ନ ମଗ୍ନରେ

୩୩ । କାନ୍ତ—ବର୍ଣ୍ଣ, ରଜତ—ରୂପା, ପିତୁଳା—ପ୍ରତିମା, ସ୍ତ୍ରୀମାନେ ଗର୍ଭହେଲେ ପାଉଁଶିଆ ଦେଖାଯାନ୍ତି, ରମଣୀର ସୁନାପରି ବର୍ଣ୍ଣ ସେ ପାଉଁଶିଆ ହେବାରୁ ଧଳାହେବାରୁ ସୁନାରେ ପାରଦ ରୂପା ମିଶିଲ୍ଲ ପରି ଜଣାଗଲ୍ଲ ।

୩୪ । ପୀନ—ସ୍ଥୂଳ, ମୋଟା । ରେକଫଖ୍ୟା—ବେକାଏ ପରି, ନିତମ୍ବବିମ୍ବ—ପିଚ୍ଛ; କଟି—ଅଣ୍ଟା, ସାଟି—ଶାଢ଼ୀ, ସରୁ କଟି ମୋଟା ହେବାରୁ ଲୁଗା ଖସିଆସି ପିଚ୍ଛ ଉପରେ ପଡ଼ିଲା ।

୩୫ । ଆବେଶହେବା—ମନଦେବା, ବେଶ ହେବାକୁ ଇଚ୍ଛା କଲା ନାହିଁ, ଆହାର ମଧ୍ୟ ଭଲ ଲାଗିଲା ନାହିଁ । ଯିବା ଆସିବାକୁ କଷ୍ଟ ବୋଧକଲା,

୩୬ । ସ୍ୱାମୀସଙ୍ଗ କରିବାକୁ ମନ ହେଲା ନାହିଁ, ମହୀଲା କ ସ୍ତ୍ରୀ ( ରାଣୀ ) ମହୀ ଶୟନେ—ମାଟିରେ ଶୋଇବାକୁ, ପ୍ରୀତି—ସ୍ନେହକଲ୍ଲ ।

୩୭ । ଯେ ଭଲଖାଏ ତାକୁ ମୃତ୍ତିକା—ମାଟି ଖାଇବା ରୁଚିଲା । ଚଞ୍ଚଳ—ଶୀଘ୍ର ଅନାଇବା, ଇକ୍ଷଣ—ଦୃଷ୍ଟି ।

୩୮ । ପୃଥୁରୋମା ନୟନୀ—ମୀନନେତ୍ରୀ, ଉଦର—ପେଟ, ପୃଥୁତର—କ୍ରମେ ବଡ଼ ।

୩୯ । କୌସ୍ତୁର—ବିବର୍ଣ୍ଣ, ଜୃମ୍ଭା—ହାଇ, ଦେହ ମୋଡ ଘଡ ହେଲ୍ଲ ବେଳକୁ କେବଳ ହାଇ ଉଠିଲା ।

୪୦ । ସ୍ତନଅଗ୍ର—ଚୁଚୁଅଗ, ପରଧର ଶୃଙ୍ଗ—ହିମାଳୟ ଶିଙ୍ଗ, ଜଳଧର—ମେଘ, ହିମାଳୟ ଧଳା—ତା ଉପରେ ମେଘ ଯେପରି ଧଳା ଉପରେ କଳା ବିନ୍ଦୁପରି ଦିଶେ, ସ୍ତନ ଅଗ କଳା ଦିଖାଗଲ୍ଲ ।

ଯୁତା ପ୍ରସବନ୍ତ ଯେ । ୪୧ । କବି ବର୍ଣ୍ଣେ କ ଗୃହମୁଖ ସଙ୍ଗେ ବାଦ ।
ମଦନ ମଦନମହୀପତି ବହି ମଦ ଯେ । ୪୨ । ଉଦରଶୋଭା ଉଦଧି
ପଦ୍ମୁଲ ଉଚ୍ଚଶୃଙ୍ଗ । ଉରଜ-ମନ୍ଦରୁ ବଳି-ସର୍ପରଜ୍ଜୁ ଯୋଗେ ଯେ । ୪୩ ।
ଉହିଁରୁ ଜାତ ଜଗତ-ମୋହିନୀ ସ୍ୱରୂପେ । ଅବଶ୍ୟ ହୋଇବେ ହର
ତପୋଭଙ୍ଗ ଏବେ ଯେ । ୪୪ । ଧାତ୍ରୀ ଧରଣୀଭୂଷାକୁ ନାଭିଚ୍ଛେଦ କଲି ।
ଗଣକଗଣେ ବସିଣ ଜାତକ ବର୍ଣ୍ଣିବ ଯେ । ୪୫ । ସୂତିକାଗୃହରେ ଯେତେ
ବଧୂ ଶେଷ କଲେ । ଦଶବଂଶ ଦନେ ଦୋଳଶୟନ ବହିଲେ ଯେ । ୪୬ ।
ଅସିଥିଲେ ବ୍ରହ୍ମଋଷି ଶୋଭାବାଣି ଶୁଣି । ବର୍ଣ୍ଣିଲେ ଚଉଦକଳ୍ପ ଶମ
ଭଲ ବହି ଯେ । ୪୭ । ମୁଖ ହେବ ଏମନ୍ତ ବର୍ଣ୍ଣିବ ପଦ୍ମ ବଧୂ । ହସ୍ତବଳା
ଭବ ଅଗ୍ରେ ଗଢିଗଲ ସାଧୁ ଯେ । ୪୮ ତହିଁ ବାସ ଅଧ୍ଧାଳନ ଦର୍ପଣରୁ

---

୪୧ । ଉପବର୍ଣ୍ଣୀ—ରାଣୀ, ପ୍ରସବନ୍ତ—ଜାତ, ଜନ୍ମ କରିବା, ସୁତା—ଝିଅ ।

୪୨ । ୪୩ । ୪୪ । ଗୃହମୁଖ—ବ୍ରହ୍ମା, ବାଦ—କଳହ, ମଦନ—କନ୍ଦର୍ପ, ମହୀପତି—ରାଜା ।

ମଦ—ଗର୍ବ, ଉଦର—ପେଟ, ଉଦଧି—ସମୁଦ୍ର, ଉରଜ ମନ୍ଦରୁ—କୁଚ ପର୍ବତରୁ, ବଳି—ପେଟରେ ଥିବା ଶିରା, ସର୍ପ—ସାପ, ରଜ୍ଜୁ—ଦଉଡ଼ି, ଜଗତ ମୋହିନୀ—ସଂସାର ମୋହ କାରିଣୀ (ଲକ୍ଷ୍ମୀ) ତପୋଭଙ୍ଗ—ତପସ୍ୟା ନାଶ ।

ଯେପରି ବ୍ରହ୍ମା,ଇନ୍ଦ୍ରରାଜା, ଏମାନେ ବାସୁକିକୁ ଦଉଡ଼ି କରି ମନ୍ଦର ପର୍ବତରେ ଗୁଡ଼ାଇ ସମୁଦ୍ର ମନ୍ଥନ କରି ଥିବାରୁ ଲକ୍ଷ୍ମୀ ଜାତ ହେଲେ ସେହିପରି ମଦନ ବ୍ରହ୍ମା ସଙ୍ଗେ ବାଦ କରି ରାଜାଙ୍କ ସହିତ ସ୍ତ୍ରୀର ଉଦର ଯେ ସମୁଦ୍ର, ସ୍ତନ ଯେ ପର୍ବତ, ପେଟର ରୋମ ଯେ ବାସୁକି, ସହିତ ସହବାସ କରିବାରୁ ( ମନ୍ଥିବାରୁ ) ଏ ସୁନ୍ଦରୀ କନ୍ୟା ( ଲକ୍ଷ୍ମୀ ରୂପା ) ଜାତ ହେଲ ।

୪୫ । ଧାତ୍ରୀ—ଦାଇ, ଧରଣୀ—ପୃଥିବୀ, ଭୂଷା—ଅଳଙ୍କାର, ଧରଣୀ ଭୂଷା—ପୃଥିବୀର ଅଳଙ୍କାର ରୂପା ଯେ ସୁନ୍ଦରୀ କନ୍ୟା, ନାଭିଚ୍ଛେଦ—ନାହି କାଟିଲେ, ଗଣକଗଣେ—ଜ୍ୟୋତିଷମାନେ, ଜାତକ—କୋଷ୍ଠି ।

୪୬ । ସୂତିକା ଗୃହ—ଏନ୍ତୁଡ଼ି ଶାଳ, ବଧୂ—ନସୁମ, ଦଶବଂଶ—ଉଷଶ, ଦୋଳ ଶୟନ—ଝୁଲାରେ ଶୋଇବା ।

୪୭ । ବ୍ରହ୍ମଋଷି—ନାରଦ, ଶମ—ପରିଶ୍ରମ, କଳ୍ପ—୧୨ ଯୁଗ ।

୪୮ । ୪୯ । ବଧୂ—ଚନ୍ଦ୍ର, ସାଧୁ—ବ୍ରହ୍ମା, ବାସ—ସୁବାସ, ବାସନା, ଦର୍ପଣ—ଆରସି, ଲହରୀ—ଢେଉ, କୁଟିଳ—କୁଞ୍ଚିକୁଞ୍ଚିଆ, ଅଞ୍ଜନ—କଳା ।

ଫଳ । ଲହଶିରୁଁ କୁଟିଳ ଅଞ୍ଜନପୁଞ୍ଜ ଢାଳୀ ଯେ । ୪୯ । କୁରଙ୍ଗରୁ ତରଙ୍ଗ ବଦ୍ରୁମ ରଙ୍ଗ ହର । ଲବଣୀ ଶିରୀଷରୁ କୋମଳ ବଳେ ତୁଳ ଯେ । ୫୦ । ସୁବର୍ଣ୍ଣର ବର୍ଣ୍ଣ ଗତି ହଂସଠାରୁ ଗତ । ଏରୂପେ ଉପମାବର୍ଗ ଯେତେକ ଅଛନ୍ତି ଯେ । ୫୧ । ବହୁ ସବୁଠାରୁ ସାରସାର ଭାଗ ଅଣି । ପୁରଟପ୍ରତିମା ପର ରଚିଲା ରମଣୀ ଯେ । ୫୨ । ଭବ ଯେତେ ଥିଲେ ସୀଜବାର ତା ନ ଭଲେ । ବଧାତା ବଧାମା ବାହୁଁ ଏ ହେବ ବୋଇଲେ ଯେ । ୫୩ । ଦେଖ ପଦ୍ମ ଲପନଶୋଭାକୁ ଯାର ହାର । ଚରଣତଳେ ଶରଣ ପଶିଅଛୁ ଡ଼ର ଯେ । ୫୪ । ପଦ୍ମଜାତ ସିନା ବଧି ବହିଲ୍ଲ କେମନ୍ତେ । ଏମନ୍ତ ସମ୍ମତ ହେଲ ସମସ୍ତଙ୍କ ଚିତ୍ତେ ଯେ । ୫୫ । ସର୍ବ ମତେ ସର୍ବ ଶୋଭାସ୍ଥାନ ବୋଲି ବାଳୀ । ଲାବଣ୍ୟବତୀ ନାମକୁ ଦେଲେ

ବ୍ରହ୍ମା ଏହାର ମୁଖକୁ ଗଢିଲାବେଳେ ଚନ୍ଦ୍ରରୁ ଉଜ୍ଜ୍ୱଳତା ଗୁଣ, ପଦ୍ମରୁ ବାସନା, ଆରସିରୁ ସ୍ୱଚ୍ଛତାକୁ ଆଣି ଏକତ୍ର କରି ଏ ଲାବଣ୍ୟବତୀ ମୁଖ ଗଢିଲା ଏବଂ ମୁଣ୍ଡର ବାଳକୁ ସମୁଦ୍ରରୁ ଢେଉକୁ ଆଣି କୁଞ୍ଚକୁଞ୍ଚିଆ କଲା, କଳାରୁ ବର୍ଣ୍ଣ ଆଣି ଗାଢ଼ କୃଷ୍ଣବର୍ଣ୍ଣ କଲା, ଅର୍ଥାତ୍ ଲାବଣ୍ୟବତୀର ମୁଖ ଚନ୍ଦ୍ରପରି ଗୋଲ, ଦର୍ପଣ ପରି ସ୍ୱଚ୍ଛ, ପଦ୍ମପରି ସୁବାସ ଏବଂ ବାଳ ଲହରୀ ପରି କୁଞ୍ଚିତ, କଜ୍ଜ୍ୱଳ ଭଳି କଳା ଅଟେ ।

୫୦ । କୁରଙ୍ଗ—ହରିଣ, ତରଙ୍ଗେ—ଅନାଇବା ଛଟକ, ବଦ୍ରୁମ—ପୋହଳା, ରଙ୍ଗ—ବର୍ଣ୍ଣ, ହର—ହରଣ କର, ଲବଣୀ—ଲହୁଣୀ, ଶିରୀଷ—ଫୁଲ ବିଶେଷ; ତୁଳ—ସମାନ କର ।

ଲାବଣ୍ୟବତୀର ଚକ୍ଷୁକୁ ମୃଗ ଚକ୍ଷୁରୁ ଛଟକ, ଓଷ୍ଠର ରଙ୍ଗ ପୋହଳାର ରଙ୍ଗ ଆଣି କଲା, ଶରୀର ଲହୁଣୀ ଓ ଶିରୀଷ ଫୁଲରୁ କୋମଳତା ଆଣି କଲା ।

୫୧ । ଗତି—ଗମନ, ତାର ଦେହର ବର୍ଣ୍ଣ ସୁନାଠାରୁ ତାହାର ଚାଲିବା ହାତି ଓ ହଂସଠାରୁ ଆଣି ଗଢିଲା, ତେଣୁ ଯେତେ ଉପମା ପୃଥିବୀରେ ଅଛି ସେ ସବୁ ଲାବଣ୍ୟବତୀ ଠାରେ ପ୍ରଯୁଜ୍ୟ ।

୫୨ । ପୁରଟ—ସୁନା, ପ୍ରତିମା—ରୂପ, ରମଣୀ—ସ୍ତ୍ରୀ, ବଧାତା ସବୁଠାରୁ ପ୍ରଧାନ ପ୍ରଧାନ ଜିନିଷ ଆଣି ଲାବଣ୍ୟବତୀକି ଗଢିଥିଲା ।

୫୩ । ବଧାମା—ଈଶ୍ୱର, ଯେତେ କବି ଥିଲେ ଏ ସ୍ତ୍ରୀ ବଧାତା ଗଢିଛି ବୋଲି ତ କେହି ସ୍ୱୀକାର କଲେ ନାହିଁ ।

୫୪ । ଲପନ—ମୁଖ, ପ୍ରକୃତରେ ଦେଖ, ପଦ୍ମ ଲାବଣ୍ୟବତୀର ମୁହଁ ସୌନ୍ଦର୍ଯ୍ୟକୁ ହାରିଯାଇ ତାର ପାଦରେ ଶରଣ ପଶିଛି ।

୫୫ । ପଦ୍ମରୁ ତ ବଧାତା ଜନ୍ମ, ସେ ବା କେମନ୍ତେ ଗଢିପାରେ ?

ଭାଳି ଭାଳି ଯେ । ୫୬ । ବଳକ୍ଷପକ୍ଷର କଳାଙ୍କର କଳା ପରି । ଦିନୁଦିନୁ ଶୋଭା ବୃଦ୍ଧି ନରେନ୍ଦ୍ରକୁମାରୀ । ୫୭ । କେତେଦିନେ ଉଭା ଭିତ୍ତି ଧରି ବିମ୍ବାଧରୀ । କରୀଗମନରେ ପୂର୍ଣ୍ଣ ମହୀ ଶୋଭାକର ଯେ ।୫୮। ରଜନୀକର-ବଦନା ରଜନୀକରରେ । କରଇ ଖେଳ ରଚନା ଶିଶୁଙ୍କ ସଙ୍ଗରେ ଯେ । ୫୯ । ରବି ରଥ ରଖେ ବଶ ହୋଇ ତା ସୁଷମେ । ଏଣୁକରି ଦୀର୍ଘଦିନ ଜାଣିଲ ଗ୍ରୀଷମେ ଯେ ।୬୦। ବିଶ୍ୱସୃଜ ବିଶ୍ୱକର୍ମା ଶିଳ୍ପି ହୋଇ ଗୋପ୍ୟେ । ନିର୍ମାଣ ବାରଣଦନ୍ତ ପିତୁଳା ତା ରୂପେ ଯେ ।୬୧। ଜପି ଲେପି କୁଙ୍କୁମ ଦିଅନ୍ତି ନେଇ କରେ । ହେବ କି ନୋହିବ ସମ ଏମନ୍ତ ଶଙ୍କାରେ ଯେ । ୬୨ । ମନକୁ ନ ଆସେ ଅରଦନ ଚିତ୍ରକର । ହୋଇ ଚିତ୍ରେ ବିଚିତ୍ର ଲେଖନ୍ତେ ଶୋଭା ତର ଯେ । ୬୩ । ତଥାପି ସୁଷମା ସମା

---

**୫୭** । ବଳକ୍ଷ—ଶୁକ୍ଳ, କଳା—ଅଂଶ, ନରେନ୍ଦ୍ର—ରାଜା, ଶୁକ୍ଳପକ୍ଷର ଚନ୍ଦ୍ରମା କଳାପରି ରାଜା ଝିଅ ଦିନକୁଦିନ ବଢିଲା ।

**୫୮** । ଉଭା—ଠିଆ, ଭିତ୍ତି—କାନ୍ଥ, ମୂଳହୁଆ, ମହୀ—ପୃଥିବୀ, ବିମ୍ବାଧରୀ (ବିମ୍ବ+ଅଧରୀ) ବିମ୍ବ—କଇଁଣି କାକୁଡ଼ି, ଅଧର—ଓଷ୍ଠ, କେତେଦିନ ପରେ କାନ୍ଥ ଧରି ଘର ଚଟାଣରେ ଗୁରୁଣ୍ଡି ଚାଲିଲା—ହାତୀପରି ଚାଲିବାରୁ ପୃଥିବୀ ସୁନ୍ଦର ଦିଶିଲା ।

**୫୯** । ରଜନୀକର—ଚନ୍ଦ୍ର, ବଦନ—ମୁଖ, ରଜନୀକର ବଦନା—ଚନ୍ଦ୍ରମୁଖୀ, ରଜ—ଧୂଳି, ନିକର—ସମୂହ, ଶିଶୁ—ପିଲା, କେତେଦିନ ଚନ୍ଦ୍ରମୁଖୀ ପିଲାଙ୍କ ସଙ୍ଗରେ ଧୂଳିରେ ଖେଳିଲା ।

୬୦—ରବି—ସୂର୍ଯ୍ୟ, ସୁଷମେ—ସୌନ୍ଦର୍ଯ୍ୟରେ; ଦୀର୍ଘଦିନ—ବଡ଼ଦିନ, ଗ୍ରୀଷମେ—ଗ୍ରୀଷ୍ମ ଋତୁରେ ଲାବଣ୍ୟବତୀର ଶୋଭା ଦେଖି ସୂର୍ଯ୍ୟ ରଥ ରଖିଲେ, ତେଣୁ ଗ୍ରୀଷ୍ମ ଋତୁରେ ଦିନ ବଡ଼ ହେଲା ।

୬୧ । ବିଶ୍ୱସୃଜ—ବ୍ରହ୍ମା, ବିଶ୍ୱକର୍ମା—ସ୍ୱର୍ଗ କାରିଗରର ନାମ, ବାରଣ ଦନ୍ତ—ହାତୀଦାନ୍ତ, ଶିଳ୍ପୀ—କାରିଗର, ଗୋପ୍ୟେ—ଗୋପନରେ, ବ୍ରହ୍ମା ଲୁଚିକରି ବିଶ୍ୱକର୍ମା ପରି କାରିଗର ହୋଇ ଲାବଣ୍ୟବତୀ ସମାନରେ ହାତୀ ଦାନ୍ତରେ ଗୋଟିଏ ପିତୁଳା ଗଢ଼ିଲା ।

୬୨ । ଶଙ୍କା—ଭୟ, କୁଙ୍କୁମ—ଜାଫ୍ରାନ କେଶର, ଜପିଲେପି—ବାଟିକରି, କୁଙ୍କୁମକୁ ଲାବଣ୍ୟବତୀ ରଙ୍ଗ ସଙ୍ଗେ ସମାନ ହେବ କି ନାହିଁ ବୋଲି ଭୟରେ ତା ହାତରେ ଦିଅନ୍ତି ।

୬୩ । ୬୪ । ମନକୁ ନ ଆସିବାରୁ ଚିତ୍ରକର ହୋଇ ଅରଦନ ଚିତ୍ର ବିଚିତ୍ର କରିଲେ, ତଥାପି ତାର ସୁଷମା, ସୌନ୍ଦର୍ଯ୍ୟ ସମାନରେ ପ୍ରତିମା କରୂପ


Digitized by srujanika@gmail.com

ପ୍ରଭମାତ ନୋହ୍ନ । ଶୋଭାକୁ ବର୍ଣ୍ଣନ୍ତ କବ ବୃତ୍ତ ଜବ ଭହିଁ ଯେ । ୬୪ ।
ଏମନ୍ତ ଯଶ ଜେମାର ଜଗତେ ଶୁଭିଲା । ଯୋଗିଜନମୋହନାସ୍ତ୍ର ମାର ଭଅଇଲା ଯେ । ୬୫ । ଏ ବର୍ଗୁରେ ମହେଶ ପାଷାଣ ହେଲେ କବା । ଯୁବା ହେବାଯାଏ ଅଜ ଶଗ୍ଧରେ ନ ଥିବା ଯେ । ୬୬ । ପଢ଼ାଶୁକେ ଚିଳା ଧୂପ ଢୋକକଲେ ବରଷା । ହୋଇଲା ପାଠପଠନ କାଳମୃଦୁଭ୍ରଷା ଯେ । ୬୭ । ସରସ୍ୱତୀ ଗୋଚରରେ ବଦ୍ୟା ଥିଲା ଯେତେ । ଦେଲେ କହ୍ନ ସେ ଦ୍ୱନ୍ଦ୍ୱ ତୁ ନ କରବୁ ମୋତେ ଯେ । ୬୮ । ଲକ୍ଷ୍ମାପଞ୍ଚମହ୍ନଷୀକ ଯେଜ ଯଜ୍ବନ । ଗ୍ଜା ଅସି ଅକର୍ଷିଲା ଅଙ୍ଗଦେଶମାନ ଯେ । ୬୯ । ପାତ୍ର ମନ୍ତ୍ରୀ ନିତମ୍ବ ଜଘନ ତ୍ରୁଟୁ ସତ । ଶାଢ଼ୀ ପାଇ ଏମାନେ ହୋଇଲେ କୃତକୃତ୍ୟ ଯେ । ୭୦ । କୁଚ ଅଙ୍କୁରବାରେ ବସନ ଉଠି ଦଣେ । ହୃଦୟବେଦୀରେ ଅଭିଷେକକୁମ୍ଭ କ ସେ ଯେ । ୭୧ । ଏ ସମୟେ

---

ନ ହେବାରୁ ତାର ଶୋଭାକୁ ଗାଇବାକୁ କବ ବୃତ୍ତି କ ବ୍ୟବସାୟ କଲେ ।

୬୫ । ଗ୍ଜକେମାର ଏପର ଯଶ ଗୌରବ ଜଗତ କ ସଂସାରରେ ଶୁଭିବାରୁ—ମାର ଯେ କନ୍ଦର୍ପ, ଯୋଗୀଜନ ମୋହନାସ୍ତ୍ର—ସାଧୁମାନଙ୍କ ମୋହ ଦେବା ଅସ୍ତ୍ର ଭଅଇଲା କ ତଆର କଲା, ଅର୍ଥାତ୍ ଯେଡ଼େବଡ଼ ଯୋଗୀ ଦେଖିଲେ ମୋହିତ ହେଲା ।

୬୬ । ପିଲାବନ୍ ଏପର ଶୋଭା ଦେଖି ମହାଦେବ ପାଷାଣ ହେଲେ—କାରଣ ସେ ଯୁବତୀ ହେଲେ ଅଜ ଶଗ୍ଧରରେ ରହି ପାରବା ନାହିଁ ।
ଅର୍ଥାତ ସେ ଯୁବତୀ ହେଲେ ତାକୁ ଦେଖି ମୋ ତପସ୍ୟା ଭଙ୍ଗ ହେବ

୬୭ । ବର୍ଷାରେ କୋଇଲ କଣ୍ଠ ପଡ଼ଯାଏ—ମାତ୍ର ଲାବଣ୍ୟବତୀ ପାଠ ପଢ଼ିବା ସ୍ୱର ଶୁଣି ଶୁକ ଓ କୋଇଲି ଲଜ୍ଜିତ ହେଲେ ।

୬୮ । ଦ୍ୱନ୍ଦ୍ୱ—କଳହ, ଅର୍ଥାତ ସରସ୍ୱତୀ ତାଙ୍କର ସମସ୍ତ ପାଠ ତାଙ୍କୁ କହି ଦେଲେ ଓ କହିଲେ ସୁନ୍ଦରୀ ପଣରେ ତୁ ମୋ ସଙ୍ଗେ ବାଦ କରବୁ ନାହିଁ ।

୬୯ । ଲକ୍ଷ୍ମୀ ପଞ୍ଚମହିଷୀ, ଲାକରୂପକ ଗ୍ଣୀକ ଯେଜ ଯୌବନ ଗ୍ଜା କ ଯୁବାବସ୍ଥା ରୂପକ ଗ୍ଜା; ଅଙ୍ଗ ଦେଶମାନ ଶଗ୍ଧର ସ୍ଥାନମାନ ଆକର୍ଷିଲା କ ଅଧିକାର କଲା—ଅର୍ଥାତ ସେ ନବଯୌବନରେ ପହଞ୍ଚିଲା ।

୭୧ । ନିତମ୍ବ—ପିଚ୍ଛ, ଜଘନ—ଜଙ୍ଘ ।
ପାତ୍ର ଯେ ପିଚ୍ଛ, ମନ୍ତ୍ରୀ ଯେ ଜଙ୍ଘ, ପାତ୍ର ମନ୍ତ୍ରୀ ଲୁଗା ପାଇ ଖୁସିହେଲେ

ମାହୁନ୍ତ ସୁନ୍ଦରୀ-ମତ୍ତକରୀ । ଅନ୍ତଃପୁର ଠୋପରେ ରଖିଲା ବଳେ ଧରି ଯେ । ୭୨ । ନେତ୍ରାଞ୍ଚଳେ ଚଳ ପରକାଶ ହେଲା ଅସି । ଚତୁରୀ ବଳି ବୃତ୍ତିମାନଙ୍କୁ ପ୍ରକାଶେ ଯେ । ୭୩ । ଏ ପ୍ରଣୀତ ଯୁବାଜିତ·ଇଚ୍ଛା କରି ଛାତ୍ରୁ । ଶରବନ୍ଧ ଶିଖେ କି ସଂସାରଗୁରୁଠାରୁ ଯେ । ୭୪ । ସୁନ୍ଦରୀ-ସଂସାରେ ସେ ହେବାରୁ ଚକ୍ରବର୍ତ୍ତୀ । ହେଲା କି ପ୍ରତିଅଙ୍ଗରେ ଭୂପତି-ସମ୍ମତ ଯେ । ୭୫ । କୁନ୍ତଳ ଦେଶରେ ଚୂଡ଼ା ଶୋଭା ଧରିଲା । ବିଦର୍ଭରେ ହାସକୁ ପ୍ରଭୁତ୍ୱ ପଣେ ଦେଲା ଯେ । ୭୬ । ମାଳବରେ କଣ୍ଠକୁ ଭୂଷଣ କଲା ନେଇ । ଶୈଳରେ ଶୋଭିତ କଲା ଉରଜକୁ ଯହିଁ ଯେ । ୭୭ । କାଞ୍ଚୀରେ ରଞ୍ଜନ କଲା ମଧ୍ୟକୁ ନିରତ । କନକକଟକେ କଲା ପାଦକୁ ପୂଜିତ ଯେ । ୭୮ । ମଣି ରମଣୀମଣିଙ୍କ ଶୁଣ ଯଉବନ ।

---

ପିଚ୍ଛ ଓ ଜଙ୍ଘ ସ୍ଥୂଳ ହେବାରୁ ଲୁଗାପିନ୍ଧି ଘୋଡ଼ାଇବାରୁ ଏମାନେ ଭିଲରେ ରହିଲେ ।

୭୨ । ଏହି ଯୌବନ ସମୟ ମାହୁନ୍ତ ହେଲା, ସୁନ୍ଦରୀ-ମତ୍ତକରୀ—ଏଠାରେ ହାତୀ ହେଲା ଲାବଣ୍ୟବତୀ । ଠୋପ ହେଲା ଅନ୍ତଃପୁର । ଯୌବନ ସମୟ ହେତୁ ସେ ଅନ୍ତଃପୁରରେ ରହିଲା ।

୭୩ । ନେତ୍ରାଞ୍ଚଳେ—ଆଖି କୋଣରେ, ଚଳ—ଚଞ୍ଚଳତା ।
ଯୌବନ ହେତୁ ଆଖି ତାର ଚଞ୍ଚଳ ହେଲା । ତହୁଁ ଚତୁରୀ ଯେ ଲାବଣ୍ୟବତୀ ଅନେକ ଚତୁରତା କଥା ପ୍ରକାଶ କଲା ।

୭୪ । ପ୍ରଣୀତ—ମନେହେବା, ଯୁବାଜିତ—ଯୁବାପୁରୁଷଙ୍କୁ ଜୟ କରିବା, ଛାତ୍ରୁବର୍ତ୍ତୀ ଅର୍ଥାତ୍ ଲାବଣ୍ୟବତୀ, ଶରବନ୍ଧି—ମାରଣର ବନ୍ଧିବା, ସଂସାର ଗୁରୁ—ଜଗତ୍ ଗୁରୁ ।

୭୫ । ଚକ୍ରବର୍ତ୍ତି—ରାଜାଧିରାଜ, ଭୂପତି—ରାଜା ।

୭୬ । କୁନ୍ତଳ—ବାଳ, ଚୂଡ଼ା—ମୁଣ୍ଡଉପର ଗଭା, ବିଦର୍ଭ—ଦେଶ ବିଶେଷ, ଓ ଗମ୍ଭୀର ଭାବରେ; ଓଠ ଉପର—ନାକ ଦଣ୍ଡୀ ।

୭୭ । ମାଳବରେ—ମାଳବଦେଶ, କିବା ଶ୍ରେଷ୍ଠହାର ଶୈଳ—ଦେଶଓଲଗା, କାଞ୍ଚଳା—ଦେହାବରଣ

୭୮ । କାଞ୍ଚି—କାଞ୍ଚିଦେଶ, ବା ଚନ୍ଦ୍ରହାର; ନିରତ—ସର୍ବଦା, କନକ କଟକ—ସୁନା ଖଡୁ ବା ସୁନା ପାହୁଡ଼, ପାଦ—ଗୋଡ଼ ।
ସେ ମଧ୍ୟ ଦେଶ ଅଣ୍ଟାରେ ଚନ୍ଦ୍ରହାର ଗୋଡରେ ସୁନା ପାହୁଡ଼ ପିନ୍ଧିଲା ।

ବହୁମୂଲ୍ୟ ପ୍ରଭାକୁ ବଢାଇ ଧନୁ ଧନ ଯେ । ୭୯ । ଉପମା ଅଣିବ ତାହୁଁ ମହାଲଭ ହେଲେ । ସ୍ୱଦରେ ଯାହାର ଅଙ୍ଗେ ସ୍ୱଦସ୍ତା ହୋଇଗଲେ ଯେ । ୮୦ । ଜନ୍ମ ଜନୋଥ ସ୍ୱମ ଶ୍ରେୟର ନିଳୟ । ମୁନିଗଣ କାମଦାୟୀ ପଦ୍ମବାସିପ୍ରିୟ ହେ । ୮୧ । ଜ୍ୟେଷ୍ଠ ଉଞ୍ଚ ନାଗବରର ଭାବେ ତ । ନିର୍ଦ୍ଦୋଷରେ ଏହୁ ଗୀତ ହେଉ ସମାପତ ହେ । ୮୨ ।



## ତୃତୀୟ ଛାନ୍ଦ

### ରାଗ କେଦାର, ଚକ୍ରକେଳି ବାଣୀ

ଶୁଣ ରସିକେ ନବ ଯଉବନୀ । ହୋଇ ବନିତା ପଣ୍ଡିତ ଅବନୀ । ୧ ।

---

୭୯ । ମଣି ତୁଲ୍ୟ ରମଣୀମଣି କ ସ୍ତ୍ରୀ ଶ୍ରେଷ୍ଠ,ଶାଣତୁଲ୍ୟ ଯୌବନ କ ଯୁବାବାସ୍ଥା, ଅର୍ଥାତ୍ ମଣିକୁ ଶାଣ ଦେଲେ ଯେପରି ଜକ ଜକ ଦେଖାଯାଏ, ଏ ସ୍ତ୍ରୀ ଯୌବନ ଶାଣରେ ବଢ଼ିବାରୁ ଅଧିକ ସୁନ୍ଦର ଦେଖାଗଲା ।

୮୦ । କବି କେଉଁଠାରୁ ଅଉ ଉପମା ଅଣିବ, ସୁନ୍ଦର ସବୁ ଲଜ୍ଜା ପାଇ ସୁନ୍ଦରୀ ହୋଇଗଲେ ।

୮୧ । ଶ୍ରେୟ—ଉପଯୁକ୍ତ, ପ୍ରଧାନ, ମଙ୍ଗଳ; ନିଳୟ—ଘର, କାମଦାୟୀ—କାମନା ପୂର୍ଣ୍ଣକାରୀ, ପଦ୍ମବାସି—ବ୍ରହ୍ମା ।

୮୨ । ଭାବେତ— ଚିନ୍ତିତ, ନିର୍ଦ୍ଦୋଷରେ—ଦୋଷହୀନ ହୋଇ, ଭଲ ଭାବରେ, ସମାପତ—ଶେଷ. ସମ୍ପୂର୍ଣ୍ଣ ।

ସିଂହଳ ଦେଶର ରାଜା ଚନ୍ଦ୍ରଭାନୁ ରାଣୀ ବିଦ୍ୟୁଲତା ପାଖେ ଅଟି ପୁତ୍ର ଜନ୍ମ କରି ଗୋଟିଏ ଝିଅ ସକାଶ ଦୁର୍ଗାଙ୍କୁ ପ୍ରାର୍ଥନା କରି ବ୍ରତ କରନ୍ତେ ଦୁର୍ଗା ବାଞ୍ଛାବନ୍ତୀ ପିଣ୍ଡକୁ ଅମୃତଫଳ ଉକ୍ତ ଅମୃତକୁ ରାଣୀଙ୍କି ଦେଇ କହିଲେ ତୁମ୍ଭେ ଏହା ଭକ୍ଷଣ କଲେ ତୁମ୍ଭର ଝିଅ ହେବ । ତହୁଁ ରାଣୀ ସେ ଫଳ ଭକ୍ଷଣ କରି ରାଜାସଙ୍ଗେ ସହବାସ କରିବାରୁ ତାର ଗୋଟିଏ ସର୍ବ ସୁଲକ୍ଷଣ ଯୁକ୍ତ କନ୍ୟାହେଲା । ତାର ନାମ ଲାବଣ୍ୟବତୀ ଦେଲେ । ଲାବଣ୍ୟବତୀ କ୍ରମେ ବଡ଼ ହୋଇ ଯୌବନରେ ପଦାର୍ପଣ କଲା । ସେ ବିଦୁଷୀ ରସିକା ଓ ସୁନ୍ଦରୀ ସବୁ ଗୁଣରେ ପୂର୍ଣ୍ଣ ଥିଲା ।



## ତୃତୀୟ ଛାନ୍ଦ

୧ । ନବ ଯଉବନୀ—ନୂଆ ଯୌବନ ପ୍ରାପ୍ତା, ବନିତା—ସ୍ତ୍ରୀ, ( ଲାବଣ୍ୟବତୀ ) ଅବନୀ—ପୃଥିବୀ ।

ଏଣୁ ଜପମାଗଣ ନିରନ୍ତର । କି କରିବା ଭାବି ହୋଇଲେ କାତର । ୨ ।
ଟୂଳ କାନ୍ତିରେ ଲଭିଣ ଖ୍ୟାତିକ । କଲା କଣ୍ଟକଦୁର୍ଗକୁ କେତକୀ । ୩ ।
ପାଞ୍ଚେ ମନ୍ଦର କୁଚ ବଢିବାରେ । କମ୍ପା ବୁଡ଼ି ନ ମଲି ପାରିବାରେ । ୪ ।
ନାଶା ପୁଡ଼ା ଫୁଲିବାର୍ ଅନାଇ । ଭୃଷାବନ୍ଧେ ଶୁକ ମନ ମନାଇ । ୫ ।
ମୁଖେ ପ୍ରତିର ପରତୃବରଣେ । ସୁଖେ ଦର୍ପହତୁଁ କଲା ଦର୍ପଣେ । ୬ ।
କମ୍ବୁକଣ୍ଠ ଦେଖି ଅତି ଆର୍ତ୍ତିରୁ । ସମ ନୋହେ ବୋଲି ଡ଼ାକେ ପ୍ରାତରୁ ।୭।
ନେତ୍ରସଙ୍ଗେ ଲକ୍ଷିବେ କି ସୁପର । ମୀନ ଜଳ ସ୍ଥାନରେ ଯାଏ ମରି । ୮ ।
ହୋଇ ହାସରେ କୁସୁମ ବଜିତ । ମକରନ୍ଦ ଛଳେ ଅଶ୍ରୁ ତେଜିତ । ୯ ।
ରମ୍ଭା ଜପମା ପଦ ପ୍ରଦେଶକେ । ଆଜ କେହ୍ନୁ ସମ ହେବ ଅଂଶକେ ।୧୦।
କୁନ୍ଦକୋରକ-ହୀରକ-ରଦନା । ସୁଧାକର ସରସିଜ-ବଦନା । ୧୧ ।
ଏ ପ୍ରପ୍ରୋଗ ପରମ୍ପରା ଅନ୍ଧନ । ବାଳା'ଠାରେ ବର୍ଣ୍ଣିବାର କୁଣ୍ଠିତ । ୧୨ ।

---

୨ । ନିରନ୍ତର—ସର୍ବଦା, କାତର—ବ୍ୟସ୍ତ ।

୩ । ଖ୍ୟାତିକ—ଉପ୍ୟୁକ୍ତ, ଟୂଳ—ଉଜ୍ଜ୍ୱଳ ଦୀପ୍ତି, କାନ୍ତି—ବର୍ଣ୍ଣ, କଣ୍ଟକ ଦୁର୍ଗ—କଣ୍ଟାପୂର୍ଣ୍ଣ ଗଡ଼, ଅର୍ଥାତ୍ ଲଜ୍ଜାରେ କେତକୀ କଣ୍ଟା ମଧ୍ୟରେ ରହିଲା ।

୪ । ପାଞ୍ଚେ—ମନେକରେ, ମନ୍ଦର—ପର୍ବତ ବିଶେଷ, ପାରିବାରେ—ସମୁଦ୍ରରେ, କୁଚ ମନ୍ଦରପର୍ବତ ତୁଲ୍ୟ କ୍ରମେ ବଢିବାରୁ ମନ୍ଦର ପର୍ବତ ଦେଖି ଲଜ୍ଜାରେ ଭାବେ ମୁଁ କାହିଁକି ସମୁଦ୍ରରେ ବୁଡ଼ି ନ ମଲି ।

୫ । ଲାବଣ୍ୟବତୀ ନାକପୁଡ଼ା ଫୁଲାଇବା ଢଙ୍ଗ ଦେଖି ଶୁଣ। ଲଜ୍ଜାପାଇ ପଡ଼ିବାକୁ ଆରମ୍ଭ କଲା ।

୬ । ଅରସି ତାର ମୁଖ ଶୋଭାରେ ସମାନ ନୋହି ଦାର୍ଶିଯୋଗ୍ୟ ହେବାରୁ ତାର ଗର୍ବ ହତ ହେଲା ତହୁଁ ସେ ଦର୍ପଣ ନାମ ଧରିଲା ।

୭ । ଲାବଣ୍ୟ ବତୀର କଣ୍ଠକୁ ଦେଖି କମ୍ବୁ ଯେ ଶଙ୍ଖ ସେ ଆର୍ତ୍ତିରେ କବୁଃଖରେ, ସମାନ ନୋହି ସକାଳୁ ଶବ୍ଦ କଲା । ଅର୍ଥାତ୍ ପ୍ରତିଦିନ ସକାଳେ ଦେବ ମନ୍ଦିରରେ ଶଙ୍ଖ ଶବ୍ଦ ହୁଏ ।

୮ । ମୀନ—ମାଛ, ନେତ୍ର—ଚକ୍ଷୁ ।

୯ । ମକରନ୍ଦ—ଅମୃତ, ମଧୁ । ଅଶ୍ରୁ—ଲୋତକ, କୁସୁମ—ଫୁଲ ।

୧୦ । ରମ୍ଭା—କଦଳୀ ଗଛ ।

୧୧ । କୁନ୍ଦ କୋରକ—କୁନ୍ଦ ଫୁଲର କଢ଼ୀ, ହୀରକ—ହୀରା, ରଦନ—ଦନ୍ତ, ସୁଧାକର—ଚନ୍ଦ୍ର, ସରସିଜ—ପଦ୍ମ, ବଦନ—ମୁଖ ।

୧୨ । ପରମ୍ପରା—କ୍ରମାନ୍ୱୟେ, କଳ୍ପିତ, ବାଳା—ସ୍ତ୍ରୀ, କୁଣ୍ଠିତ—ମନ୍ଦ ।

କଞ୍ଜ ଖଞ୍ଜନ-ଗଞ୍ଜନ-ଲୋଚନା । ମତ୍ତ ପରଭୃତ-ଜିତବଚନା । ୧୩ ।
ଏ ବିଧିରେ ବର୍ଣ୍ଣିଲେ ସେ ଚତୁରୀ । କେତେ ହୋଇବ କବିତା ଚାତୁରୀ ।୧୪।
ଯହିଁ କୃଶ ଜାଣ ମଧ୍ୟ ଶୋଭିତ । ତାହିଁ ଗୃହୀଁ ନେଇଥାଇ ଲୋଭିତ ।୧୫।
ତହିଁ ସୁନ୍ଦରେ ସୁନ୍ଦର ହୋଇଲେ । କିସ ଅଧିକ ହୋଇବ ବୋଇଲେ ।୧୬।
ଏ ପ୍ରକାର ସୁନ୍ଦରୀ କୃଶୋଦରୀ । ଅଛି ଦିନେ ସେ ଶୟନ ଆଦରି । ୧୭ ।
ନିଦ୍ରାନାଶ ଅବକାଶ ଆଶାରେ । ଲଗିଛନ୍ତି ଏତେ ସଖୀ ପାଶରେ । ୧୮ ।
ନିଜଧାତ୍ରୀପୁତ୍ରୀ ହେମ ମଞ୍ଜରୀ । ଅଷିପଷି ବନ୍ଧକ ସେ ଚଞ୍ଚରୀ । ୧୯ ।
ଚାମକଳା ନାମ ମନ୍ତ୍ରୀ ଦୁହିତ । ବନ୍ଧୁବନ୍ଧାଣୀ ବୋଲାଇ ବନ୍ଧୁତ । ୨୦ ।
ରସଲେଖା ସୁରେଖା ଚିତ୍ରଲେଖା । ହାରାବଳୀ ଚନ୍ଦ୍ରାବଳୀ ଏ ଲେଖା ।୨୧।
ରତ୍ନମାଳା ହେମମାଳା କମଳା । ପ୍ରେମଶୀଳା ସୁଶୀଳା ପରିମଳା । ୨୨ ।
କଳ୍ପଲତା ମଦାଳସା ମଞ୍ଜୁଳା । ପ୍ରେମସୁଧାନିଧି ପ୍ରଭାମଞ୍ଜୁଳା । ୨୩ ।
ଷୋଳସାମନ୍ତସୁତା ରୂପେ ସରି । ଯାହୁଁ ହୋଇବେ ସ୍ୱର୍ଗ ଅପସରୀ । ୨୪ ।
ଅଙ୍ଗୁ ସ୍ୱେଦ ନୋହିବାକୁ ଜନିତା । ଗୃହେ ଫୁଲବ୍ୟଞ୍ଜନ କେ ବନିତା ।
ଖଦ ଚାମର ରାଜ ଉପଚାର । ଭଲ କେହି କେହି କରେ ପ୍ରଚାର । ୨୬ ।
କରି ଚରଣେ କର ନିବେଶନ । ଧୀରେ ଧରେ କେ କରେ ଆଶ୍ୱାସନ ।
ପୂଗ ଖଦିର ଚୂର୍ଣ୍ଣ କେ ଶୋଭାଙ୍ଗୀ । ଦିବ୍ୟପଲିତା ନାଗବଲ୍ଲୀ ଭାଙ୍ଗି ।୨୮।

---

୧୩ । କଞ୍ଜ—ପଦ୍ମ, ଖଞ୍ଜନ—ଖଞ୍ଜନ ପକ୍ଷୀ, ଲୋଚନ—ଚକ୍ଷୁ, ପରଭୃତ—କୋଇଲି, ବଚନ—କଥା ।

୧୪ । କୃଶ—ସରୁ, ମଧ୍ୟ—ଅଣ୍ଟା ।

୧୭ । କୃଶୋଦରୀ—କ୍ଷୀଣପେଟୀ ସ୍ତ୍ରୀ ।

୧୮ । ଅବକାଶ—ବିଶ୍ରାମ, ଆଶା—ଇଚ୍ଛା ।

୧୯ । ନିଜ—ଆପଣାର, ଧାତ୍ରୀ—ଦାଇ, ପୁତ୍ରୀ—କନ୍ୟା, ଅଷି—ପୋଷିଲ୍ଲ ।

୨୦ । ଦୁହିତା—କନ୍ୟା, ବନ୍ଧୁ—ବିଧାତା, ବନ୍ଧାଣୀ—କାରିଗର ।

୨୪ । ସାମନ୍ତ—ସାଆଁନ୍ତ, ରାଜାଙ୍କ ଭାଇଅ ।

୨୫ । ଚାମର—ଚଅଁର,

୨୭ । ନିବେଶନ—ପଦଘଷାଇବା, ଯୋଗାଇବା, ଆଶ୍ୱାସନ—ଶାନ୍ତ୍ୱନାଦେବା, ଶାନ୍ତ କରିବା ।

୨୮ । ପୂଗ—ଗୁଆ, ଖଦିର—ଖଇର, ଚୂର୍ଣ୍ଣ—ଚୂନ, ଶୋଭାଙ୍ଗୀ—ସୁନ୍ଦରୀ ଦିବ୍ୟପଲିତ—ସୁନ୍ଦର ପାଲ, ନାଗବଲ୍ଲୀ—ପାନ ।

ବାନ୍ଧୁ କ୍ଷୀନବାସ କୁଞ୍ଚି ସତ୍ୱରେ । କଞ୍ଚି ରଖିଛୁ କେ ଚୂନା ଅତରେ ।୨୯।
ଦଳମାନ ହବ କର ସେବତୀ । ଗୁନ୍ଥି ଅଛୁ କେ ମାନଅ ସୁବତୀ । ୩୦ ।
ଝଟ ଶିଉଳୀ ଗଳାକୁ ମାଳିକା । କରୁଛନ୍ତି କେହୁ କେହୁ ବାଳିକା ।୩୧।
ଭର ଲବଣୀ ସିନ୍ଦୂର ଦଳନା । କରୁଅଛୁ ବସି କେତେ ଲଳନା । ୩୨ ।
ମୃଗମଦ ଗୋଳୁଛୁ କେଉଁ ମିତ । କୁଚ ବିଚିତ୍ର ଚିତ୍ରକ ନିମିତ୍ତ । ୩୩ ।
ପେଡ଼ା ଫେଡ଼ି କେ ବାଛୁଛି ରତନ । ଅଳଙ୍କାରେ ଯେଉଁମାନ ଯତନ ।୩୪।
ଘନସାର ମିଶାଇ ଚନ୍ଦନରେ । କେହୁ ଥୋଇଛୁ ହରଷ ମନରେ । ୩୫ ।
ସଖୀମାନଙ୍କର ଏହୁ ବ୍ୟାପାର । ପରିଚାରିକା ଅଛନ୍ତି ଅପାର । ୩୬ ।
ଫୁଲ ଫଳଙ୍କର ନାମ ଉଦିତ । ଧରି କୁଶ୍ରୀ ପରୀକ୍ଷା କେ ମୋଦିତ ।୩୭।
କେହୁ କରୁଛି ମୁକୁର ମାର୍ଜନ । କେ ଖରଡ଼ ପାରିବାରେ ରଞ୍ଜନ । ୩୮ ।
ଅପସର କେ ଦେଉଛି ସତ୍ୱରେ । ପୀଠ ପକାଉଛି କେହୁ ଚତ୍ୱରେ । ୩୯।
ଜଳ ଅଣୁଛି କେ ହେମକୁମ୍ଭରେ । ନାହିଁ ଅସର ଏହୁ ଆରମ୍ଭରେ । ୪୦ ।
ଶୁକ୍ଳପକ୍ଷ ଦଶମୀ ବୁଧବାରେ । ସିଦ୍ଧ ସାଧ୍ୟଯୋଗ ଯୋଗ ହେବାରେ ।୪୧।
ଦିନ ଅଷ୍ଟଦଣ୍ଡ ଭୋଗ ଆଦିତ୍ୟ । ଶୁକ୍ରବେଳା ତୁଳଲଗ୍ନ ବଦିତ । ୪୨ ।

---

୨୯ । କ୍ଷୀନ—ସରୁ, ବାସ—ଲୁଗା, କୁଞ୍ଚ—କୁଞ୍ଚକର ।
୩୦ । ଦଳମାନ—ପାଖୁଡ଼ା ସବୁ, ମାନଅଁ—ମାନଭାସ୍ତୀ ।
୩୧ । ବାଳିକା—ସ୍ତ୍ରୀପିଲା ।
୩୨ । ଲବଣୀ—ଲହୁଣୀ, ଲଳନା—ସ୍ତ୍ରୀ ।
୩୩ । ବିଚିତ୍ରଚିତ୍ରକ—ନାନାପ୍ରକାର ଚିତ୍ର କରିବା ।
୩୪ । ରତନ—ହୀରାନୀଲାଦି ଅଳଙ୍କାର, ଯତନ—ଭଲ ।
୩୫ । ଘନସାର—କର୍ପୂର ।
୩୬ । ସଖୀ—ସହି, ବ୍ୟାପାର—କାର୍ଯ୍ୟ, ପରିଚାରିକା—ଚାକରାଣୀ ।
୩୭ । ଫୁଲଫଳଙ୍କର—ଚମ୍ପା,କନଅର, ନାଗେଶ୍ୱରୀ, ବଉଳ ଇତ୍ୟାଦି.ବା ଚମ୍ପାକଳା; ଉଦିତ—ପ୍ରକାଶିତ, ପରୀକ୍ଷା—ପିକଦାନୀ, ମୋଦିତ—ଆନନ୍ଦିତ ।
୩୮ । ମୁକୁର—ଆରସୀ, ମାର୍ଜନ—ସଫା କରିବା ମାଜିବା, ଖରଡ଼—ମଶିଣା ।
୩୯ । ଅପସର—ତକିଆ, ସତ୍ୱରେ—ଶୀଘ୍ରରେ, ଚଞ୍ଚଳରେ, ପୀଠ—ଚଉକି, ଚତ୍ୱରେ—ଅଗଣାରେ ଦୁଆରେ ।
୪୦ । ହେମକୁମ୍ଭ—ସୁନା ମାଠିଆ, ଅସର—ଫୁରସତ ।
୪୧ । ଅଷ୍ଟଦଣ୍ଡ—ଆଠଦଣ୍ଡ, ଆଦିତ୍ୟ—ସୂର୍ଯ୍ୟ ।


Digitized by srujanika@gmail.com

ପୁଷ୍ୟାନକ୍ଷତ୍ର ଭକଭ୍ରା ଚନ୍ଦ୍ରରେ । ବୃହସ୍ପତି ଛତ୍ର ତଳେ କେନ୍ଦ୍ରରେ । ୪୩ ।
ସ୍ଥିତ ଶଜର ମଙ୍ଗଳ ମକରେ । ଫେଷେ ଅସୁର ଗୁରୁ ମୀନ ଭରେ । ୪୪ ।
ଧନ୍ୟ ହୋଇଅଛୁ ରାହୁ କନ୍ୟାରେ । ବୁଧ ମିଥୁନରେ କେତୁ ମୀନରେ ।
ସିଂହେ ସ୍ଥିତ ହୋଇଛନ୍ତି ବିକର୍ତ୍ତନ । ସୌମ୍ୟଗ୍ରହ ଦୃଷ୍ଟି ଲଗ୍ନେ ପତନ ।୪୬।
ଏ ସମୟରେ ରମଣୀରତନ । ଋତୁ ଲକ୍ଷଣ ଭଜିଲା ଚେତନ । ୪୭ ।
ନଗ୍ନାଗିର ହତେ ଜେ ପତନ । ଯାହା ଚଳାଇଛି କାମକେତନ । ୪୮ ।
ଜାତିମାଳାକୁ ଠାର ନେତ୍ରାନ୍ତରେ । ଗଲା ଗୋପ୍ୟମନ୍ଦିରେ ତ୍ୱରିତରେ ।୪୯।
ଯେନ ଲେଖା ସେ କେଡ଼େ ବିବେକରେ । ରଙ୍ଗପାଟ ଦୁକୂଳେ ନେଇକରେ ।
ଯାଇଁ ଏକାନ୍ତେ ଯତ୍ନେ ବନୀବେଣୀ । ଜଘନଜଙ୍ଘପାଶେ ଦୃଷ୍ଟି ନ ବେଣି ।୫୧।
ବମ୍ବ ସ୍ଫଟିକ ବାଡ଼ରେ ଯେସନ । ଫୁଲ ମନ୍ଦାର ତେମନ୍ତ ପ୍ରସନ୍ନ । ୫୨ ।
ଚୂର୍ଣ୍ଣ ଭୂମିରେ ମଣ୍ଡଳ ଆକାରେ । ଦ୍ରବ ହିଙ୍ଗୁଳ ଢାଳିଲା ପ୍ରକାରେ ।୫୩।
ଦେଖି ସୁଖୀ ହୋଇ ଆନ ବସନ । ପିନ୍ଧି ହେଲା ସ୍ମରପୁର ଦର୍ଶନ । ୫୪।
ହେମପଦକରେ କାମ ବଣିକ । କଲା ନାୟକ କୀ ଦ୍ରବ୍ୟ ମାଣିକ୍ୟ । ୫୫ ।
ଯୁବାଜନ୍ମକୁ ପାଦିରେ ସଙ୍କଳ୍ପ । କରେ ବମ୍ବଫଳେ ନାହିଁ ବିକଳ୍ପ । ୫୬ ।

---

୪୪ । ସତ୍ରସ୍ଵ—ଶନି, ଅସୁରଗୁରୁ—ଶୁକ୍ର ।
୬ । ବିକର୍ତ୍ତନ—ସୂର୍ଯ୍ୟ, ସୌମ୍ୟ,—ବୁଧ, ପତନ—ପଡ଼ିବା, ଦୃଷ୍ଟି—ନଘା ।
୪୭ । ଋତୁ—ପୁଷ୍ପବତୀ, ଚେତନ—ଉଜାଗର ।
୪୮ । ନଜରୂପ ପର୍ବତ ଉପରେ ପବି ଯେ ବଜ୍ର ପତନ କ ପଡ଼ିବାରୁ କାମକେତନ ଯେ କନ୍ଦର୍ପ ପତାକା ଦେଖାଦେଲା ।
୪୯ । ଜାତିମାଳା—ଜାଇଫୁଲମାଳା, ନେତ୍ରାନ୍ତରେ—ଚକ୍ଷୁ ପ୍ରାନ୍ତରେ ଆଖି କୋଣରେ ଜାଇଫୁଲ ମାଳାକୁ ଠାର ପୁଷ୍ପବତୀ ବୋଲି ସଙ୍କେତ ଦେଇ ଗୋପ୍ୟମନ୍ଦିରେ—କେହି ନ ଜାଣିବା ଘରକୁ ପଳାଇଲା ।
୫୨ । ବମ୍ବ—ପାଚିଲା କଇଁଚ କାଙ୍କୁଡ଼, ସ୍ଫଟିକବାଡ଼ ସ୍ୱଚ୍ଛ କ ଧଳା କାନ୍ଥରେ ଲାଲ ଯେପରି ଦେଖାଯାଏ ମନ୍ଦାରଫୁଲ ଲାଲପରି ତାର ଜଘ ସର୍ବିରେ ଦେଖାଗଲା ।
୫୩ । ଚୂର୍ଣ୍ଣ ଭୂମି—ଚୂନାମାଟି, ମଣ୍ଡଳା—ଗୋଲ, ଦ୍ରବ—ତରଳ, ହିଙ୍ଗୁଳ ଲାଲବର୍ଣ୍ଣ ଧାତୁବିଶେଷ ।
୫୪ । ଆନ—ଅନ୍ୟ, ବସନ—ଲୁଗା, ସ୍ମରପୁର—କନ୍ଦର୍ପପୁର ।
୫୫ । ହେମପଦକ—ସ୍ୱର୍ଣ୍ଣପଦକ, କାମବଣିକ—କନ୍ଦର୍ପ ବଣିଆ ।
୫୬ । ପାଦିରେ—ସ୍ତ୍ରୀଠାରେ ସଙ୍କଳ୍ପ ମନେ କରିବା ।

ଯକ୍ଷବନମାଳୀ ସ୍ତନଶମ୍ଭୁରେ । ପୂଜା କଲୁ ସାର ସ୍ୱର୍ଣ୍ଣକମ୍ବୁରେ । ୫୭ ।
ପାରିଜାତ ପ୍ରସାଦ କି ଥୋଇଛି । ସେହି ପ୍ରକାରେ ରୁଚିର ହୋଇଛି ।୫୮।
ବାଳଭାନୁ ଜାନୁଗିରି ଗୁହାରେ । ସ୍ଥିତ ଅଭ୍ରାସ୍ପୃଷ୍ଟ ଅଗ ବାହାରେ । ୫୯ ।
ଅଧୋମୁଖରେ ଶୋଣିତ ବମନ । କଚ୍ଛପ କି କରଇ ସେମନେ ମନ । ୬୦ ।
ଚିତ୍ର ଯେମନ୍ତ ଭବ ମାନସରେ । ରତି କି ଜଘନ-ପେଣ୍ଡ ଶେଷରେ ।୬୧।
ନବନୀତରେ ସିନ୍ଦୁର ଗୋଳିଲା । ଏହି ଉପମାରେ ଚିତ୍ତ ଚଳିଲା । ୬୨ ।
ମୋହରଙ୍ଗେ ହେଉପର ସମାନ । ଭବ ମରସ୍ଥିର ଏହି ଗୁମାନ । ୬୩ ।
ଉଡ଼ାଇଲା କି ସୁରଙ୍ଗ ପତାକା । ଏଣୁ ପଡ଼ିଲା ଚଳଦଳେ ଢ଼ଙ୍କା । ୬୪ ।
ଧାତା କୋମଳେ ଏ ତନୁ ରଚିଲା । ଅନୁରାଗ ପୂର୍ଣ୍ଣ କରି ସଞ୍ଚିଲା । ୬୫ ।
ଭଲା ମଧ୍ୟ ଶିରଥିଲା ନଖରେ । ବ୍ୟକ୍ତ ହୋଇଛି କି ଇଚ୍ଛାସୁଖରେ । ୬୬ ।
ଗୋରଚନା ଲକ୍ଷ ବଢ଼ିଲକ୍ଷଣ । କହି ଯେତ୍ତୁ ହୁଅନ୍ତି ବିଚକ୍ଷଣ । ୬୭ ।
ତାଙ୍କ ଉପରେ ଜବା ସଙ୍କୋଧରେ । ମହା ଆରକ୍ତିମାକୁ ମୁଖେ ଧରେ ।୬୮।
ଦେଖି ଏମନ୍ତ ଶୋଭା ତାମରସ । ଫୁଲବାସିନୀର ଜାତ ହରଷ । ୬୯ ।
ଉରୁସନ୍ଧି ରୁନ୍ଧି ରଙ୍ଗ ଦୁକୂଳ । ପିନ୍ଧି ସଖୀ ଜାଣିବାକୁ ଅକୁଳ । ୭୦ ।
ନିଦ୍ରାଭଙ୍ଗ ଜେମା ଠିକା ବଧାନ । ସଖୀମାନେ କଲେ ଅନୁସନ୍ଧାନ । ୭୧ ।

---

୫୭ । ସ୍ତନଶମ୍ଭୁ—ଶିବସଦୃଶ କୁଚ; ସ୍ୱର୍ଣ୍ଣକମ୍ବୁ—ସୁନାଶଙ୍ଖ ।
୫୮ । ରୁଚିର—ସୁନ୍ଦର, ପ୍ରସାଦ—ଭୋଗ ।
୫୯ । ବାଳଭାନୁ—ବାଲ ସୂର୍ଯ୍ୟ ଲାଲ, ଯେଉଁ ରକ୍ତବର୍ଣ୍ଣ ସୂର୍ଯ୍ୟଦେବ ସକାଳୁ ଦେଖାଯାଏ,ଜାନୁଗିରିଗୁହ—ପର୍ବତ ଗୁହାସଦୃଶ ଜଙ୍ଘ ସନ୍ଧି,ଅଭ୍ରାସ୍ପୃଷ୍ଟ—ପ୍ରକାଶ ହେଉଛି ।
୬୦ । ଅଧୋମୁଖରେ—ତଳମୁହଁରେ,ଶୋଣିତ—ରକ୍ତ,ବମନ—ବାନ୍ତି,କଚ୍ଛପ—କଇଁଛ ।
୬୨ । ନବନୀତ—ଲହୁଣୀ ।
୬୪ । ସୁରଙ୍ଗ—ଲାଲ, ଚଳଦଳ—ଗୃହଅଡ଼େ ।
୬୫ । ଅନୁରାଗ—ସ୍ନେହ ।
୬୭ । ବିଚକ୍ଷଣ—ଚତୁର, ଗୋରଚନା—ସୁଗନ୍ଧିତ ପଦାର୍ଥ ଯାହାଗାଈ ଦେହରୁ ବାହାରେ ।
୬୮ । ସଂକୋଧ—ରାଗସହିତ, ଆରକ୍ତିମା—ରକ୍ତବର୍ଣ୍ଣ ।
୬୯ । ତାମରସ—ପଦ୍ମ ।
୭୦ । ରୁନ୍ଧି—ବନ୍ଦକରି; ରଙ୍ଗଦୁକୂଳ ଲାଲଲୁଗା ।

କର୍ପା ନୋହିଲା ମର୍ଦ୍ଦନ ମାଜଣା । ବେଗେ ଗଲାତ ନ ଯାଇ ଏ ଜଣା ।୭୨
କେ ବୋଇଲା ଅତ୍ୟନ୍ତ ରସମୟ । ପ୍ରକଟିଲା କି କୁସୁମ ସମୟ । ୭୩ ।
କେ ବୋଇଲା ସେ ପୀତଭଲମାଟ । ଅମୃତାରେ କରନ୍ତା କି କପଟ ।୭୪।
କେ ବୋଇଲା ଛଳ ଏ ଭାରତୀକ । ଲଜବଳଅଛି ଥିବ ପ୍ରୀତକ । ୭୫ ।
ଏହି ସମୟକୁ ହୋଇ ସ୍ମବେଶ । ପାଟଜତ୍ତଟସୁତା ପ୍ରବେଶ । ୭୬ ।
ଘରି ମପାଇ ମୂଳ କର କାଳ । ଜେମା ପାଶକୁ ଚଳଲେ ତହ୍ନାଳ । ୭୭ ।
ଯାଇ ପଥରେ ଦେଖିଲେ ଚେଟୀକି । ଯେଜ ଅସୁଅଛୁ ନାଟଶାଟୀକି ।୭୮।
ବାସେ ଗୋଡ଼ାଇ ଅଛନ୍ତି ଅଳଏ । ଏ ସଙ୍କେତୁ ସତ କର ଅଳଏ । ୭୯ ।
ଯାଇ ନୃପସୁତା ପାଶେ ମିଳଲେ । ହାସ ରହସଭାବରେ ଛଳଲେ । ୮୦ ।
ତୁମ୍ଭ ଅମ୍ଭ ପ୍ରୀତ ନୁହେ ଅଜର । ଯଜ୍ଞବନସଙ୍ଗୁ ସଙ୍ଗ ଲଜର । ୮୧ ।
ତାହା ସଙ୍ଗୁ କଲୁ ଏତେ ଅନ୍ତର । କି କରବୁ ସଙ୍ଗ ହେଲେ କାନ୍ତର ।୮୨।
ବାଣୀ କୋକିଳୁଁ ମଧୁର ହେବାରୁ । ନଖ ନଅଲୀ ଛବି ବହିବାରୁ ।୮୩।
ହୃଦନଦରେ ଚିତ୍ତ ରଞ୍ଜିବାରେ । ସ୍ତନକମଳକଳା ବଢିବାରେ । ୮୪ ।
କାନ୍ତି କେତକୀ ଦନୁ ଦନୁ ଗୃହୁ । ଗୃହୁଁ ଅମ୍ଭେମାନେ ମନେ ବଗୃହୁଁ ।୮୫।
ପୁଷ୍ପସମୟ ହେଲାଣି ନିକଟ । ସତ କହ ହୋଇଲାକି ପ୍ରକଟ । ୮୬ ।
ଶୁଣି ସଖୀଏ କହିଲା ଏସନ । ନ କହିଲେ କହିଲାଣି ବସନ । ୮୭ ।
ବନେ ବକସିତ ହେଲେ ମାଧବୀ । ମଧୁପେ କି ନ ଜାଣନ୍ତି ବାନ୍ଧବୀ । ୮୮ ।
ପାଟସୂତ୍ରରେ ଗୁନ୍ଥିଣି ମୋତିକି । ଜେମା ଲୁଗୃଇ ଲୋଡ଼ୁଛୁ ଜ୍ୟୋତକି । ୮୯
କେତେବେଳଯାଏ ଦୂର୍ଯ୍ୟ ଉଦତ । କରପାରେ କୁଜ୍‌ଝଟି ଅଚ୍ଛାଦତ । ୯୦ ।
କେତେବେଳେ ଲୁଗୃନ୍ତା ପଦ୍ମଲାକ୍ଷା । ଦନାନ୍ତରେତ ଯେଜନାହିଁ ଲକ୍ଷା ॥

---

୭୩ । କୁସୁମ ସମୟ—ପୁଷ୍ପବତୀ ସମୟ ।
୭୫ । ଭାରତୀକ—କଥାକୁ ।
୭୮ । ଚେଟୀ—ଦାସୀ, ନାଟ ଶାଟୀକି—ଭଲ ଲୁଗାକୁ ।
୭୯ । ବାସ—ବସନାରେ, ଅଳଏ—ଭଅଁରମାନେ, ସଙ୍କେତୁ—ଚିହ୍ନରୁ ।
୮୨ । ଅନ୍ତର—ଦୂର, କାନ୍ତର—ସ୍ୱାମୀର ।
୮୮ । ବକଶିତ—ଫୁଟିବା, ମଧୁପେ—ଭ୍ରମରମାନେ ।
୮୯ । ଜ୍ୟୋତକି—ଉଜ୍ଜ୍ୱଳତାକୁ ।
୯୦ । କୁଜ୍‌ଝଟି—କୁହୁଡ଼, ଅଚ୍ଛାଦତ—ଘୋଡ଼ାଇବା ।
୯୧ । ପଦ୍ମଲାକ୍ଷା—ପଦ୍ମନେତ୍ରୀ, ଦନାନ୍ତରେ—ଅନ୍ୟ ଦନ, ଲକ୍ଷା—ଅଲକ୍ତା ।

ଅବା ପିନ୍ଧୁବ ପୋଷ୍ଟଲ୍ କହୁବ । ଅଗଅଙ୍ଗେ ନୋହେ ସେ ନୋହୁବ ।୯୨
ସହକସ୍ତ୍ର ପରହାସ ସରତେ । ମୃଦୁହାସୀ ହସିଗଲ୍ ଭୁବରେ । ୯୩ ।
ମୂଖ ନିବେଶିଲ୍ ନିଜ ଜଳଜେ । ଯିତ ଠୁକି ଅରମ୍ଭିଲ୍ କରଜେ । ୯୪ ।
ପ୍ରେମଶୀଳା ମାଠା ପାଶେ ଜଣାଇ । ଶର ମନ୍ଦର ସମ୍ଭାର ଅଣାଇ । ୯୫ ।
ମାସ ତଣ୍ଡୁଳରେ ଗୃହ ଗଢ଼ାଇଁ । ବାସ ପ୍ରକାର ପ୍ରକାରେ ବେଢ଼ାଇଁ । ୯୬।
ଗୃହପାଶେ ଗୃହଗୋଟି ମାର୍ଗଣ । ଅବଲମ୍ବେ ପୋତିଲେ ସଖୀଗଣ । ୯୭ ।
ନାରକେଳ ଚେଳ ଦୁର୍ବାରୋପକୁ । ଭରି ସମୀପେ ଥୋଇଲେ ସୂର୍ପକୁ ।୯୮
ମଧ୍ୟେ ବସାଇଲେ ଯେ ନବବାଳୀ । ଶୁଭ ଅର୍ଥରେ ଦେଲେ ହୁଳହୁଳି ।୯୯।
ସେହୁ ଶବଦ ଜନକ ଶୁଣିଲେ । ଜୀର୍ଣ୍ଣମୃଦୁସୁଲ୍ଲୀଠାରୁ ଜାଣିଲେ । ୧୦୦ ।
ଉଛୁଳିଲ୍ ପୁରଦ୍ୱାର ବାଦ୍ୟରେ । ବାଦ୍ୟ ଏମନ୍ତ କହେ କି ନାଦରେ ।୧୦୧
ଯୁବା ହୋଇ ସାହା ହେଲ୍ ଜଗତେ । ମଦନକୁ ଶୁଭିଲ୍ ଏ ଯୁଗତେ ।୧୦୨।
ଯୋଗିଙ୍କପୁ ମୂଳ ମନମଥର । ଲଭି ଏ ଭପୁ ମହେଶ ପଥର । ୧୦୩ ।
ଅମ୍ଭ ଦମ୍ଭ କେତେ ଭ୍ରବ ବହନେ । ଋଷି ପଶିଲେ ନୈମିଷାଗହନେ ।୧୦୪।
କାଣ୍ଡଗୃହେ ଶୋହେ ବାଳା ଉଚିତ । ଏହୁ ଉପମା ଜାତ ହୋଏ ଚିତ୍ତ ॥
କର ସଙ୍କଳ୍ପ ସେ ସାଧବନକୁ । କରେ କି ଷଷ୍ଠଦେବୀ ପୂଜନକୁ । ୧୦୬ ।

---

୯୩ । ପରହାସ—ଥଟ୍ଟା, ସରତ—ସ୍ରୋତ, ନଦୀ ।
୯୪ । କରଜେ—ହାତରେ, ( ଲଜ୍ଜାରେ ତଳକୁ ମୁହଁ ପୋତି ଛତରେ ରଖିଲା, ନଖରେ ମାଟିରେ ଗାର ପକାଇଲା ।
୯୫ । ଶର ମନ୍ଦର ସମ୍ଭାର—ପୁଷ୍ପବତୀ ହେବାର କ୍ରିୟା ସମସ୍ତ ।
୯୬ । ମାସ—ବିରି, ତଣ୍ଡୁଳ—ଚାଉଳ, ବାସ—ଲୁଗା, ପ୍ରାକାର—ପାଚେରି ।
୯୭ । ମାର୍ଗଣ—ବାଣ ।
୯୮ । ନାରକେଳ—ନଡ଼ିଆ, ଚେଳ—ଲୁଗା, ଦୁର୍ବା—ଦୁବ, ସୂର୍ପ—କୁଲା, ନଡ଼ିଆ, ଲୁଗା, ଚାଉଳ, ଦୁବ କୁଲାରେ ପୂରାଇ ଥୋଇଲେ ।
୯୯ । ଜନକ—ପିତା, ଜୀର୍ଣ୍ଣ—ବୁଢ଼ୀ, ମୃଦୁସୁଲ୍ଲୀ—ଦାସୀ ।
୧୦୧ । ଉଛୁଳିଲା—କମ୍ପିଲା, ନାଦ—ଶବ୍ଦ ।
୧୦୨ । ଜଗତ—ସଂସାର, ମଦନ—କନ୍ଦର୍ପ ।
୧୦୩ । ମନମଥର—କନ୍ଦର୍ପର, ମହେଶ—ମହାଦେବ, ପଥ—ବାଟ ।
୧୦୪ । 'ନୈମିଷା ଗହନ—ନୈମିଷା ବନ' ।
୧୦୬ । ସଙ୍କଳ୍ପ—କାମନା ।

ସାତଦୀପପନ୍ତି ହୋଇଛନ୍ତି ଦୀପିତ । ଶାତକୁମ୍ଭକୁମ୍ଭ କୁଚ ସ୍ଥାପିତ । ୧୦୭ ।
ଶ୍ରୁବ ଶ୍ରୁଚ ରୋମାବଳୀ ନାଭି ତା । ଜଘନ ତ ହେମବେଦୀ ଶୋଭିତା ।୧୦୮
ଚାରୁ ସୁଊରୁ କଦଳୀକାଣ୍ଡରେ । ଶୋଭି ବରାଙ୍ଗୀ ଅଦ୍ଭୁତକୁଣ୍ଡରେ । ୧୦୯।
ଦୀପ୍ତ ଶ୍ରବଣ ତାଟଙ୍କ ଅଳନ୍ତି । ବକ୍ତ୍ରବିକାରରୁ କର ଚଳନ୍ତି । ୧୧୦ ।
ଯହିଁ ବଟଣବ୍ରାହ୍ମଣ ସଖାଶ୍ୱ । ମନ୍ତ୍ର ମଙ୍ଗଳଗୀତକୁ ଉଚ୍ଚାର । ୧୧୧ ।
ନିଃସଂଶୟରେ ଏ କଥା ଉଦୟ । ପଶୁ ହୋଇବେ ଯୁବା ସମୁଦାୟ ।୧୧୨।
ସିଦ୍ଧ ହେବ ଏହି ବାଞ୍ଛା ତାହାର । ଅଉ ବଲ୍ଲଭୀ ନୋହିବ ନାହାର ॥
ଭିକ୍ଷୁ ନାପିତ ରଜକେ ଉଲ୍ଲାସେ । ପୂର୍ଣ୍ଣ ସ୍ନାନ ସାରି ଦାନ କଲେ ସେ ॥
ଦିବ୍ୟ ତଇଲ ତଣ୍ଡୁଳ ଅମ୍ବର । ଅବଶେଷେ ପକାଇଲେ ସମ୍ବର ।୧୧୫।
ବେଶ କରି ସାରି ନୃପନନ୍ଦନା । କରାଇଲେ ରବି ଅର୍ଘ୍ୟ ବନ୍ଦନା ।୧୧୬।
ବେଶ କହିବାକୁ ଅଙ୍ଗ ଦଶିଲା । ନେତ୍ରାଞ୍ଜନ ବିବେକକୁ ଧ୍ୱଂସିଲା ।୧୧୭।
ଏଣୁ ଉତ୍ତମାଗଣ ଅନୁକୂଳ । ଅଭଦ୍ରତା ଭଜି ହେଲେ ଆକୁଳ ।୧୧୮।

---

୧୦୭ । ଦୀପିତ—ଜଳିବା ।
୧୦୮ । ଶ୍ରୁବ—ହୋମ ଘିଅ ଢାଳିବାର ଡଙ୍କି, ଶ୍ରୁଚ ଯେଉଁ ପାତ୍ରରେ ଘିଅ ଥାଏ, ରୋମାବଳି—ଲୋମ ସବୁ, ନାଭି—ନାହିଁ, ଜଘନ—ଜଙ୍ଘ, ହେମବେଦୀ—ସୁନାର ବେଦୀ ।
୧୦୯ । ଚାରୁ—ସୁନ୍ଦର, ସୁଊରୁ—ସୁନ୍ଦର ଜଙ୍ଘ, ବରାଙ୍ଗୀ—ଶ୍ରେଷ୍ଠ ଦେହୀ, ( ଲାବଣ୍ୟବତୀ )
୧୧୦ । ଦୀପ୍ତ—ଶୋଭନ, ଉଜ୍ଜ୍ୱଳିତ, ଶ୍ରବଣ—କାନ, ତାଟଙ୍କ—କାନର ଗହଣା, ବକ୍ତ୍ର—ମୁଖ, ବିକାର—ଭଙ୍ଗି, ବକ୍ତ୍ର ବିକାର—ମୁଖଭଙ୍ଗି ।
୧୧୧ । ସଖାଶ୍ୱ—ସଖୀ, ପବନ ।
୧୧୩ । ବଲ୍ଲଭୀ—ସ୍ତ୍ରୀ, ନାହା—ସ୍ୱାମୀ ।
୧୧୪ । ଭିକ୍ଷୁ—ଭିକାରି ବା ସନ୍ନ୍ୟାସୀ, ନାପିତ—ଭଣ୍ଡାରି, ରଜକ—ଧୋବା, ଉଲ୍ଲସି—ଖୁସି, ପବନ ।
୧୧୫ । ତୈଲ—ତେଲ, ତଣ୍ଡୁଳ—ଚାଉଳ, ଅମ୍ବର—ଲୁଗା, ଶମ୍ବର—ଜଳ ।
୧୧୬ । ରବି—ସୂର୍ଯ୍ୟ, ବନ୍ଦନା—ବନ୍ଦାପନା ।
୧୧୭ । ନେତ୍ରାଞ୍ଜନ—ଆଖି କଜ୍ଜଳ, ଅଞ୍ଜିକଲା, ବିବେକ—ସଦବୁଦ୍ଧି, ଧ୍ୱଂସିଲା—ନାଶ କଲା ।
୧୧୮ । ଅଭଦ୍ରତା—ନିଲଜ, ନିର୍ଲଜଣା ।


Digitized by srujanika@gmail.com

ପୁଣ ଇଷ୍ଟଦେବୀ ନିଜ ମାତାଙ୍କୁ । ନିର୍ଜଳ ଯେ କରାଇଲେ ତାଙ୍କୁ ।୧୧୯।
ଏଥିଉତ୍ତାରେ ଜ୍ୟୋତିଷକୁମାରୀ । କରଯୋଡ଼ି କହେ ଶ୍ରେ ସୁକୁମାରୀ ॥
ହେଲ ମେଲାଣି ବରଭୁବନରେ । ଏକାଥିବା ଦିବ୍ୟ ଅବଧାନରେ ।୧୨୧।
ଜେମା ବାସ ଅଳଙ୍କାର ଅପାର । ସ୍ନେହବାଣୀ କହି ଦେଲା କୃପାର ॥
ପଢ଼ା ଶୁକ ଗୋଟିଏ ସେହୁ ମାଗି । ସ୍ନେହେ ଦତ୍ତ କଲା ତାହା ହେମାଙ୍ଗୀ ।
ଗଲେ ସେ ନାରୀ ଜନ୍ମଦେଶକୁ । ଶୁକ ଅସିବ କର୍ମ ଉଦ୍ଦେଶକୁ ।୧୨୪।
କାନ୍ତି ଗନ୍ଧଫଳୀବଳ ଝଳଇ । ଯେ କର୍ବୁରକାନ୍ତି ଗର୍ବ ଦଳଇ । ୧୨୫।
ଭାବ ସୀତା ରାମ ପାଦସାରସ । ଉପେନ୍ଦ୍ର ବୀରବର ହରଷ ।୧୨୬।



---

୧୨୧ । ବରଭୁବନ—ଶ୍ରେଷ୍ଠପୁର, ସ୍ୱାମୀଘର, ଦିବ୍ୟ ଅବଧାନରେ—ଉତ୍ତମ ସତର୍କରେ, ଭଲରୂପେ ଜାଣିବାରେ ।

୧୨୨ । ଅଳଂକାର—ଗହଣା, ସ୍ନେହବାଣୀ—ସ୍ନେହକଥା, ଅପାର—ଅନେକ; କୃପାର—ଦୟାର ।

୧୨୩ । ପଢ଼ା—ଶିକ୍ଷିତ, ଶୁକ—ଶୁଆ, ଦତ୍ତ—ଦାନ, ହେମାଙ୍ଗୀ—ସୁନାଦେହୀ ।

୧୨୪ । ଉଦ୍ଦେଶ—କାମନା ।

୧୨୫ । କାନ୍ତି—ରୂପ, ଗନ୍ଧଫଳୀ—ଚମ୍ପା, କର୍ବୁର—ସୁନା, ଗର୍ବ—ଅହଂକାର, ଦଳଇ—ଦଳି ଦେବା ।

ଲାବଣ୍ୟବତୀର ରୂପ ଚମ୍ପାଫୁଲ ବର୍ଣ୍ଣଠାରୁ ଅଧିକ ଉଜ୍ଜ୍ୱଳ ସେହି ରୂପ ତେଜରେ ସୁନାର ଉଜ୍ଜ୍ୱଳତା ପରାସ୍ତ ।

୧୨୬ । ପାଦ ସାରସ—ପାଦପଦ୍ମ, ହର୍ଷ—ଆନନ୍ଦ ।

## ଭାବାର୍ଥ

ଲାବଣ୍ୟବତୀ ପୁଷ୍ପବତୀ ହେବାରୁ ସେତ ରାଜାରହିଅ ତେଣୁକର ରାଜୋଚିତ ଶୌଚ ସ୍ନାନାଦି କାର୍ଯ୍ୟମାନ ସମାହିତର ବ୍ୟବସ୍ଥା ହେଲା ଏବଂ ତାର ରୂପ ଶ୍ରୀ ଯୌବନ ହେତୁ କ୍ରମେ ପ୍ରସ୍ଫୁଟିତ ହେବାରୁ କବି ଅନେକ ପ୍ରକାର ଉପମାଦେଇ ତାହା ବର୍ଣ୍ଣନା କଲେ ।



# ଚତୁର୍ଥ ଛାନ୍ଦ ।

## ରାଗ ରସକୋଇଲି ବାଣୀ ।

ଏଥୁ ଅନ୍ତେ ଶୁଣ ରସିକଜନେ । ଦିନେ ବିଚାର କଲେ ସଖୀମାନେ
ଆମ୍ଭ ସଜନୀ ଯେ ସୁନ୍ଦରୀ ସାର । ନାହିଁ ନୋହିବ ନ ଥିବ ସଂସାରରେ ।
ପୂର୍ଣ୍ଣିତ ଶୋଭା ବୟସେ ଯେ । ଆମ୍ଭ ଲୋଚନକୁ କବି ବଚନକୁ ପବିତ୍ର
କରିବା ବେଶେ ଯେ । ୧ । ଏମନ୍ତ ଭାବ ଜଣାଇଲେ ଯାହିଁ । ଜନନୀ
ତର୍ଜ୍ଜିଲେ ଅଜ ଡକାଇ । କି କର ତୁମ୍ଭେ କେମା ପାଶେ ଥାଇ । ସୁବେଶ
ନୀତି ନ କର କିପାଇଁ ସେ । କେ ଜାଣେ କାହା ମାନସ ଗୋ । ତୁ
ମନେ କରୁଛୁ ଭୂଷଣଭୂଷା ମୁଁ କାହିଁକି ହୋଇବି ବେଶ ଗୋ । ୨ ।

---

## ଚତୁର୍ଥ ଛାନ୍ଦ

୧ । ରସିକ ଜନ—ରସିକ ଲୋକ, ସୁନ୍ଦରୀସାର—ପ୍ରଧାନ ସୁନ୍ଦରୀ, ସୁନ୍ଦରୀ ମଧ୍ୟରେ ଶ୍ରେଷ୍ଠ, ପବିତ୍ର—ବିଶୁଦ୍ଧ ।

ଦିନେ ସଖୀମାନେ ବିଚାର କଲେ ଆମ୍ଭର ସଖୀ ( ଲାବଣ୍ୟବତୀ ) ସମସ୍ତ ସୁନ୍ଦରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟେ, ଏପରି ସୁନ୍ଦରୀ ଜଣେ ସଂସାର ମଧ୍ୟରେ ନାହିଁ, ପୁଣି ଆଗାମୀ ହେବ ନାହିଁ; କି ହୋଇ ନ ଥିଲା । ପୁଣି ତାର ଯୁବା ବୟସ ହୋଇଛି, ତାକୁ ଏପରି ବେଶ କରିବା ଯାହା ଦେଖି ଆମ୍ଭମାନଙ୍କ ଆଖି ପବିତ୍ର କି ତୃପ୍ତ ହେବ ଓ କବିମାନେ ସେ ଶୋଭା ବର୍ଣ୍ଣନା କଲେ ତାଙ୍କର କବିତା ମଧ୍ୟ ଜଗତରେ ପ୍ରଶଂସ୍ୟ ହେବ ।

୨ । ତର୍ଜ୍ଜିଲେ—ଗାଳିଦେଲେ, ମାନସ—ମନ, ଭୂଷଣ ଭୂଷା—ଅଳଙ୍କାର ମଧ୍ୟରେ ଶ୍ରେଷ୍ଠ ।

ଏହା ଭାବି ସଖୀମାନେ ଲାବଣ୍ୟବତୀକି ଯାଇ କହିଲେ ଆଉ ମା ଡାକି ଗାଳିଦେଇ କହିଲେ ତୁମେମାନେ କଣ କରୁଛ ? ଲାବଣ୍ୟବତୀକି ବେଶକର । ହେ ସଖୀ କିଏ କାହା ମନ କଥା ଜାଣେ, ତୁମେ ଅବା ମନେ କରୁଥିବ ମୋତେ ଏମାନେ କି ବେଶ କରିବେ ମୁଁ ତ ସବୁ ଗହଣାମାନଙ୍କ ଠାରୁ ଅଧିକ ସୁନ୍ଦର । ଆଉ କାହିଁକି ବେଶ ହେବ ।


Digitized by srujanika@gmail.com

ରସବିଷୟ ଶ୍ରବଣ କରିବା । ବନ୍ଧପଟ୍ଟଳପଟକୁ ଗ୍ରହିଁବା । ଦିବ୍ୟ ଅଳଙ୍କାରେ ମଣ୍ଡନ ହେବା । ଏତେ କଥାରେ ବଶ ହୋନ୍ତି ଯୁବା ଯେ । ଶୁଣି ସ୍ୱୀକାର କରି ଯେ । ବ୍ୟାଧିବନ୍ତର ବାଞ୍ଛିତ ଉପଗ୍ରହ ବୈଦ୍ୟ ବିହିଲାର ପରି ଯେ । ୩ । ଭଙ୍ଗିରୁ ଜାଣିଲେ ସଙ୍ଗିନୀବ୍ରାତ । ହେଲା କୋମଳଅଙ୍ଗୀ ଅଙ୍ଗୀକୃତ । ତାଙ୍କ ନୟନ ବିକାରରୁ ଜାଣି । ଚତୁରୀ ପରିଚାରୀମାନେ ପୁଣି ଯେ । ଗୁଙ୍ଗୁଡ଼ୀ ଭୂଷଣ-ପେଡ଼ୀ ଯେ । ଯତନ ରତନମଣ୍ଡନ ବସନ ବାନ୍ଧିଲେ ସଜନୀ ଫେଡି ଯେ । ୪ । ମଞ୍ଜୁ ବହ୍ନ୍ୟରାଜ ପରାୟେ ରାଜ । ଗ୍ରହିଁଲେ ନୟନ ହୋଇବ ବ୍ରଜ । ଅଳଙ୍କାକୋଷେ ଥିବ ଅବା ତୁଲ୍ୟ । ହେଜ କରିବ ଧାତା ଅବା ମୂଲ୍ୟ ଯେ । ଏକାଳେ ସଜାଡ଼ି ଆଣି ଯେ । ଫୁଲ୍ଲ ଗୁଙ୍ଗୁଡ଼ା ଚନ୍ଦ୍ରକପେଡ଼ା ଫେଡି ସୁବାସ-ତଇଲ ପୁଣି ଯେ । ୫ । ସଜବିଧି ସଜ ସଜନୀ ଦେଖି । ଆସନେ ବସାଇ ପ୍ରସନ୍ନମୁଖୀ । ଆଗେ ଦେଖାଇଲେ ମୁକୁର ମାଜି । ହାରି ନିର୍ମଳେ କି ଶରଣ ଭଜି ଯେ । ଫେଡିଲେ କୋମଳ ବାଳ ଯେ । ବେଗରେ ତଇଳ-ଯୋଗରେ ଶଇଳ-ସ୍ତନୀଏ ଭଲେ କୋମଳ ଯେ । ୬ । ଚରମେ ପଡି ମନୋରମ ଦିଶେ । ମଧ୍ୟେ କି ନଣା ଦିନ ଦୁଇପାଶେ । ପ୍ରଭାକୁ ଦେଖି ମୁଖଚନ୍ଦ୍ରର । ପଳାଇ

---

୩ । ଅତି ରସ ବିଷୟକୁ ଶୁଣିବା, ବନ୍ଧ ପଟଳ ୬୪ ପ୍ରକାର ବନ୍ଧ ଦେଖିବା, ସୁନ୍ଦର ଗହଣା ପିନ୍ଧିବା, ଏତିକ କଥାରେ ଯୁବା ପୁରୁଷ ବଶ ହୁଅନ୍ତି । ଏହା ଶୁଣିକରି ଲାବଣ୍ୟବତୀ ସ୍ୱୀକାର କଲା, ବ୍ୟାଧିମନ୍ତ—ରୋଗୀ, ବାଞ୍ଛିତ—ଇଚ୍ଛା କରିବା, ଉପଗ୍ରହକ—ଔଷଧାଦି ଅର୍ଥାତ ରୋଗୀ ଯାହା ଭଲପାଏ ବୈଦ୍ୟ ଯେବେ ସେହିପରି ଚିକିତ୍ସା କରେ ସେ ସନ୍ତୋଷ ହୁଏ, ସେହିପରି ସଖୀମାନଙ୍କ କଥାରେ ଲାବଣ୍ୟବତୀ ରାଜିହେଲା । ତାର ମଧ୍ୟ ସେଇଆ ଇଚ୍ଛା ଥିଲା ।

୪ । ସଙ୍ଗିନୀ—ସଖି, ବ୍ରାତ—ସମୂହ, ନୟନ ବିକାର—ଆଖିଛଟା, ଫେଡି—ଫିଟାଇ ।

୫ । ମଞ୍ଜୁ—ସୁନ୍ଦର, ବହ୍ନ୍ୟରାଜ—ବିଜୁଳିର ତେଜ, ଅଳଙ୍କାର କୋଷ—ଗହଣା ରହିବା ସ୍ଥାନ, ଚନ୍ଦ୍ରକପେଡ଼ା—ଗୋଲ ପେଡ଼ା ।

୬ । ସଜବିଧି—ବେଶହେବା ଜିନିଷ, ପ୍ରସନ୍ନ ମୁଖୀ—ପ୍ରଫୁଲ୍ଲ ବଦନୀ; ମୁକୁର—ଦର୍ପଣ, ଫେଡିଲେ—ଫିଟାଇଲେ, ଶଇଳ ସ୍ତନୀଏ—ପର୍ବତ ସ୍ତନାମାନେ ।

୭ । ଚରମ—ପିଠି, ମନୋରମ—ସୁନ୍ଦର, ପ୍ରଭା—ତେଜ, ଭ୍ରମର—ଭଅଁର, ନିର୍ଝରଉଛନ୍ତି—ପଳାଉଛନ୍ତି, ବାଳ ଫିଟାଇ ଦେବାରୁ ତାହା ପିଠି

ଯାଉଛନ୍ତି କି ଅନ୍ଧକାର ସେ । ସଖୀଏ ଜାଣନ୍ତି ବଢ଼େ ଯେ । ଗୁମ୍ଫର ମୟୂର-ପୁଚ୍ଛ ଯା ଗୁଳନ୍ତି ନିଜଚ୍ଛନ୍ଦଚ୍ଛନ୍ଦି କେଶେ ଯେ ।୭ । ମର୍ଦ୍ଦଳାକାର ଉକ୍ଷଟକା ଫଳ । ଭାଗ୍ୟଂ ଲଭ ଜପ ସୁଷମା ପେଲିଲା । ସୁସନ୍ଧି ଘନ୍ତ ଦଶନଅବଳୀ । ଗଳିବ କି ନାହିଁ କୁନ୍ତଳ ଭୁଲି ସେ । ଅଳୀ ଖଣ୍ଡିଆ ଗଲାକ୍ତ ଯେ । ନଖେ ଫାଳର ଦୋଲଣ ବେଣକାଗ୍ର ଦେଲ୍ଲ କେଶ କୁଣ୍ଡିଅଛ ଯେ ।୮। ମାଙ୍ଗ ଭାଙ୍ଗ ରଖି ଉତ୍ତମାଙ୍ଗରେ । ଅସୁତ୍ର କର ସାମଳିଲ୍ଲ ଧୀରେ । ଢରେ ଧର ମୂଳେ ଭଡ଼ା ଭଡ଼ନ୍ତେ । ଅଭ୍ରୂ ଉପମା ଜନ୍ମିଲା ଚିତ୍ତେ ସେ । କି କୋକନଦ ମଧ୍ୟରୁ ଯେ । ସ୍ଫୁରୁଛି କାଳନ୍ଦୀ ଦ୍ରବୁଛି ଶୃଙ୍ଗାର ଦାହା ସେ ଅତ୍ୟନ୍ତ ଗୂଢ଼ ଯେ ।୯। ରଙ୍ଗଭଣ୍ଡି ଭର ଦବ୍ୟ ଜଡ଼ାକୁ । ସଜାଡିଲେ ଯୁବାଜ୍ଞାନବୁଡ଼ାକୁ । ତମ ବଦାର କି ହୋଏ ବାହାର । ପ୍ରଭୃତେ ପ୍ରଜ୍ୱଳନ୍ତ ପ୍ରଭାକର ସେ । ଚନ୍ଦନ ଶଧିପାଣ ସିନ୍ଧି ଯେ । ଯୋଗିଜନମନ-ମୃଗ ବନ୍ଧନେ କି କଲେ କଥଆପନୀ ବାନ୍ଧ ଯେ ।୧୦। ସିନ୍ଦୂରଗାର ସୀମନ୍ତରେ ଦେଲେ । ବଧୂନ୍ତୁଦକୁ ବଧୂ ହାଣିଥିଲେ । ଶୁଣି ନାହିଁ କି ସେ ରଥାଙ୍ଗ

---

ଉପରେ ପଡ଼ିଲା । ଯେପର ଦୁଇ ପାଖରେ ଦନ ମଝିରେ ଗ୍ରନ୍ଥ ହୋଇଛି । ପୁଣି ବାଲକଲା, କଳା ମଧ୍ୟରେ ମୁହଁ ଧଳା ହେବାରୁ ଅତ୍ୟନ୍ତ ସୁନ୍ଦର ଦେଖାଗଲା ବାଳ ଫିଟି ଉପରେ ପଡ଼ି ଥିବାରୁ ଗରମ ହେଲ୍ଲ ବୋଲି ତେଣୁ ସଖୀମାନେ ମୟୂର ପୁଚ୍ଛ ଚାମରରେ ବିଞ୍ଚିଲେ ।

୮ । ମର୍ଦ୍ଦଳାକାର—ବଙ୍କା, କଙ୍କତିକା—ପାନିଆ, ସୁସନ୍ଧି—ସୁନ୍ଦର, ଘନ୍ତ—ଲଗାଲଗି ଗାଢ଼, ଦଶନ—ଦାନ୍ତ, ଅବଳ—ସରୁ; କୁନ୍ତଳ—ବାଳ, କେଶ—ବାଳ ।

୯ । ମାଙ୍ଗ—ସୁନ୍ଦା, ଭାଙ୍ଗିଅଗ୍ର, ମାଙ୍ଗଭାଙ୍ଗରଖି—ସୁଁଢାକାଟି, ଉତ୍ତମାଙ୍ଗ—ମୁଣ୍ଡରେ, କୋକନଦ—ଲାଲପଦ୍ମ, ଦ୍ରବୁଛି—ତରଳ ଯାଉଛି, ଶୃଙ୍ଗାର—କାମକ୍ରୀଡ଼ା ।

୧୦ । ରଙ୍ଗଭୁଣ୍ଡି—ଲାଲପାଟ ଡ଼ୋର, ( ଘଡ଼ା ) ତମ—ଅନ୍ଧାର, ପ୍ରଜ୍ୱଳନ୍ତ—ଉଜ୍ଜ୍ୱଳ, ପ୍ରଭାକର—ସୂର୍ଯ୍ୟ; କଥଆପନୀ—ଅଲଙ୍କାରର ନାମ, ଯୁବାର ଜ୍ଞାନ ହରଣ କରିବାକୁ ଜଡ଼ାକୁ ପାଟଫୁଲ ଦେଇ ବାନ୍ଧିଲେ, ସେ ଏପର ଦେଖାଗଲା ଅନ୍ଧାରରେ ଯେପର ଲାଲସୂର୍ଯ୍ୟ ( ବାଳରବି ) ଉଦୟ ହେଲା-ପର. କଳା ବାଳରେ ଲାଲ ପାଟଫୁଲ ସେହିପର ଦଶିଲା । ପୁଣି ତା ଉପରେ କଥଆପନ ଦେବାରୁ ଯୋଗୀମାନଙ୍କର ମନମୁଗ୍ଧ ହେଲା ।

୧୧ । ସୀମନ୍ତ—ମଥା, ବଧୂନ୍ତୁଦ—ରାହୁ, ବଧୂ—ଚନ୍ଦ୍ର, ବଣ୍ଟୁ ରଥାଙ୍ଗ—ଚକ୍ର, ବ୍ୟକତ—ପ୍ରକାଶିତ, ଘତ—ଘା, ରାହୁକଲା ବଣ୍ଟୁ ଚକ୍ରରେ ହାଣିବାରୁ ରକ୍ତ

ଯାଉ । ଅଳ ହୋଇଛୁ ଛକଉ ବ୍ୟକଉ ଯେ । ସେ ଷଉ ଷଉଙ୍କ ଗୃହେଁ ଯେ । ଲ୍ଗଳଯେ ଥଏସ ବଦନବଧୂ ପାଶେ ନ ଗଲ୍ସେ ଭୟ ପାଇ ଯେ ।୧୧। ଜ୍ୟୋଉମୋଉ ମଥାଙ୍କାଲ୍ ମଣ୍ଡିଲେ । ମଣ୍ଡିଲେ ନାହିଁ ଧଇର୍ଯ୍ୟ ଖଣ୍ଡିଲେ । କ ନୀଳମଣିଧରଣୀରେ ଅପି । ଗବାକ୍ଷେ ଗଲ ପ୍ରକାଶିଉ ଶଶୀ ଯେ । ଜୁଡ଼ାଙ୍ଗାଲ୍ ଏ ସଦୃଶ ଯେ । ଶ୍ୟାମଲ କମଳକଳାରେ କଳ୍ପ କ ପେଷଣ ସୁଧାକବଷା ଯେ ।୧୨। ବକ୍ରଚନ୍ଦ୍ରିଗ୍ ହେମଦୁବର୍ତ୍ସଗ୍ । ଦେବାରୁ ଦଟିଲ୍ଲ ଏମନ୍ତ ପଗ । କାମ ଯମୁନାଜଳକେଳ ଇଚ୍ଛା । ସୁବର୍ଣ୍ଣନାବ କ୍ଷେପଣୀ କରୁଛୁ ଯେ । ଦୃବ ଯା କର୍ମିଲ୍ଲ ହୋଇ ଯେ । ଠାରେ ନ ନାକ ନର ନାଗ ନଗରେ ଏ ସମାନ ଶୋଭା ନାହିଁ ଯେ ।୧୩। ସହଜେଉ କର୍ବୁରିଉଅଳକା । ପଡ଼ାଇଲେ ଭୃଙ୍ଗଶ୍ରେଣୀରେ ଡ଼କା । ଦମ୍ଭ ଅବମ୍ଭ ବନାଶନ ଥଶେ । ମଞ୍ଜୁଳ କଲେ ଅବତଂସ ଶେଷେ ଯେ । ଏମନ୍ତ ଚିତ୍ରରେ ଭଲ ଯେ । ମର୍ଦ୍ଦିତନଳୀରୁ ବାହାର ଯାଉଛୁ କ ଅତ ଜ୍ୱଳତ ଗୁଳ ଯେ । ୧୪। ଅଳକା ଉର୍ଦ୍ଧେ ଝିଲିମିଳିମାଳୀ । ଝଟଝେ ଝଟଝେ

---

ବୋହିଗଲ୍ଲ, ମୁଣ୍ଡ ସିନ୍ଦୁର ଉକ୍ତ ବାଳ ରାହୁମୁଖ ଚନ୍ଦ୍ରକୁ ଗ୍ରାସ କର ପାରଲ୍ଲ ନାହିଁ । କାରଣ ବାଳ ବନ୍ଧା ଥିବାରୁ ମୁହଁରେ ପଡ଼ିଲ୍ଲ ନାହିଁ ।

୧୨ । ଜ୍ୟୋଉ ମୋଉ—ଉଜ୍ଜ୍ୱଳ ମୁକ୍ତା, ଧଇର୍ଯ୍ୟ—ବବେକ, ଧରଣୀ—ପୃଥିବୀ ଗବାକ୍ଷ—ଖିଡ଼କ, ଶଶୀ—ଚନ୍ଦ୍ର, ଶ୍ୟାମଲ—ଶାଗୁଅବର୍ଣ୍ଣ, କମଳକଳା—ପଦ୍ମଅଂଶ; ବର୍ଷାଦନ, ସୁଧା—ଅମୃତ, ମୁଣ୍ଡରେ ଯୋଡ଼ି ନାଲି ଥିବାରୁ କଳା ବାଳରେ ଚକ୍ ଚକ୍ ଦେଖାଗଲ୍ଲ । ଏହା ଦେଖି ଯୁବାଙ୍କର ଧୈର୍ଯ୍ୟ ରହିଲ୍ଲ ନାହିଁ, ପୃଥିବୀରେ ନୀଳମଣି ପଡ଼ିଲ୍ଲ ପରି, ଖିଡ଼କିବାଟେ ଚନ୍ଦ୍ର କରଣ ପଡ଼ିବାରୁ ଯୁଡ଼ା ନାଲି ଦେଖାଗଲ୍ଲ ଶାଗୁଆ ବର୍ଣ୍ଣ ପଦ୍ମ ପାଖୁଡ଼ାରେ ଧଳା କାକର ପଡ଼ିଲ୍ଲକ ?

୧୩ । ବକ୍ର ଚନ୍ଦ୍ରିଗ୍—ଅଧାଚନ୍ଦ୍ର ତୁଲ୍ୟ ସୁନା ଗହଣା, ସୁନା ହୁବର୍ତ୍ସଗ୍ ଦେବାରୁ ଦେଖାଗଲା କାମ ଯମୁନା ( କଳାବାଳ) ଜଳକେଳ— ପାଣିରେ ଖେଳବା ସ୍ୱର୍ଣ୍ଣନାବ—ସୁନାନାହା, କ୍ଷେପଣୀ—ଅହୁଲା; ନରକ—ମନୁଷ୍ୟ ନାଗ—ସର୍ପ; ନାକ—ସ୍ୱର୍ଗ—ସ୍ୱର୍ଗମର୍ତ୍ତ୍ୟ ପାତାଳ ତିନପୁରରେ ଏ ଶୋଭାସଙ୍ଗେ ସମାନ ନୁହେଁ ।

୧୪ । ଅଲକା—ଅଲଙ୍କାର ବଶେଷ ଓ ମୁଣ୍ଡର ଆଗର ଛୋଟବାଳ; କର୍ବୁରିଉ—କୁଞ୍ଚୁକୁଞ୍ଚୁଆ; ଭୃଙ୍ଗ—ଭଅଁର, ଅବତଂସ—ପଡ଼ିବା ବାହାରବା, ନଳ—ବନ୍ଧୁକ ଅଗରେ ପଡ଼ିଥିବା ଚୂର୍ଣ୍ଣ କୁ ନ୍ତକୁ ଦେଖି ଭ୍ରମରମାନେ ଲଜ୍ଜା ପାଇଲେ ପୁଣି ତା ଦେହରେ ଝମ୍ପା ନାଇବାରୁ ପୁରୁଷମାନଙ୍କ ଦମ୍ଭ ଶେଷ ହେଲା । ସୁନା ନଳରୁ ଗୁଳ ଗଲାଭଳ ମାର ପୁରୁଷକୁ ମାରଲା ।

ଖଞ୍ଜିଲେ ଅଳୀ । ଏମନ୍ତ ଅଦ୍ଭୁତ ନ ଥିଲା ଦେଖା । ବିନା ମେଘରେ
ସ୍ଥିର ବିଦ୍ୟୁଲ୍ଲେଖା ସେ । ପାଶବେ ଧାଡ଼ିଏ ତାରା ଯେ । ଇଚ୍ଛାରେ ନେତ୍ର
ବନ୍ଦୀ ହେବ ମଣ୍ଡିଲା ଅନଙ୍ଗ ବିଚିତ୍ରକାରା ଯେ । ୧୫ । ଲଲାଟପଟ୍ଟ ଅର୍ଦ୍ଧ-
ପତ୍ର ପତ୍ର । ମୃଗମଦ ତହିଁ ତିଳକ କରି । ରାହୁ ବାଦ ଲଭି ନିଶାନାୟକ ।
ଭିଆଇ ଅଛି ଅଚଢ଼ଣୀ ଶାୟକ ସେ । ରହିଛି ସଯତ ହୋଇ ଯେ ।
ଅଳକା ନିସ୍ତମସୀମାକୁ ଲଙ୍ଘିଲେ ହାଣିବ ସଂଶୟ ନାହିଁ ଯେ । ୧୬ ।
କର୍ଣ୍ଣେ ତାଟଙ୍କ ମଣ୍ଡିଲେ ବିଗୁରି । କବି ଗୀଷ୍ପତି ନାହୁଁ ଅଛି ଧରି । ଜୀବ
ଭାର୍ଗବକୁ ବାନ୍ଧିଲା କି ସେ । ଆନନ ବେଳାପାଶେ ବେଳାପାଶେ ସେ ।
ନେତ୍ରାନ୍ତେ କରେ ତର୍ଜନ ଯେ । ଶ୍ରୁତିରେ ଉପମା ନାହିଁତ ବୋଲନ୍ତି
ଭ୍ରମେ କି କରି ବର୍ଣ୍ଣନ ହେ । ୧୭ । ରତନ ଫୁଲ ଅତିହିଁ ଯତନ । ଝଲକେ
ଝଲକା ଏ ଅନୁମାନ । ହର ମାରକୁ ଭସ୍ମ କରି ଦେଲା । ଏକାଛତ୍ରକ
ରତିଠାରେ ଥିଲା ସେ । ଜାଣି ଶୋଭାରେ ତାହାକୁ ଯେ । ଲୋକେ ବଡ଼ାଇ
ଜାଣିବାକ ଛଡ଼ାଇ ମଣ୍ଡନ କଲେ ଏହାକୁ ଯେ । ୧୮ । ମଲ୍ଲୀକଢ଼ୀଭିଁ ପର-
ପରା କହୁ । ମଣ୍ଡିଲେ ବେଣୀଖଞ୍ଜାପରା ସେହୁ । ଖଞ୍ଜିଲେ ସଜନୀ ଏହୁ
ବିବେକେ । ଭ୍ରମନ୍ତୁ ପୁଂସମନ ସଞ୍ଚରୀକେ ସେ । ତହିଁକେ ପଡ଼ିବ ପୁଣି ଯେ
ବାଳୀ ବୋଲି ବାଳୀ ଗୃପତି ଶାଙ୍କୋଳୀ ପାଶରେ ରଖିବେ ଅଛି ଯେ । ୧୯ ।

---

୧୫ । ଅଳକା—ମୁଣ୍ଡରଅଳକା, ଉଚ୍ଚେ—ଉପରରେ, ଝଲମିଲ ମାଳ—ସୁବ-
ର୍ଣ୍ଣର ଚକ ଚକିଆ ମୁଣ୍ଡର ମାଳା, ଅଦ୍ଭୁତ—ଆଶ୍ଚର୍ଯ୍ୟ, ବିଦ୍ୟୁରେଖା—ବିଜୁଳି
ଅନଙ୍ଗ—ମଦନ, ବିଚିତ୍ର—ଆଶ୍ଚର୍ଯ୍ୟ, କାରା—କଇଦଘର ।

୧୬ । ଲଲାଟପଟ୍ଟ—କପାଳ, ମୃଗମଦ—କସ୍ତୁରୀ, ନିଶାନାୟକ—ଚନ୍ଦ୍ର; ଅଚଢ଼ଣୀ
—ପାଖିକିଆ ଢ଼ାଲ, ଶାୟକ—ଶର, ସଯତ—ସ୍ଥିର, ନିସ୍ତମସୀମାକୁ
ଲଙ୍ଘିଲେ—ବିଶେଷ ଅଲ୍ଲାୟିତ ହେଲେ ।

୧୭ । ତାଟଙ୍କ—ଅଳଙ୍କାର, ବିଶେଷ କାପ, କବି—ଶୁକ୍ର, ବାଚସ୍ପତି—ବୃହସ୍ପତି,
ଜୀବ—ବୃହସ୍ପତି, ଭାର୍ଗବ—ଶୁକ୍ର; ଆନନ—ମୁହଁ, ନେତ୍ରାନ୍ତେ—ଅକ୍ଷି-
ଶେଷରେ, ଶ୍ରୁତି—କର୍ଣ୍ଣ ।

୧୮ । ହର—ମହାଦେବ, ମାର—କନ୍ଦର୍ପ, ଏକଛତ୍ରକ—ଏକା ସୁନ୍ଦରୀ
ଶିରୋମଣି ।

୧୯ । ମଲ୍ଲୀକଢ଼ି—ଅଳଂକାର ବିଶେଷ, ପରପରା—ଘରଘରା, ବିବେକେ—
ବୁଦ୍ଧିରେ; ସଞ୍ଚରୀକ—ଭ୍ରମର, ବାଳୀ—ସ୍ତ୍ରୀ, ବାଳୀ—କାଳ,
ଶାଙ୍କୋଳ—ବେଡ଼ି ।

ନେତ୍ର ଭ୍ରୂରୁ ବାଣ କମାଣ ଯୋଗେ । ମରମକୁ ଭେଦେ ବନା ପ୍ରୟୋଗେ । ଯାହା କଜ୍ଜ୍ୱଳ ଶାଣି ତହିଁ ଦେଲେ । ଅଜ କି ସଖୀ ସୃଷ୍ଟି ରଖିଥିଲେ ସେ । ବଜ୍ର ଭଙ୍ଗୀ ଧୃକୁମାରୀ ଯେ । କୁତ୍ସିତଜନକୁ ଏ ଶସ୍ତ୍ରେ ମାରିବ ନ ବନ୍ଧେ ଏହା ବିଗୃର ଯେ । ୨୦ । ଶ୍ରବଣକୁ ଯାହା ଲଞ୍ଜି ଲଗିଛି । ସେ କି ଅଧିକ ଡ଼ାକ ଶିଖାଉଛି । ବ୍ରହ୍ମହତ୍ୟା ହେବ ଧାତା ବଧରେ । ତୋ ଅବ କୁରଙ୍ଗ ହରତ ଧରେ ସେ । ପାରିଲେ ତାହାକୁ ମାର ଯେ । ଚାହିଁ ଚାହିଁଛି ବୋଲିଛି ଖୋଜିବାରେ ଚଞ୍ଚଳ ଗଡ଼ଙ୍କ ତାର ଯେ । ୨୧ । ଘୋଣାରେ ଦେଲେ ମୋତି ନାକଚଣା । ଠିକଣା କର ଏ ଉପଲକ୍ଷଣା । ମାର ନେବ ମନମୀନ ଓଠାର । ଥୋପ ଲଗାଇ କି ବଡ଼ଶୀ ଧର ସେ । ପୁଟେକେ ମାଣିକ୍ୟ ଗୁଣା ଯେ । ଦୁଟେକେ କି ଦଶେ ଅନଳ ଜ୍ୟୋତି ମେ ଛଟକେ କରୁଛି ବଣା ଯେ । ଗଣ୍ଡେ ଗୃଣ୍ଡେ କର ମକରୀ ଟଳ । ମୁକୁରବମ୍ବେ କି ତମାଲବଲ୍ଲୀ । ଚିବୁକେ ଭ୍ରମରୀ ଓଷ୍ଠ ବନ୍ଧକୁ । ମଧୁ ନ ପିଏ କି ଏହୁ ବିବେକୁ ସେ । ନାସା କୀର ଅଛି ଟାମି ଯେ । ବମ୍ବ ହୋଇ ଥିଲେ ଜମ୍ବୁ ବୋଲି ମୋତେ ନ ପୁଣ ଚଞ୍ଚୁରେ ଗୁପି ଯେ । ୨୩ । କଣ୍ଠେ ଦଅନ୍ତେ ମୋତି ଗୃପସରୀ । ରହିଲେ ଉପମାଏ ଅପସରି । କି କମ୍ବୁ ଜିଣିଲ ଯଶ ପ୍ରକାଶ । ମଉ କପୋତେ କି କରୁଛି ହାସ ସେ । ଯୋଡ଼ମାଳି କାଚମାଳୀ ଯେ । ଅଭ ମାଳାଅଳି ଟକଟେକ କହିବା ଯେତେବେଳେ ମଣ୍ଡିଲେ ଅଳି ଯେ । ୨୪ ।

---

୨୦ । ନେତ୍ର—ଆଖି, ଭ୍ରୂରୁ—ଭୂଲତା, କମାଣ—ବନ୍ଧୁକ, ମରମ—ଦେହ, ଭଙ୍ଗୀ—ପଣ୍ତିତା, କୁତ୍ସିତ ଜନ—ସାମାନ୍ୟ ଲୋକ ।

୨୧ । ଶ୍ରବଣ—କାନ, ଲଞ୍ଜି—କଳାରଗାର, ଧାତା—ବିଧାତା, ବଧ—ବିନାଶ କୁରଙ୍ଗ—ମୃଗ ।

୨୨ । ଘୋଣା—ନାକପୁଡ଼ା, ଉପଲକ୍ଷଣା—ଉପମା, ପୁଟେକ—ପୁଡ଼ାରେ, ଅନଳ—ଅଗ୍ନି,

୨୩ । ଗଣ୍ଡେ—ଗାଲରେ, ଗୃଣ୍ଡେ—ଶୀଘ୍ରେ; ମକରୀ—ମକରରୂପ ଚିତ୍ର, ମୁକୁର ବିମ୍ବ—ଅରସୀ, ତମାଲବଲ୍ଲୀ—ତମାଲପତ୍ର, ଚିବୁକେ—ଗାଲରେ, ଭ୍ରମରୀ—ଚିତ୍ରମାଛି, ବିମ୍ବ—ପାଚିଲା କଇଁଖିକାକୁଡ଼ି, କୀର—ଶୁଆ, ଜମ୍ବୁ—ଜାମୁକୋଳି ।

୨୪ । ଗୃପସରୀ—ଚିକ, ଅପସର—ଘୁଞ୍ଚି, କମ୍ବୁ—ଶଙ୍ଖ, ଯୋଡ଼ମାଳ—ମାଳସରୁ,

ଫୁଲ ଲମ୍ବି ଭଲ୍ଲ ଚରମ ଶୋଭା । ଖେଳାଇବା ପାଇଁ ଉରମ ପ୍ରଭା । ଶତପେ
କାମ କ ମଣ୍ଡନ ଭଲ୍ଲ । ନୀଳରଙ୍ଗ ପୀତବର୍ଣ୍ଣେ ଶୋଭଲ୍ଲ ସେ । ବଚନ ଦୃଷ୍ଟି
ପ୍ରକଟି ଯେ । କ ଇନ୍ଦୀବର ଶୋଣକଞ୍ଜ କୁମୁଦ କର୍ଜଳ ନଦୀରେ ଫୁଟି ଛପ ।
ରୋମାବଳୀ-କର ଅଟ୍ଟ ପ୍ରସାର । ଯଉବନ ଗଜ କୁଚ ଅମଗ୍ର । ଗ୍ରୈଲ
ଘୋଡ଼ଣୀ କ ମଣ୍ଡନ ହାର । ପ୍ରବାଳ ମାଳା କ ବଜ୍ରଲଂହୃ ସେ । ପଦକ
ମାହୁନ୍ତ ସ୍ଥାନୀ ଯେ । ଧନ୍ୟ ଧନ୍ୟ ସ୍ୱମା ସୁଷମା ଭଲେ ତା ଏହି ଉପମାକୁ
ଘେନ ଯେ । ୨୭ । ବାଜୁଟିସାର ଭ୍ରବ ଦେଲେ ତାହିଁ । ଲ୍ଲାନ ତାଡ଼ନକ
ତାଡ଼କ ବହି । ଅତୁଲ୍ୟତାରେ ମଣିବନ୍ଧ ପଛେ । ଅତୁଲ୍ୟ ମଣ୍ଡିଲେ
ଅତ୍ୟନ୍ତ ପୁଚ୍ଛେ ସେ । ଦେଲେ ମରକତ ଚୂଡ଼ ଯେ । ସଖୀମାନେ ଦାମ
ଭ୍ରମରେ ଭ୍ରମରେ ଭ୍ରମରେ କ ଅବା ଜଡ଼ ଯେ । ୨୭ । ସଖୀମାନେ ପାଞ୍ଚ
ଅଙ୍ଗୁଳି ଗୃହିଁ । ଭଲେ ପାଞ୍ଚ ପାଞ୍ଚ ନାରାଚ ଏହି । ପାଞ୍ଚନାରାଚ ଭସ୍ମ
ହେଲ୍ଲ ଦିନ । ଥୋଇଲେ କ ଦେଖି ଏ ରମ୍ୟ ସ୍ଥାନ ସେ । ଭେଦିବ
ପଞ୍ଚମନକୁ ଯେ । ପଞ୍ଚ ରତ୍ନ ଦେଇ ପୂଜା କରିବା କ ବୋଲି ମୁଦ ଦେଲେ
ତାକୁ ଯେ । ୨୮ । ହରିତାଳ କାଳୀ ଘେନି ବନିତା । ପଦ ଉପରେ ଉକୁ-

୨୫ । ଫୁଲ—ଝୁମ୍ପା, ଚରମ—ପିଠି, ପ୍ରକଟ—ପ୍ରକାଶ ହୋଇ, ଇନ୍ଦୀବର—
ଚନ୍ଦ୍ର, ଶୋଣକଞ୍ଜ—ରକ୍ତକଇଁ ।

୨୬ । ରୋମାବଳୀ—ଲୋମସବୁ, କର—ହାତ, ହାଣ୍ଡିସ୍ୱର୍ଣ୍ଣ କଳଶ, ପ୍ରସାର—
ଲମ୍ବାଇ, ଗଜ—ହାତୀ, ଅମଗ୍ର—ଦେବସ୍ତ୍ରୀ, ଗ୍ରୈଲ—କାଞ୍ଚଲା
ଘୋଡ଼ଣୀ—ଘୋଡ଼ହେବା ଜିନସ, ହାର—ହାର, ପ୍ରବାଳ—ପୋହଳା,
ସୁଷମା—ସୁନ୍ଦର,

୨୭ । ବାଜୁଟିସାର—ହାତର ଉତ୍ତମ ବାଜୁ, ଭ୍ରବ—ଚନ୍ଦ୍ରାକାର, ତାଡ଼ନକ—
ଯେ ତଉଦଏ, ତାଡ଼କ—ତାଡ଼୍, ମଣିବନ୍ଧ—ହାତଗଣ୍ଠି, ଅତୁଲ୍ୟ—ଖଞ୍ଜୁ-
ବଶେଷ, ଅନୁପମ ସ୍ୱଚ୍ଛେ—ପରିଷ୍କାର ଭାବେ, ଗୌରବର୍ଣ୍ଣ ହାତରେ
ମର୍କତ କ କଳଙ୍କାଇଁ ରହିବ ଚୂଡ଼ ଦେବାରୁ ଭ୍ରମର କ ଭଅଁର ମାନେ
ଭ୍ରମରେ କେତକୀ ଫୁଲରେ ବସି ଚୁମ୍ବିଲ୍ଲ ପରି ଦେଖାଗଲ୍ଲ ।

୨୮ । ପାଞ୍ଚ—ଭ୍ରବବା, ପାଞ୍ଚ ନାରାଚ—କନ୍ଦର୍ପର ଫୁଲଧନୁ, ରମ୍ୟ—ସୁନ୍ଦର,
ଭେଦିବ—ଭେଦ କରିବ, ପଞ୍ଚମନକୁ—ମନଭିତରକୁ, ପଞ୍ଚରତ୍ନ—ପାଞ୍ଚ-
ପ୍ରକାର ରତ୍ନ ।

ଟାଇ ଶିରୀ । ସୁନାକଚ୍ଛପ ବନ୍ଧ ବିରଚନା । ଫୁଙ୍କିଲେ ତହିଁ ମରକତ ମୀନା
ସେ । ବେଢ଼ରେ ସରୁ ଅଳତା ଯେ । ପାଟସୂତ୍ର ଫାନ୍ଦେ ଫାନ୍ଦିଲା ତାହାକୁ
କବା କଉତୁକୀ ଧାତା ଯେ । ୨୯ । ହଂସକ ଯାହାଟି ହେଲେ ବା ପାଦେ ।
ହଂସଙ୍କୁ ଏମନ୍ତ କହିବ ନାହେ । ଇଚ୍ଛାରେତ ସମ ନୁହ ଗତିକ । ଭୀତ
ନ ଲଭିବ କହୁ ଏତିକ ସେ । ତୁମ୍ଭେତ ପୋଷିଲା ପକ୍ଷୀ ଯେ । ଅଧି ନ ଥିବାର
ଚିତ୍ରନ ଲକ୍ଷିବାର ତୁମ୍ଭର କି ଦୋଷ ଅଛୁ ଯେ । ୩୦ । ବଳା ପାଦେ ଅଛୁ
ଅବଳା କେହୁ । ଏହୁ ବସ୍ତୁରେ କି ଝଞ୍ଜିଲେ ସହୁ । ହୋଇଅଛୁ ପୁଣି ଅତି
ଚମକ । ଯୁବା ଚେତନା ଚମକ ଠମକ ସେ । ଝଞ୍ଜିଲେ ମଞ୍ଜୁ ମଞ୍ଜୀର ସେ ।
ତ୍ରିପୁର ତ୍ରିପୁର ପର ଅତୁରକୁ ସ୍ମର କି ସାଜିଲା ତୂର ଯେ । ୩୧ । ଛଡ଼ା-
ଇବ ସେ ଝିଙ୍କାସି ଝଙ୍କାର । ବଢ଼ାଇବ ପୁଣି କାମ ବିକାର । ପ୍ରପଦେ
ଦେଲେ ଝୁଣ୍ଟିଆ ବାଜେଣୀ । ନ ଜାଣି କାହିଁକି ଏଡ଼େ ସାଜେଣି ସେ ।
ସହଚରୀ ହୋଇ ଲୋଭି ଯେ । ଶାଢ଼ୀ ପାଲଟିବା ପାଇଁ ସେ ଅବନୀଶୋଭି
କହାଇଲେ ଜଭି ଯେ । ୩୨ । ତାହାର କଲେ ନୀଳ ଝୀନ-ଶାଢ଼ୀ । ସିନ୍ଦୂରି
ଧଡ଼ୀ ଫୁଲ ଲଙ୍ଗ ପଡ଼ି । ରଖିଲେ ରହିବ ମୁଠା ଭିତରେ । ସତେ ରଖିଥିଲେ
ବଂଶନଳରେ ସେ । ଉହ୍ଲେଲ କୁଞ୍ଚିଲେ ସଖୀ ଯେ । ବାଳା ବଳ ଅଙ୍ଗ
କାନ୍ତି ପିନ୍ଧାଇଲେ ଉପମା ଏ ହୁଣ୍ଡ ଦେଖିଯେ ।୩୩। ଉରଜେ ପଡ଼ ମୋହିଲା

---

୨୯ । ହରିତାଳୀ—ହଳଦିଆ ରଙ୍ଗ, କାଳ—ସ୍ୟାହି, ବନିତା—ସ୍ତ୍ରୀ, ଉକୁଟାଇ
—କୁଟି, ସୁନାକଚ୍ଛପ—ସୁନା କଇଁଛ, ମୀନା,—ଝଞ୍ଜିବା, ବେଢ଼ରେ—
ଗୋଡ଼ରେ, ପାଟସତ୍ର—ପାଟସୁତା, କଉତୁକ—କୁତୂହଳୀ, ଧାତା—
ବିଧାତା, ମରକତରେ ନୀଳରଙ୍ଗ ମୀନାକଲା ପରି ଗୋଡରେ ଅଳତା
ଥିବାରୁ ପାଟ ସୁତାରେ ଗୁନ୍ଥିଲା ପରି ଦେଖାଗଲା ବିଧାତା କୌତୁକରେ
ଏହା କରିଛନ୍ତି ?

୩୦ । ହଂସକ—ବଳା; ଗତିକ—ଚାଲିକି, ଭୀତ—ଭୟ; ଲକ୍ଷିବାର—ଦେଖି-
ବାର ।

୩୧ । ଅବଳା—ସ୍ତ୍ରୀ, ଚମକ—ଚମକାଇବା, ଠମକ—ବାଦ୍ୟ, ମଞ୍ଜୁ—ସୁନ୍ଦର,
ମଞ୍ଜୀର—ପାଦଭୂଷଣ, ତ୍ରିପୁର—ସ୍ୱର୍ଗମର୍ତ୍ତ୍ୟ ପାତାଳ ତିନିପୁର, ତ୍ରିପୁରପର
—ମହାଦେବ, ଅତୁର—ଅସ୍ଥିର, ସ୍ମର—କନ୍ଦର୍ପ, ସାଜିଲା—ଠିକକଲା,
ତୂର—ଶର,

୩୨ । ଝିଙ୍କାର—ଝିଣ୍ଟିକା ବିଶେଷ, ଝଙ୍କାର—ଶବ୍ଦ, କାମ ବିକାର—କାମଭାବନା
ପ୍ରପଦେ—ପାଦତଳରେ, ଅବନୀଶୋଭି—ପୃଥିବୀ ମଣ୍ଡଳୀ ।

୩୩ । ଝୀନ—ସରୁ, ବଂଶନଳୀ—ବାଉଁଶ ନଳ, ଉହ୍ଲେଲେ—ସଜାଡ଼ିଲେ
କୁଞ୍ଚିଲେ—କୁଞ୍ଚକଲେ । ବାଳା—ଲାବଣ୍ୟବତୀ ।

ଓନେବକୁ । ମୃଦ ଥୋଇଲ୍ଲ କ ଢଳାଛବକୁ । ଷ୍ଟିର ଦୁର ଲୂଚ ରୁଚ ଦଶିଲ୍ଲ । ଯନ୍ତ୍ରୁମ୍ବୀ କ ନୀଳକକ୍ଷ ବଳ୍ଲ ସେ । ତ୍ରିବୋଣ ଚେଲକଯନେ ଯେ । ବେମାବଳୀଦଣ୍ଡ ମଣ୍ଡନ ଚଞ୍ଚଳ ପଷ୍ୟ ପରତେ ମନେ ଯେ । ୩୫ । ନିବଡ଼ ନୀବୀ ଛବ ଗଲ୍ଲ ଜଣା । ଢାପ ମନ୍ଦରେ ଜାଗ୍ରତକୁ ଠଣା । ରଚିଲେ କୁଞ୍ଜା ଅଚେଗ ଲମ୍ବି ପଡ଼ । ଜାଣେ ମଦନ ଯାଉଥିଲ୍ଲ ପୋଡ଼ି ସେ । ଜୀବ ଦେବ ଢଚେ ଶାନ୍ତି ଯେ । ଯୁବାଙ୍କ ଅଧୋଗତଙ୍କ ବଢ଼ୁବ କ ତେମନ୍ତ ଏ ଧୂମପନ୍ତ୍ର ଯେ । ୩୬ । ବାଜିବା ବେଳକୁ ଯେଉଁ ରସନା । ଯୋଗିଙ୍କ ବୋଲିବ ଯୋଗେ ରସ ନା । ଯୋଗିଙ୍କ ବୋଲିବ ଯୋଗରେ ରସ । କଳାକେଳ ରସ ଲଭ ବରସ ସେ । ଭାବ କେଶଗ୍ର-କଟିକ ଯେ । ଅତ ହରଷରେ ବାନ୍ଧଲେ ବାନ୍ଧବୀ ବାଜେଣୀ କ୍ଷୁଦ୍ରଘଣ୍ଟିକ ଯେ । ୩୭ । ଭୁଞ୍ଜାଇଲେ ତଥି ଉତ୍ତରୁ ପାନ । ଏବେ ଅଧର ଦୁକେ ପରସନ । ବନ୍ଦ୍ରୁମ ଉପି ରଙ୍ଗାଇଲେ ପୁଣ । ଅରୁଣ ବଳ୍ଲ କ ସିନ୍ଦୂରେ ସ୍ନାନ ସେ । ଶ୍ରୀକରେ ମୁକୁର ଦେଇ ଯେ । ହେଲ୍ଲ କ ନୋହିଲ୍ଲ ବୋଲି ପଚ୍ଚୁରଲେ ରମଣୀ ହସିଲ୍ଲ ହୋଇ ଯେ । ୩୮ । ଘୋଡାଇଦେଲେ ଯେ ଜର ଘୋଡ଼ଣୀ । ଶମ୍ପାରେ ଅଚ୍ଛାଦତ ନୀଳମଣି । ବେ୍ପଣ ଚନ୍ଦ ଅତୁଳା ପିତୁଳା । କେ ବଳ୍ଲ ଢର କେହି ସ୍ଥିର ହେଲ୍ଲ ବେ । ଅଷିପକ୍ଷୀ-ଅଠା-ଢାଠୀ ଯେ । ଘୋଡ଼ାଇ ଦେଲେ କ ଏହି ଭାବନାରେ ଦନାଢେତେ ଥାଉ ସୃଷ୍ଟି ଯେ । ୩୯ । ହରଣ୍ୟତନୁରେ ଯେ ଷଡଢାଗ୍ର । ଦାସବହ୍ନଲ

---

୩୪ । ଉରଜେ—ସ୍ତନରେ, ନେଏକୁ—ଅଷିକ, ମୁଦ୍ର—ବନ୍ଦକର, ଛନ୍ଦ—ଛନ୍ଦା ଷ୍ଟିର—ପିଣ୍ଡ, ରୁଚ—ସୁନ୍ଦର, ଯନ୍ତ୍ରୁମ୍ବୀ—ନାଉଫଳ ବାଜା, ନୀଳକକ୍ଷ ନେଳଅରଙ୍ଗା, ତ୍ରିବେଣୀ—ତନ କୋଣିଆ, ଚେଲ—ଷେଠେକୁରୁଢା, ଚଞ୍ଚଳ—ପତାକା, ପରତେ—ବିଶ୍ୱାସ,

୩୫ । ନିବଡ଼—ଗାଢ଼, ନିବୀ—କଛା, ଜାଗ୍ରତ—ଚେତନା, ଠଣା—ସ୍ଥାନ, ଜୀବ—ପ୍ରାଣ, ଅଧୋଗତ—ମନ୍ଦଦଶା, ଧୂମପନ୍ତ୍ର—ଧୂଆଁସରୁ ।

୩୬ । ରସନା—ଜିଭ, ରସ ନା—ମନ୍ତ୍ରନାହିଁ, କେଶଗ୍ର କଟି—ସିଂହ କଟି, କଳାକେଳ—ରତ ।

୩୭ । ଭୁଞ୍ଜାଇଲେ—ଖୁଆଇଲେ, ଅଧର—ଓଷ୍ଠ, ପରସନ—ପ୍ରସନ୍ନ, ସୁନ୍ଦର, ବନ୍ଦ୍ରୁମ—ପୋହଳା, ଅରୁଣ—ବାଳରବ, ମୁକୁର—ଅରସି ।

୩୮ । ଶମ୍ପା—ବିଜୁଳି, ସୃଷ୍ଟି—ପୃଥିବୀ ।

ଲାବଣ୍ୟବତୀ ଉପରେ ଜରଘୋଡ଼ଣୀ ଘୋଡ଼ାଇ ଦେବାରୁ ବିଜୁଳିପରି ଚକ୍ ଚକ୍ ଦେଖାଗଲ୍ଲ, ଚନ୍ଦ୍ରପିତୁଳାକୁ ଦେଖିଲେ ଯେପରି

ସ୍ମର ନରହରି । ଯାହେ ଅଜ୍ଜତ ଅଘ କରି ହତ । ଉପଇନ୍ଦ୍ର ଭଞ୍ଜବର
ରଚିତ ଯେ । ଏ ରସିକସିନ୍ଧୁ ଗ୍ରନ୍ଥ ଯେ । କବି ସେ ଜାଣିବେ ଉପଭୋ-
ଗମ ଏଥି ଏ ବେଶପେଶଲ ଗ୍ରନ୍ଥ ଯେ । ୩୯ ।



## ପଞ୍ଚମ ଛାନ୍ଦ ।

### ରାଗ ବସନ୍ତ ।

### ଲାବଣ୍ୟବତୀର ଉପବନ ବିହାର ।

ଏହି ସମୟରେ ସୁନ୍ଦରୀ ଗୃହରେ ପ୍ରଭାମଞ୍ଜୁଳା ଜଣାଇଲା । ଅତି-
ମଧୁର ମଧୁଋତୁ ପ୍ରବେଶ କରିଛୁ ବନ ହେଲା ହୋଇଲା । ଶ୍ରବଣେ । କରି
ନାହିଁ ନବକାମିନୀ । ପିକବଚନେ ପୁନଃପୁନଃ ପ୍ରକାଶ କଲାଣି ଅନ୍ଧାର
ଯାମିନୀ । ୧ । ମଳୟଶିଖରଶିରୀ ଗ୍ରହି କରି ବହିଲାଣି ମନ୍ଦସମୀର ।
ସୁମନାଙ୍କୁ ବାସ ଗ୍ରହିଛି ନେବଟି ବୋଲି କହିଲାଣି ଭ୍ରମର । କେଶର ।
କେଶରେ ହେଲେଣି ମଞ୍ଜୁଳ । କେଶରେ ମଣ୍ଡନ କରିବା ଭଳିରେ
ଫୁଟିଲେଣି କେତେ ବଞ୍ଜୁଳ । ୨ । ମଲ୍ଲୀ ମାଧବୀ ମକରନ୍ଦ ସାଧବୀ

---

ମନ ଲାଖିରହେ ଅଠା କାଠିରେ ପକ୍ଷୀ ଯେପରି ଲାଖି ରହେ—ଲାବଣ୍ୟ-
ବତୀର ରୂପ ମାଧୁର୍ଯ୍ୟରେ ସେହିପରି ଜନଙ୍କ ମନ ଲାଖିଯିବ ପୃଥ୍ୱୀ ନଷ୍ଟ
ହେବ ଭାବି ଘୋଡ଼ାଇ ଦେଲେ ।

୩୯ । ହିରଣ୍ୟ—ରାକ୍ଷସ, ତନୁ—ଦେହ, ଖଡକାସ୍ୟ—ଖଣ୍ଡିଆକାସ୍ୟ—ଅର୍ଥାତ୍
ହିରଣ୍ୟ ଅସୁର ଦେହକୁ ଯେ ବିଦାରଣ କରିଥିଲେ, ଅଜତ—ଅତ୍ୟନ୍ତ,
ଅଘ—ପାପ, ହତ—ନାଶ, ପେଶଲ—ସୁନ୍ଦର ।



ଭାବାର୍ଥ—ଲାବଣ୍ୟବତୀଙ୍କ ସଖିମାନେ ସବୁ ଗହଣା ଓ ଲୁଗା ପିନ୍ଧାଇଦେଇ ହାସ
ପରିହାସ କଲେ ।

### ୫ମ ଛାନ୍ଦ

୧ । ମଧୁର—ମନୋହର, ମଧୁଋତୁ—ବସନ୍ତଋତୁ, ନବ—ନୂଆ, କାମିନୀ—ସ୍ତ୍ରୀ,
ପିକବଚନ—କୋଇଲି କଥା ବା ସ୍ୱର, ପୁନଃପୁନ—ଥରକୁ ଥର,
ଯାମିନୀ—ରାତ୍ରୀ ।

୨ । ମଳୟ ଶିଖର—ମଳୟ ପର୍ବତ, ଶିରୀ—ଶୋଭା, ମନ୍ଦ—ଧୀର, ସମୀର—
ପବନ, ସୁମନା—ଫୁଲ, ସ୍ତ୍ରୀ ବା ବାସ ଓ ବାସନା ଲୁଗା, ଭ୍ରମର—
ଭଅଁର, ପୁରୁଷ, କେଶର—ନାଗେଶ୍ୱର ଫୁଲ, କେଶରେ—ବାଳରେ
ଜୁଡ଼ାରେ, ମଞ୍ଜୁଳ—ସୁନ୍ଦର, ବଞ୍ଜୁଳ—ଅଶୋକ ଫୁଲ ।

ହେଲେଣି ବାନ୍ଧବ କାନନେ । ତୁଷାର ନାଶ ଗୃହୁଁ ହାସ ପ୍ରକାଶ କଲେଣି ପଙ୍କଜ-ଆନନେ । ହେଲାଣି । ଚର୍ଚ୍ଚରୀ ପ୍ରକଟ ଛଟକେ । ଅତନୁ ଫୁଲର-ବିଶିଖ କାର୍ମ୍ମୁକ ଘେନି ଚଳିଲାଣି କାମୁକେ । ୩ । ଦୋଳା ଲୀଳା ସରିଗଲାଣି ହରର ଶରୀର ହେଲାଣି ସ୍ୱେଦକୁ । ଚନ୍ଦନ କର୍ପୂର ସୁଧାଲେପପୂର ବ୍ୟଜନ ବଢାଇ ମୃଦକୁ । ଚତୁର । ଜାଣି ନ ଥିବୁ ତୁ କିପାଇଁ । ଅଭ ଅଭିରାମ ଆରାମ ଦେଖିବା ବଢେ ଭରିବାକୁ ଜଣାଇ । ୪ । ସଜନୀ ନିକର ଜାଣି ସାଉକାର ମାର୍ଗ ପରିଷ୍କାର ରଚିଲେ । ଅମଳ କମଳ କୋମଳଚରଣ ପୀଡ଼ା ନୋହିବାକୁ ପାଞ୍ଚିଲେ । ପନୀରେ । ଗନ୍ଧସାର ଗୋଳି ସିଞ୍ଚିଲେ । ଯୁବତୀ ସେବତୀ ପାଖୁଡା ମିଶାଇ ଘନସାର ଚୂର ବିଞ୍ଚିଲେ । ୫ । ଝରି ପରିଖ ବିଞ୍ଚଣା ପାନମୁଣ୍ଡା ସଜନୀ ସଜାଡିଲେ ତହିଁ । ମନ୍ତ୍ରୀନନ୍ଦନା ଜଗତବନ୍ଦନାଙ୍କୁ କରଭର ଦେଇ ଉଠାଇ । ସୁନ୍ଦରୀ । ସୃଷ୍ଟି ରାଜାରାଜକୁମାରୀ । ବଗୁର ଶ୍ୱେତଆତପତ୍ର ଟେକିଲେ ଚାମର ଚାଳନ ପ୍ରଚୁର । ୬ । କେଉଁ ପ୍ରବୀଣା ବୀଣାକୁ ବଜାଉଛି ଯାଉଛି ପ୍ରୋଷିତ ହେଉଛି । ବନ୍ଧୁରେ ବନ୍ଧୁର ବାଟଟି ଏଥିରେ ସାବଧାନ ଥାଅ କହୁଛି । ଗମନେ । କେମନ୍ତ ମୁଁ ମନେ କରଇ । ମନମଥ ରଥଯାତ୍ରା କି କରୁଛି ପଥ ମନୋରଥ ପୂରାଇ । ୭ । ଲଲାଟ ଲପନ ଗୃଦ ଦରପଣ ଚିକୁର

---

୩ । ମକରନ୍ଦ—ମଧୁ, ସାଧ୍ୱୀ—ସୁଲକ୍ଷଣୀ ସ୍ତ୍ରୀ, ବାନ୍ଧବୀ—ସଜନୀ (ଲାବଣ୍ୟବତୀ) କାନନେ—ବଣରେ, ତୁଷାର—ବରଫ, ପଙ୍କଜଆନନେ—ପଦ୍ମ ମୁଖରେ, ଚର୍ଚ୍ଚରୀ—ପିଚକାରୀ, ପ୍ରକଟ—ପ୍ରକାଶ, ଅତନୁ—କନ୍ଦର୍ପ, ବିଶିଖ—ଶର, କାର୍ମ୍ମୁକ—ଧନୁ, କାମୁକେ—କାମାଶକ୍ତ ପୁରୁଷମାନେ ।

୪ । ସ୍ୱେଦ—ଝାଳ, ଲୀଳା—ଖେଳ, ସୁଧାଲେପ—ଚୂନଲିପା, ବ୍ୟଜନ—ବିଚଣା, ମୃଦକୁ—ବନ୍ଦହେବାକୁ, ଅଭ—ବର୍ତ୍ତମାନ, ଅଭିରାମ—ସ୍ନେହ, ସୁନ୍ଦର, ଆରାମ—ବଗିଚା ।

୫ । ସଜନୀନିକର—ସଖୀସବୁ, ସାଉକାର—ସମ୍ମତ, ମାର୍ଗ—ବାଟ, ଅମଳ—ପରିଷ୍କାର, କମଳ—ପଦ୍ମ, ପନୀର—ସୁବାସଜଳ, ଗନ୍ଧସାର—ଚନ୍ଦନ, ଘନସାର—କର୍ପୂର ।

୬ । ଝରି—ପାଣିମାଠିଆ, ପରିଖ—ପିକଦାନୀ, ପାନମୁଣ୍ଡା—ପାନରହିବାଯାଗା, କରଭର—ହାତଦେଇ, ସୃଷ୍ଟି—ସଂସାର (ଏଠାରେ ସ୍ତ୍ରୀ ସଂସାର) ରାଜା—ଶ୍ରେଷ୍ଠ—ସବୁ ସ୍ତ୍ରୀ ମାନଙ୍କ ମଧ୍ୟରେ ଶ୍ରେଷ୍ଠ ସେ ରାଜକନ୍ୟା, ଶ୍ୱେତ—ଧଳା ଆତପତ୍ର—ଛତା, ଧଳାଛତା ।

୭ । ପ୍ରୋଷିତ—ପ୍ରବାସ, ବନ୍ଧୁର—ଅବଡ଼ା ଖାବଡ଼ା, ବନ୍ଧୁର—ଲବଣ୍ୟ-

ଚାମର ଯହିଁରେ । ତରଙ୍ଗ କୁରଙ୍ଗନୟନ ତୁରଙ୍ଗ କି ରଙ୍ଗ ଭରଇ ତହିଁରେ । କଳସ । ଚକ୍ର କୁଚ ଶ୍ରୋଣୀ ଚଟୁଳ । କଟୀମେଖଳା ଘଣ୍ଟି ଯହିଁ ପ୍ରକଟି ଅଞ୍ଚଳ ପତାକା ଚଞ୍ଚଳ । ୮ । ଶୋଭା ଏ ବଧୂରେ ପ୍ରବେଶ ସଧୀରେ ପୀନସ୍ତନୀଏ ବିପିନରେ । ବୁଲିବା ଖେଳିବା କୁସୁମ ତୋଳିବା ଆର-ମ୍ଭିଲେ ତୋଷମନରେ । ତହିଁରେ । ଛଳ ଉକ୍ତିମାନ କହିଲେ । ଶୁଣି ପରଭୃତ ଚକିତ ସ୍ତମ୍ଭିତ ମୁନିବଲ୍ଲଭଙ୍କ ବହିଲେ । ୯ । କହେ ଏକ ନାରୀ ବିଶେଷେ ସୁନାରୀ ଏ ଦେଶରେ ବାସ କରନ୍ତି । ଭୃଙ୍ଗ କଂପୁରୁଷ ଚଞ୍ଚଳମାନସ ଏଥି ତଥି ପୂଶି ଯାଉଛନ୍ତି । ତହିଁକି ଛଳକହିଲା କେଉଁ ଭୀରୁ । ମହାବିବେକୀ ହୋଇ ତୁହି କପାଇଁ ମଧୁପ ନାମକୁ ବିସ୍ମରୁ । ୧୦ ।

---

ବଣିର (ସଙ୍କୀର୍ଣ୍ଣ) ବୀଥି—ବାଟ, ମନୋରଥ—ମନକାମନା, ଲାବଣ୍ୟବତୀ ଯିବାରୁ ବାଟରେ କନ୍ଦର୍ପର ରଥ ଗଲାପରି ଦେଖା ଯାଉଛି ।

୮ । ଲଲାଟଲପନ—ମୁଣ୍ଡ ଓ ମୁଖ, ଚନ୍ଦ୍ର—ଚନ୍ଦ୍ର, ଦର୍ପଣ—ଆରସି, ଚିକୁର—ବାଳ, ଚାମର—ଚଅଁର, ତରଙ୍ଗ କୁରଙ୍ଗନୟନ—ତରଳ ମୃଗନେତ୍ର. ତୁରଙ୍ଗ—ଘୋଡ଼ା, କୁଚ—ସ୍ତନ, ଶ୍ରୋଣୀ—ପିଚ୍ଛ, ପ୍ରକଟି—ପ୍ରକାଶ ହୋଇ, ଅଞ୍ଚଳ—କାନି ।

ଆଉପଦରେତ ମନ୍ମଥରଥ ସହ ଲାବଣ୍ୟବତୀର ଗତିକ ଦିଆଯାଇଛି— ଯେଣି ରଥରେ ତ ଚନ୍ଦ୍ରାତପ ଦର୍ପଣ ଥାଏ.ଏ ଲାବଣ୍ୟବତୀ ରଥରେ ତାର ମୁଣ୍ଡ ହେଲା ଚନ୍ଦ୍ର—ମୁହଁହେଲା ଦର୍ପଣ, ରଥ ପାଖରେ ଚଅଁର ପଡ଼େ, ଏହାର ବାଳହେଲା ଚଅଁର, ରଥରେ ଘୋଡ଼ା ଲାଗିଥାଏ—ଏହାର ତରଳ ଆଖି ହେଲା ଘୋଡ଼ା ପରି, ରଥରେ କଳଶ ଓ ଚକ୍ର ଥାଏ । ଏ ରଥରେ ସ୍ତନ ହେଲା କଳଶ, ପିଚ୍ଛହେଲା ଚକ୍ର—ରଥରେ ଘଣ୍ଟିବାଜେ ଏହାର କଟି ଘାଗୁଡିହେଲା ଘଣ୍ଟି, ରଥରେ ପତାକାଥାଏ ଏହାର କାନି ହେଲା ପତାକା ।

୯ । ପୀନସ୍ତନୀଏ—ଉଚ୍ଚସ୍ତନୀଏ, ବିପିନରେ—ବନରେ ଫୁଲ ବଗିଚାରେ, କୁସୁମ—ଫୁଲ, ପରଭୃତ—କୋକିଳ, ମୁନିବଲ୍ଲଭ—ଋଷିପ୍ରକୃତ । ଅର୍ଥାତ୍ ଏହାଙ୍କ କଣ୍ଠସ୍ୱରରେ କୋକିଲ ହାରିଯାଇ ଋଷିଙ୍କ ପରି ତୁନି ହେଲା ।

୧୦ । ସୁନାରୀ—ବଣିଆ, ସୁନାରୀ ଫୁଲଗଛ, ଉତ୍ତମ ସ୍ତ୍ରୀ, ଭୃଙ୍ଗ—ଭଅଁର, କଂ ପୁରୁଷ—ଅସୁନ୍ଦର ପୁରୁଷ, ମାନସ—ମନ, ଭୀରୁ—ସ୍ତ୍ରୀ, ମହା-ବିବେକୀ—ଅତ୍ୟନ୍ତ ଜ୍ଞାନୀ, ମଧୁପ—ଭ୍ରମର. ମହୁଆ,ବିସ୍ମରୁ—ଭୁଲିଯାଉ ।

ଜଣେ ସଖି କହିଲା, ଏଠାରେ ସୁନାରୀଫୁଲ ଫୁଟିବାରୁ ଭ୍ରମର ଆସି ସେ ଫୁଲରେ ବସି ଅବିବେକୀ ହୀନ ପୁରୁଷ ପରି ତାକୁ ଛାଡ଼ି ଅନ୍ୟ

ଏକକୁ ଗୃହିଁ ଅପରେକ ସଖୀ କହି ନିକଟେ ନାଗେଶ୍ବର ମୋର । ବୋଇଲା ହୋଇଥାଇଛି ନାଗେଶ୍ବର ସୁପର୍ଣ୍ଣରେ କର ଆଦର । ସେ ଛଳେ । ଚିହ୍ନିଲା ନାଗେଶ୍ବର କହ । ସୁମନାଭୂଷଣ ଦମ୍ପତି ପାଇବ ତାପରେ ଯାଇଣ ଅପେକ୍ଷ । ୧୧ । କେ କାହାକୁ କହେ ମୋହଠାରିଁ ସଖି ରଖିଥିବୁ ଏକା କରୁଣା । ଦେବବଲ୍ଲଭକୁ ଲଭିବାରୁ ତୋତେ ବିଧାତା କଲାଣି ପୂରୁଣା । ସେ ଶୁଣି । ବୋଇଲା ଏ କଥା ଛଡ଼ରେ । ଖୋଜିଲେ ନ ପାଇ ମୁଁ ବନ୍ଧୁଜୀବକୁ ପଡିଲି ବରାହ ଦାଢରେ ।୧୨ । କେତେ ଚାତୁରରେ କହେ

---

ଫୁଲକୁ ଉଡ଼ି ଯାଉଛୁ—ଅନ୍ୟ ଜଣେ କହିଲା ନା ତା ନୁହେ—ତୁ ଭୁଲ କରୁଛୁ ଏଠାରେ ଲାବଣ୍ୟବତୀ ଥିବାରୁ ଲୁବ୍ଧ ପୁରୁଷମାନେ ମହୁଆଙ୍କ ଛଳ ଅନାଇ ଅନାଇ ଚାଲିଯାଉଛନ୍ତି—ପୁରୁଷ ତ ଭ୍ରମର ପରି—ସେ ମଧ୍ୟ କାମ ମଦରେ ମହୁଆ ପରି ହୁଅନ୍ତି ।

୧୧ । ନାଗେଶ୍ବର—ଫୁଲଗଛ, ସର୍ପରାଜ ବାସୁକୀ, ଐରାବତହସ୍ତୀ, ସୁପର୍ଣ୍ଣ—କଅଁଳପତ୍ର, ଗରୁଡ଼, ସୁମନ ଭୂଷଣ—ଫୁଲଦ୍ୱାରା ମଣ୍ଡିତ, ଦେବତାଙ୍କର ପିନ୍ଧିବା ପଦାର୍ଥ, ଜଣକୁ ଗୃହିଁ ଅନ୍ୟଜଣେ କହିଲା ମୋପାଖରେ ନାଗେଶ୍ବର ଗଛ ଅଛି । ଅନ୍ୟଜଣ କହିଲା ନାଗେଶ୍ବରତ ବାସୁକୀ ସେ ହୋଇଥିଲେ ଗରୁଡ଼କୁ ଡ଼ାକ, ନା ତା ନୁହେ—ନାଗେଶ୍ୱର ଗଛର କଅଁଳପତ୍ର ଆଣି ବସବା, ଅନ୍ୟଜଣେ କହିଲା ତା ନୁହେ—ନାଗେଶ୍ୱର ଐରାବତ ହସ୍ତୀ ଯାଇ ଚଢିଲେ ଦେବତା ଭୋଗ ପାଇବା, ଅନ୍ୟଲୋକ କହିଲା ନା ତା ନୁହେ—ନାଗେଶ୍ୱର ମହାଦେବଙ୍କୁ ଅପେକ୍ଷି କ ପୂଜାକର ସୁମନ ଭୂଷଣ—କ ଶ୍ରେଷ୍ଠା ସ୍ତ୍ରୀ ଲାବଣ୍ୟବତୀ ଦମ୍ପତି ପାଇବା ଉତ୍ତମ ବର ପାଇବା,

୧୨ । ଦେବବଲ୍ଲଭ—ପୁନ୍ନାଗଗଛ, ଇନ୍ଦ୍ର; ବନ୍ଧୁଜୀବ—ବନ୍ଧୁକ ଫୁଲ, ପତି, ବରାହଦାଢ଼—ବଣର ବାଘ ଦାଢ଼ରେ, କଣ୍ଟାଗଛ ବିଶେଷ, କେ ସଖି କାହାକୁ କହେ ମୋଠାରେ କରୁଣା କ ଦୟା ରଖିଥିବୁ ଦେବବଲ୍ଲଭ—ଯେ ଇନ୍ଦ୍ରକୁ ପାଇବାରୁ ଅର୍ଥାତ୍ ଇନ୍ଦ୍ରପରି ସ୍ୱାମୀ ପାଇବାକୁ ବିହି ତୋତେ ଆନନ୍ଦ କଲାଣି, କିଏ କହେ, ତୁ କଅଣ ଏ ପୁନ୍ନାଗ ଗଛ ଦେଖିବାରୁ ଆନନ୍ଦ ହେଉଛୁ ।—ଅନ୍ୟ ଜଣ କହେ ସେ କଥା ଛଡ଼, ମୁଁ ବନ୍ଧୁକଫୁଲ ଆଦ ନ ପାଇବାରୁ ବରାହଦାଢ଼ କ କଣ୍ଟାବଣରେ ପଡିଲି—କାତର ନୁହେ, ପରମସ୍ୱାମୀ କ ଉତ୍ତମ ସ୍ୱାମୀ ନ ପାଇବାରୁ ବରାହ ଦାଢ଼ରେ ପଡିଗଲି,

'ସହଚରୀ ମୁଖକୁ ତାହାର ଅନାଇ । ବଶ କରବୀରେ ହୋଇଲା ଉତ୍ତାରେ ମଲ୍ଲି
ମଲ୍ଲି ହେଉ କିମ୍ପାଇ । ସେ ବୋଲେ । ଭଙ୍ଗିରେ ଅଳକ ଚେତାଇ ।
ନଅଳୀ ହେଲାଣି ଦେଖିଲ ଭ୍ରମରୁ ପଳାଶପାଶେ ଯା ଗମଇଁ । ୧୩ । କେ
ଭଣେ ଅଶୋକ ଲଭିଲୁ ସୁନ୍ଦରୀ କେତକୀ ହେଲାଟି ମୋହର । ସେ ଭଣେ
ସୁବର୍ଣ୍ଣକାନ୍ତିହର ସେହୁ ଗୋଡ଼ାଇ ଯିବୁଟି ଶରୀର । ଏକାଳେ । ଆଉ
ଜଣେ ଛଳ ପ୍ରଚାର । ଦେଖାଇ ତରୁ କୁରଅନା ପାଶକୁ ଯିବ କି ନ ଯିବ
ପଚାର ।୧୪। ଦେଖରେ ରସାଳବିଟପୀ ପ୍ରବାଳବକୁଳମାଳରେ ଶୋହୁଛି ।
ଶୋଭା ବନପ୍ରିୟ ଅବଲମ୍ବ ଥିଲେ ବହୁତ ରୋଲମ୍ବ ମୋହୁଛି । ଏମନ୍ତ ।
ଭାବ ବଚନେ କରୁଁ ବିଳାସ । ଘେନି ଶ ଚର୍ଚ୍ଚରୀବଧୂ ସହଚରୀ ପାରବାରକାଏ
ପ୍ରବେଶ । ୧୫ । ଦେଖି ହରଷ ବୃଷ୍ଟି ପାତେ ସାରସଜାତଗନ୍ଧ ରସପଣ୍ଡିତା ।

---

୧୩ । କରବୀର—କନିଅର, ଉତ୍ତମପୁରୁଷ; ନଅଳୀ—ଫୁଲବିଶେଷ ସୁନ୍ଦରୀ, ପଳାଶ—ଫୁଲ, ଅସୁନ୍ଦର ପୁରୁଷ, ସଖୀ କେତେ ଚତୁରତାରେ ଲାବଣ୍ୟବତୀ ମୁହଁକୁ ଅନାଇ କହେ—ଉତ୍ତମପୁରୁଷରେ ବଶ ହେଲାପରେ ଆଉ ମଲ୍ଲି ମଲ୍ଲି ଛଳନା କାହିଁକି କରୁ, ଅନ୍ୟଜଣେ କହେ ତା ନୁହେଁ—ତୁ କନିଅରକୁ ଲୋଭକର ମଲିକ କାହିଁକି ପଚାରୁ ନଅଳୀ ଫୁଲକୁ ଦେଖିବାରୁ ପଳାଶ ପାଶକୁ ଆଉ ଯିବୁ କାହିଁକି—

୧୪ । ଅଶୋକ—ଅଶୋକଫୁଲ, ଶୋକହୀନ ଅର୍ଥାତ୍ ଖୁସି । ଶରୀର—ଦେହ, କେଏ କହେ ଅଶୋକ ଫୁଲକୁ ଦେଖ, ଅନ୍ୟ କହେ ଲାବଣ୍ୟବତୀ ଖୁସି-ହୋଇ ଯାଉଛି, ପୁଣି କେଏ କହେ କେତକୀ କୁ ଦେଖ—ଅନ୍ୟ କହେ କେତକୀ କାନ୍ତି ଯେ ଲାବଣ୍ୟବତୀ ସେତ ସୁବର୍ଣ୍ଣ—କି ସୁନା ରଙ୍ଗକୁ ହରଣ କରୁଛି, ତେଣୁ ଦେହ ଘୋଡ଼ାଇ ହୋଇଯିବୁ—କେଏ ଦେଖିଲେ ଲୋଭାଇବ, କୁରଅନା ଫଳକୁ ତୋଳ—ସେ ମାରକୁରପର ଭୂଷିଦେବଟି,

୧୫ । ରସାଳ—ଆମ୍ବ, ବିଟପୀ—ଗଛ, ପ୍ରବାଳ—ପୋହଳାପର ଲାଲବର୍ଣ୍ଣ, ବକୁଳ—ବଉଳ, ବନପ୍ରିୟ—କୋଇଲି, ଅବଲମ୍ବନ—ଆଶ୍ରୟ, କୋଳ କରିବା, ରୋଲମ୍ବ—ଭ୍ରମର, ଚର୍ଚ୍ଚରୀ—ପିଚକାରୀ, ଦେଖ ଆମ୍ବଗଛର ବଉଳ ଲାଲବର୍ଣ୍ଣ ହେବୁ କୋଇଲିକୁ ଆଲିଙ୍ଗନ ଦେଉଛି ତଥାପି ଭ୍ରମର ମଧୁ ଯାଉଛି—ଯେପରି ବିଟପୀମାନେ ନିଜସ୍ୱାମୀ ଥାଇ ଜାର ପୁରୁଷରେ ସ୍ନେହ କରନ୍ତି—ଏହିପରି କଥାବାର୍ତ୍ତା ହେଉ ହେଉ ଅନ୍ୟଜଣେ ସହଚରୀ ଅବୀର ପିଚକାରୀ ନେଇ ପହଞ୍ଚିଲା—


Digitized by srujanika@gmail.com

କମନୀୟକ୍ରମ ଚର୍ଚ୍ଚନା ଯେଣ କାଞ୍ଚନରେ ହେଲା ଶୋଭିତା । ବାହଲ୍ଲ । ଭିତ ମଧ୍ୟେ ଶାଢ଼ୀପଣନ୍ତ । ଫଗୁମୁଣା ଖୋସି ହସିବାର ଗୃହଁ ସଖୀଏ ସାଜିଲେ ତୁରିତ । ୧୬ । ଉନ୍ମତ୍ତ ମତ୍ତବାରଣୀ ସଙ୍ଗେ ରଙ୍ଗେ ତରଙ୍ଗେ ଖେଳିଲେ କାମିନୀ । ମହୀ ଅକାଶେ ଏକ ବେଳେ ପ୍ରକାଶେ କି ଅବା ଅନେକ ଦାମିନୀ । କିଅବା । ତଳପୁଷ୍ପଲତା ହେମର । ମହା ଅନୁରାଗ ପରାଗବୃଷ୍ଟିରେ ହୋଇ ଅଛନ୍ତି ତତପର । ୧୭ । କଞ୍ଜନ ଖଞ୍ଜନଗଞ୍ଜନ-ନେତ୍ରୀକି କେଉଁ ସୁହାଇ ସୁଧାଇଛନ୍ତି । ଅତି ଅସାଧ ହୋଇ କେତେ ସୃଷ୍ଟିକି ରହିଛନ୍ତି ମନରେ ଧ୍ୟାଉଛୁ । ନାହିଁକି । ଏତେକ ବିବେକ ତାହାର । କୋଟିଏ ବ୍ରହ୍ମାଣ୍ଡ ଗୋଟିଏଭଙ୍ଗିରେ ଜଣମା ଗୁମାନ ଯାହାର । ୧୮ । ମୂଠାରୁ ଫିଟି ଯିବାରେ ଏ ପ୍ରଣୀତ ଫଗୁ ଖେଳିବାରେ ଲଲନା । ବସନ୍ତରାଜା ବଶକୁ କି କରନ୍ତିରଙ୍ଗପାଠେଟେଳଗୃଲନା । ସେ ରଜ । ଯାଇଁ ଶୂନ୍ୟେ ରୁଣ୍ଡହୋଇଲା । ଅତ୍ୟନ୍ତ ଗୁଣିଙ୍କ ଦାଗପରିବାର ମାଣିକ୍ୟଛନ୍ଦ କି ଧଇଲା । ୧୯ । କଙ୍କଣ-କ୍ୱଣିତଧ୍ୱନିରୁ ମଣିତ ଭୁଜ ଡିଣ୍ଡିମ କି ବାଇଲା । ଉଚବାଚ-ବାଣୀ ମଙ୍ଗଳଗୀତ କି ଅଭିଷେକବେଳେ ହୋଇଲା । ସ୍ୱଭାବେ । କୁଚ ପୂର୍ଣ୍ଣକୁମ୍ଭ ରଚିଛନ୍ତି । ଗୁରୁ ଗୈରିକ ଚୂତପଲ୍ଲବ ସଂଯୁକ୍ତ ହାର ଉପହାରସାଜିଛନ୍ତି । ୨୦ ।

---

୧୬-୧୭ । ସାରସ—ହଂସ, ଜଡ—ଜଣା, ଗତି—ଚାଲି, କମନୀୟ—ସୁନ୍ଦର, କମ ଚର୍ଚ୍ଚିତ, ଗୁମୁଣା—ଅବିରମୁଣି । ଉନ୍ମତ୍ତ—ଉତ୍ତେଜିତ ପୂର୍ଣ୍ଣ କି ଯେଉଁ କାମିନୀ ସୁନ୍ଦରୀ ସ୍ତ୍ରୀ, ତରଙ୍ଗ—ଢେଉ, ହସ ଖେଳ, ଦାମିନୀ—ବିଜୁଳି, ହେମ—ସୁନା, ଅନୁରାଗ—ସ୍ନେହ, ମହୀ—ପୃଥିବୀ, ପରାଗ—କେଶର, ଫୁଲର ରେଣୁ ।

୧୮ । କଞ୍ଜନ—ସୁନ୍ଦର, ଖଞ୍ଜନ ଗଞ୍ଜନ—ଖଞ୍ଜନପକ୍ଷୀ ଆଖି କି ଯାହା ଆଖିଛଟା ତୁଚ୍ଛ କରେ, ଭଙ୍ଗି—ଠାଣି, କୁମୁଦ—କଇଁ,

୧୯ । ପ୍ରଣୀତ—ଜଣାଯିବା, ଫଗୁ—ଅବିର, ଲଲନା—ସ୍ତ୍ରୀ, ରଙ୍ଗପାଠ—ନାଲପାଠ, ଚେଳ—ଲୁଗା, ରଜ—ଗୁଣ୍ଡ, ରୁଣ୍ଡ—ଏକତ୍ରିତ, ପରିବାର—ଗୃକର, ଛନ୍ଦ—ଛଟା ।

୨୦ । କଙ୍କଣ କ୍ୱଣିତ—କଙ୍କଣର ଝଣ ଝଣ ଧ୍ୱନି ବା ଶବ୍ଦ, ଭୁଜ—ହାତ, ଡିଣ୍ଡିମ—ଡେଙ୍ଗୁରା, ବାଣୀ—କଥା, ମଙ୍ଗଳ ଗୀତ—ଶୁଭ ଗୀତ, ଗୁରୁ—ସୁନ୍ଦର, ଗୈରିକ—କାଞ୍ଚନ, ଚୁତ ପଲ୍ଲବ—ଆମ୍ବପତ୍ର ।

ହାତର କଙ୍କଣ ଶବ୍ଦ ଡେଙ୍ଗୁରା ହେଲା, ବଡ଼ ପାଟିକର କଥାବାର୍ତ୍ତା ଶୁଭ ଗୀତ ହେଲା, ଅଭିଷେକ ହେଲେ ଓ ପୂର୍ଣ୍ଣକୁମ୍ଭ ଆମ୍ବପତ୍ର ଦରକାର, ଏଠାରେ କୁଚ ପୂର୍ଣ୍ଣକୁମ୍ଭ କାଞ୍ଚନ ଆମ୍ବପତ୍ର ହେଲା ।

ରମଣୀ ରମଣୀୟ ତଲେ ଅବରଗୁଣ୍ଠିରେ ସେ ବନସରଣୀ । ମହୀମହିଳା ରତ୍ନତାଳ ଲଭିଲା ଏସନ ମାନସକୁ ଆଣି । ସେ ଧୂଳି । ତାହିଁ ପବନ-ଯୋଗେ ଉଡ଼ି । ଶୁଭସୂଚକ ଚିହ୍ନ ଜଡ଼ିତପ କି ଯାଉଛି ଶିରେ ବାନ୍ଧ ଶାଢ଼ୀ । ୨୧ । ପଟୀରନୀରେ ନିରନ୍ତରେ ପିଚିକା ଖେଳନ୍ତେ ନୀରରୁହଦୃଶା ମଞ୍ଜୁ ମଞ୍ଜୀର ଘନରବ ମଧୁର ବସନ୍ତେ କରେ କି ବରଷା । ବିଜୁଳି । ପରଜ୍ୱଳ ଭୂଷାରତନ । ଅଙ୍ଗରାଗେ ଅନ୍ଧରଙ୍ଗ ଉଡ଼ିପଡେ ହୋଏ କି କରକା ପତନ । ୨ । କୁଙ୍କୁମ ପିଚିକା ବାଜି ଜରଜର ସୁନ୍ଦର ଉରଜ ତାହାର । କନକାଚଳରୁ କିବା ହରିତାଳପ୍ରବାହ ହେଉଛି ବାହାର । କର୍ପୂର । ଗୁଣ୍ଡି ମଣ୍ଡିତ ତାହା ସ୍ତନ । ସୁବର୍ଣ୍ଣ ସ୍ୱୟମ୍ଭୂ ଶମ୍ଭୁଯୁଗଳ କି ହୋଇଲେ ଭସ୍ମ ବିଲେପନ ।୨୩। ତାହା କୁଚ ଫଗୁସଙ୍ଗରୁ ସୁସଞ୍ଚ ଏହି ଚାଞ୍ଚ ହୋଏ ମାନସେ । ହୃଦୟସରୋବର ମଧ୍ୟେ ଉଦୟ କୋକନଦ କଢ଼ୀଯୁଗ୍ମ ସେ । ତାହାର । ଛିଣ୍ଡି ହାର ଖସେ ମୁକୁତା । ପୟୋଧର ଛଳେ କ୍ଷୀରବିନ୍ଦୁ ବୃଷ୍ଟି କରବାରେ କି ସେ ଶୋଭିତା ।୨୪। କାଶ୍ମୀରରଜ କେ ମାରନ୍ତେ ପାଲଟି ଗ୍ରୀବା ବଙ୍କ କରି ଚାହିଁଲା । ମନ୍ଦମରୁତେ କି ଉଲଟି ନଳିନ ଅଳି ସଂଯୁକ୍ତରେ ରହିଲା । ତେ ତାହା । ମୁଖେ କସ୍ତୁରୀ ପଙ୍କ ଢାଳି । ମୃଗାଙ୍କ କଳଙ୍କ ଛଡ଼ାଇ ହେବାରୁ ବହିଯାଉଛି କିବା କାଳୀ । ୨୫ । ତାହା ଲଲାଟେ ସିନ୍ଦୂର ବହି-

---

୨୧ । ରମଣୀ—ସ୍ତ୍ରୀ, ରମଣୀୟ—ସୁନ୍ଦର, ବନସରଣୀ—ବଣବାଟ, ମହୀମହିଳା—ପୃଥିବୀ ରୂପ ସ୍ତ୍ରୀ, ମାନସ—ମନ, ଶୁଭ ସୂଚକ—ଭଲ ଚିହ୍ନ ।

୨୨ । ପଟୀର—ସୁବାସ, ନୀର—ଜଳ, ନିରନ୍ତର—ସର୍ବଦା, ନୀରରୁହ—ପଦ୍ମ, ଦୃଶା—ଆଖି, ମଞ୍ଜୁ—ସୁନ୍ଦର, ମଞ୍ଜୀର—ଗୋଡ଼ ବାଜେଣୀ, ଘନରବ—ବର୍ଷା ଶବ୍ଦ, ଭୂଷା—ଅଳଙ୍କାର, ଅଙ୍ଗରାଗ—ଦେହର ଗନ୍ଧ, କରକା—କୁଆପଥର ।

୨୩ । ଉରଜ—ସ୍ତନ, ବକ୍ଷ, କନକାଚଳ—ସୁନା ପର୍ବତ, ହରିତାଳ—ହଳଦିଆ ରଙ୍ଗର ଧାତୁ, ପ୍ରବାହ—ସ୍ରୋତ, ସୁବର୍ଣ୍ଣ ସ୍ୱୟମ୍ଭୂ—ସୁନା ମହାଦେବ, ଶମ୍ଭୁ ଯୁଗଳ—ମହାଦେବ ଦ୍ୱୟ, ଭସ୍ମ—ପାଉଁଶ, ବିଲେପନ—ବୋଳି ହେବା ।

୨୪ । ସୁସଞ୍ଚ—ସୁନ୍ଦର, ହୃଦୟ ସରୋବର—ହୃଦୟ ରୂପ ପୋଖରୀ, କୋକନଦ—ପଦ୍ମ, ଯୁଗ୍ମ—ଦୁଇ, ପୟୋଧର—ମେଘ, କୁଚ, କ୍ଷୀର—ଦୁଧ ।

୨୫ । କାଶ୍ମୀର ରଜ—କୁଙ୍କୁମ ଗୁଣ୍ଡି, ପାଲଟି—ଫେରି, ଗ୍ରୀବା—ବେକ, ବଙ୍କ—ବଙ୍କା, ମନ୍ଦମରୁତ—ସୁଗନ୍ଧଯୁକ୍ତପବନ, ନଳିନ—ପଦ୍ମ, ମୃଗାଙ୍କ—ଚନ୍ଦ୍ର ।


Digitized by srujanika@gmail.com

ପଡ଼େ ସ୍ୱେଦ ହୋଇବାରୁ ଜନିତ । କେଶଗୁଚ୍ଛ ଦନ୍ତପାନ୍ତିରୁ ବ୍ୟକତ ଇନ୍ଦୁ ଦେହରୁ କି ରକତ । ସେକାଳେ । ଅତି ଚଞ୍ଚଳ ନେତ୍ରଗତି । ଦଗଧସ୍ତୁକୁ କି ଶ୍ୟାମଳ କୋମଳ କମଳେ ମଣ୍ତ୍ରିନ୍ତ ଯୁବତୀ । ୨୬ । ଭାନୁପ୍ରଭା ପ୍ରକାଶ ଶ୍ରବଣେ ତାଙ୍କ ଚଳନ୍ତି । ପ୍ରମଦା ପ୍ରମୋଦଭରେ କି କରନ୍ତି ଅନଙ୍ଗେ ମଙ୍ଗଳଆଳତି । ଟଳିତି । ନାସିକା ମୋତି ଉରହାର । ବାଦେ ନୂପୁର ନାଦେ କି ନାଚୁଛନ୍ତି ନର୍ତ୍ତକୀଗଣେ ଅହଙ୍କାର । ୨୭ । କେଉଁ ଲତାରୁ କୁସୁମ ଖସିବାରୁ ଏମନ୍ତ ହେଉଛି ପରତେ । ଧନ୍ୟ ଧନ୍ୟ ବୋଲି ପ୍ରଶଂସା କରି କି ରତ୍ନ ବର୍ଷୁଛନ୍ତି ନରତେ । ପଦ୍ମଗ । ଛଳେ ସିଞ୍ଚୁଛନ୍ତି କର୍ପୂର । ପଲ୍ଲବ ଛଳେ ପ୍ରଣତେ ବଞ୍ଚୁଛନ୍ତି ଉପକାର ଭୂତେ ତାଙ୍କର । ୨୮ । କେଉଁ କେଉଁ ତରୁ ତରୁଣୀମାନଙ୍କୁ ପକ୍ଷି ନିନାଦରେ କହନ୍ତି । ଏପରି ଉତ୍ସବ କେବେ ନୋହିଥିଲା ଦେଖି ନ ଥିବ ସୁରପତି । କେ ତରୁ । ଶାଖା ଲେଉଟନ୍ତି ଫଳଭରେ । କି ପରିରମ୍ଭ ଆରମ୍ଭ କରୁଛନ୍ତି ରମ୍ଭୋରୁ ପାଦ ଲାଗୁ ଶିରେ । ୨୯ । ଏମନ୍ତ ବେଳେ ଏକ ସଖୀ କହିଲା ତିନ ପ୍ରହର ହେଲା ବେଳ । ସ୍ନାନମାନଙ୍କୁ ଅବଧାନ ନୋହିଲା ଏତେକ ରହୁ କୁତୂହଳ । ଶୁଣି ସେ । ସେ କଥା କଲା ଅଙ୍ଗୀକାର । ଏହି ସମୟେ ଥୋକାଏ ଦାସୀ ଆସି ଘେନିଣ ମାର୍ଜନା ସମ୍ଭାର ॥ ସରୋବର ତୀରେ ପ୍ରବେଶ ସୁବେଶ ଲାଗି ସମ୍ପୂର୍ଣ୍ଣ ଏହି ଗ୍ରନ୍ଥ । କବି ଗୁରୁଙ୍କ ଅନେକ ଅଛି ପୂର୍ବ ଘେନିଲେ ଜନ୍ମିବ ଅନନ୍ଦ । ଜାଣିଲା । ଜନ ମନକୁ ଏ ତୋଷିବ । ମୂର୍ଖସ୍ୱଭାବ ଅଦ୍ଭୁତବାଳକାପରି ସେ କାହୁଁ ରତି

୨୬ । ସ୍ୱେଦ—ଝାଳ, ବ୍ୟକତ—ପ୍ରକାଶିତ, ଦଗଧସ୍ତୁ—ଶୃଙ୍ଗାର ଅଡ଼େ ।

୨୭ । ଭାନୁପ୍ରଭା—ସୂର୍ଯ୍ୟତେଜ, ଶ୍ରବଣ—କାନ, ପ୍ରମଦା—ଯୁବା ସ୍ତ୍ରୀ, ଅନଙ୍ଗ—କନ୍ଦର୍ପ, ପ୍ରମୋଦଭରେ—ଖୁସିରେ, ନର୍ତ୍ତକୀ—ନାଚବାଲୀ ।

୨୮ । କୁସୁମ—ଫୁଲ, ଉପକାରଭୂତେ—ଭଲ ନିମନ୍ତେ ।

୨୯ । ତରୁ—ଗଛ, ପକ୍ଷିନିନାଦ—ଚଢ଼େଇ ଶବ୍ଦ, ସୁରପତି—ଇନ୍ଦ୍ର, ରମ୍ଭୋରୁ—କଦଳୀଗଛ ପରି ଜଙ୍ଘ ଯାହାର ବୃଷାଳ ।

୩୦ । ସ୍ନାନ—ଗାଧୋଇବା, କୁତୂହଳ—ଆନନ୍ଦ, ଅଙ୍ଗୀକାର—ସ୍ୱୀକାର, ମାର୍ଜନା—ଗାଧୁଆ ।

୩୧ । ସରୋବର—ପୋଖରୀ, ତୀର—କୂଳ, ଜନମନ—ଲୋକମନ, ଅଦ୍ଭୁତ-ବାଳା—ବାଳକା ।

ପ୍ରକାଶିବ । ୩୧ । ଅନନ୍ତଭୂଷଣ ବୃଷଧନୁ ଯୁତ ସହୃଦ ଭବତାପନାଶି । ଶ୍ରୀନିଳୟ ଦ୍ୱିଜରାଜ ବନ୍ଦନୀୟ ଜନକସୁଖକୁ ପ୍ରକାଶି । ସ୍ମରିବ । ମନେ ସେ ରାମଚନ୍ଦ୍ର ଶିବ । କହେ ଉପେନ୍ଦ୍ର ଭଞ୍ଜ ବୀରବର ଯୁବାଜନ କର୍ଣ୍ଣ ଉତ୍ସବ । ୩୨ ।



## ଷଷ୍ଠ ଛାନ୍ଦ ।

ରାଗ—ରାମକେରୀ ।

ମନ ଦେଇ ଶୁଣ କୋବିଦେ ନୃପସୁତା ସୁକେଶୀ ।
କୂଳରେ ବକୁଳ ମୂଳରେ ପୀଠଉପରେ ବସି । ୧ ।
ସରସୀଶୋଭିତ ଅନାଇଁ ମନ ନେତ୍ର ଲୋଭିତ ।
ତଟ-ଘଟଣା ବଦ୍ରୁମରେ ପକ୍ଷିପନ୍ତି ଶମ୍ଭିତ । ୨ ।

---

୩୨ । ଅନନ୍ତ—ବାସୁକୀ, ଭୂଷଣ—ଅଲଙ୍କାର; ବୃଷଧନୁ—ବୃଷ ଧନୁ ଆଦି ଚିହ୍ନ, ଯୁତ—ମଣ୍ଡିତ, ସହୃଦ—ହୃଦ ସହିତ ଅର୍ଥାତ ହୃଦରେ ଥିବା, ଭବ—ପୃଥିବୀ, ତାପ—କଷ୍ଟ, ନାଶି—ନାଶକର, ଶ୍ରୀ—ଲକ୍ଷ୍ମୀ, ନିଳୟ—ଘର, ଦ୍ୱିଜରାଜ—ବ୍ରାହ୍ମଣ, ଶ୍ରେଷ୍ଠ—ବ୍ରହ୍ମଜ୍ଞାନୀ, ଜନକ—ଜନକ ଋଷି, କର୍ଣ୍ଣ-ଉତ୍ସବ—କର୍ଣ୍ଣ ପବିତ୍ର ।

ଯାହାର ନାଗ ଭୂଷଣ କି ନାଗ ଉପରେ ଶୟନ, ବୃଷଧନୁ ମକର ପ୍ରଭୃତି ଅଷ୍ଟାଦଶ ଚିହ୍ନ ଯାହାଙ୍କ ଦେହରେ ଅଛି ପୁଣି ଯେ ସଂସାରର ଦୁଃଖ ବିନାଶକାରୀ ଓ ଲକ୍ଷ୍ମୀଙ୍କ ପୁରରେ ବାସ, ବ୍ରହ୍ମଜ୍ଞାନୀମାନଙ୍କର ପୂଜ୍ୟ ଓ ଜନକ ଋଷିଙ୍କ ଆନନ୍ଦ ଦାୟକ ସେହି ରାମଚନ୍ଦ୍ରଙ୍କୁ ସ୍ମରଣ କରି ଯୁବକମାନଙ୍କ କର୍ଣ୍ଣ ପବିତ୍ରକାରୀ ଏ ଛନ୍ଦ ଉପେନ୍ଦ୍ର ଭଞ୍ଜ କରିଛନ୍ତି ।



## ୬ଷ୍ଠ ଛାନ୍ଦ ।

୧ । ନୃପସୁତା—ରାଜକନ୍ୟା, ସୁକେଶୀ—ଉତ୍ତମ ବାଳଯୁକ୍ତା, ବକୁଳ—ବଉଳ ପିଠ—ଚଉତରା ।

୨ । ସରସୀ—ପୋଖରୀ, ଶୋଭିତ—ସୁନ୍ଦର, ତଟ—ପାଣିକୂଳ, ଘଟଣା—ସୌନ୍ଦର୍ଯ୍ୟ, ବଦ୍ରୁମ—ପୋହଳା, ଗଛବିଶେଷ; ଶମ୍ଭିତ—ପ୍ରକାଶିତ,


Digitized by srujanika@gmail.com

କି ନୀଳଶାଢ଼ୀ ହଂସାବଳୀ ରଙ୍ଗ ଧଡ଼ି ହୋଇଛନ୍ତି ।
ଅବନୀବନିତା ଶରୀରେ ଶୋଭା କରିବା ଛନ୍ତି । ୩ ।
ପାବଚ୍ଛ ସ୍ୱଚ୍ଛ-ସ୍ଫଟିକରେ ନୀରତୀର ପ୍ରତୀତ ।
ସୁବେଣୀ ପରଶ ଭବ କି ଉଦ୍ଧଁ ତ୍ରିବେଣୀ ଖ୍ୟାତ । ୪ ।
ଦୀପଦଣ୍ଡୀ ଲଭି ମରାଳପନ୍ତି ଦିଏ ଉଙ୍କି ।
ଚନ୍ଦ୍ର ବଡ଼ଭୀକି ବେଢ଼ିକି ଶୋଭା ଚୂର୍ଣ୍ଣଚଙ୍କି । ୫ ।
କଳ କହ୍ଲାର ଅବିଳରେ ଜନମନ ହରୁଛନ୍ତି ।
କଳ ନିର୍ମଳରେ ଅଧର ଆଦରଶୁଁ ସାରୁଛନ୍ତି । ୬ ।
ଗମ୍ଭୀର ଗୁଣକୁ ପଣ୍ଡିତଠାରୁ ଗୃହୀତ କର ।
ନର୍ତ୍ତକୀଠାରର ଭଙ୍ଗୀ ଶିକ୍ଷା ପର ଏହାର । ୭ ।
ଅମୃତ ସଙ୍ଗତେ ହୋଇଛନ୍ତି ପିତ ମଧୁରଗୁଣେ ।
ବିଧୁର ସ୍ନେହକୁ ବିଧୁର କରେ ଶୀତଳପଣେ । ୮ ।
କାମ ସଖୀରେ ପ୍ରକାଶମାନ ସୁଖଦାନରେ ।
କୁମୁଦରେ ଯେଣୁ ଶଦତ ତେଣୁ ହରପ୍ରକାରେ । ୯ ।
ସରଶୋଭା ଦେଖୁ ଦେଖୁ ସେ ସରେ ମର୍ଦ୍ଦନ ବାଧି ।
ବକ୍ଷପ୍ରମାଣେ ଜଳେ ଯାଇଁ ସତେ ଲାବଣ୍ୟନିଧି । ୧୦ ।

---

୩ । ହଂସାବଳୀ—ହଂସସମୂହ, ରଙ୍ଗଧଡ଼ି—ଲାଲଧଡ଼ି, ଅବନୀ ବନିତା—ପୃଥିବୀ ରୂପକ ସ୍ତ୍ରୀ ।

୪ । ପାବଚ୍ଛ—ପାହାଚ, ସ୍ୱଚ୍ଛ—ପରିଷ୍କାର, ନୀର—ଜଳ, ତୀର—କୂଳ, ପ୍ରତୀତ—ଦେଖାଯିବା, ସୁବେଣୀ—ଲାବଣ୍ୟବତୀ, ପରଶ—ଛୁଇଁବା, ଭବ—ମନେକର, ତ୍ରୀବେଣୀ—ଗଙ୍ଗା ଯମୁନା ଓ ସରସ୍ୱତୀ ସଙ୍ଗମସ୍ଥାନ ।

୫ । ମରାଳ—ହଂସ, ପନ୍ତି—ସମୂହ, ବଡ଼ଭୀ—କୋଠା; ଚୂର୍ଣ୍ଣଚଙ୍କି—ଅଳ୍ପଲମ୍ବିତ ଶ୍ୱେତ କେଶ, ଚୂନଲିପା ।

୬ । କହ୍ଲାର—ପଦ୍ମ, ଅବଳ—ଗୋଳଆ; ଆଦରଶୁଁ—ଦର୍ପଣରୁ ।

୭ । ଗମ୍ଭୀର—ଶାନ୍ତ, ନର୍ତ୍ତକୀ—ନାଚବାଲୀ ।

୮ । ବିଧୁର—ଚନ୍ଦ୍ରର, ବିଧୁର—ଦୁଃଖ,

୯ । କାମ—କନ୍ଦର୍ପ, ସଖଳ—ପକ୍ଷୀ, କୁମୁଦ—କଇଁ, ଶଦତ—ପ୍ରକାଶିତ, ହର—ଶମ୍ଭୁ ।

୧୦ । ସରଶୋଭା—ପୋଖରୀ ସୁନ୍ଦରପଣ, ବକ୍ଷପ୍ରମାଣ—ଛାତିଯାଏ ।

ଭବ ବସ୍ତୁବଲ୍ଲ ବିଚିତ୍ର ହେଲା ତୁମ୍ବୀ ବୁଡ଼ିଲା ।
ନ ବୁଡ଼ି ଶଇଳ ସଲିଳ ଉପରରେ ରହିଲା । ୧୧ ।
କିସ ପୁଣ ଦେଖା ନ ଯାଇ ଯେବେ ଥାନ ଜୀବରେ ।
ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ । ୧୨ ।
ଅପୂର୍ବ ଅମ୍ବୁଜ ମୁଖକୁ ଚାହିଁ ଭୃଙ୍ଗ ଚକୋର ।
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତି ଚାହିଁ କାତର । ୧୩ ।
କେଶ ଦରଶନେ ରଥାଙ୍ଗ ଧାଇଁ ଅହାରବଶେ ।
ବିଚ୍ଛେଦ ଭୟରୁ ପଳାଇ ଗଲେ ନ ରହି ପାଶେ । ୧୪ ।
ନୟନ ଉଜ୍ଜ୍ୱଳ କଜ୍ଜ୍ୱଳଲଞ୍ଛି ଅନାଇଁ ଦେଇ ।
ଗମ୍ଭୀରଜଳରେ ପଶିଲେ ମୀନ ଭୟକୁ ପାଇ । ୧୫ ।
ଭୁଲି ନୟନ ଆନନକୁ ଚାହିଁ ଖଞ୍ଜନମାନେ ।
କୁରଙ୍ଗ ହେ ଅମ୍ଭେ ମଲଇଁ ବୋଲି ଡାକିଲେ ସ୍ୱନେ । ୧୬ ।
ଶମ୍ବରଜାନନୀ ସମ୍ବରେ ସେହିକାଳେ ପଶିଲେ ।
ହାସ ପରିହାସ ସରସ-ଉକ୍ତିମାନ ଭାଷିଲେ । ୧୭ ।
ଦେଖରେ ନଳିନୀ ନଳିନୀ ନଳିନୀରେ ପୂରିଛି ।
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିଛି । ୧୮ ।

---

୧୧ । ବିଚିତ୍ର—ଆଶ୍ଚର୍ଯ୍ୟ, ତୁମ୍ବୀ—ଲାଉ ( କୁଚ ), ଶଇଳ—ପର୍ବତ, ପଥର, ଏଠାରେ ଶଇଳ କୁଚ, ସଲିଳ—ଜଳ ।

୧୨ । ଜୀବରେ—ପ୍ରାଣରେ, ବିଷମ—ଆଶ୍ଚର୍ଯ୍ୟ, ସମସ୍ୟା—ପ୍ରସଙ୍ଗ ।

୧୩ । ଅପୂର୍ବ—ସୁନ୍ଦର, ଅମ୍ବୁଜ—ଜଳଜ ପଦ୍ମ, ଭୃଙ୍ଗ—ଭଅଁର, ଶ୍ରୁତି—କର୍ଣ୍ଣ.

୧୪ । ରଥାଙ୍ଗ—ଚକ୍ରବାକ, ଅହାର—ଖାଦ୍ୟ, ବିଚ୍ଛେଦ—ପୃଥକ ।

୧୫ । ନୟନ—ଚକ୍ଷୁ, ଉଜ୍ଜ୍ୱଳ—ଦୀପ୍ତିମାନ, କଜ୍ଜ୍ୱଳଲାଞ୍ଛି—ଆଖିର କଳାଗାର ।

୧୬ । ଆନନ—ମୁହଁ, ସ୍ୱନ—ଶବ୍ଦ,

୧୭ । ଶମ୍ବରଜାନନୀ ( ଶମ୍ବର—ଆନନୀ ) ପଦ୍ମମୁଖୀ, ଶମ୍ବରେ—ପାଣିରେ, ପରିହାସ—ଥଟ୍ଟା; ଉକ୍ତି—କଥା ।

୧୮ । ନଳିନୀ—ସୁନ୍ଦରୀ ସ୍ତ୍ରୀ, ନଳିନୀ—ପୋଖରୀ, ନଳିନୀରେ—ପଦ୍ମରେ, ଭ୍ରମରେ—ଭୁଲରେ, ଭ୍ରମରେ—ଭଅଁରମାନେ, ଭ୍ରମରେ—ଭଉଁରୀରେ, ଶୋଭିଛି—ସୁନ୍ଦର ।

ବ-ରାଜି ବରାଜି ଅଛନ୍ତି ମୀନ ଭକ୍ଷଣ ପାଇଁ ।
ରାଜୀବ ରାଜୀବନୟନା ଏଥି ଖେଳା କରନ୍ତ ।୧୯।
ସଲିଳେ ଉଡୁପ ଦେଖ ରେ ହୋଇଅଛି ଶୋଭନ ।
ସଲିଳେ ଉଡୁପବଦନୀ ଖେଳିବାକୁ ମୋ ମନ ।୨୦।
ନବୀନଜୀମୂତ ଜୀମୂତସ୍ତନା କି ଏ ଉଦିତ ।
ଏ ନୀଳକମଳ କମଳବନ୍ଧୁ ବନ୍ଧୁ ହେମନ୍ତ ।୨୧।
ଭୁବନ ଏଥିରେ ପୂରିତ ମୋହେ ସର୍ବ ଭୁବନେ ।
ଜୀବନବନ୍ଧୁ ଏ ନିଷ୍ଟପ୍ତ ପ୍ରାଣୀଙ୍କର ଜୀବନ ।୨୨।
ଅହିମକର ତାପ ନାଶେ ଶୋଭି ସାରସଚୟେ ।
ଅହି ମକର ତାପନାଶେ ଶୋଭି ସାରସଚୟେ ।୨୩।
ବଣ ପ୍ରକାଶିବ ସୁମନ-ସର ସୁମନସର ।
ମହୀକି ଅଟିଲ୍ଲ ସୁମନ-ସର ସୁମନସର ।୨୪।
ମନ୍ତ୍ରୀଜା ପୁଚ୍ଛିଲେ ରଜମାକୁ ଗୁରୁବର୍ଣ୍ଣେ ଏସନେ ।
ଏକାକ୍ଷରେ ଖ୍ୟାତ ଧରଣୀ(୧)କରଭୂଷା ନିବର୍ଣ୍ଣେ(୨) ।୨୫।

---

୧୯ । ବ—ପକ୍ଷୀ, ରାଜି—ସମୂହ, ମୀନ—ମାଛ, ରାଜୀବ—ପଦ୍ମ, ରାଜୀବ ନୟନା—ପଦ୍ମଲୋଚନା ।

୨୦ । ସଲିଳେ—ଜଳରେ, ଉଡୁପ—ଡଙ୍ଗା, ସଲିଳେ—ଲୀଳାସହକାରେ—ଉଡୁପବଦନୀ—ଚନ୍ଦ୍ରବଦନୀ ।

୨୧ । ନବୀନ—ନୂଆ, ଜୀମୂତ—ମେଘ, ପର୍ବତ; ଉଦିତ—ପ୍ରକାଶିତ, ନୀଳକମଳ—ନୀଳପଦ୍ମ, କମଳ—ଜଳ ।

୨୨ । ଭୁବନ—ଜଳ, ଭୁବନ—ଦେଶ, ଜୀବନବନ୍ଧୁ—ପ୍ରାଣବନ୍ଧୁ, ଜୀବନ—ଜଳ

୨୩ । ଅହିମକର—ସୂର୍ଯ୍ୟ, ତାପ—ତେଜ, ସାରସଚୟ—ହଂସସମୂହ, ଅହି—ସର୍ପ, ମକର—ମଗର, ସାରସଚୟ—ପଦ୍ମସମୂହ ।

୨୪ । ବଣ—ବଣ୍ୟତା, ସୁମନସର—ସ୍ୱର୍ଗଲୋକ, ଦେବତା, ସୁମନସର—ଆନନ୍ଦ, ମହୀ—ପୃଥ୍ୱୀ, ସୁମନ—ପୁଷ୍ପ, ସର—ସମୂହ, ପୋଖରୀ; ସୁମନଶର—କନ୍ଦର୍ପବାଣ ।

୨୫ ଠାରୁ ୨୯ । ମର୍ତ୍ତୀଜା—ମନ୍ତ୍ରୀଝିଅ, ୨—କରଭୂଷା—ହାତଅଳଙ୍କାର; ବଳୟ । ୧—ଧରଣୀ—ଭୂ, ୩—ବସୁସ ନାମ—ବସୁ, ୪—ମୂନ ଯାହା କରେ—ଲୟ, ୫—ପ୍ରାକର୍ମ—ବଳ, ୬—ବଳେମେ—ରାମକୁମର ଲବ,


Digitized by srujanika@gmail.com

ବପୁସ ନାମ ଖ୍ୟାତ(୩) ମୃନ ଯାହା କରେ(୪) ସେ ହେବ ।
ପ୍ରାକର୍ମ ଦ୍ୱିବର୍ଣ୍ଣେ(୫) ବନ୍ଧୋମେ ସମଳୁମବ(୬) ହେବ । ୨୬ ।
ବ୍ୟସ୍ତେ ବସନ୍ତାଦ ପୁରେଲ(୭) ତହୁଁ ଛଠର ନାମ(୮) ।
ସମସ୍ତ ପଢିଲେ ହୋଇବ ଜଳେ ଥିଲା କୁସୁମ(୯) । ୨୭ ।
ଚତୁର୍ଥ ଚ୍ଛରତେ ଜାଣିଲା ହସି କହିଲା ତହୁଁ ।
କଂସ-କରବର(୧୦) ପର୍ଯ୍ୟନ୍ତେ ମୋତେ ପରତେ ହୋଇ ।୨୮।
'ଫଳ' ବେଳାବର୍ଣ୍ଣ ପ୍ରାନ୍ତରେ ଦେଲେ ମୁକ୍ତା ନାମା(୧୧) ।
ଶୁଣି ଧନ୍ୟ ବୋଲି ପ୍ରଶଂସାକଲେ ସକଳ ବାମା । ୨୯ ।
ଏ ବଧିରେ ଭଷି ଭାରତୀ ଜଳ କ୍ଷେପଣ କର ।
ଦେଖିବା ନ ଥିଲା ଚଞ୍ଚଳ ବରଷିବାର ବାର । ୩୦ ।
ଉତ୍ସାନ ପ୍ଳବନେ ଉରଜମାନେ କି ମନୋହର ।
ନଳଦୀକ୍ଷା ପାଇ ନାହିଁ କି ଭେଲା ହେଲେ ଭୂଧର । ୩୧ ।
ଆଜ କି କୁସୁମନାୟକ ରାଜ ବହନ ଲୀଳା ।
କରୁଛି ତେମନ୍ତ ଶୋଭାକୁ ପୁଣି ବହିଲେ ବାଲା । ୩୨ ।
ବୁଡ଼ି କେ କାହାର ଚରଣ ଧରୁଁ ସେ ଜାଣି ଭଷି ।
ଗଡରେ ଗଜ ଅଛି ବୋଲି ମୋତେ କୁମ୍ଭୀର ଗ୍ରାସି । ୩୩ ।
ନାହିଁ ବାର ବାର ନୋହିଲେ ତହୁଁ ଘଡ଼ିଏଯାଏ ।
ହାସ କୁମୁଦ, ନେତ୍ର ମୀନ, ମୁଖ କମଳ ପ୍ରାୟେ । ୩୪ ।

---

୭—ବସନ୍ତାଦପୁରେ—ବଉଳ, ଛଠରନାମ—କୂଳ, ୯—ଜଳେଥିଲା କୁସୁମ—ପଦ୍ମ, କଂସ କଶବର—କୁବଳୟ, ୧୧—ମୁକ୍ତା,ବାମା—ସ୍ତ୍ରୀ।

୩୦ । ବଧ—ନିୟମ, ଭାରତୀ—କଥା, ବାର—ଜଳ, କ୍ଷେପଣ—ଅତିକ୍ରମ କରିବା, ବରଷିବାର—ପଡ଼ିବାର ।

୩୧ । ଉତ୍ସାନ—ଚଢ଼୍‌ହୋଇ, ପ୍ଳବନେ—ପହଁରିବାରେ, ଉରଜ—କୁଚ; ନଳ ଦୀକ୍ଷା—ରାମ ସେନାପତି ନଳର ସ୍ୱଭାବ, ଭୂଧର—ପର୍ବତ, ଭେଲା—ଡଙ୍ଗା, ପାରିହେବା ପଦାର୍ଥ ।

୩୨ । କୁସୁମ ନାୟକ—କନ୍ଦର୍ପ ଧନୁ, ରାଜ—ରାଜା କନ୍ଦର୍ପ; ବହନ ଯାତ୍ରାର ଲୀଳା—ଖେଳା ।

୩୩ ଠାରୁ ୩୬ । ବାର—ଜଳ, ଥରି; ଚକ୍ରବାକମିଥୁନ—ଚକୁଆଚକୋଇହଳ

ଜଘନ ପୁଳିନ, ଉରଜ ଚକ୍ରବାକମିଥୁନ ।
ରୋମାବଳୀ ଅଳିଆବଳୀ, ଗତି ହଂସ ସମାନ । ୩୫ ।
ଉଦର କମଳପଲାଶ, ନାଭି ଜଳଭଉଁରୀ ।
କର କୋକନଦ, ସୁବାହୁ ଯହିଁ ମୃଣାଳ ସର । ୩୬ ।
ବାଳୀ ଜଳେ ମିଳି କରନ୍ତି କେଳି ଏ ହୋଏ ଜଣା ।
ସଖୀ ସଙ୍ଗେ ମିଶି କ୍ରୀଡ଼ଇ ଯହିଁ ଚଞ୍ଚଳେକ୍ଷଣା । ୩୭ ।
ତାହାଙ୍କ ଏମନ୍ତ ବୋଇଲେ ବୋଲି କେ ବା ବୋଲିବ ।
ସୁଲକ୍ଷଣାକୁ ଏ ଲକ୍ଷଣା କାହୁଁ ସମାନ ହେବ । ୩୮ ।
ସ୍ନାନ ଅବଶେଷେ କୂଳକୁ କୁଳପାଳିକା ଆସି ।
ଗଉର ଅଙ୍ଗରେ ଜଡ଼ି ସେ ଶାଢ଼ୀ ଏମନ୍ତ ଦିଶି । ୩୯ ।
ସ୍ଫଟିକବାଡ଼ ଫୁଟି ଦିଶେ କି ସେ ହେମ ପିତୁଳା ।
ସ୍ତନସଂପୁଟେ କି ବାରଣଦନ୍ତ ପିଧାନ କଲା । ୪୦ ।
ଅତି ଜବଜର ନୀରରେ ଯହୁଁ ଏମନ୍ତ ଭାବ ।
ସେ ଚନ୍ଦ୍ରଶିଳଶଇଳ କି ହାସଚନ୍ଦ୍ରରେ ଦ୍ରବ । ୪୧ ।
ବିନ୍ଦୁ ବିନ୍ଦୁ ଜଳ ରହିଛି ଚାରୁ କୁଟିଳବାଳେ ।
ତୁଷାର ବୃଷ୍ଟି କି ହୋଇଛି ନବତମାଳଦଳେ । ୪୨ ।
ନବଘନେ କିବା ଉଇଁଛି ତାର ତାରକାଶ୍ରେଣୀ ।
ପୋତି ପତନ କି ହୋଇଛି ନୀଳମଣିଧରଣୀ । ୪୩ ।

---

ରୋମାବଳୀ—ଲୋମ ସବୁ, ଅଳିଆବଳୀ—ସଙ୍ଘିମାନେ, ଉଦର—ପେଟ, କର—ହାତ, କୋକନଦ—ପଦ୍ମ, ମୃଣାଳ—ପଦ୍ମନାଡ଼ ।

୩୭ । ଚଞ୍ଚଳେକ୍ଷଣା (ଚଞ୍ଚଳ+ଇକ୍ଷଣା)—ଶୀଘ୍ର ଦୃଷ୍ଟି ପକାଇବା ।

୩୮ । ଇକ୍ଷଣା—ଉପମା—ବର୍ଣ୍ଣି ।

୩୯ । ଅବଶେଷେ—ଶେଷରେ, କୁଳପାଳିକା—କୁଳସ୍ତ୍ରୀ, ସତୀ ସ୍ତ୍ରୀ; ଗଉର—ଗୋରା, ଅଙ୍ଗ—ଦେହ ।

୪୦ । ହେମପିତୁଳା—ସୁନାରୂପ, ସ୍ତନସଂପୁଟେ—ଉଭୟ କୁଚ ମିଳନ ସନ୍ଧି ।

୪୧ । ନୀରରେ—ପାଣିରେ, ଭାବ—ଚନ୍ଦ୍ରା କର, ଚନ୍ଦ୍ରଶିଳ—ଚନ୍ଦ୍ରକାନ୍ତମଣି, ଶଇଳ—ପର୍ବତ, ହାସଚନ୍ଦ୍ର—ହାସ୍ୟରୂପକ ଚନ୍ଦ୍ର, ଦ୍ରବ—ତରଳଯାଇ ।

୪୨ । ଚାରୁ—ସୁନ୍ଦର—କୁଟିଳ—କୁଞ୍ଚ କୁଞ୍ଚିଆ, ତୁଷାର—କାକର, ନବ—ନୂଆ, ତମାଳ—ସତ୍ୟାମ୍ଳା, ଦଳେ—ପତ୍ରରେ ।

୪୩ । ନବଘନ—ମେଘ, ତାର—ଉଜ୍ଜ୍ୱଳ, ତାରକାଶ୍ରେଣୀ—ତାରା ସବୁ, ପତନ—ପଡ଼ିବା, ନୀଳମଣି ଧରଣୀ—ନୀଳମଣିରେ ପ୍ରସ୍ତୁତ ପୃଥିବୀ ।


Digitized by srujanika@gmail.com

ଅଙ୍ଗ ଅଙ୍ଗନାର ପୋଛିଲେ ସଖୀମାନେ ସତ୍ୱରେ ।
ବେଣୀ ପୋଛି ଦେଇ ଗଣ୍ଠି ଦେଲେ ଅଗ୍ରଭାଗରେ । ୪୪ ।

ଭଞ୍ଜି ଦେଲେ ପୀତାମ୍ବରକୁ ଉରୁସନ୍ଧିକି ରୁନ୍ଧ ।
ପିନ୍ଧି ନିତମ୍ବିନୀ ନିବଡ଼େ ନୀବୀବନ୍ଧକୁ ବାନ୍ଧ ୪୫ ॥

ତୋୟ ହୋଇଲା ଗୋରଦେହ ଅଲଙ୍ଗନକୁ ପାଇ ।
ଅଞ୍ଚ ନ ଥିଲେ ଶାଢ଼ୀ ଥିଲା ପର ଦିଶନ୍ତା ନାହିଁ । ୪୬ ।

ଜଣାଇଲେ ଏବେ ମନ୍ଦିରେ ଯିବା ଅସ୍ତ ଦିନେଶ ।
ଜଗତମୋହିନୀ ଜଗତୀପରେ ହେବ୍ର ପ୍ରବେଶ । ୪୭ ।

ଶୁଣିକରି କରପଦ୍ମରେ ଦେଇ ବିଜେ ସୁନ୍ଦରୀ ।
କାମକଳାକୁ ସେ ଅକ୍ଷେପି ସଜନୀଙ୍କ ପଛରି । ୪୮ ।

ହରି କରେ କିସ ଶୋଭିତ(୧) ସନେ କେ ହୋଏ ଭିନ୍ନ(୨) ।
କାମେ କାମୁକ କି କରନ୍ତ(୩) ଭ୍ରମ ନାହିଁ ଶୋଭନ(୪) । ୪୯ ।

କେ ବରଜ-ରଜ(୫) ସଂସାରକରତା କେ(୬) ଅଟଇ ।
ନୃପତି ଅଗରେ କି ବୋଲି ପ୍ରତିହାରୀ ଡ଼ାକଇ(୭) । ୫୦ ।

କି ଶୋଭା କରେ ଚନ୍ଦ୍ରକରେ(୮) ତାର ନାହିଁ ଉଦିତ(୮)
ବିଷ୍ଣୁର ସର୍ବଦା ମଣ୍ଡନ କି କି(୧୦) କହ ତ୍ୱରିତ । ୫୧ ।

---

୪୪ । ଅଙ୍ଗ—ଦେହ, ଅଙ୍ଗନା—ସ୍ତ୍ରୀ, ସତ୍ୱରେ—ଶୀଘ୍ରରେ ।

୪୫ । ଭଞ୍ଜିଦେଲେ—ପିନ୍ଧାଇଲେ, ପୀତାମ୍ବର—ହଳଦିଆ ପାଟଲୁଗା, ଉରୁସନ୍ଧିକି—ଜଙ୍ଘ ଭିତରକୁ, ରୁନ୍ଧି—ଭିଡ଼, ନିତମ୍ବିନୀ—ଉଚ୍ଚପିଚ୍ଛଯୁକ୍ତା ସ୍ତ୍ରୀ, ନିବଡ଼େ—ଗାଢ଼ ଭାବରେ, ନୀବୀବନ୍ଧ—ଅଣ୍ଟାପାଖର ଗଣ୍ଠି ।

୪୬ । ତୋୟ—ସଫା, ଅଲଙ୍ଗନ—କୋଳ ।

୪୭ । ମନ୍ଦିରେ—ଘରକୁ, ଦିନେଶ—ସୂର୍ଯ୍ୟ, ଜଗତୀ—ପିଢ଼ା ।

୪୮ । ଅକ୍ଷେପି—ଅନେଇ ।

୪୯ । ୫୦ । ୫୧ । (୧) ପଦ୍ମ (୨) ଚକୁଆଚକୋଇ (୩) ଶୃଙ୍ଗାର, (୪) ଗଦା, (୫) ନନ୍ଦ, (୬) ବ୍ରହ୍ମା (୭) ମଣିମା, (୮) ଦାଗ, (୯) ଅକାଶ, (୧୦) ତୁଳସୀ । ସଂସାରକର୍ତ୍ତା—ଜଗତ୍‌କର୍ତ୍ତା, ନୃପତି—ରଜା, ପ୍ରତିହାରୀ—ପରିହାରୀ, ଚନ୍ଦ୍ରକରେ—ଚନ୍ଦ୍ରକିରଣରେ, ଉଦିତ—ପ୍ରକାଶିତ ।

ସେ ଚିହ୍ନେ କମଳ(୧) ରଥାଙ୍ଗ(୨) ଦର(୩) ଗଦ (୪)ନନ୍ଦକ(୫) ।
ମଣି(୬) ମା(୭) ହରିତଅମ୍ବର(୮) ବୋଲି ହୋଏ ବିବେକ । ୫୨ ।
ଶ୍ରବଣେ ପ୍ରଶଂସା ସଂସାରସାର-ରମଣୀ କଲ୍ପ ।
ସଦନେ ପ୍ରବେଶ ହୋଇ ସେ ପୁଣି ସୁବେଶ ହେଲ । ୫୩ ।
ଏଠାରୁ ଏ ଛାନ୍ଦ ସମ୍ପୂର୍ଣ୍ଣ ଏତେ ଲକ୍ଷଣେ ଯୁକ୍ତ ।
ଶ୍ଳେଷରେ ଅଭଙ୍ଗ ସଭଙ୍ଗ ଭଙ୍ଗାଭଙ୍ଗହିଁ ବ୍ୟକ୍ତ । ୫୪ ।
ଛବିଧି ଯମକ ରୂପକ ଅଶ୍ରସ୍ୱରେ ଦୀପକ ।
ବହିର୍ଲିପି ଅନ୍ତର୍ଲିପିକା ଯେଣୁ କର୍ଣ୍ଣରୋଚକ । ୫୫ ।
ବାଳ-ଛଳ-ଶ୍ରମ-ବାମନମୂର୍ତ୍ତି ମନରେ ଧ୍ୟାୟୀ ।
ଉପେନ୍ଦ୍ର ବୀରବର ଯେ ଏଥୁ ରସ କହଇ । ୫୬ ।



## ସପ୍ତମ ଛାନ୍ଦ ।

### ରାଜକୁଅର ସିଂହଳରେ ଭୋଜବିଦ୍ୟା ଦେଖାଇବା ।

ରାଗଭୂପାଳ

ଏଥୁ ଅନ୍ତେ ଶୁଣ ଜନେ ମନ ଦେଇ । ମନୋହର ବସନ୍ତ ଋତୁକୁ ଚାହିଁ ।୧।
ବିଜେ ଅଗ୍ରେ କର୍ଣ୍ଣାଟରାଜ-ସୁତ । ସମୀପରେ ବସିଛନ୍ତି ଗୁରୁ ମିତ୍ର । ୨ ।

---

୫୨ । (୧) କମଳ—ପଦ୍ମ (୨) ରଥାଙ୍ଗ—ଚକ୍ର, (୩) ଦର—ଶଙ୍ଖ । (୪) ଗଦା (୫) ନନ୍ଦକ—ନନ୍ଦକଖଡ୍ଗ (୬) ମଣି—ସାମନ୍ତକ ମଣି, (୭) ମା—ଲକ୍ଷ୍ମୀ, (୮) ହରିତ ଅମ୍ବର—ହଳଦିଆ ପାଟଲୁଗା, ବିବେକ—ବିଗ୍ରହ,
୫୩ । ସଦନେ—ଘରେ ।
୫୪ । ବ୍ୟକ୍ତ—ପ୍ରକାଶ, ଅଭଙ୍ଗ—ଏକାର୍ଥ, ସଭଙ୍ଗ—ଭଙ୍ଗା ।
୫୫ । କର୍ଣ୍ଣରୋଚକ—କାନର ତୃପ୍ତିଦାୟକ ।
୫୬ । ବାଳ—ବାଳବାନର, ଛଳ—କପଟ କରି, ବଳିକୁ ପାତାଳକୁ ଚାପିଥିଲେ ଲାବଣ୍ୟବତୀ ସଖୀମାନଙ୍କ ସଙ୍ଗରେ ନେଇ ବନରେ କ୍ରୀଡ଼ା କରି ପୋଖରୀରେ ସ୍ନାନ କରି ନାନାପ୍ରକାର ହାସପରିହାସ ହୋଇ ପର୍ଯ୍ୟନ୍ତ ଶେଷରେ ସୂର୍ଯ୍ୟ ଅସ୍ତ ବେଳକୁ ଘରକୁ ଆସି ବେଶ ହେଲା ।



୭ମ ଛାନ୍ଦ

୨ । ଅଗ୍ରେ—ଚଉକିରେ, ବିଜେ—ବସି, ସମୀପରେ—ପାଖରେ ।


Digitized by srujanika@gmail.com

ସାବଧାନମଣିମା ଶୁଣ୍ଣିଅ ଡ଼ାକେ । ସେବା ନିପୁଣ ଛନ୍ତି ଖଟଣୀ ଲୋକେ ॥
ଯଶ ବର୍ଣ୍ଣନା କରନ୍ତି ଭାଟେ ଶ୍ଳେଷେ । ଏକପଦରେ ଗୀତ କବିତ୍ୱ ବଶେ । ୪ ।
ଚନ୍ଦ୍ର ସେହୁ ଭୂପ ପର ବୀର ଦାନୀ । କୀର୍ତ୍ତି ନିଷ୍ଠ ତାର ହାର ଧୀର ମାନୀ । ୫ ।
ଯାନ କବ ଦେଖି ପର ଦର୍ପହ୍ଲାନେ । ପାଏ ସୁଖଭାବନୀୟ ଛନ୍ଦ ଦନେ । ୬ ।
ଭେଟେ କେବ ଗୀତ କର ନିବନ୍ଧରେ । ପ୍ରାନ୍ତ୍ୟଯମକ ଶୃଙ୍ଖଳା ଗୋମୂତ୍ର୍ୟରେ । ୭ ।

ଦ ର ଚ ସ୍ବ ହ ର ଧୀ ବ ପ୍ର ଣଂ ସା ର ।
ସା ର ଅ ସ୍ବ କ ର କ ର ଏ ଙ୍ଗ ସା ର । ୮ ।
ସା ର ସା ର ଯ ତ ଗ ତ ହେ କୁ ମା ର ।
ମା ର ପ ର ଣ ତ ଅ ତ ସ୍ବ କୁ ମା ର । ୯ ।

ହଟ ଦେଖାଉଅଛନ୍ତି ନଟ ଛନ୍ଦି । ଚର୍ଚ୍ଚି ବଂଶଶଳାକାରେ ଢୋଲ ବାଇ । ୧୦ ।
ନାଟ କରୁଅଛନ୍ତି ଗଣିକା ଅଳୀ । ଗୀତ ଗାଉଅଛନ୍ତି ଗୁଣିକେ ମିଳି । ୧୧ ।
ଗଜ ଅଶ୍ୱ ରତନ ବସନ ମାନ । ମୂଲ୍ୟ କରୁଛନ୍ତି ଜ୍ଞାନଶୀଳ ଜନ । ୧୨ ।
ରାଜାମାନେ ଗତ ଯୁଦ୍ଧକଥା ଭାଷି । କରୁଛନ୍ତି ସାଧନ ପଦାତି ଆସି । ୧୩ ।
ବସନ୍ତକ ମୁଖ ଗୃହିଁ ପରହାସେ । ଏହି ସମୟରେ ଗୁଣନିଧି ଭାଷେ । ୧୪ ।
ଭୂପ କନ୍ୟା ଲାଭ ହେଲା ଦ୍ୱୀପାନ୍ତରେ । କିଛି ଅପୂର୍ବ ପଦାର୍ଥ ଏ ଉଭାରେ । ୧୫ ।
ଯୁବରାଜ ଗ୍ରାମରେ ନ କଲ ଭେଟି । ଶୁଣି ସଲଜ୍ଜ ହୋଇ ସେ ବେଗେ ଉଠି । ୧୬ ।
ନିଜ ରମଣୀ ପାଶରୁ ନେଇ କୀର । ଦେଲା ପଢ଼ା ଶୁଣି ସର୍ବେ ତୋଷଭର । ୧୭ ।

---

୪ । ଶ୍ଳେଷେ—ଶ୍ଳିଷ୍ଟପଦରେ, ଦ୍ୱିଅର୍ଥକ ।
୫ । ଦାନୀ—ଦାନଶୀଳ, କୀର୍ତ୍ତି—ଯଶ, ଧୀର—ବିନୟୀ, ମାନୀ—ଅଭିମାନୀ ।
୬ । ଦର୍ପହ୍ଲାନେ—ଗର୍ବନାଶରେ, ସୁଖଭାବନୀୟ—ଉତ୍ତମ—ଖୁସି ମନମତ କଥା ।
୧୦ । ନଟ—କେଳା, ବଂଶଶଳାକା—ବାଉଁଶକାଠି, ବାଇ—ବଜାଇ ।
୧୧ । ଗଣିକା—ବେଶ୍ୟା, ଅଳି—ସ୍ତ୍ରୀ, ଗୁଣିକେ—ବିଦ୍ୱାନମାନେ ।
୧୨ । ଗଜ—ହାତୀ, ଅଶ୍ୱ—ଘୋଡ଼ା, ବସନ—ଲୁଗା ।
୧୩ । ପଦାତି—ପାଇକ, ସାଧନ—ଯୁଦ୍ଧ ବିଦ୍ୟା ଅଭ୍ୟାସ କରିବା ।
୧୪ । ପରହାସେ—ଥଟାରେ, ଭାଷେ—କହେ ।
୧୫ । ଦ୍ୱୀପାନ୍ତରେ—ଅନ୍ୟ ଦ୍ୱୀପରେ ।
୧୬ । ସଲଜ୍ଜ—ଲଜ୍ଜିତ, ବେଗେ—ଶୀଘ୍ରେ ।
୧୭ । ନିଜ—ଆପଣାର, ରମଣୀ—ସ୍ତ୍ରୀ, କୀର—ଶୁଆ ।

ଏହିକାଳେ ଜଣାଇଲା ବେକବର । ଅସି ବୋଇତଅଲେକ ଅଛୁ ଦ୍ୱାର ।୧୮।
ବୋଲେ ସିଂହଳଦ୍ୱୀପୁଁ ଅସିଛୁ ମୁହିଁ । ଇଚ୍ଛା ମୋର ଯୁବରାଜ ଭେଟପାଇଁ ।୧୯।
ଶୁଣି ନୃପସୁତ କଲା ସୀତ୍କାର । ଅଣି ଛାମୁରେ ଭେଟାଇ ପ୍ରତିହାର ।୨୦।
ଶିରେ କର ଦେଇ ଭେଟି ଏତେ ଦ୍ରବ୍ୟ । ଦେଲା ପ୍ରମୋଦ ଚିତ୍ତରେ ସେ ସାଧବ
ମେଷଚକ୍ଷୁ ନୀଳା ବଜ୍ରଜାତି ହୀରା । ତାର ମୁକୁତା କୁକ୍କୁଟଡିମ୍ବ ପରା । ୨୨।
ଅଛୁ ସୁମାଣିକ୍ୟ ପଦ୍ମରାଗ ଜାତ । ଅଷ୍ଟବଙ୍କ ପ୍ରବାଳଗୁଚ୍ଛ ପନ୍ତ୍ରି ପନ୍ତ୍ରି । ୨୩ ।
ଚନ୍ଦ୍ରକାନ୍ତ ପାଷାଣ ନୀଳେନ୍ଦ୍ର ମଣି । ଲକ୍ଷ୍ମୀ ନାରାୟଣ ଶିଳା ନୋହେ ଗଣି
ଅଗୁରୁ ଚନ୍ଦନ ଅତର ଶ୍ରୀକର୍ପୂର । ଜଳୁ ପାତଳ ଚୂଆ ପମୀରନୀର । ୨୫ ।
ସମରାଜ କୁଅଦ ଜାହ୍ନବୀଜଳ । ମନୋହର ବଂଶପକ୍ଷୀ ହରିତାଳ । ୨୬ ।
ରୌପ୍ୟ ଇଚ୍ଛାକୁ ଫୁଲ ତୁଲରେ ଦେଇ । ଜମ୍ବୁନଦ ବନା ଆନ ହେମ ନାହିଁ
ମଣି ପଦରେ ମିହିରମଣି ଲେଖ । ଦନ୍ତେ ଦନ୍ତିଦନ୍ତ ନଖେ ବ୍ୟାଘ୍ରନଖ ।୨୮।
ଚର୍ମ ଅସନରେ ସାର ବୋଲବାର । ଚର୍ମ-ଅଡଣୀଖଡ୍ଗଚର୍ମ ଚାର । ୨୯।

---

୧୮ । ବୋଇତଅଲେକ—ବାର୍ତ୍ତାବହ—ଦୂତ ।
୧୯ । ଭେଟ—ସାକ୍ଷାତ ।
୨୦ । ନୃପସୁତ—ରାଜପୁତ୍ର, ସୀତ୍କାର—ସମ୍ମତ, ଛାମୁରେ—ଆଗରେ, ପ୍ରତିହାରୀ—ଦ୍ୱାରୀ ।
୨୧ । ପ୍ରମୋଦ ଚିତ୍ତ—ଖୁସିମନ, ସାଧବ—ସନ୍ଥ—ଉତ୍ତମଲୋକ ।
୨୨ । ମେଷଚକ୍ଷୁ—ମେଣ୍ଢାଆଖି, କୁକ୍କୁଟ ଡିମ୍ବ—କୁକୁଡ଼ା ଅଣ୍ଡା ।
୨୩ । ସୁମାଣିକ୍ୟ—ଉତ୍ତମ ମାଣିକ୍ୟ, ପ୍ରବାଳ—ପୋହଳା, ପନ୍ତ୍ରି ପନ୍ତ୍ରି—ପେନ୍ଥା-ପେନ୍ଥା, ଅଷ୍ଟବଙ୍କ—ଅଠପ୍ରକାରର ବଙ୍କା, ପୂର୍ବ: ପଶ୍ଚିମ; ଉତ୍ତର, ଦକ୍ଷିଣ, ଅଗ୍ନି ଐଶାନ୍ୟ, ନୈର୍‌ଋତ, ବାୟୁ, ଆଠ ଦଗକୁ ।
୨୪ । ଶିଳା—ପଥର, ଲକ୍ଷ୍ମୀ ନାରାୟଣ—ବିଷ୍ଣୁ ଓ ଲକ୍ଷ୍ମୀ ।
୨୫ । ପାତଳ—ସରୁ, ପମୀର—ସୁବାସ, ନୀର—ପାଣି ।
୨୬ । ସମରାଜ କୁଅଦ—ଖନଜଦ୍ରବ୍ୟ ବଶେଷ, ଜାହ୍ନବୀ—ଗଙ୍ଗା, ମନୋହର—ସୁନ୍ଦର, ବଂଶପକ୍ଷୀ—ବାଉଁଶ ପକ୍ଷିଆ ।
୨୭ । ରୌପ୍ୟ—ରୂପା, ତୁଲରେ—ସମାନରେ, ଜମ୍ବୁନଦ—ଉତ୍କୃଷ୍ଟ ସୁନା, ପକ୍ୱି ସୁନା; ହେମ—ସୁନା ।
୨୮ । ମିହିରମଣି—ସୂର୍ଯ୍ୟକାନ୍ତ ମଣି, ଦନ୍ତିଦନ୍ତ—ହାତୀଦାନ୍ତ ।
୨୯ । ଅସନ—ବସିବା ଯାଗା, ସାର—ପ୍ରଧାନ, ବୋଲବାର କୃଷ୍ଣାଜିଣ୍ଡ ମୃଗଚର୍ମ, ଚର୍ମ ଅଡ଼ଣୀ—ଢ଼ାଲ, ଖଡ୍ଗ—ଗଣ୍ଡା, ଚର୍ମ—ଚମ ।


Digitized by srujanika@gmail.com

ଢଳା ଛରବାଗ ଗୃଢ ଯମଦର । ଶଙ୍ଖ ଦକ୍ଷିଣାବର୍ତ୍ତିକ ଶୁଦ୍ଧତର । ୩୦ ।
ଏକମୁଖୀ ରୁଦ୍ରାକ୍ଷର ସୁଶୋଭନ । ଗୃରୁ କନକମୃଗ ଚର୍ମମାନ । ୩୧ ।
ଶୁଭ୍ର କାଗଜ ନାଳୁଗେଦେଶଜାତ । ବାମ କାଞ୍ଚନ ମାଳା ଅପରମିତ । ୩୨ ।
ସିନ୍ଧୁଜାତ ହୟ ଭାରବାହ ଖର । ବଜ୍ରଜାତ ଗଜ ପାଠଭାଲ କୀର । ୩୩ ।
ନେପାଳଜା ମୃଗିକା ସାଲଅ ଗୃରୁ । ଲବଙ୍ଗର ଲତା ଜାତଫଳ ତରୁ ।୩୪।
ଚକୋରକ ଧନଞ୍ଜାତା ପାରାବତ । କଳପନ ଶୂନ୍ୟଖଗ ସୁରଞ୍ଜିତ । ୩୫ ।
ଲୋହ ଚୁମ୍ବକ ପରଶୁଗ୍ରାବ ଯହିଁ । ଦାସୀନେବ ଗଜଘଣ୍ଟବନରେ ଶୋହି
ଶୃଙ୍ଗ କମାଣ ଖାର ଗୃଭକପନ । ଲାଗି କ ବଶବ ବଣ କରେ ନେନ ।୩୬।
ମାନଦରଶାଯୁକ ଉତ୍ତମଫଗ । ଅଛି ସେପଣ ବନଚେ ଚନ୍ଦ କର୍ । ୩୮ ।
ଦେଖି ଦବ୍ୟ ପଦାର୍ଥ ସମ୍ମୋହନରେ । କରେ ସାଧୁଙ୍କୁ ପ୍ରଶଂସା ସୁମନରେ
ଏକ ଦେଶେ ଏ ନଂ ମିଳେ ବଗୃବଲେ । କେଉଁ ଦେଶରୁ ଅଗତ ପଗୃଲେ
ସେ ବୋଇଲା ସିଂହଳଦ୍ୱୀପର ମୁହିଁ । ଏ ଦେଶକୁ ଅସଛୁ ବାଣିଜ୍ୟପାଇଁ ।୦୧।

---

୩୦ । ଯମଦର—ଯମଦାଢ଼, ଦକ୍ଷିଣାବର୍ତ୍ତକ—ଦକ୍ଷିଣମୁହାଁ, ଶୁଦ୍ଧତର—ବଶୁଦ୍ଧ ପବନ ।

୩୧ । ସୁଶୋଭନ—ସୁନ୍ଦର. ଗୃରୁ—ସୁନ୍ଦର, କନକ—ମୃଗ ସୁବର୍ଣ୍ଣ ସଦୃଶ ମୃଗ,

୩୨ । ଶୁଭ୍ର କାଗଜ—ଧଳାକାଗଜ ।

୩୩ । ସିନ୍ଧୁଜାତ—ସମୁଦ୍ରଘୋଟକ ବା ସିନ୍ଧୁଦେଶରଘୋଡ଼ା, ହୟ—ଘୋଡ଼ା, ଭାରବାହ—ଭାରୁଆ, ଖର—ଗଧ, ବଜ୍ରଜାତ—ଐରାବତଅଂଶ, ଗଜ—ହାତୀ, ପଠଭାଲ—ଚନ୍ଦନା, ମୁହଁର ୨ ପାଖରେ ନାଲଚନ୍ଦ-ଥାଏ, କୀର—ଶୁଆ ।

୩୪ । ଜାତଫଳ—ଜାଇଫଳ, ତରୁ—ଗଛ ।

୩୫ । ପାରାବତ—ପାରା, ସୁରଞ୍ଜିତ—ସୁନ୍ଦର ।

୩୬ । ଲୋହ—ଲୁହା, ପରଶୁଗ୍ରାବ—ସ୍ପର୍ଶମଣିପଥର ।

୩୭ । ଶୃଙ୍ଗ—ଶିଙ୍ଗ, କମାଣ—ତୋପ, ଗୃତକପନ—ଗୃତକପର୍ଣ୍ଣୀର ପର, ବଚନ—ମନୋହର ।

୩୮ । ମାନଦସ୍ୱଶାଯୁକ—ମନକାମନାଧନ ।

୩୯ । ସମ୍ମୋହନରେ—ବଶ୍ୟରେ, ସୁମନରେ—ଉତ୍ତମ ମନରେ ।

୦ । ଆଗତ—ଅସିଛୁ ।

୪୧ । ବାଣିଜ୍ୟ—ବ୍ୟବସାୟ ।

ଯେହୁ ଲାବଣ୍ୟବତୀ ସମ୍ଭବସ୍ଥାନ । ତହିଁ ଅପୂରୁବ ଭେଟିଁ ଦ୍ରବ୍ୟମାନ ।୪୨।
ଲକ୍ଷ୍ମୀପରପୂରିତ ସେ ସବୁକାଳେ । ଏବେ ଅଧିକ ରାଜକୁମାରୀ ବଳେ ।୪୩।
ହେଉ ନାହିଁ ଯେ ଉରସା ତାହାଙ୍କର । ଏହା କହିବାକୁ ଛନ୍ତି ଅନୁସର
.ହର ଉତ୍ସଙ୍ଗସଦନ ମୋର ଭ୍ରଷ୍ଟ । ନୋହୁ ତାକୁ ନ କରିବୁ ଏ ମୋ ପୁଷ୍ଟ
ଏ ବଚନ ଶ୍ରବଣେ ସେ ଗୃହମିନେ । ପରସ୍ପରେ ଠାରଠାର ହେଲେ ନେନେ
ମନ୍ତ୍ରୀସୁତ ବୋଇଲା ଭୃତ୍ୟକୁ ଗୃହିଁ । ଦିନ କେତେ ଭୋଗ ହୋ ଘଗୃର ଯାଇ ।
ଏ ବଚନକୁ ଡ଼ାକିଲା ପ୍ରତିହାରୀ । ହୁଅ ସମସ୍ତେ ମେଳାଣି ନିଜପୁରୀ । ୪୮ ।
ତାହା ଡ଼ାକ ପ୍ରମାଣେ ନିର୍ଜନ ସଭା । ପୁଚ୍ଛେ ସାଧୁକୁ ନୃପଜ ହୋଇ ଲୋଭା ।
ତୁମ୍ଭେ ଯାହା କହିଲ ହେ ଅଲୌକିତ । ସତେ ଏମନ୍ତ ସୁନ୍ଦରୀ ମର୍ତ୍ତ୍ୟେ ଜାତ ।
ସେ ବୋଇଲା ଆମ୍ଭ ପରେ ଏତେ କଥା । ତେବେ ପ୍ରଥମପଦରେ ନାହିଁ ମିଥ୍ୟା।
ପରଦ୍ରବ୍ୟ ପରସ୍ତ୍ରୀରୀ ହରଣକୁ । ଲେଖୁଁ ଶୁଭ କରି ତହୁଁ ମରଣକୁ । ୫୨ ।
ନାହୁଁ ଖଳ ଦୁର୍ଜନ ନିର୍ଦ୍ଧନ ଜନ । ଶୁଣିଲାର ପ୍ରସଙ୍ଗ ନ କହୁଁ ପୁନଃ ।୫୩।
ଦୂତ କରି ଭାଟ ଡାକିଜଣ୍ମ ଜଣେ । ନୋହୁଁ ଅଧିକ କହିବୁ କି କାରଣେ ।
ଯାହା ସମେ ବ୍ରହ୍ମାଣ୍ଡଉଦରେ ବର । ନାହିଁ ଇନ୍ଦ୍ରଗନ୍ଧ ଦନୁ ପଞ୍ଚଶର । ୫୫ ।
ତାକୁ ସମାନ ଦେବାକୁ ଅଛୁ ଏହି । ଯାହା ଦର୍ପଣ ମ୦ରେ ଦିଶେ ସେହି ।
ତାକୁ ଏରୂପେ ନିର୍ମାଣ କଲା ବିହି । କୀଟ କାଠୁଁ ଯେମନ୍ତ ଅକ୍ଷର ହୋଇ ।୫୭।
ଯେତେ କବି ବର୍ଣ୍ଣିଛନ୍ତି ଯେତେ ନାରୀ । ଠିକେ କହୁ ରମ୍ଭା ରତି ନୋହେ ସରି।
ବଡ଼ କରି ବୋଲନ୍ତି ଲାବଣ୍ୟବତୀ । ସେହି ଜନମ ହୋଇଣ ଅଛୁ କ୍ଷିତି ।୫୯

---

୪୨ । ସମ୍ଭବସ୍ଥାନ—ଜନ୍ମସ୍ଥାନ, ଅପୂରୁବ—ଆଶ୍ଚର୍ଯ୍ୟ ।
୪୩ । ରାଜକୁମାରୀ—ରାଜାଝିଅ ।
୪୫ । ଉତ୍ସଙ୍ଗ—କୋଳ, ସଦନ—ସ୍ଥାନ, ବଜାର; ଭ୍ରଷ୍ଟ—ନାଶ, ପୁଷ୍ଟ—ଉନ୍ନତ
୪୭ । ଭୃତ୍ୟ—ଚାକର ।
୪୯ । ନିର୍ଜନ—ଜନଶୂନ୍ୟ, ନୃପଜ—ରାଜସୁତ, ଲୋଭା—ଲୋଭକର ।
୫୦ । ଅଲୌକିତ—ଆଶ୍ଚର୍ଯ୍ୟ, ମର୍ତ୍ତ୍ୟେ—ପୃଥିବୀରେ ।
୫୩ । ଦୁର୍ଜନ—ଦୁଷ୍ଟ, ନିର୍ଦ୍ଧନ—ଦୁଃଖୀ, ପ୍ରସଙ୍ଗ—ବିଷୟ ।
୫୫ । ବ୍ରହ୍ମାଣ୍ଡ ଉଦରେ—ସଂସାର ମଧ୍ୟରେ, ବର—ଶ୍ରେଷ୍ଠ, ସ୍ୱାମୀ; ପଞ୍ଚବାଣ—କନ୍ଦର୍ପ ।
୫୭ । କୀଟ—ପୋକ, ନିର୍ମାଣ—ତିଆର ।
୫୮ । ବର୍ଣ୍ଣିଛନ୍ତି—ବର୍ଣ୍ଣନା କରିଛନ୍ତି, ନାରୀ—ସ୍ତ୍ରୀ, ସରି—ସମାନ ।
୫୯ । ବଡକରି—ପ୍ରଧାନ ବୋଲି, କ୍ଷିତି—ପୃଥିବୀ ।


Digitized by srujanika@gmail.com

ଯଥା ନ ଦେଖି ନ ଖାଇ ସୁଧା ନାମ । ସର୍ବମତେ ବହୁ ସ୍ୱାଦୁ ମନୋରମ ।୬୦।
ତଥା ଅଗ୍ରୁ ଜାତ ହେବ ବୋଲି ବାମା । ଖ୍ୟାତ ହୋଇଲା ଲାବଣ୍ୟବତୀ ନାମା।
ହାସ ଅଧର ଶୃଙ୍ଗିଲେ ଏ ସଂଶୟ । କରୁଅଛି କାହା ଶୋଭା କେଉଦୟ ।୬୨।
ବାଳଅରୁଣ କି ସୁଧାସ୍ନାନ କରି । ଅନୁରାଗ ହରଷ ମିଶିଲା ପରି । ୬୩ ।
କିବା ମାଣିକ୍ୟକୁହରୁ ମୋତି ଜ୍ୟୋତି । ଦଶେ ତଥା ଝଟକଇ ଦନ୍ତପନ୍ତି ।୬୪
ସେ ଅଧରରେ ଶୋଭା ତାମ୍ବୁଲବୋଳ । କେ କାହାକୁ ରଙ୍ଗକଲା ହୋଏ ଗୋଳ
କାହା ରଦନ ସେ କାଳେ କି ସୁନ୍ଦର । ସିନ୍ଦୂରରେ ମ କ୍ଷାଳି କି ଘନସାର ।୬୬
ବୋଲି ଢୋକିବା ବେଳେ ଦଶଇ ଗଳେ । ଫଗୁମିଶା ଜଳ ଯେମନ୍ତ କାଚନଳେ।
କଳେ ଥାଇ ପାନପିକ କି ମଞ୍ଜୁଳ । ପକ୍ୱନାଗରଙ୍ଗ ପ୍ରାପ୍ତ ଗଣ୍ଡସ୍ଥଳ । ୬୮ ।
ଅଙ୍ଗେ ଅଛି ନବପୁଷ୍ପ ନବପକ୍ଷୀ । ଏକ ଏକ ଅଙ୍ଗେ ଲକ୍ଷି ତହେଁ ଅକ୍ଷି ।୬୯

---

୬୦ । ସୁଧା—ଅମୃତ, ସର୍ବମତେ—ସମସ୍ତଙ୍କ ବିଚାରରେ, ମନୋରମ—ଭଲ ।
୬୧ । ବାମା—ସ୍ତ୍ରୀ, ଖ୍ୟାତ—ବିଖ୍ୟାତ ।
୬୨ । ଅଧର—ଓଷ୍ଠ, ସଂଶୟ—ସନ୍ଦେହ, ଉଦୟ—ପ୍ରକାଶ ।
୬୩ । ବାଳଅରୁଣ—ବାଳସୂର୍ଯ୍ୟ ( ସକାଳ ସୂର୍ଯ୍ୟ ), ସୁଧାସ୍ନାନ—ଜଳରେ ଗାଧୋଇବା ( ସମୁଦ୍ରରୁ ଉଠିଲା ବେଳେ ) ଅନୁରାଗ—ସ୍ନେହ ।
୬୪ । ମାଣିକ୍ୟ କୁହରୁ—ମାଣିକ୍ୟ ଗୁମ୍ଫାରୁ, ଝଟକଇ—ଉଜ୍ଜ୍ୱଳ ଦିଶେ, ଦନ୍ତପନ୍ତି—ଦାନ୍ତସାରି ।
୬୫ । ତାମ୍ବୁଲ—ପାନ, ବୋଳ—ପିଠ, ଗୋଳ—ଭ୍ରମ ।
୬୬ । ରଦନ—ଦାନ୍ତ ଘନସାର—କର୍ପୂର ।
୬୭ । ପାନପିକ ଢୋକିବା ବେଳେ ଗଳା ଲାଲ ଦିଶେ—ଯେପରି କାଚ ନଳରେ ଅବିର ପାଣି ପଡ଼ିଥିଲେ ଦେଖାଯାଏ ।
୬୮ । ମଞ୍ଜୁଳ—ସୁନ୍ଦର, ପକ୍ୱ—ପାଚିଲା, ନାଗରଙ୍ଗ—ନାରଙ୍ଗ, ଲେମ୍ବୁ, ଗଣ୍ଡସ୍ଥଳେ—ଗାଲରେ ।
୬୯ । ୧—ନବପୁଷ୍ପ—ନଅଗୋଟି ଫୁଲ, ୨—ନବ ପକ୍ଷୀ—ନଅଟି ଚଢ଼େଇ ।
୧—ପଦ୍ମ ସମାନ ମୁଖ, ୨—ନୀଳକଇଁ ସମାନ ଚକ୍ଷୁ, ୩—ମନ୍ଦାର ସମାନ ଅଧର ବା ଓଷ୍ଠ, ୪—ଶିରୀଷ ଫୁଲପରି ଦେହ, ୫—ତିଳଫୁଲ ପରି ନାସା ୬—କୁନ୍ଦଫୁଲ ପରି ଦାନ୍ତ, ୭—ଚମ୍ପାଫୁଲ ପରି ଅଙ୍ଗୁଳି, ୮—କେତକୀ ପରି ବର୍ଣ୍ଣ, ୯—ମଲ୍ଲୀଫୁଲ ପରି ହାସ ।
୧—ନବପକ୍ଷୀ—ଖଞ୍ଜନପରି ଚକ୍ଷୁ, ୨—ଶୁଆ ପରି ନାକ, ୩—ମୟୂରପରି କଣ୍ଠ, ୪—କୋଇଲି ଭଳି ସ୍ୱର, ୫—ହଂସପରି ଗତି, ୬—ଚକ୍ରବାକପରି ଗଣ୍ଡ, ୭—ସାରସ ପରି ଶ୍ରୋଣୀ, ୮—ବଗଦେହ ପରି ଦନ୍ତ, ୯—ହଳଦୀ ବସନ୍ତ ପରି ବର୍ଣ୍ଣ ।

ଭିଅଛନ୍ତି ଘେନି ଅଶି ଶୋଭାସାର । ଜଗଜ୍ଜୟ ଜଙ୍ଗମମୂରତି ମାର । ୭୦ ।
ଅଥ ମନ୍ମଥର ମନଭେଦଶର । ମରମକୁ ଭେଦିବାରେ ମନୋହର । ୭୧ ।
ହର ପଥର ହେଲେ କାଢିବ ଫୋଟି । ଯେଣୁ ଏଥର ଯିବ ହୃଦୟ ଫୁଟି ।୭୨।
ରୂପଚୁମ୍ବକଶିଳର ମିତ୍ର କି ଏ । ହୃଦୁଁ କାଟି ନେବ ମନଲୋଭ ପ୍ରାୟେ ।୭୩
ବରବର୍ଣ୍ଣିନା ବର୍ଣ୍ଣନା କରିଯେତେ । ଉପମାଙ୍କ ଲାଭ ତାହା ହାନି ତେତେ ।
ଭାବ ହାବ ଲୀଳା କଳାସାଧ ଚିତ୍ର । ଯାହା ଅଙ୍ଗେ ହୋଇଛନ୍ତି ମୂର୍ତ୍ତିମନ୍ତ ।୭୫।
ତାହା ଶୋଭା କହିଲେ ସରିବ କାହିଁ । ପୂର୍ବେ ନ ଥିଲା ନୋହିବ ଏବେ ନାହିଁ ।
ରାଜା କହୁଛନ୍ତି କେମାକୁ କରି ବର । ମୋର ମିତ୍ର ମନ୍ତ୍ରୀଙ୍କ ହୋଇଛନ୍ତି ଭାର ।୭୭।
କନ୍ୟା ଅନୁରୂପେ ଅନ୍ୟ ବର ନାହିଁ । ମନ ପ୍ରଧାନ ବିଭାକୁ ଅଛନ୍ତି ଚାହିଁ । ୭୮।
ଶୁଣି ମନ୍ତ୍ରୀପୁତ୍ର କଲା ଏ ଉତ୍ତର । ଅମ୍ଭ ନୃପତି ସୁତ ନୂତନ ମାର । ୭୯ ।
ହୋଇବ କି କାର୍ଯ୍ୟ ଉଦଯୋଗ କଲେ । ଶୁଣି ଶୁକ ପଢି ଦେଲା ସେହିକାଳେ ।
ସୁଧାପାନ କଲା ବହୁ ଉପାୟରେ । ପ୍ରୀତ ହୋଇଅଛି ଚନ୍ଦ୍ର କୁମୁଦରେ ।୮୧।
ଗୁଞ୍ଜ ତୁଲା ହୋଇଛି ସୁବର୍ଣ୍ଣ ତୁଲେ । କର୍ମ ସବୁ ଜିତ ମାଚ ପାଞ୍ଚ ବଳେ ।୮୨।
ଶୁଣି କୁମାରବର ଆଶ୍ଚର୍ଯ୍ୟ ଯେନି । ବୋଲେ ତୁହି ଦେଖିଛୁ କି ମେଧାବନୀ ।୮୩।

---

୭୦ । ଜଗଜ୍ଜୟ—ଜଗତ୍ ଜୟକାରୀ, ଜଙ୍ଗମ ମୂରତି—ପୃଥିବୀ ପର ରୂପ, ମାର—କନ୍ଦର୍ପ ।

୭୧ । ମନ୍ମଥର—କନ୍ଦର୍ପର, ମନଭେଦ ଶର—ମନକୁ ଭେଦ କରିବା ଶର, ହୃଦୟ—ଦେହ, ଫୁଟି—ଫୋଡହୋଇ ।

୭୨ । ହର—ମହାଦେବ ।

୭୪ । ବର ବର୍ଣ୍ଣିନା—ଦିବ୍ୟ ସ୍ତ୍ରୀ ( ଲାବଣ୍ୟବତୀ ) .ଲାବଣ୍ୟବତୀ ସଙ୍ଗେ ଯାହାକୁ ତୁଳନା କରିବ ସେ ସବୁ ତୁଳନା ଜିନଷର ମର୍ଯ୍ୟାଦା.ତୁଟିଯିବ ଅର୍ଥାତ୍ ସେମାନେ ସମାନ ହେବେ ନାହିଁ ।

୭୫ । ଅଙ୍ଗେ—ଦେହରେ, ମୂର୍ତ୍ତିବନ୍ତ—ଦେହବନ୍ତ ।

୭୭ । ବର—ସ୍ୱାମୀ ।

୭୮ । ଅନୁରୂପେ—ସମାନରେ, ପ୍ରଧାନ—ଶ୍ରେଷ୍ଠ ।

୭୯ । ନୂତନ—ନୂଆ, ମାର—କନ୍ଦର୍ପ ।

୮୦ । ଉଦ୍ଯୋଗ—ଚେଷ୍ଟା , ସେହିକାଳେ—ସେହି ସମୟରେ ।

୮୧ । ସୁଧାପାନ—ଅମୃତପାନ, କୁମୁଦ—କଇଁ ।

୮୨ । ଗୁଞ୍ଜ—କାଇଁଚ ।

୮୩ । ମେଧାବନୀ—ବିଦୁଷୀ ।

କୀର କହୁଲ୍ଲେ ସେ ରସାଭୂଷା ଯୋଷା । ଶିଶୁକାଳରୁ ମୁହିଁ ତାହାଙ୍କ ପୋଷା ॥
ଶୁଣି ଚଞ୍ଚୁ ଚରଣକୁ ଧରି ତାର । ପୁଣ ଧଇଲା ବୋଇତଅଳ କର । ୮୫ ।
ସ୍ୱାମୀ ନାମେ ମୋହନ ଦ୍ୱୀପର ଘର । ରୂପେ କି ଥିବ ନୋହୁଛି ସେ ଗୋଚର ॥
ତୁମ୍ଭ ବଚନ ବସନ୍ତଋତୁ ହେଲା । ତାହା ଯୋଗୁଁ ଆଶାତରୁ ପଲ୍ଲବିଲା । ୮୭ ।
ଫଳେ ନାସ୍ତି ହୋଇ ଗ୍ରୀଷ୍ମକାଳ । ତାକୁ ଜାଳିଦେବଟି ବିରହାନଳ । ୮୮ ।
ଶୁଣି ସେ ବୋଇଲେ ବୀର ହୁଅ ସ୍ଥିର । ଅମ୍ଭମାନଙ୍କୁ ଦେଖି ଉପାୟ କର । ୮୯ ।
ପରବେଶ ହେଲେ ପୁଷ୍ପକାଳ ସାର । ପିକ ନ ଲଭଇ କି ସହକାର । ୯୦ ।
ଏ ବଚନେ ଶାନ୍ତ ଲଭି ସେହୁ ପୁନଃ । ଖେଡ଼ ପକାଇ କଲେ ଶକୁନମାନ ।୯୧।
ସାଧୁଙ୍କୁ ତହିଁ ଅନୁକୂଳ ଦେଲେ । ବିଜ୍ଞ ବ୍ରହ୍ମଗୃହୀ ଜଣେ ସଙ୍ଗେ ଗଲେ ॥
ଶୁଭେ ସେ କାଳେ ଅତ୍ୟାୟୀବାଣୀ ଭ୍ରମେ । ଗଲ୍ଦ ଦକ୍ଷିଣେ ଦ୍ୱିଜ ଗୋମାୟୁ ବାମେ
ପଞ୍ଚୁଁ ପବନ ବହିଲା ହୋଇ ସ୍ୱଚ୍ଛ । ଗୋପୀ ଧୀବରୀ ଡ଼ାକିଲେ ଦଧି ମାଛ ।୯୪
ଆଶା ବଢ଼ିଲା ଶୁଭସୂଚକ ଜାଣି । ସ୍କନ୍ଦ ସମାପତ ତୋଷ ପୁଂସମଣି । ୯୫ ।
ନୀଳ ରୋହିତ ଶରୀର ଦରହାରୀ । ଶ୍ରୁତିନିସ୍ତାରକ କୀର୍ତ୍ତି ଖ୍ୟାତକାରୀ । ୯୬ ।
ମୀନମୂର୍ତ୍ତି ରଘୁପତି ଶ୍ରୀପଦ୍ମୁର । ଭଜେ ଉପଇନ୍ଦ୍ର ଭଞ୍ଜ ବୀରବର ।୯୭ ।

—:✹○✹:—

୮୪ । କୀର—ଶୁଆ, ରସାଭୂଷା—ପୃଥିବୀର ଅଳଙ୍କାର, ଯୋଷା—ନାରୀ, ଶିଶୁକାଳରୁ—ପିଲାଦିନରୁ ।
୮୫ । ଚଞ୍ଚୁ—ଥଣ୍ଟ ।
୮୭ । ଆଶାତରୁ—ଆଶାବୃକ୍ଷ, ପଲ୍ଲବିଲା—ମାଉଲା ।
୮୮ । ବିରହାନଳ—ସମ୍ଭୋଗ ବିଚ୍ଛେଦରୂପ ଅଗ୍ନି ।
୯୦ । ପୁଷ୍ପ କାଳ—ଫୁଟିଲା ସମୟ, ବସନ୍ତ ସମୟ, ସହକାର—ଆମ୍ବଗଛ ।
୯୧ । ଶକୁନ—ଚିହ୍ନ ।
୯୨ । ବିଜ୍ଞ—ଜ୍ଞାନୀ, ବ୍ରହ୍ମଗୃହୀ—ଜିତେନ୍ଦ୍ରିୟ ।
୯୩ । ଗୋମାୟୁ—ବିଲୁଆ, ଭ୍ରମେ—ଭୁଲରେ, ଦ୍ୱିଜ—ବ୍ରାହ୍ମଣ ।
୯୪ । ଗୋପୀ—ଗଉଡୁଣୀ, ଧୀବରୀ—କେଉଟୁଣୀ, ଦଧି—ଦହି ।
୯୫ । ଶୁଭ ସୂଚକ—ମଙ୍ଗଳ ଚିହ୍ନ, ପୁଂସମଣି—ପୁରୁଷ ଶ୍ରେଷ୍ଠ ।
୯୬ । ନୀଳ—ନୀଳବର୍ଣ୍ଣ, ରୋହିତ—ରୋହିମାଛ, ଶରୀର—ଦେହ, ଦର—ଭୟ, ହାରୀ—ହରଣକାରୀ, ଶ୍ରୁତି—ବେଦ, ନିସ୍ତାରକ—ଉଦ୍ଧାରକ, କୀର୍ତ୍ତି—ଯଶ, ଖ୍ୟାତକାରୀ—ବିଖ୍ୟାତକାରୀ, ମୀନମୂର୍ତ୍ତି—ମାଛରୂପ, ଶ୍ରୀପଦ୍ମୁର—ଲକ୍ଷ୍ମୀଯୁକ୍ତ ପାଦ ।

ଭଗବାନ ମୀନଅବତାରରେ ଶଙ୍ଖାସୁରକୁ ମାରି ବେଦଉଦ୍ଧାରକରି, ବ୍ରହ୍ମାଙ୍କର ଭୟ ଦୂର କରିଥିଲେ, ସେହି କୀର୍ତ୍ତିଶାଳୀ ରାମଚନ୍ଦ୍ରଙ୍କ ପାଦରେ ନମସ୍କାର ।

# ଅଷ୍ଟମ ଛାନ୍ଦ ।

( ଲାବଣ୍ୟବତୀର ଚିତ୍ରପଟ ଘେନି ସନ୍ୟାସୀର ଦେଶଭ୍ରମଣ ଓ
ଚନ୍ଦ୍ରଭାନୁ ପାଶେ ପ୍ରବେଶ । )

ରାଗ ମଙ୍ଗଳଗୁଜ୍ଜରୀ ।

ଏଥୁ ଅନନ୍ତରେ ଶୁଣ ସୁଜନ । ମନ୍ତ୍ରୀଙ୍କ ଡାକି ସିଂହଳଦ୍ୱୀପରାଜନ ॥ ହୋଇଲା କିଶୋରଦଶା ପ୍ରାପ୍ତ କୁମାରୀ । ବରବେଗେ ବର ଦେବା ବିବାହକରି ଶୁଣିଲେ ସୁନ୍ଦରୀ ଶୋଭା ହର ତୋଷରେ । ହରି ଘେନିଯିବେ ଅବା ବଧୂ ବଶରେ ।୩। ନୃପତି ହୋଇ ପ୍ରମାଦ ସମ୍ପତ୍ତିବାଧ । ଶିରୀସ୍ନେହ ତୁଟିଗଲେ-ସେ ହେବେ କ୍ରୋଧ ॥ ଶୁଣି କରଯୋଡି କହେ ସଚିବ ତହିଁ । ମୋହ ଶତ୍ରୁରଙ୍କୁ ବର ଦିଶୁଛ ନାହିଁ ।୫। ଶିବଙ୍କୁ ଦେଲେ ପାର୍ବତୀ ଶାପ ପଡିବ । ଭସ୍ମଭୂଷଣ ଅଙ୍ଗେ ଏ କେହ୍ନେ ଜଡିବ ।୬। ଚନ୍ଦ୍ର ତ କ୍ଷୀଣ କଳଙ୍କୀ ତହିଁକି ସୁଖ । ଅଶ୍ୱିନୀ-କୁମାର ହେଲେ ତୁରଗ ମୁଖ ।୭। କୁସୁମଧନୁ ଅତନୁ ଅଛୁ ଅଜ କେ । ଚିତ୍ରପଟ ଦେଖାଇବା ମାନବ ଲୋକେ । ୮ । ଛୁଣ୍ଡ ନରବରଚନ୍ଦ୍ରେ ବରିବା ଅଣି । ଇଚ୍ଛାବର ବରୁ ପଛେ ରମଣୀ ମଣି । ୯ । ଭୂପତିବର ତହିଁକି ହେଲେ ସମ୍ମତ । ମାନବେ ଲେଖା ନ ଗଲା ସୁନ୍ଦରୀ ଚିତ୍ର । ୧୦ ।

---

## ଅଷ୍ଟମ ଛାନ୍ଦ ।

୨ । କିଶୋର ଦଶା—ଯୁବତୀ ହେବାର ଅବସ୍ଥା, କୁମାରୀ—ଝିଅ, ବର—ସ୍ୱାମୀ ।

୩ । ହର—ଶିବ, ହରି—ବିଷ୍ଣୁ, ବଧୂବଶରେ—ବଧୂଭାବରେ,

୪ । ନୃପତି—ରାଜା, ପ୍ରମାଦ—ଦୁଃଖ, ଶିରୀ—ଲକ୍ଷ୍ମୀ, କ୍ରୋଧ—ରାଗ, ବିଷ୍ଣୁ ଲାବଣ୍ୟବତୀ କୁ ଦେଖି ଲୋଭ କରି ନେଲେ ଲକ୍ଷ୍ମୀ ଆମ୍ଭ ଉପରେ ରାଗ କରି ଚାଲିଯିବେ ତେଣୁ ଆମ୍ଭେ ଦୁଃଖି ହେବା ।

୫-୬ । ସଚିବ—ମନ୍ତ୍ରୀ, ଭସ୍ମ ଭୂଷଣ—ପାଉଁଶ ବୋଳା, ଅଙ୍ଗେ—ଦେହରେ, ଜଡ଼ିବ—ମିଶିବ ।

୭ । କଳଙ୍କୀ—କଳଙ୍କ ଯୁକ୍ତ, କ୍ଷୀଣ—ସରୁ, (କ୍ଷୟରୋଗ) ତୁରଙ୍ଗ—ଘୋଡ଼ା,

୮ । କାମୁକଧନୁ—କନ୍ଦର୍ପ, ଅତନୁ—ଦେହନାହିଁ, ମାନବଲୋକେ—ପୃଥିବୀରେ

୯ । ଚୁଣ୍ଡ—ଏକତ୍ରିତ, ନରବରପନ୍ତ—ରାଜାସବୁ,

୧୦ । ଭୂପତିବର—ରାଜାଶ୍ରେଷ୍ଠ,

ଜ୍ଞାନାନନ୍ଦ ନାମେ ଏକ ସନ୍ନ୍ୟାସୀ ଥିଲା । ସଚିବ ସୁତରୁ ମାୟା ସମୀପେ ଗଲା । ୧୧ । ସେକାଳେ ସେ ସ୍ୱର୍ଣ୍ଣକର୍ମୀ ଏକତ୍ରମନେ । ନିର୍ମିଛନ୍ତି ପ୍ରତିମା ଜେମା ସମାନେ । ୧୨ । ଜଗତମଞ୍ଜୁ ମଞ୍ଜୁଷମଧ୍ୟେ ପ୍ରତିମା । ଦର୍ପଣେ ପ୍ରତି ଦଶୁଛି ବାଳା ସୁଷମା । ୧୩ । ଏକାଳେ ସନ୍ନ୍ୟାସୀ କରି ସାମ ଗାୟନ । ଲାବଣ୍ୟବତୀ ସ୍ୱରୂପ ଦେନିଲା ଦାନ । ୧୪ । ଦାନ କଲାବେଳେ ମାତ୍ର କହିଲେ ଏତେ । ଅମ୍ଭ ବଡ଼ାଣିରୁ ଖ୍ୟାତ କରି ଜଗତେ । ୧୫ । ସ୍ୱୀକାର କରି ଯୋଗୀ ବାହୁଡ଼ି ଅସି । ଦେଖାଇ ସ୍ୱରୂପ ମନ୍ତ୍ରୀସୁତଙ୍କ ତୋଷି । ୧୬ । ସେ ବୋଇଲେ ଧର୍ମତାତ ଆମ୍ଭେ ତୁମ୍ଭର । ଅମ୍ଭ ବୋଲେ ଏହା ଯେମନ୍ତ ଭ୍ରମ ସଂସାର । ୧୭ । ଦେଖାଇ ଭୂପତିଗଣେ ବଶ କରିବ । ଦୋଷ ଗୁଣ ସୁନ୍ଦର ସଣ୍ଠ ବୁଝିବ । ଏ ବଚନେ ସ୍ୱୈଷ୍ୟ କରେ ପେଡ଼ା ବୁହାଇ । ଶୁଣ ଏବେ ଏତେ ଦେଶ ଭ୍ରମିଲା ସେହି । ୧୯ । ଯେଉଁ ଦେଶେ ଯେଉଁ ରୂପେ କଲେ ଆଦର । କହୁଥାଇ ଗୃହଁ ସତ୍ୟପତିନକର । ୨୦ । କୃନ୍ତଳ କୁନ୍ତଳବର୍ଣ୍ଣ ସାରିଲେ ଦନ । ସହ୍ୟଜନ ସହ୍ୟପୁର ନିମିଷହୀନ ।୨୧। ନିଷେଧେ ନିଷେଧି ଅନ ଲୋକନ କଲେ । ମାଳବରେ ମାଳା କରି ତାହା ଜଟିଲେ ।୨୨। ମଘରେ ମଘବାପଦ ପାଇଲା ପରି । ବିଦେହ ବିଦେହଶରେ ଢୋଇଲେ ଘାରି । ୨୩ । କନୋଜ ନ କନ୍ୟା ଉଜ ଶୁଭିଲା ବାଣୀ । ମତ୍‌ଦେଶ ମରୁ ରମ୍ଭା ଏମନ୍ତ

---

୧୧ । ସମୀପେ—ପାଖକୁ,
୧୨ । ସ୍ୱର୍ଣ୍ଣକର୍ମୀ—ସ୍ୱର୍ଣ୍ଣ କାରିଗର, ଏକତ୍ର—ନିଶ୍ଚଳ, ପ୍ରତିମା—ରୂପ,
୧୩ । ମଞ୍ଜୁ—ସୁନ୍ଦର, ମଞ୍ଜୁଷ—ପେଡ଼ି, ସୁଷମା—ସୌନ୍ଦର୍ଯ୍ୟ ।
୧୪ । ସାମ—ବେଦ ।
୧୫ । ବଡ଼ାଣିରୁ—କାରଗରପଣିଆ, ଖ୍ୟାତ—ପ୍ରଗ୍ଯର ।
ବାହୁଡ଼ି—ଫେରି, ସ୍ୱରୂପ—ସେହିପରି ରୂପ ।
୧୭ । ଧର୍ମତାତ—ଧର୍ମପିତା, ଭ୍ରମ—ଭୁଲ, ସଂସାର—ଜଗତ ।
୧୮ । ଭୂପତିଗଣେ—ରାଜାମାନଙ୍କୁ ।
୨୦ । ଆଦର—ସମ୍ମାନ, ମହୀପତି ନିକର—ରାଜାସମୂହ ।
୨୧ । କୁନ୍ତଳବର୍ଣ୍ଣ—ବାଳର ବର୍ଣ୍ଣପରି କଳା, ନିମିଷହୀନ—ଅଲ୍ଲକେ
୨୨ । ନିଷେଧ—ମନାକରି, ଲୋକନ—ଦେଖିବା, ମାଳା—ହାର ।
୨୩ । ମଘବାପଦ—ଇନ୍ଦ୍ରପଦ, ବିଦେହଶର—କନ୍ଦର୍ପବାଣ ।
୨୪ । କନ୍ୟା—ସ୍ତ୍ରୀ, ଉଜ—ଶ୍ରେଷ୍ଠ, ବାଣୀ—କଥା, ଭଣି—କହି ।

ଭଣି ।୨୬। ଅଙ୍ଗରେ ଅଙ୍ଗନାଅଙ୍ଗ ପ୍ରଶଂସା କଲେ । ଏହି ରମ୍ଭା ବୋଲି ଭଲ ଭଲଙ୍କେ ହେଲେ ॥ ଧାତା ହଟ ଏହି ମରହଟ୍ଟ ବଗୃର । ସଜ୍ଜସ୍ତ୍ରୈ ଭାଷି ସଉଦାମିନୀ ସ୍ଥିର । ୨୬ । ଗୃେଲେ ନାଗୃେଲେ ଘୋଡ଼ାଇ·ରଖିବା ଚିନ୍ତା । ଦ୍ରାବଡେ ନବଡ଼େ ଅଲଙ୍ଗନେ ମମତା । ୨୭ । ଗୁଜୁରାଟ ଗ୍ରତଦନେ ଦେଖିବା ଇଚ୍ଛା । ବଦର୍ଭରେ ଦର୍ଭହାସୀ ଦର୍ଶନ ବାଞ୍ଛା ।୨୮। ଉତ୍କଳେ ଉତ୍କଳ ହୋଇ ବରହେ ଭାସ । ଗଉଡ଼ସ୍ୱ ଏ ଗଉରବ ଗଉଡ଼େ ଭବ । ୨୯ । ନେପାଳେ ନପାଳେ ଥିଲେ ପାଇବା ଭାବ । ମାଗଧେ ମାଗଧମୁଖେ ବର୍ଣ୍ଣାଇ ଛବ ।୩୦। କୁଙ୍କୁଣେ ଗଲେ ବାଛ ବୁଲିବା ଓସ୍ଥା । ବଙ୍ଗାଳୀ ଗାଳି ଉପମାବଳୀକି ଦେଇ ।୩୧। ଲୋମଶ ଲୋମହର୍ଷିତ ଦେଖି ଉଦ୍ଭବତ । କଳେବରେ କଳେବରେ ଅନନ୍ଦ ଜାତ । ୩୨ । କେରଳେ ଭାବ କେବଳମାୟା ହୋଇବ । ଯମନ ମନରୁ ଭିନ୍ନ ନୋହିଲା ଭାବ ।୩୩। ସିନ୍ଧୁରେ ଭାଷିଲେ ସିନ୍ଧୁରେ ଯେ ଝାସିବ । ସିନ୍ଧୁରଗମନା ପ୍ରତିଅଙ୍ଗେ ପିଶିବ । ୩୪ । ବାଳା ତୁଳାପିଚୁଳାକୁ ଗୃହି ସଗ୍ୱରେ । ପିଚୁଳା କର ରଖିଲେ ନୟନ ଯୁଗେ । ୩୫ । ବଦଗଧେ ବଦଗଧ କାମ ଦହନେ । ସେ ଭାବନା ନ ଗ୍ଳଣ୍ଡିଲେ ରଜନୀ ଦନେ । ୩୬ । କେ ବୋଲେ ପଟ୍ଟ କି ଏ ତାହାର କପଟ । ଦେଖିଲେ କାଞ୍ଚନ ଚିତ୍ତ ହୋଏ ଲମ୍ପଟ ।୩୭। କେ

୨୬ । ଧାତା—ବଧାତା, ହଟ—ଶୃଙ୍ଖଳ, ସୌଦାମିନୀ—ବଜୁଳି ।

୨୭ । ନଗୃେଲ—ଲୁଗା, ଚନ୍ତା—ଭାବନା, ନବଡେ—ଭଲଭାବରେ । ଅଲଙ୍ଗନ—କୋଳକରିବା, ମମତା—ଇଚ୍ଛା ।

୨୮ । ଦରହାସୀ—ମୃଦୁହାସୀ, ସୁନ୍ଦରୀ ।

୨୯ । ଉତ୍କଳ—ଉତ୍କଣ୍ଠିତ, ଗଉଡ଼ସ୍ୱ—ଶିବସ୍ତ୍ରୀ, ଗଉରବେ—ମାନ୍ୟସହିତ ।

୩୦ । ମାଗଧମୁଖେ—ଭାଟମୁଖରେ ।

୩୧ । ଉପମାବଳୀ—ଉପମା ସ[illegible] ।

୩୨ । ଲୋମହର୍ଷିତ—ଲୋମଟାଙ୍କୁରିବା, କଳେବରେ—ଦେହରେ ।

୩୩ । କେରଳ—କେଳା, କେରଳଦେଶ ।

୩୪ । ସିନ୍ଧୁରେ—ସମୁଦ୍ରରେ, ଝାସିବ—[illegible]ଡିବ, ସିନ୍ଧୁର ଗମନା—ହାତୀଗମନା, ପ୍ରତିଅଙ୍ଗେ—ସାରାଦେହରେ ।

୩୫ । ସଗ୍ୱରେ—ସ୍ନେହବଶରେ, ନୟନଯୁଗେ—ଚକ୍ଷୁଦ୍ୱୟରେ ।

୩୬ । ବଦଗଧ—ବ୍ୟସ୍ତ, କାମଦହନ—କନ୍ଦର୍ପାଘାତ, ରଜନୀ—ରାତ୍ର ।

ବୋଲେ ଏ କେହ୍ନ ନେତ୍ର ଦମ୍ଭବହିଲା । ଶାତକୁମ୍ଭ କୁମ୍ଭକରକାକୁ ବହିଲା । ୩୮ । କେ ବୋଲେ ସତେ କାମିନୀ ଅଛି ଏମନ୍ତେ । କେମନ୍ତେ ଗଢିଲା ବିଧି ଅପୂର୍ବ କେତେ । ୩୯ । କେ ବୋଲେ ସତେ ଏରୂପେ ଥିଲେ ତରୁଣୀ । ଏତେକାଳେ ଅଳଙ୍କୃତା ହେଲା ଧରଣୀ । ୪୦ । କେ ବୋଲେ ମୋହନ ମୂର୍ତ୍ତି ମନ୍ତ୍ରହୋଇଲା । ସକଳସୁନ୍ଦର ଅଙ୍ଗେ ଦେନି ଉଇଲା ! ୪୧ । କେ ବୋଲେ କି ଅନ ନୋହେ ନେତ୍ରସୁକୃତ । ଦେଖିଲୁଁ ଲାବଣ୍ୟ ବତୀର ଆକୃତ । ୪୨ । ବକ୍ତ୍ରବଲେ ସୁବାସୁ କିବା ପ୍ରଳୟ । ହୋଇଲା ହୋଇଛି କ୍ଷତଯାତ ଉଦୟ । ବନ୍ଧୂକସ୍ଥିର ଇନ୍ଦୁ ଚିର ଜାଣି ଧବଳ । ଅମଳିନ ହୋଇ ତ ନଳିନ ବିକାଶ । ପୁଣ ବକ୍ତ୍ରବଳେ ବଲଭୂମି ବକ୍ଷର । ଅଙ୍ଗେ ଅନଙ୍ଗ ରହିଲା କି ଦୁର୍ଗକର । ୪୫ । ଦେଖ ଏ ପ୍ରତ୍ୟକ୍ଷ କଥା ଭବ କି ହର । ମାରେ ଏବେ ଅରୋହିଛି ହରକି କର । ୪୬ ! ଦର୍ଶନେ ସ୍ୱଜନ ଯୋଗ ଅବଗ ଦେଇଛି । କଞ୍ଜପରେ ରଞ୍ଜନ ଖଞ୍ଜନ ହୋଇଛି । ୪୭ । ଯେ ନିର୍ମାଣ କେତେ ଅନୁମାନ କି ତାର । ନୋହେ ସେ ପୁରୁଷ କେଉଁ ଅନ୍ଧ ତା କର । ୪୮ । ହେଲେ ହୋଇଥିବ ଅବା ବିଧାତାମାତା । ମନେ ମନାସିବା କଥା ତୁ ଅଚ୍ଛ କି ତା । ୪୯ । ପ୍ରୟୋଗେ ଅପୂର୍ବ ସୀତାହରଣ ପର । ଏ ରୂପକୁ ଅଛି କି ସେ ନିର୍ମାଣ କର । ୫୦ । ଏମନ୍ତେ ସ୍ୱାମୀ ପ୍ରଶଂସା ଯଥାଉଚିତ ଶୀଘ୍ର । ନଯତ ସମ୍ମହ ହେଲେ ଉଚ୍ଛଳଚିତ୍ର । ୫୧ । ମନକୁ ପ୍ରେଷିତ କଲେ ସିଂହଳଦ୍ୱୀପ । ଶୟନେ ଦେଖିଲେ ସ୍ୱପ୍ନେ

---

୩୮ । ସାତକୁମ୍ଭ—ସୁନାକୁମ୍ଭ ।
୪୦ । ତରୁଣୀ—ସ୍ତ୍ରୀ, ଅଳଂକୃତା—ଭୂଷିତା, ଧରଣୀ—ପୃଥିବୀ ।
୪୨ । ନେତ୍ରସୁକୃତ—ଚକ୍ଷୁ ତପସ୍ୟା, ଆକୃତ—ରୂପ,
୪୩ । ପ୍ରଳୟ—ବିନାଶ, ଉଦୟ—ପ୍ରକାଶ ।
୪୪ । ବନ୍ଧୂକ—ବନ୍ଧୁଳ, ଇନ୍ଦୁ—ଚନ୍ଦ୍ର, ଚିର—ସ୍ଥାୟୀ, ଅମଳିନ—ମଉଳି ନ ଯାଇ, ନଳିନ—ପଦ୍ମ, ବିକାଶ—ଫୁଟିବା ।
୪୫ । ବଲଭୂମି—ଯୁଦ୍ଧକ୍ରୀଡ଼ାସ୍ଥାନ, ଅନଙ୍ଗ—କନ୍ଦର୍ପ ।
୪୬ । କର—ହାତ, ହର—ଶିବ, ଅରୋହିଛି—ଚଢ଼ିଛି ।
୪୭ । ଦର୍ଶନେ—ଦେଖିବାରେ, କଞ୍ଜ—ପଦ୍ମ ।
୪୯ । ମନାସିବା—ବାଞ୍ଛିବା, ବିଧାତାମାତା—ଅଦିତି ।
୫୨ । ପ୍ରେଷିତ—ଉତ୍ସୁକ, ପଠାଇବା, ବାଲାସ୍ୱରୂପ—ଲାବଣ୍ୟବତୀ ରୂପ ।

ବାଳାସ୍ୱରୂପ । ୫୨ । ଅସର ପାଇ ବହଳ କର୍ପୂରର । ସାହଲେ ଉଷୀର-ବାଟୀ ଶିଶିରକର । ୫୩ । ଶିଶିରକରରେ ରବ ଛବ ପାଇଲେ । ନବ-ପଲ୍ଲବଶୟନ କର ଶୋଇଲେ । ୫୪ । ଦ୍ୱିକ ରୁଣ୍ଡୀଭୂତ କର ଚଣ୍ଡୀ-ବରଣ । ପ୍ରତିପାଦନ କରିବାରେ ହେଲେ ନିପୁଣ । ୫୫ । ଶମ୍ପାଗୋଗ୍ୱ ଅନୁକମ୍ପା କରିବାପାଇଁ । ଶିବେ ଗୋଦୋହନ କର ଚମ୍ପା ଚଢ଼ାଇ ।୫୬। ଅଜନ୍ମସ୍ୱଶୀ ନୟନେ ଦେଖିବା ପାଇଁ । ଗଣେଶଙ୍କୁ ଲଡ଼ୁ ଦେବା ଗଣନା ନାହିଁ ।୫୭। ତରେ ଛୁଇଁବାକୁ ତାର କୁଚକଳଶୀ । ରମାବଲ୍ଲଭଙ୍କୁ ଦେଲେ ଲକ୍ଷେ ତୁଳସୀ ।୫୮। କାମଶାସ୍ତ୍ର ଦେଖି ସ୍ତ୍ରୀବଶୀକରଣ । କଲେ ମନ୍ତ୍ର ଅଉଷଧି ମଣି ଭୂଷଣ । ୫୯ । ଶୋଭା ଅର୍ଥେ ମଣ୍ଡି ହେଲେ ରତ୍ନାଳଙ୍କାରେ । ପଉଣ୍ଡ୍ରିକ ବାସୁଦେବ ହେଲା ପ୍ରକାରେ ।୬୦। କେତକୀଫୁଲ ବାଞ୍ଛିତ ଯଥା ମଧୁପ । ତଥା ନୃପମଣ୍ଡଳ ବାଲାରେ ଲୋଲୁପ । ୬୧ । ନ ତୁଟିଲା ପୁଣ ଆଶା କେବେ ତାଙ୍କର । ବରହୀଣୀନାୟିକା ତ୍ରିବଳୀ ପ୍ରକାର । ୬୨ । ଉଚ୍ଚତରୁଫଳେ ଖର୍ବେ ଆଶାୟୀ ପର । ଲାବଣ୍ୟବତୀ ନାମକୁ ମନ୍ତ୍ର କର ।୬୩। ବାଳା ପ୍ରତିଅଙ୍ଗ ଶୋଭା ମାନସେ ଥୋଇ । ଆପଣା ଶୋଭାକୁ ଅଦରଣରେ ଗୃହି । ୬୪ । ରାତ୍ୟରେ ଅରମ୍ଭ ସେ

---

୫୩ । ଅସର—ଫୁରସେତ, ଉଷୀରବାଟି—ବେଣାରେର ବାଟି, ଶିଶିରକର—କର୍ପୂର ।

୫୪ । ଶିଶିରକର—ଚନ୍ଦ୍ରର କିରଣ, ରବି—ସୂର୍ଯ୍ୟ, ନବପଲ୍ଲବ—ନୂଆପତ୍ର, କଅଁଳଅପତ୍ର ।

୫୫ । ରୁଣ୍ଡୀଭୂତ—ଏକତ୍ର, ନିପୁଣ—ପାରଗ ।

୫୬ । ଶମ୍ପାଗୋଗ୍ୱ—ବିଜୁଳିପରି ଉଜ୍ଜ୍ୱଳ, ଅନୁକମ୍ପା—ଦୟା ।

୫୮ । କୁଚକଳଶୀ—ମାଠିଆ ଭଳି କୁଚ, ରମାବଲ୍ଲଭ—ନାରାୟଣ ।

୬୦ । ରତ୍ନାଲଙ୍କାରେ—ସୁନାଗହଣାରେ, ପୌଣ୍ଡ୍ରକ ବାସୁଦେବ—ପୌଣ୍ଡ୍ରକରାଜା ଯେପରି ନକଲି ଗଦାପଦ୍ମଧରି କାଠଗରୁଡ଼ ଚଢି ବାସୁଦେବ ହୋଇଥିଲେ

୬୧ । ବାଞ୍ଛିତ—ଇଚ୍ଛା କରିବା, ମଧୁପ—ଭ୍ରମର, ନୃପମଣ୍ଡଳ—ରଜାମାନେ, ଲୋଲୁପ—ଲୋଭୀ ।

୬୨ । ତ୍ରିବଳୀ—କପାଳର ତିନିରେଖା ବା ପେଟର ତିନି ରେଖା ।

୬୩ । ଉଚ୍ଚ ତରୁଫଳ—ଉଚ୍ଚଗଛ ଫଳ, ଖର୍ବେ—ବାଙ୍ଗରମାନେ ।

୬୪ । ମାନସେ—ମନମଧ୍ୟରେ, ଅଦରଣରେ—ଅରସିରେ ।

ଅନ୍ତରେ ବ୍ୟାକୁଳ । ଭସ୍ମ ଅଚ୍ଛନ୍ନରେ ଥାଇ ଯଥା ଅନଳ ।୬୫। ବିଚକ୍ଷଣ ଜନ ପେଷି ସିଂହଳଦ୍ୱୀପେ । ପ୍ରୀତି ଲଗାଇଲେ ବନେଶ୍ୱର ମହୀପେ ।୬୬। ଲାବଣ୍ୟବତୀ ସ୍ୱରୂପ ଆସିବା ହେତୁ । ଅଗ୍ରେ ପ୍ରକଟ ହୋଇଲା କର୍ଣ୍ଣାଟ-ଦେଶ ।୬୭। ଚନ୍ଦ୍ରଭାନୁ ଭାବ ଯାହା ସାଧୁଜ କହୁ । ତାକୁ କେ ନିର୍ମାଣ ରୂପ କେ ପଟେ ଲହୁ ।୬୮। ରୂପକାର ବିଙ୍ଗାଜୀବ ମର୍ତ୍ତ୍ୟରେ କାହିଁ । ମନକୁ ଆସେ ମଘବାଭୁବନେ ନାହିଁ ।୬୯। ହୋଇଥିଲା ମୋ ନେତ୍ରର ବିଧାତା ରଣୀ । ଶୁଝିବ ବୋଲି କି ଅଣେ ପ୍ରତିତରୁଣୀ ।୭୦। ଗୁରୁଦ୍ରୋହୀ ପୁଣି ସ୍ୱର୍ଗ ଭୋଗ ପାଉଛି । ସାତସିନ୍ଧୁ ତଳୁ ଭିତରେ ରହୁଛି ।୭୧। ପକ୍ଷ ବିନା ହୋଇଅଛି ଗଗନଗଡ଼ । ଜଳ ଉପରେ ଶଇଳ ଭାସିଅଛନ୍ତି ।୭୨। ଯେଉଁ ଦଇବେ ହୋଇଛି ଏତେ ବିଧାନ । ସେହି ଦଇବେ ହେଲା କି ବାଳାବତନ ।୭୩। ଜ୍ୟେଷ୍ଠେ ତୃଷିତ ଗୃଦ୍ଧ ଯେମନ୍ତ ହୋଇ । ଜଳଦ ଦର୍ଶନେ ତନମନ କରଇ ।୭୪। ଅଷାଢ଼େ ଘନଦୁର୍ଦ୍ଦିନ ଚକୋରପନ୍ତି । ଆଶା ଯେହ୍ନେ ଶରଦ ଆଗମେ କରନ୍ତି ।୭୫। ସ୍ୱରୂପ ପ୍ରବେଶ ତଥା ଟେକିଲା ଆଶା । ଅସଂଭ ହୋଇଲା ତେଣୁ ବାସର ନିଶା ।୭୬। ପାଛୋଟାଇ ପିଟିଥାଇ ମନକୁ ମୁଦେ । କର୍ଣ୍ଣ ଡେରେ ଯଥା ମୃଗ ଘଣ୍ଟିଶବଦେ ।୭୭। ସପ୍ରେମ ନୟନ ସେହି ଦଗକୁ ଟେକି । ନିରେଖେ କାଗଚଟକ ଯଥା କୁତୁକୀ ।୭୮। ନିଦ୍ରା କ୍ଷୁଧା ବାଧା କରିପାରିଲେ ନାହିଁ । ଅଳପ ଅନୁରାଗ କି ହୋଇବ କହି ।୭୯। ବିନାୟକ ପୂଜ୍ୟ ସଦାଶିବ ତୋଷଦ । ସୁମନସ-ଗଣେ ଯେ ହରେ ବିଷାଦ ।୮୦। ଉପଇନ୍ଦ୍ର ଭଞ୍ଜ ବୀରବର ବଂଶରେ । ଏ ଗୀତ ଶେଷ କରିବ ତାଙ୍କ କୃପାରେ ।୮୧।



୬୫ । ବାହାରରେ—ବାହାରେ, ଅନ୍ତରେ—ମନରେ, ଭସ୍ମ—ପାଉଁଶ ଅଚ୍ଛନ୍ନ—ଘୋଡ଼ହେବା, ଅନଳ—ନିଆଁ ।

୬୬ । ବିଚକ୍ଷଣ—ଚତୁର, ମହୀପେ—ରାଜା ।

୬୯ । ରଙ୍ଗାଜୀବ—ଚିତ୍ରକର, ମର୍ତ୍ତ୍ୟରେ—ପୃଥିବୀରେ, ମଘବାଭୁବନ—ଇନ୍ଦ୍ରପୁର

୭୨ । ପକ୍ଷି—ଡେଣା, ଗଗନଗଡ଼—ଆକାଶରେ ଯିବା ।

୭୪ । ତୃଷିତ—ଶୋଷି, ଜଳଦ—ମେଘ, ତନମନ—ଏକମନରେ ।

୭୭ । ପାଛୋଟାଇ—ଲେଉଟାଇ, ମୁଦେ—ଆନନ୍ଦରେ ।

୭୮ । କାଗଚଟକ—ଗୁଡ଼, କୁତୁକୀ—ଆନନ୍ଦମନା ।

୮୦ । ବିନାୟକ—ଗଣେଶ, ତୋଷକ—ଆନନ୍ଦକାରୀ, ସୁମନସଗଣ—ଦେବତାମାନେ, ବିଷାଦ—ଦୁଃଖ ।

## ନବମ ଛାନ୍ଦ ।

( ଚନ୍ଦ୍ରଭାନୁ ନିକଟରେ ଲବଣ୍ୟବତୀର ଚିତ୍ରପଟ ସହ ସନ୍ନ୍ୟାସୀର ପ୍ରବେଶ ।)

ରାଗ ସାମଗୁଜ୍ଜରୀ ।

ହୋଇଲା ପ୍ରବେଶ ଗ୍ରୀଷମ ସମୟ ସୁଷମା ପ୍ରୋଢ଼ା ଯୁବତିକି । ରଜନୀ ମନୋହର କର ବହିଲା ପକ୍ୱ ଚୂତଫଳକାନ୍ତିକି । ପ୍ରଫୁଲ୍ଲ । ମଲ୍ଲିକା ହାସକୁ ବିକାଶି । ରସିକଭ୍ରମର ଗୃଣ୍ଟୁକୁ ନିଇତ ପାଟଳ ଶ୍ରବଣ ନିବେଶି । ୧ । ଝିଙ୍କାରୀ ଝଙ୍କାର ଝୁଣ୍ଟିଆ ଝୁମକେ ଚମକ ପକାଇ ଯୁବାରେ । ରଖିଲା ମନକୁ ଘନରସେ ନେଇ ଚନ୍ଦ୍ରକିରଣେ ଶୋଇବାରେ । ଶାଲ୍ମଳୀ ରଙ୍ଗେ ଅନୁରାଗ ଦେଖାଇ । ନବବିଟପଙ୍କୁ ବରହଦାବାଗ୍ନି ସଂଯୋଗରେ ଦହ-ପକାଇ । ୨ । ଯେତେ ରଞ୍ଜନ ବ୍ୟଜନପ୍ରଭଞ୍ଜନପର ଯେ ଶାନ୍ତିକି ବହିଲା । ଜଳଯନ୍ତ୍ରପୁର କର୍ପୂର ଚନ୍ଦନ ମଣ୍ଡନରେ ଚିତ୍ତ ରହିଲା । ଜାଣିଲି । ଶୁଚି ମୂର୍ତ୍ତିମନ୍ତ ହୋଇଲା । ବଦେଶ ନ ଯାଅ ବୋଲି ଜନଙ୍କୁ କି ବରଜେ ତୃଷାନଳ ଥୋଇଲା । ୩ । ଏମନ୍ତକାଳେ କାନନେ ନୃପସୁତ ପୁଷ୍କରଣୀମଧ୍ୟ-ମଣ୍ଡପେ । ହୋଇ ମିତ୍ରସଙ୍ଗ ବାଳାର ପ୍ରସଙ୍ଗ ପକାଇ ତାହା ନାମ ଜପେ । ପ୍ରକାଶେ । କେତେ ବେଳ ଏହି ଭଳିକୁ । ସାଧୁ କହିଲା ପରା ବିଧୁବଦନା ଅଛୁ ଅପୂରୁ ମାନସକୁ । ୪ । କହିଲେ ମିତ୍ରେ ନ ଘେନ ଏତେ ଚିତ୍ତେ ନ ଥିଲାକୁ ନିକ ଜଗତ । ଘଟଣ ଘଟସ୍ତନା ସମେ ଘଟନା ମିତ୍ରଲା ହେଉଛୁ ଅଗତ । ଏକାଳେ । ମାଳିକ କହେ ସନ୍ନିଧାନେ । ମହଲାରୁ ଅଛିଛୁ ନାମ ମଦନିକା ଗଣିକା ତବ ଦରଶନେ । ୫ । ପଶୁରେ କ୍ରୂପାର ପ୍ରଶଂସା ଯାହାର

---

### ୯ମ ଛାନ୍ଦ

୧ । ଗ୍ରୀଷମ—ଖରା, ସୁଷମା—ସୁନ୍ଦର, ପ୍ରୋଢ଼ା—ବୟସ ପ୍ରାପ୍ତା, ରଜନୀ—ରାତି, ପକ୍ୱ—ପାଚିଲା, ଚୂତ—ଆମ୍ବ, କାନ୍ତି—ବର୍ଣ୍ଣ, ପ୍ରଫୁଲ୍ଲ—ଆନନ୍ଦ ବିକାଶି—ପ୍ରକାଶ କରି, ଗୃଣ୍ଟୁ—ଖୋସାମଦ କଥା, ପାଟଳ—ଫୁଲବିଶେଷ ।

୨ । ଝିଂକାରୀ—ଝିଂଟିପିଟି, ଝୁମକେ—ଝୁନ୍ ଶବ୍ଦରେ, ଘନରସ—ବର୍ଷା, କର୍ପୂର, ଶାଲ୍ମଳୀ—ଶିମିଳି, ନବବିଟପ—ନୂଆଗଛ, ନୂଆପୁରୁଷ, ଦାବାଗ୍ନି—ବନସ୍ତର ଅଗ୍ନି, ଦହପକାଇ—ପୋଡ଼ି ପକାଇବା ।

୩ । ବ୍ୟଜନ—ପଙ୍ଖା, ପ୍ରଭଞ୍ଜନ—ପବନ, ତୃଷାନଳ—ତଷ୍ଣା ।

୪ । କାନନେ—ବନରେ, ମଣ୍ଡପ—ପିଠ, ଚଉତରା, ପୁଷ୍କରଣୀ—ପୋଖରୀ, ବିଧୁବଦନା—ଚନ୍ଦ୍ରବଦନା ।

୫ । ଜଗତ—ସଂସାର, ଘଟସ୍ତନା—ମାଠିଆକୁଚ, ଗଣିକା—ବେଶ୍ୟା ।

ଶୁଣୁଥିଲଇଁ ଏ ସେ ନାରୀ । ଯାହା ଜନମକାନ୍ତି ମର୍ତ୍ତ୍ୟମଣ୍ଡଳେ ଅସିଲେ ନାହିଁ ଅପସରୀ । ତହିଁକି । ହୋଇ କଲା ମନ୍ଦ ନନ୍ଦନ । ଜାଣି ସୀତ୍କାର ଅଣି ମାନାକାର ଭେଟାଇଲା ରମାରତନ । ୬ । ନବଯଉବନ ଶାଣରେ ଶାଣିତ କାହା ମନ ବଶ ନୋହୁବ । ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ମୂର୍ତ୍ତିମନ୍ତ କଲା ଦଇବ । ଦେଖିଲା, ମାତ୍ରେ ଗାତ୍ରେ ଅଖି ଲାଖିଲା । ଗୃପରେ ରୋପ ବସାଇ କୋପଭରେ ମାର ମରମରେ ଯୋଷିଲା । ୭ । ସୁବର୍ଣ୍ଣ ସୁବର୍ଣ୍ଣବଳୟ ଯାହାର ଏ ସଂଶୟକୁ କରାଉଛି । କାହାକୁ କେ ବଡ଼ ତାରତମ୍ୟ ଅଜ ବାରଣହିଁ ଯହିଁ ନୋହୁଛି । ଚିକୁର । ଲୋଟଣୀଜୁଡ଼ାରେ ଶୋଭନ । ଏ ଭ୍ରବେ ବାନ୍ଧବୀ ପୁରୁଷଙ୍କ ମନ ବୋଲି କେ କହୁଛି ବନ୍ଧନ । ୮ । ମୋତିଜାଲି ଝଳ ତାରତାରକା କି ଉଦୟ ହେଲେ ନବଘନେ । କବା ଇନ୍ଦୁକୁ ଗ୍ରାସୁଁ ସୁଧାବାନ୍ଦୁକୁ ବହୁଛି ରାହୁ ଅପଘନେ । ତଳକୁ । ଦବ୍ୟ ଚନ୍ଦ୍ରହୁମା ଲମ୍ବିତ । ଅର୍ଦ୍ଧେନ୍ଦୁ ଅଧୋଭାଗେ ଲଭି ଉଦୟ ସପ୍ରଭତି କବା ଜଳତ । ୯ । ଗୁଚ୍ଛ ଅଳକା ଝିଲମିଲମାଳିକା ଅଗ୍ରେ ଲମ୍ବିତ ଷୁଦ୍ର ମୋତ । ହେମଲତା ଶିଖେ ମଧୁକରପନ୍ତି ମଧୁ କବା ସଞ୍ଚୁ ଅଛନ୍ତି । କସ୍ତୁରୀ । ଊର୍ଦ୍ଧ୍ୱ ତିଳକ ଭାଲଦେଶେ । ବିକାଶ ସାରସ ମଧ୍ୟୁଁ ଅଳିବଂଶ ଗମନ କି ତମାଳ ପାଶେ ।୧୦। ତାଟଙ୍କ ହ୍ରାସରେ ହସୁଛି ଶ୍ରବଣ ପାଶାଦ ଉପମାମାନଙ୍କୁ । ଅଦ୍ଭୁତ ବକ୍ର ମଲ୍ଲୀକଢ଼ୀ ଧରୁଛି ଧଇର୍ଯ୍ୟ-ଧର ଧ୍ୱଂସନକୁ । ବଦନ । ଶକାରେ କର୍ଣ୍ଣକୁ କହୁଛି । ହା ହା ବାଳୀ ଫୁଲଝଲକାଝଲକ ପଲକ ଘଉଡ଼ି ଦେଉଛି । ୧୧ ।

---

୬ । ଅପସରୀ—ସ୍ୱର୍ଗବେଶ୍ୟା ।

୭ । ଶାଣିତ—ଶାଣଦିଆ, ଗାତ୍ର—ଦେହ, ଗୃପ—ଧନୁ ।

୮ । ସୁବର୍ଣ୍ଣ ବଳୟ—ସୁନା ପାହୁଡ଼, ସଂଶୟ—ସନ୍ଦେହ, ତାରତମ୍ୟ—ତୁଳନା, ବାରଣ—ଠଧା, ଚିକୁର—ବାଳ ।

୯ । ଝଳ—ଚକଚକ ହୋଇ, ଝୁଲି, ତାର—ତେଜ, ତାରକା—ତାରା, ଅପଘନେ—ଦେହରେ, ଅର୍ଦ୍ଧେନ୍ଦୁ—ଅଧାଚନ୍ଦ୍ର, ଅଧୋଭାଗ—ତଳଦେଶ

୧୦ । ମଧୁକର—ଭ୍ରମର, ପନ୍ତି—ସମୂହ, ମଧୁ—ମହୁ, ଊର୍ଦ୍ଧ୍ୱ—ଉପର, ତିଳକ—ଟିକା, ଭାଲ—କପାଳ, ଅଳିବଂଶ—ଭ୍ରମର ବଂଶ ।

୧୧ । ଶ୍ରବଣ—କାନ, ଧ୍ୱଂସନ—ନାଶ ।


Digitized by srujanika@gmail.com

ଲୁଳିତ-ଜ୍ୟୋତିଜ୍ୱଳିତମୋତିବର ଜ୍ଞାନ ନାଶେ ନ ସେ ତାହାର । ନିର୍ମଳ ଭ୍ରୂବତ ବମ୍ୱଓଷ୍ଠ ବମ୍ବାଧର ଅର୍ଦ୍ଧଅରୁନ୍ଧତୀର । ଅଚନ୍ଦ୍ରା । ମୋହଣୀଙ୍କ ମେଳ ଭୋଳରେ । କଳଙ୍କହୀନ ପର୍ବଶର୍ବରୀଶ କି ଉଦିତ ଶରଦକାଳରେ । ୧୨ । ବଶୀକରଣ ନିବିଧ ମଣି ମନ୍ତ୍ର ଔଷଧ ଯେତେ ନେଣେ ଅଛି । ଶୂଳୀ ଭଳି ଯତ ତାଳି ଅନାଇଲେ ଚଳିବେ ମନକୁ ପାଇଛି । ଯହିଁର । ଅଞ୍ଜନ ଦମ୍ଭକୁ ଉଶ୍ୱସେ । ଭାଲ ଗଣ୍ଡ ଖଣ୍ଡଚନ୍ଦ୍ରମା-ସୁପ୍ତମାସୀମାବାର ଗାର ପସି ସେ । ୧୩ । ରୋମାବଳୀ ଝଳି ମର୍କତପ୍ରବାଳ ଛାଟି ଘଣ୍ଟିରବ ସଂଯୁତ । ଭକ୍ତଜପୃଗ ତୁମ୍ବୀ ସାର ନିବଳି ଶିର ବଲ୍ଲକୀ କଲା କାଠ । ବଧୂରେ । ବଧୂର ବୁଦ୍ଧି ଭ୍ରମହେଲା । ମନ୍ଦ ମଧୁର ଘନସାର ହାସଟି ଜାଣିଲି ଏତେ-ଦୂର କଲା । ୧୪ । କରକାଞ୍ଚିଲା ପାଟଡ଼ୋର ଚରମେ ଭିଡ଼ି ଅଣ୍ଟଦଛି ଯତନେ । ହିରଣ୍ୟଗର୍ଭ ହୁଡ଼ି ବ୍ୟକ୍ତ ନୋହିବ ଏହି କାମନା କରି ମନେ । ତାହାର, ଖେଳ ପରିସ୍ଥେ ସେ ଦଶଇ । ଜିଣି ପୃଥୁଳ ଗୋପିତ ନୋହେ କଦା ନେଣେ ଅବନୀ ନ ଦେଖଇ । ୧୫ । ଏମନ୍ତ ମଣୁଛି ଝଙ୍ଗରିଜ ପଦ ଅଙ୍ଗନାଠାରେ ସମ୍ଭାବତ । ମହାଜତପାତ ମନ୍ଦ ବୋଲି ତାକୁ କରିଅଛି ଯେଣୁ ଗୁପତ । ସେ କଥା । ଯୁକ୍ତ ନୁହଇ ଦେଖିବାର । ଚୀର ଅଗ୍ଗଦତ ଏଥିକୁ କରିଛି ଫଳ ଚୁମ୍ବୁଛି ମଧୁକର । ୧୬ । କର ସନାଳ କୋକନଦ ବାହାର କି ତନୁଶୋଭା-ସରସୀରୁ । ଅତୁଲ୍ୟ ପଛେ ଅନ ଭୂଷା ଧରିଛି ରୂପଗର୍ବିତା ଲକ୍ଷଣାରୁ । ରଣିତ । କିଙ୍କିଣୀ କଟୀରେ ଖଞ୍ଜିଛି । କାମିନୀଙ୍କ କାମରଥ ବୋଲିବାର ସତ ଘଣ୍ଟିଚୟ ସାଜିଛି । ୧୭ ।

---

୧୨ । ଲୁଳିତ—ଝୁଲିବା, ଜ୍ୟୋତିଜ୍ୱଳିତ—ତେଜରେ ଚକଚକ ହେବା, ବିମ୍ବ—କାନ୍ତି, କଇଁଚକାକୁଣ୍ଡ, ପର୍ବଶର୍ବରୀଶ—ଚନ୍ଦ୍ର ।

୧୩ । ଶୂଳୀ—ମହାଦେବ; ଯତ—ଇନ୍ଦ୍ରସ୍ୱଜସ୍ତକାଷ୍ଠ, ସ୍ତ୍ରୀ—ନାସ୍ତି; ଅଞ୍ଜନ—କଳା

୧୪ । ପ୍ରବାଳ—ପୋହଳା; ଛାଟି—ଅଣ୍ଟା; ବଲ୍ଲକୀ—ବୀଣାରଦଣ୍ଡ, ଘନସାର—କର୍ପୂର ।

୧୫ । ଚରମେ—ପିଠିରେ; ହିରଣ୍ୟଗର୍ଭ—ବ୍ରହ୍ମା; କାମନା—ଇଚ୍ଛା ପୃଥୁଳ—ମୋଟା ।

୧୬ । ଅଙ୍ଗନା—ସ୍ତ୍ରୀ, ଚୀର—ସ୍ତ୍ରାପ୍ତୀ. ଅଗ୍ଗଦତ—ଘୋଡ଼ଦେବା ।

୧୭ । କରସନାଳ—ଡ଼େମ୍ଫଲଗା ହାତ, କୋକନଦ—ପଦ୍ମ, ସରସୀ—ପୋଖରୀ, ରଣିତ—ଶବ୍ଦ କରିବା, ଘଣ୍ଟିଚୟ—ଘାଗୁଡ଼ିସମୂହ ।

ନାହିଁ ତୁଳା-କୋଟି-ଝଗଡରେ ବୋଲି ଦେଖାଉଛୁ ପାଦରେ ଅଦରେ । ଖୁସ୍ତି ନାସ୍ତି ଧନ୍ୟ ନବାଳାର ଅଲକ୍ତ ପଦସ୍ୱଗବ୍ୟକ୍ତ ହେବାରେ । ଦଶୁଛୁ । ଏପରିରେ ଉନୁ ଗଳର । ଚମ୍ପକ ଗନ୍ଧ ପଦ୍ମାଶାଡ଼ୀ ଥିବା ଚିକୁର ଧଡ଼ରୁ ଗୋଚର । ୧୮ । କାର୍ଯ୍ୟକୁ କାରଣ କର କହିଲାଇଁ ମଦନକାର ଶୋଭା କରୁଛୁ । ବଗୁର କହୁ ବସିଲେ ଏହୁ ଶଙ୍କା ବହୁତ ସ୍ପନ୍ଦ ହେବା ଅଛୁ । ଶୋଭାକୁ । ଗୃହିଁ ସ୍ଥଗିତ ନେବପୃଂସ । ଜଣେ ଜଣାଇ ସଂହିଳ ପଦ୍ମକେମାସ୍ୱରୂପ ହୋଇଲା ପବେଶ । ୧୯ । ସମ୍ମୁଖେ ଉଠି ପାଶେଛୁଟି ଯିବା ମନ ଜାଣି ନିଷେଧ କଲେ ମିତ । ଅସ ଅସ ବୋଲି ସନ୍ନ୍ୟାସୀ-ପାଶକୁ ଦୃତ ଉପରେ ଗଲେ ଦୂତ । ପ୍ରବେଶେ । ଅସନ ଦେଇ ବସା-ଇଲେ । ଚତୁର ମିତ୍ରେ ଚତୁର ବାରବଧୂ ପ୍ରଶଂସାଦରେ କଥା ହେଲେ । ୨୦ । କେ ବୋଲେ ଗୃହିଁ ଚଞ୍ଚଳ ଚକ୍ଷୁପ୍ରକ୍ଷପତନେ ବୁଛି କରେ ବଶା । ଚନ୍ଦ୍ରେ ଚକୋର ବସି ସୁଧା ପିଇବା ମଉୌ୍ୟ କି କମ୍ପାଉଛି ଦେଣା । କେ ବୋଲେ । ଗୃହିଁ ନାସାଫୁଲପଣକୁ । ଏ ଗୃତୁସ୍ୱର ଏ ଏ ଗୃତୁସ୍ୱ କରଛୁ ବଳସ୍ତୁଟି ଫୁଲବାଣକୁ ।୨୧। କେ ବୋଲେ ଗୃହିଁ ଗୃହିଁ ଦେଇ ନୟନ ଉରଜପରେ ଯା ନିଅଇ । ଏହୁ ଶିବସେବା କାମ ପ୍ରୋଉବ ନ କରବ ଏହା କହଇ । କେ ବୋଲେ । ଗୃହିଁ ତା ମଧୁରହାସକୁ । ଅଧର ଦେଖାଇ ଦେଉଛୁ ତରୁଣଅରୁଣ ଜଣିଲା ଯଶକୁ । ୨୨ । ସନ୍ନ୍ୟାସୀ ଭାଷି ଯାହା ପ୍ରତପ୍ରତମା ଅଣିଛୁ ଦର୍ଶନ ଦେବାକୁ । ଏ ଯୋଷା ଯୋଗ୍ୟ ନୋହେ ତା ପଦଘଷା-ଉପଳ ଉପମା ହେବାକୁ । ହେ ମତ । କି କହ ମନ୍ତ୍ରିଜ ବୋଇଲା । ପ୍ରତ୍ୟକ୍ଷ କଥାରେ କେଉଁ ଅନୁମାନ ବୋଲି ସେ

---

୧୮ । ତୁଳାକୋଟି—ନୂପୁର, ଖୁସ୍ତିନାସ୍ତି—ଭଣ୍ଡାରୁଣୀ, ଅଲକ୍ତ—ଅଳତା, ଚିକୁର—ବାଳ ।

୧୯ । ଶଙ୍କା—ଭୟ ।

୨୦ । ନିଷେଧ—ମନା, ବାରବଧୂ—ବେଶ୍ୟା ।

୨୧ । ଚକ୍ଷୁପକ୍ଷ—ଆଖିପତା, ପତନ—ପକାଇବା, ଗୃତୁସ୍ୱ—ଗୃଳାଡ଼ି । ଫୁଲବାଣ—କନ୍ଦର୍ପ ।

୨୨ । ଶିବସେବା—ମହାଦେବଙ୍କ ସେବା, କାମ—କନ୍ଦର୍ପ, ପରାଭବ—ହାରଯିବା ଅଧର—ଓଷ୍ଠ ।

୨୩ । ପ୍ରତପ୍ରତମା—ରୂପଲକ୍ଷରେ, ଯୋଗ୍ୟ—ଉପଯୁକ୍ତ, ପଦଘଷା—ଗୋଡ଼ଘଷା ଉପଳ—ପଥରଖଣ୍ଡ, ମନ୍ତ୍ରୀଜ—ମନ୍ତ୍ରୀପୁଅ ।

ପେଡ଼ାକୁ ଫେରିଲା । ୨୩ । ଏ ବାମାଙ୍କୁ ବାସ ଉପହାର ଦଅ ଅଧିକାରୀଙ୍କ
ଆଜ୍ଞା ଦେଇ । ଉନ୍ମନା ହେଲା ରମା ରୂପ ଲୋକନେ ବକ୍ଷପୁ ପଟ୍ଟକୁ ପକାଇ ।
ସମ୍ପୂର୍ଣ୍ଣ । ଏ ଗ୍ରନ୍ଥ ଚତୁର୍ବିଂଶପଦ । ଅଯୋଧ୍ୟାଚନ୍ଦ୍ର ଧ୍ୟାନରେ ଉପଇନ୍ଦ୍ର
ନାଶିବ ଅର୍ଜିତ ଆପଦ । ୨୪ ।



## ଦଶମ ଛାନ୍ଦ ।

### ( ଶିବପଟ୍ଟ ଦର୍ଶନ )

ରାଗ ଦେଶାକ୍ଷ ।

ଏଥୁଅନନ୍ତରେ ରସିକସାର । କର୍ଣ୍ଣମୃଗରେ ସୁଧା ପାନ କର ।
ନୃପସୁତ ଅଗେ ପେଡ଼ି ଫେଡ଼ିଲା । ସେ ରୂପ ଉପରେ ନେତ୍ର ପଡ଼ିଲା ।
କି ପଡ଼ିଲା । ନାହିଁ ଜଡ଼ିଲା ଯେନ । ଜଡ଼ିଲା ନାହିଁଟି ବୁଡ଼ିଲା ଜ୍ଞାନ ।୧।
ମୂର୍ତ୍ତିମନ୍ତ କଲା ମଦନକଳା; କନକନବ ମଦନ ପିତୁଳା ।
କାଚବାଡ଼ପୁରେ ବସିଲା ପରି । ମୁକୁରେ ଫିଟି ଦିଶୁଛି ମାଧୁରୀ ।
କି ସୁନ୍ଦର । ସତେ ଅଛି କାହିଁଛି । ସଜୀବ ହୋଇ ବଚନ ହୋଇଛି ।୨।
ସରସିଜେ ଶିଶୁଅଳିଅବଳୀ । ବସିଥିଲା ପରି ଅଳକା ଝଳି ।
ଅଧରେତ ଈଷ୍ଟ ହାସ ଝଲକ । ଉପରେ ମାଜିଲା ପରି ମାଣିକ୍ୟ ।
କି ସୁନ୍ଦର । ପୁଣି ପକ୍ଷ୍ମ ଚାତୁରୀ । ଗୁଳଦେବା ପରି ଧୈର୍ଯ୍ୟକତୁରୀ । ୩ ।
ଅଗ ଅନୁରାଗ ଭ୍ରମ ଉପୁଜି । ରମା କି ପ୍ରତିମା ନ ପାରେ ହେଜି ।
ଚକିତ ସ୍ଥକିତ ଦଣ୍ଡେ ହୋଇଲା । ମନେ ମନେ ଲକ୍ଷେ ଚୁମ୍ବନ ଦେଲା ।
କି ସୁନ୍ଦର । ଧନ ନୟନ ପ୍ରାଣ । ସେହି ଶୋଭାରେ କଲା ସମର୍ପଣ । ୪ ।

---

୨୪ । ଉନ୍ମନା—ଉଚ୍ଛନଅ, ଲୋକନେ—ଦେଖିବାରେ, ଆପଦ—ଦୁଃଖ ।

---

ଦଶମଛାନ୍ଦ ।

୨ । ମଦନକଳା—କାମକଳା, କନକ—ସୁନା, ନବ—ଉଜ୍ଜ୍ୱଳ, ପିତୁଳା—ରୂପ
କାଚବାଡ଼ପୁର—କାଚରେ ବାଡ଼ହୋଇଥିବାଘର, ମୁକୁର—ଆରସି
ମାଧୁରୀ—ସୌନ୍ଦର୍ଯ୍ୟତା ।

୩ । ସରସିଜ—ପୁଷ୍କରଣୀ, ପଦ୍ମ, ଶିଶୁଅଳିବଳୀ—ଛୋଟଭଅଁର ସମୂହ,
ଅଧର—ଓଷ୍ଠ, ପକ୍ଷ୍ମ—ଆଖିପତା ।

୪ । ଅନୁରାଗ—ସ୍ନେହ, ଚକିତ—କାବା, ସ୍ଥକିତ—ସ୍ଥିର, ଚୁମ୍ବନ—ଚୋବ,
ସମର୍ପଣ—ଦେବା ।

ଏଣୁ ସେ ମୂର୍ତ୍ତନ୍ତି ତନୁତନୁକୁ । ଅଟେ ସେ ଅନୁପାନ ଅନୁମାନକୁ ।
ଅଲୋକିତ ହେଲା ଲୋକିତ କରି । କରଇ ଉପମା ନୁହଇ ସରି ।
କି ସୁନ୍ଦର । କବି ବଚନ ପଥ । କୃତାର୍ଥ କରଣେ ହେଲା ସମର୍ଥ ।୫।
ବେଣୀ ଶୋଭା ଅବା ସାଧିବା ପାଇଁ । ରତୀଶ ପଞ୍ଚୀଶ ଅଛି ଭିଆଇ ।
କନକ ପିହାଣିଅଙ୍କୁ ଅସମ । ମୁକ୍ତାଜାଲି ମୁଠାଜାଲି କମ ।
କି ସୁନ୍ଦର । ପଣ ଧଣେ କୁସୁମେ । ପୂଜା କରେ କି ଜଗଜ୍ଜୟୀକାମେ ।୬।
ଦିଗିମ୍ବାତଥି ଭ୍ରମ ସେହିଠାରେ । ଅବତଂସ ଚନ୍ଦ୍ର ଝୁମ୍ପି ଥିବାରେ ।
ଜାଜ୍ଜ୍ୱଲ୍ୟ ତାରକା ଗୃହ ବାଧିତ । ସୁଧାବିନ୍ଦୁ ସ୍ରବ ପରି ମୋତି ।
କି ସୁନ୍ଦର । କାମ ରତ୍ନତୋରଣୀ । ଝିଲିମିଲିମାଳୀ ସେହି ଲକ୍ଷଣୀ । ୭।
କର୍ଣ୍ଣ ଦେହାକଅଛି ବନ୍ଧ-ଆବାସ । ଏଥିକି ଉପମା କରିବା କିସ ।
ଭଲୁ ଭଲୁ ଦୃଷ୍ଟି ପତନ ହେଲା । ବାଲ ବୋଲି ମନେ ଯତନେ କଲା ।
କି ସୁନ୍ଦର । ଫୁଲ ସୁମକ୍ଷୀକଡ଼ୀ । ଝଲକା ଉପମାକୁ ଗଲା ବୁଡ଼ି । ୮ ।
ଭାଲ ଗ୍ରହି କଲା ଖଲ ବିଗ୍ରହ । ଏ ହେମକାପ ତରସ ଧାତାର ।
ଲେଖିଛି ଶବ୍ଦଙ୍କବନ୍ଧ ଏଥିରେ । ଏ ବାଳା ସମାନ ନାହିଁ ପୃଥ୍ୱୀରେ ।
କି ସୁନ୍ଦର । ଗୁଣେ ନାଗଭୁବନେ । ସ୍ୱର୍ଗପୁରେ ଆଉ ନାହିଁ ସମାନେ । ୯ ।
ବଡ଼ କି ଚତୁର ପାଞ୍ଚିବା ଏହା । ବଡ କବି ଜଡ଼ ଦେଖିବେ ଯାହା ।
ରଙ୍ଗ ଶୁକଳ କଳା ତନିଜାତ । ଦେଖାପିଛଲେ ଅଛି ଅକ୍ଷରପନ୍ତ୍ର ।
କି ସୁନ୍ଦର । ଦୃଷ୍ଟି ଚଳିବ ନାହିଁ । ଦେଉଥିଲେ ଚାରି ଶିତାକୁ ଗ୍ରହି ।୧୦।

---

୫ । ତନୁ ତନୁକୁ—ଦେହକୁ ଦେହ, ସରୁ ଦେହ, ଅଲୋକିତ—ଆଶ୍ଚର୍ଯ୍ୟ, ଲୋକିତ—ଦେଖିବା, ସମର୍ଥ—ସକ୍ଷମ ।

୬ । ରତୀଶ—କନ୍ଦର୍ପ, କନକ—ସୁନା, କୁସୁମେ—ଫୁଲରେ, ଜଗଜ୍ଜୟୀ—ସଂସାରଜେତା ।

୭ । ଅବତଂଶ—ପ୍ରକାଶ, ଜାଜ୍ଜ୍ୱଲ୍ୟ—ତେଜୋମୟାନ, ବାଧିତ—କରଣ, ରତ୍ନତୋରଣୀ—ସୁନାଫାଟକ ।

୮ । ବନ୍ଧ ଅବାସ—କଏଦଘର, ବନ୍ଧଆ ନାମକ ଅଳଙ୍କାର ସ୍ଥାନ, ସୁମକ୍ଷୀକଡ଼ୀ—ଉତ୍ତମ ମକ୍ଷୀକଡ଼, ବୁଡ଼ି—ଭୁଲି ।

୯ । ଖଲ—କପାଳ, ତରସ୍ତ—ଚନ୍ଦ୍ର, ଏକପ୍ରକାର ଛନ୍ଦ, ନାଗଭୁବନେ—ନାଗପୁରେ ବା ପାତାଳପୁରରେ ।

୧୦ । ଅକ୍ଷରପନ୍ତ୍ର—ଅକ୍ଷରଯନ୍ତ୍ର, ଜଡ଼—ମୂର୍ଖ ।


Digitized by srujanika@gmail.com

ଶିବ ଶିର କଳାକର କଳାଏ । କଳା ହୋଇ ବଶକୃଳାକର ଉଦୟେ ।
ଭୁରୁ ଠାରେ ଖରୁ ପଳାଇ ଅସି । ଲକ୍ଷପ୍ରକାରେ ଏହି ଲକ୍ଷ୍ୟ ଦଶି ।
କି ସୁନ୍ଦର । ପର୍ଶୁରାମ ପରଶୁ । ବାମା କହେ ରାମା ଶବଦବଶୁଁ ।୧୧।
ଅତି ବଶବର୍ତ୍ତୁରକା ନୟନ । ଅଞ୍ଜନଲାଞ୍ଛି ବ୍ୟାକେ ମହାମୃନ ।
ନ ମାରୁଁ ଗୃହିଣି ଛଟକ କର । ମରମକୁ ଭେଦଯାଇ ବାହାର ।
କି ସୁନ୍ଦର । ଦୃଷ୍ଟି କରାଇ ସତ । ଅନ୍ତେ ବକତହେବାରୁ ବ୍ୟକତ ।୧୨।
ଏ ପାଞ୍ଚେ ଗୃହିଁଙ୍କ ଅଟନେକ ବାର । ଅପର୍ଣା ଗାବକୁ ନେନ୍ଦକୁ ଛାର ।
ଯଥ ନ ଦେଖି ଲଭିଲ ତପୃଦ । ଚମତକାରରେ ଚମତକାର ।
କି ସୁନ୍ଦର । ସମେ ଆନ ନ ଦଶି । ଏହି ପଦକ ସେ ହୋଇଲ ଘୋଷି ।୧୩।
ଯେଉଁ ନୟନର ଏଡ଼େ ବଡ଼ାଇ । ମୃଚକୁ ଦେଲ ନଗର ଛଡ଼ାଇ ।
ବୁଡ଼ା କରଦେଲ ମୀନ କମଳ । ମୋ ସଙ୍ଗେ ହେଉଥାଅ ବୋଲି ତୁଳ ।
କି ସୁନ୍ଦର । ପଦ୍ମ ଥିଲକୁ ଦୋଷେ । ଦଣ୍ଡ ଦଅଇଲ ଭୁହିନ ବଶେ ।୧୪।
ଗଣ୍ଡେ ଶବିତ ପ୍ରକାର ମକରୀ । ଏ ଅନୁମାନରୁ ଆନ ନ କର ।
ନାସାରଥ ସଜ ହେବା ହେତୁରେ । ମଣ୍ଡିଲ କନ୍ଦର୍ପ ନିଜକେତୁରେ ।
କି ସୁନ୍ଦର । ନାସାପୃଷ୍ଠ ଭେସର । ତୂଣୀର ସ୍ଥିତ ରତ୍ନମୁଖ ଶର । ୧୫ ।
ଏମନ୍ତ ସାଜେଣି ଗୃହିଁ କ ଉର । ସ୍ୱୟମ୍ଭୁ ଶମ୍ଭୁ କୁଚ ରୂପ ଧର ।
ଅଚ୍ଛାଦତ ହୋଇ ଚେଲ-ଚବତେ । ବାଳାଙ୍କ ଶରଣ ଉତ୍ତମ ପାଞ୍ଚେ ।
କି ସୁନ୍ଦର । ହାର ଜାହ୍ନବୀ ଦଶେ ।ରୋମାବଳୀ କାଳଭୁଜଙ୍ଗ ପାଶେ ।୧୬।
ଫପୃଷ୍ଠ ଉପମା ଉରଜେ ମଞ୍ଜୁ । ମୁକୁତାମାଳା କୁନ୍ଦକାଳ ରଜ୍ଜୁ ।
ଯଜ୍ଞବନ ରାଜା ସବସ୍ୱ ତହିଁ । ପ୍ରେମାଳଙ୍କାର ସହିତେ ଦୁରାଇ ।
କି ସୁନ୍ଦର । କର ଘୋଡ଼ାଇଅଛି । ଜାଗ୍ରତପଣ ଲଜ୍ଜାକୁ ଦେଇଛି ।୧୭ ।

---

୧୧ । ଶିବ—ମହାଦେବ, କଳାକର—ଚନ୍ଦ୍ର, ଖରୁ—ଭ୍ରମ୍ରାକୁ, ଲକ୍ଷ୍ୟ—ଉପମା

୧୨ । ଅଞ୍ଜନଲାଞ୍ଛ—କଳାଗାର, ବ୍ୟର୍ଥ—ଛଳନା, ବ୍ୟକତ—ବାହାର ।

୧୩ । ଗାବ—ଦେହ, ନେନ୍ଦ—ଆଖି; ଯତ—ଖଣ୍ଡିଆ ।

୧୪ । ନଗର—ପୁର; ମୀନ—ମାଛ; କମଳ—ପଦ୍ମ; ପାଣି; ତୁହିନ—କାକର ।

୧୫ । ଅନୁମାନ—ମନେକରିବା; କେତୁ—ପତାକା; ତୂଣୀର—ଶରଖୋଳ ।

୧୬ । ସ୍ୱୟମ୍ଭୁ—ବ୍ରହ୍ମା; ଶମ୍ଭୁ—ମହାଦେବ; ଅଚ୍ଛାଦନ—ଘୋଡ଼ହେବା;
ବାଳା—ସ୍ତ୍ରୀ, ଜାହ୍ନବୀ—ଗଙ୍ଗା; କାଳଭୁଜଙ୍ଗ—କାଳସର୍ପ ।

୧୭ । ଫପୃଷ୍ଠ—ଫରୁଆ; ଉରଜେ—ବକ୍ଷରେ, ମଞ୍ଜୁ—ସୁନ୍ଦର, ରଜ୍ଜୁ—ଦଉଡ଼ି,
ଜାଗ୍ରତପଣ—ହୁସିଆର ପଣିଆ ।

ନୀଳଜଳଦ ବକୁଳକ ଉଡ଼ । ଥିଲା ପଖ କରେ ମର୍କତ ଚୂଡ଼ ।
ଲୁଚେ ବାଳୁବନ୍ଧ ରତ୍ନ ମାଧୁରୀ । ନଦୀ ଲହରୀରେ କହ୍ଲାର ପରି ।
କି ସୁନ୍ଦର । ଜିଣି ଅଶୋକକଳୀ । ମାଣିକ୍ୟମୁଦରେ ଝଲ ଅଙ୍ଗୁଳି ।୧୮।
ଚିବୁକ ଚତୁର୍ଥୀଚନ୍ଦ୍ର ଭ୍ରମରୀ । କଳଙ୍କ ଅସିଲା ପରି ଅଙ୍କୁର ।
ଗୃପଗିରିରେ ମନୋରମ ଗଳା । ବ୍ୟାଧ ବୁଦ୍ଧି କି ବଧି ଏବେ କଲା ।
କି ସୁନ୍ଦର । ମତ୍ତକପୋତ ପାଶେ । ବାନ୍ଧି ଥୋଇଛି ଗିରିପରେ କିସେ ।୧୯।
ସୁନ୍ଦରୀ ଅବଳାପଦକୁ ଭାଳି । ଚିବଧେ ବନ୍ଧନ ହୋଇଛି ବଳୀ ।
ଅଛି କି ନାହିଁ ଏ ସଂଶୟ ମଧ୍ୟ । ଭାଗି ପଡ଼ିବାକୁ ସେଗୁଣେ ବାନ୍ଧେ
ସୁନ୍ଦର । ତହିଁ ଖଞ୍ଜି କଙ୍କିଣୀ । ଏଣୁ କଟୀ ଥିବ ହେଉଛି ଜାଣି ।୨୦।
ପିନ୍ଧାଇଅଛି ବାସ କୁଞ୍ଚ ଦେଇ । ଗଢ଼ିଛି ପୃଣି ପିତୁଳା ବସାଇ ।
ନାଭି ଆଦି ତନୁମାନେ ତାହାର । ଗୁଲ୍ଫ ପର୍ଯ୍ୟନ୍ତ ନୋହିଲେ ଗୋଚର
କି ସୁନ୍ଦର । ତହିଁ ଦିଶୁଛି ପାଦେ । ସ୍ଥଳପଦ୍ମସିଜ ଶୋଭିତରେ ନିନ୍ଦେ ।୨୧।
ତୋଡ଼ର ଚୂଳୀ ମୃଗମଦଚିତା । ପଣ୍ଟିମାଣି ଝୁଣ୍ଟିଆରେ ମଣ୍ଡିତା ।
ହୋଇଛି ବ୍ୟକ୍ତ ଅଲକ୍ତ ରଙ୍ଗରେ । ଶରଣ ରକ୍ଷଣ ଅନୁରାଗରେ ।
କି ସୁନ୍ଦର । ଚରଣକୁ ବାଳାର । ଶରଣ ଅର୍ଥରେ ପ୍ରସାରୁ କର ।୨୨।
ସିନ୍ଧ ଭଦେ ନୋହେ ଲାବଣ୍ୟଧାମା । ଅସିଅଛି ସିନା ପ୍ରତିପ୍ରତିମା ।
ସନ୍ନ୍ୟାସୀ ଭାବିଲା ସେହି କାଳକୁ । ଜେମା ସୁନ୍ଦରମା ତୁଲେ ଚଳକୁ ।
ହେ ସୁନ୍ଦର । ଅଙ୍ଗେ ଅଙ୍ଗେ ଏହାର । ନିର୍ମିଣି ସିନା ଅଛି ରୂପକାର ।୨୩।
କୁମାର ଦମ୍ଭକୁ ଓ୍ଵଣା ଦଶିଲା । ବଗୃହ ସତିବସୁତ ଭାବିଲା ।
ସୁବର୍ଣ୍ଣ ସୀତାରେ ବଶ ଶ୍ରୀରାମ । ଯାହାର ଯହିଁରେ ବଳଇ ପ୍ରେମ ।
କି ଗୋସାଇଁ । ଏଥୁଁ ଅଧିକ ବୋଲ । ଆମ୍ଭ ବଗୃହରେ ନାହିଁ ଏହା ତୁଲ୍ୟ ।୨୪।

---

୧୮ । ନୀଳଜଳଦ—ନୀଳମେଘ, କହ୍ଲାର—ରକ୍ତପଦ୍ମ ।
୧୯ । ଚିବୁକ—ଗାଲ, ଭ୍ରମରୀ—ଏକପ୍ରକାରଚିତା, ଅଙ୍କୁର—ଜାତହୋଇ, ମନୋରମ—ସୁନ୍ଦର, ବ୍ୟାଧ—ଶବର, ଗିରି—ପର୍ବତ ।
୨୦ । ଭାଳ—ମନେକର, କଟୀ—ଅଣ୍ଟା ।
୨୧ । ଗୁଲ୍ଫ—ଗୋଡ଼ଗଣ୍ଠି ।
୨୨ । ମୃଗମଦ—କସ୍ତୁରୀ, ବ୍ୟକ୍ତ—ପ୍ରକାଶ. ଅଲକ୍ତ—ଲାଲ, ପ୍ରସାରୁଁ—ଲମ୍ବାଉଁ ।
୨୩ । ଲାବଣ୍ୟଧାମ—ଶୋଭାସ୍ଥାନ, ରୂପକାର—ଚିତ୍ରକାର ।
୨୪ । ସତିବସୁତ—ମନ୍ତ୍ରୀପୁଅ ।

ନୃପଜ ବୋଲେ କର୍ମା ନୋହୁଥିବ । ଅଜୀବେ କଲ ଯେ ଭାମ ସଜୀବ
ସଜୀବ ବଣେଷେ ଗୃହୁସ୍ଥ ଯେକ । ଶୋଭୁ ହୋଇଥିବ ନବଯୌବନୀ ।
କ ସଙ୍ଗାତ । ନୟନର କ ଛପ । ଦେଖିଲଛିକି ସେ ବାଲାସ୍ୱରୂପ । ୨୫ ।

ଏରୂପେ ବୋଲି କରବାକୁ ଧ୍ୟାନ । ଦ୍ୱାର ହେଲ ଗଡ଼ଦେବାକୁ ଯେନ ।
ପ୍ରାଣେ ତ ଅଜ ନ ରଖିବ ମାର । ଏହୁ କଥା ହେଲ ଏଥିର ସାର ।
କ ସଙ୍ଗାତ । ଅମ୍ଭ ସୁକୃତରଶି । ପିତୁଲା ଅଣିଲ ହୋଇ ତପସ୍ୱୀ । ୨୬ ।

ବୀରଙ୍କୁ କଲାଟ କର ସନ୍ୟାସୀ । ଚକ୍ଷୁବନ୍ଧନ ମାୟାକୁ ପ୍ରକାଶି ।
ଶିଷ୍ୟ ସଙ୍ଗେ ସେହୁକ୍ଷଣି ଅନ୍ତର । ପ୍ରତେ ଅନ୍ତର୍ଦ୍ଧାନ ହେଲ ପ୍ରକାର ।
କ ସୁନ୍ଦର । ମନେ ହେଲ ଏ ଧାତା । ନୋହିଲେ ଗଢ଼ନ୍ତା କ ଏ ବନତା ।

ଶତ୍ରୁ ନ ଗ୍ଲଉଲ ଏହୁ କାତର । ମାଗନ୍ତି ସୁଗତସଙ୍ଗତ ବର ।
ଦମ୍ଭକୁ ହେଲ ତାହାର କାରଣ । ସୁରୂପକୁ ଗ୍ଲଉଯିବାରୁ ଜାଣ ।
ସେ ସୁନ୍ଦର । କଲ ଏହୁ ଭରସା । ପ୍ରାପତ ମୋତେ ହୋଇବ ସୁଦୃଶା ।୨୮।

ଗୃହୁଁ ପ୍ରତମା ଚକ୍ଷୁ ନ ପିଗ୍ଲଉ । ତାତ ହକର୍ ପ୍ରତବନ୍ଧ ପଡ଼ ।
ପ୍ରତବନ୍ଧ ପଡ଼ ହୋଇବ କସ । ଲେଖା ହେଲ ସେ ରୂପ ପ୍ରତଦଣ ।
କ ସୁନ୍ଦର । ଚିତ୍ରପଟ ତା କଲ । ସଭାରେ ବସିବା ଭାଳ ହରଲ । ୨୯ ।

ଯୋଗୀନ୍ଦ୍ର ପ୍ରବେଶ ସିଂହଳଦ୍ୱୀପେ । ଏକାନ୍ତେ କହିଲେ ମନ୍ତ୍ରୀସମୀପେ
କର୍ଣ୍ଣାଟଦେଶ ମହୀପତସୁତ । କନ୍ୟାର ଅନୁରୂପେ ବର ସେତ ।
କ ସୁନ୍ଦର । ଗୁଣମନ୍ଦର ସେହୁ । ବୀର ତୁଲ୍ୟ ହୋଇ ଜଗତେ ନାହିଁ ।୩୦।

ତାକୁ ଯେ ଦେଲ ଯୁବରାଜ ପଦ । ଜାଣିଲ ବଧାତା ଅତ ଭୋବଦ ।
ଆନ ରାଜପୁତେ କୁଳବେହାର । ଯୁବତ ଶତ୍ର ରତନ ତଜର ।
କ ସୁନ୍ଦର । ଜାତ କାମ ମହୀରେ । କୁମାର ଏଣୁ କଟେ ରଞ୍ଜନରେ । ୩୧ ।

---

୨୫ । ନୃପଜ—ରାଜସୁତ, ଅଜୀବେ—ଜୀବହୀନରେ ।

୨୬ । ଧ୍ୟାନ—ଚିନ୍ତା, ସୁକୃତରଶି—ଯଶସବୁ ।

୨୮ । ଶତ୍ରୁ—ମନରୁ । କାତର—ଭୟ । ସୁଗତ—ଉତ୍ତମଗତ ।

୨୯ । ତାତ—ପିତା, ପ୍ରତବନ୍ଧ—ବାଧା, ପ୍ରତଦଣ—ପ୍ରତ୍ୟେକଦଗ ।

୩୦ । ଯୋଗୀନ୍ଦ୍ର—ସନ୍ନ୍ୟାସୀ, ଏକାନ୍ତ—ଏକୁଟିଆ, ସମୀପେ—ପାଖରେ ।

୩୧ । ଭୋବଦ—ଜ୍ଞାନୀ, ରଞ୍ଜନର—ଜ୍ଞାନଲୋକ ।

ତାତ ବିବେକ ପଟେ ରାଜପଣ । ଜାଣି କରନ୍ତି ତାକୁ ସମର୍ପଣ ।
ଉଚାଟ ହୋଇଛନ୍ତି ସ୍ୱରୂପ ଦେଖି । ତାକୁ ପ୍ରଦାନ କରିବା ସୁମୁଖୀ ।
କି ସୁନ୍ଦର । କଥା ମତିର ଶୁଣି । ନୃପତି ଆଗେ ଜଣାଇଲେ ପୁଣି । ୩୨ ।

ତାହାଙ୍କ ସଦୃଶ ରାଜା ହୋଇଲେ । ମନ୍ତ୍ରୀ କହେ କେବେ ଲେଖା ନ ଥିଲେ ।
ଭୂପତି କହେ ତାକୁ କି ପ୍ରକାରେ । ଦୂତ ନ ପେଷି ଆଣିବା ଏ ପୁରେ ।
କି ସୁନ୍ଦର । ଯାଞ୍ଚ ମନ୍ତ୍ରୀ କଥନ । କରିବା ଅପୂର୍ବ ଯାତ୍ରା ରଚନ । ୩୩ ।

ବଶ ହୋଇଛନ୍ତି ଘୋଷ ଶୁଣି ଆସୁ । ଅମ୍ଭର କନ୍ୟା ଯାଚିବା ନ ଦୋଷ ।
ସବ ସମ୍ମତେ ଏ ବସ୍ତୁର ମୂଳ । ଦୀର୍ଘଦିନରେ କଲେ ଯାତ୍ରା ଗୋଳ ।
କି ସୁନ୍ଦର । ସ୍ଥିର ହୋଇଲେ ଶେଷ । ରାମ ରାମ ସ୍ମୃତି ଅଭଙ୍ଗଶ୍ଳେଷ । ୩୪ ।

ତାତବତ୍ସଳ ମୁନିବେଶଧାରୀ । ଅଧିକଭୁଜଦର୍ପହତକାରୀ ।
ଉପେନ୍ଦ୍ର ବୀରବର ଭାବଇ । ଏ ଗୀତ ଶୁଭେ ଶେଷ ହେବା ପାଇଁ ।
ହେ ସୁଜନେ । ଶୁଣି ହୁଅ ସନ୍ତୋଷ । ଖଳକର୍ଣ୍ଣବିଳେ ନୋହୁ ପ୍ରବେଶ । ୩୫ ।



---

୩୨ । ଉଚାଟ—ଅସ୍ଥିର ।

୩୩ । ସଦୃଶ—ସମାନ, ଭୂପତି—ରାଜା ।

୩୪ । ଘୋଷ—ଶବ୍ଦ, ଦୀର୍ଘଦିନରେ—ସାରାଦିନ ।

୩୫ । ତାତବତ୍ସଳ—ପିତୃସ୍ନେହୀ, ଦର୍ପ—କ୍ଷମତା, ଖଳ—ଦୁଷ୍ଟ, କର୍ଣ୍ଣବିଳ—କାନଗହ୍ବର ।

ଲାବଣ୍ୟବତୀର ଚିତ୍ରପଟ ସନ୍ନ୍ୟାସୀ ନେଇ ଚନ୍ଦ୍ରଭାନୁଙ୍କୁ ଦେଖାନ୍ତେ ଚନ୍ଦ୍ରଭାନୁ ତାର ଚିତ୍ରପଟରେ ମୋହିତ ହେଲେ, ଓ କପଟ ଏ କନ୍ୟାକୁ ପାଇବା ଉଦ୍‌କଣ୍ଠିତ ହୁଅନ୍ତେ ସନ୍ନ୍ୟାସୀ ନିଜର ବିବେକ ବଳରେ ବୁଝି ଫେରିଲେ ମନ୍ତ୍ରୀଙ୍କୁ କହନ୍ତେ ମନ୍ତ୍ରୀ ରାଜାଙ୍କୁ କହିଲେ, ଓ ଚନ୍ଦ୍ରଭାନୁର ରୂପ ସୌନ୍ଦର୍ଯ୍ୟ ମଧ୍ୟ କହିଲେ ରାଜା ଏହା ଶୁଣି, କହିଲେ ଅମ୍ଭେ କନ୍ୟା ଦେବାକୁ ଡାକିବା ଅପେକ୍ଷା ଗୋଟିଏ ଯାତ୍ରା କରିବା ଯାହାକୁ ଦେଖିବାକୁ ସେ ଏଠାକୁ ଆସିବେ । ତେବେ ସୁବିଧା ହେବ, ଓ ଅମ୍ଭର କନ୍ୟା ଯାଚିବା ହେବ ନାହିଁ ଏହିପରି ସ୍ଥିର କଲେ ।

———o———

# ଏକାଦଶ ଛାନ୍ଦ ।

## ( ଲାବଣ୍ୟବତୀର ସ୍ୱପ୍ନ ଦର୍ଶନ । )

### ରାଗ ଗୁଜ୍ଜରୀ ।

ଏଥୁଅନ୍ତେ ଶୁଣ ରସ ଗ୍ରାହକେ ନଶି ପ୍ରବେଶ ଉଦୟ ତାରକାବେଶ ହେଲେ ଆକାଶେ । ଚକ୍ର-ମୁଖକ୍ଷକ-ନକ୍ର ଛେଦନେ ହାରକଚକ୍ର ଫିଙ୍ଗିଛୁ ତାତସିଦ୍ଧିରେ କାମ କ ରୋଷେ । ବେଶ ହେବ କ ରଜନୀ । ସ୍ଫଟିକ ପେଟୀରେ କଣ୍ଠୀ କସ୍ତୁରୀ ଦଳ । ୧ ।

ଆଜ କ ବଭ୍ରବସ୍ଥା ହୋଇବ ବାଧା ବର କ ମଲ୍ଲିମାଳା ଦେଇ ବଧୂ କରଣେ ମଣି । ଏ ବଚନ ସ୍ୱୟମ୍ବର ନାୟକ ବରଲ ବର ଏଥେ-ଭାଳେ ଦେଖାଗଲା ଏ କଥା ପୁଣି । ରବଣ୍ଡରେ ମହୀମହିଳା । ତାପି ହୋଇଥିଲା କ ଚନ୍ଦନ ଲେପିଲା । ୨ ।

ଶୀତଳ ଯାହା କରଣ ପରଶରେ ସମୀରଣ ରଣରଣ ପିନ୍ଧପଣ ଘେନ କ ଏବେ । ବରହୀଗୁଣ ବରହଠାରେ ଅଦରଲ ସେହୁ ସେ ଅଛୁ ଯା ଗର୍ଭେ ତହୁଁ ଜାତ (୧) ସ୍ୱଭାବେ । ପୁଂସ ଶୋଇ ସୁଧାଚତ୍ୱର । ଚନ୍ଦ୍ର ଗୃହୁଁ ହୋଇଲା ଅଧିକେ କାତର । ୩ ।

---

# ଏକାଦଶ ଛାନ୍ଦ ।

୧ । ନଶି—ରଜନୀ, ତାରକାବେଶ—ଚନ୍ଦ୍ର, ଚକ୍ର—ଚକ୍ରଆ ଚକୋଇ, ନକ୍ର—କୁମ୍ଭୀର, ହାରକଚକ୍ର—ହୀରଚକ୍ର, ତାତସିଦ୍ଧି—ପିତାଙ୍କର କାର୍ଯ୍ୟ, ଗ୍ରୀଷ୍ମ ଋତୁରେ ରଜନୀ ହେବାରୁ ଚନ୍ଦ୍ର ଉଦୟ ହେଲେ । ଚନ୍ଦ୍ରକୁ ଦେଖି ଚକ୍ରଆ ଚକୋଇଙ୍କରତ ରଜନୀରେ ବଚ୍ଛେଦ ହୁଏ, ସେହୁ ବଚ୍ଛେଦ ହେଲା କୁମ୍ଭୀର ତାହା ନାଶ କରବାକୁ କନ୍ଦର୍ପ “ ବଷ୍ଣୁ ଯେପର ଚକ୍ରରେ ନକ୍ରକୁ ନାଶି ହାତୀକ ଉଦ୍ଧାର କରଥିଲେ,” ସେହୁପର ହୀରଚକ୍ର ପେକିଛୁ । ପୁଣି ରଜନୀ ରୂପକ ସ୍ତ୍ରୀ କ’ଣ ବେଶହେବ ସ୍ଫଟିକ ପେଡ ଯେ ଚନ୍ଦ୍ର, ପିନ୍ଧିଛୁ କ ।

୨ । ବଭ୍ରବସ୍ଥା—ରଜନୀ, ବାଧା—ବାହା, ବର—ବରଣକର, ବଧୂ—ଚନ୍ଦ୍ର କର୍ପୂର, ମହୀମହିଳା—ପୃଥିବୀ ସ୍ତ୍ରୀ,

୩ । ସମୀରଣ—ପବନ, ରଣରଣ—କନ୍ଦର୍ପ, ବରହୀ—ନଆଁ, ବରହ—କାମୁକ ସୁଧା ଚତ୍ୱର—ଚୂନଲିପା ଅଗଣା, କାତର—ବ୍ୟାକୁଳ, ହତାଶ,

ହାସ ନାସା ଗତ ସ୍ୱତ ବଚନ ରମ୍ୟତା ପ୍ରୀତ ଏକାନ୍ତ (୧) ହେବାଦ ଯେତେ କଥା ସୁମରେ । ସ୍ୱରଭଙ୍ଗ ପ୍ରବଳରେ ଭାଷା ଯେ ବର୍ଣ୍ଣେ ଭଦରେ ତଥାପି ବାଳା ଭାବନା ଥାଇ ତହିଁରେ । ସବର୍ଣ୍ଣାଦ ଶବଦ ଶୁଣ । ସାଧୁ ଶୁକ ଅଇଲେ କ ହୁଅଇ ଗୁଣି । ୪ ।

ଯେମନ୍ତ ଦେଖିଛୁ ଶିବେ ତେମନ୍ତ ଦଶଇ ନେତେ କେମନ୍ତେ ଲଭିବ ମୂଳ ଶରୀର ଏହି । ଯେବେ ଏ ଯୁବାବୟସେ ଦବ୍ୟରମା ନାହିଁ ପାଶେ କ ଲଭ ତହୁଁ ନୃପତ ସମ୍ପତ୍ତି ଥାଇ । ଆବତେ ସେ ଚନ୍ଦ୍ରମା ଶିବ । ତାଙ୍କୁ ଦେଖାଅ ନୋହିଲେ ଯାଇ ଏ ଜୀବ । ୫ ।

ତେଣେ ନୃପତନନ୍ଦନୀ ରୁଚିରତର ଗୃନ୍ଦନୀବନରେ ମଣ୍ଡି ଗୃନ୍ଦନୀ ଚନ୍ଦ୍ରଙ୍କୁ ଗୃହିଁ । ପଦ୍ମିନୀ ହୋଇ ତାତର ଭଜ ମଦନବକାର କରଇ ଚତୁର ଶରୀର ଶ୍ୱାସ ପକାଇ । ମୋହ ସମ କରମହୀନ । ତାହିଁ ପତସଙ୍ଗ ନାହିଁ ଲଭି ଯୌବନ । ୬ ।

ସୁବର୍ଣ୍ଣସମାନ ନାରୀ ବନସ୍ଥଳୀଙ୍ଗଣା ପର ବରହଅନଳେ ହୋଇ-ଥାଇ ଯେ ଦହି । ଭାବକଳୟୁକ୍ତବଣେ କୋଳକଟିରେ କଟେ ପରଶ ରସାଣ ପ୍ରୀତ ବାନ ବଢ଼ାଇ । କମ କର କରଇ ଭୋଗ । ବଣିଜ ଗୁଣିକପ୍ରିୟ ବହି ସବାଗ । ୭ ।

ଦୁର୍ଗା ମୋ ଦୁର୍ଗତ ହର ଏମନ୍ତ ବ୍ୟାକୁଳ ତାର ହର ଜୟା ଦୟା କଲେ ସେ ନାରୀ ପୁଂସେ । ନିଦ୍ରାବଶରେ ସ୍ୱପନ ଦେଖିଲେ ସତ ବଧାନ ଏକଯୋଗିନୀ ପ୍ରବେଶ କୁମାର ପାଶେ । କର ଧର ନିଦ୍ରା ଭାଙ୍ଗିଲା । ଗଗନମାର୍ଗେ କୁମାରୀପୁରକୁ ନେଲା । ୮ ।

---

୪ । ବଚନ—କଥା, ରମ୍ୟତା—ମଧୁରତା "ହାସନାସା ଗତ ସ୍ୱତ ବଚନ ରମ୍ୟତା ପ୍ରୀତ ଏକାନ୍ତ" ଏହି ପଦର ପ୍ରଥମ ଅକ୍ଷର ହା ନାଗଶ୍ରୀ ବର ପ୍ରିୟେ ହେଉଅଛ, ସୁମରେ—ମନେକରେ, ସ୍ୱରଭଙ୍ଗ—ଗଳାବସିବା, ସ ବର୍ଣ୍ଣାଦ—ସ ଯେଉଁ ଶବ୍ଦର ଅଗରେ ଥାଏ ।

୫ । ଦବ୍ୟରମା—ସୁନ୍ଦରୀ ସ୍ତ୍ରୀ,

୬ । ନୃପତ ନନ୍ଦନୀ—ରାଜକନ୍ୟା, ରୁଚରତର—ଅତ୍ୟନ୍ତ ସୁନ୍ଦର, ଗୃନ୍ଦନୀ—ଚଉଦଶୀ, କରମହୀନ—ଭାଗ୍ୟହୀନ,

୭ । ପରଶ—ଛୁଇଁବା, ରସାଣ—ମାଜିବା, ସବାଗ—ସ୍ନେହ ।

୮ । ଦୁର୍ଗତ—ଦୁଃଖ, ହରଜୟା—ଶିବପାର୍ବତୀ, ନିଦ୍ରାବଶରେ—ନିଦରେ,

ବୋଇଲା ଲାବଣ୍ୟବତୀ ଅଛଇ ଏହୁ ଯୁବତୀ ଗୃହମଣିରେ ଶୋଇଛି ଯେ ପଲ୍ୟଙ୍କପର । ସଖୀ ବେଢ଼ି ଗୃହପାଶେ ଜ୍ଞାନହୀନ ନିଦ୍ରାବଶେ ମନାଇ ପାରିଲେ ଭୋଗ କର ନାଗର । ଏତେ କହି ହେଲା ଅନ୍ତର । ଶୋଭି ରହି ଲେଖି ହୋଇ ଉଭା କୁମର । ୯ ।

ମନେ ପାଞ୍ଚେ ମଞ୍ଚେ ଜାତ କାହିଁକି ଏ ଅଦଭୁତ ଏବେ ଜାଣିଲି ମୋହର ନୟନଭାଗେ୍ୟ । ଏ ବର୍ଣ୍ଣ ସୁବର୍ଣ୍ଣକମ ହୁଅନ୍ତା କି ତାରତମ ଭିନ୍ନ ଜାଣି ହେଲା ସିନା ରତନ ଯୋଗେ । ହରଷ ଏମନ୍ତ ସ୍ୱରୂପ । ଏତେକାଳ-ଯାଏ ହୋଇଥିଲା ଏ ଗୋପ୍ୟ । ୧୦ ।

ଏକା ଏ ନୋହେ ହରଷ ପୁଣ ପିଟିଛି ସରସ ମିଳିଛି ଶୋଭା ବିଶେଷ ଦୀପ୍ତିକି ଘେନି । ସ୍ୱବାସ ମନ୍ଦର ଏହି ଦିଶୁଅଛି ବ୍ୟକ୍ତ ହୋଇ ବହିଲା ସୁକୃତ କରିଥିଲା ଅବନୀ । ଭାବ ହାବ ଲୀଳା ପ୍ରସନ୍ନ । ହୁଅନ୍ତ ଯାହା ପ୍ରସାଦେ ସେ କି ସମାନ । ୧୧ ।

ଅଣିମାଦିସୁଖଦାୟୀ ଶୋଇଅଛି ଅଣିଅଇଁ ପଲ୍ୟଙ୍କଅଙ୍କରେ ଦିଶେ ଏମନ୍ତ ଶୋଭା । ରସାଣ ରଜତବାଡ଼େ କନକଲତା କି ଜଡ଼େ ବିଶଦ ଘନରେ କି ସେ ଚପଳା ପ୍ରଭା । ବାମକର କପୋଳତଳ । କେନ୍ଦୁପତ୍ରରେ ଥୁଆ କି ଫୁଲ୍ଲ କମଳ । ୧୨ ।

ଭୁଜବାରୁ ଶୋଭା ନେଇ କି ନୀଳେନ୍ଦୀବରପତ୍ର ଉଲଟାଇ ଦର୍ପଣେ ଥୋଇଛି କୁତୁକେ । କି ଅବା ଖଞ୍ଜନଯୁଗ ନିଶ୍ଚଳ ହେବାରୁ ଯୋଗ ଅଞ୍ଜନ ଅଠାକାଠିରେ ଏକାବେଳକେ । ମୀନରାଶି ଉଦୟ ଅର୍ଥି । ମୃଗାଙ୍କଅଙ୍କରେ ହେଲା ପରାୟୁ ଦଶି । ୧୩ ।

---

୯ । ଜ୍ଞାନହୀନ—ଚେତାଶୂନ୍ୟ,

୧୦ । ମଞ୍ଚ—ପୃଥିବୀ, ନୟନ—ଚକ୍ଷୁ, ଗୋପ୍ୟ—ଲୁଚିବା ।

୧୧ । ଦୀପ୍ତି—ତେଜ, ସ୍ୱବାସ—ନିଜରହିବାଘର ।

୧୨ । ଅଣିମାଦି—ଅଷ୍ଟଐଶ୍ୱର୍ଯ୍ୟ, ପଲ୍ୟଙ୍କ ଅଙ୍କ—ପଲଙ୍କ ଉପରେ, ରଜତ-ବାଡ଼େ—ରୂପା ବାଡରେ, କନକଲତା—ସୁବର୍ଣ୍ଣଲତା, ଜଡ଼େ—ଗୁଡ଼ାଇ ହୁଏ, ବିଶଦ—ଧଳା, ଘନ—ମେଘ, ଚପଳା—ବିଜୁଳି, କେନ୍ଦୁପତ୍ରରେ—କେନ୍ଦୁପତ୍ରରେ,

ଖଟ ଉପର ଧଳା ବିଛଣା ଉପରେ ଲାବଣ୍ୟବତୀ ହଳଦିଆ ଗୌରକି ଶେଜସଜାଇ ଥିବାରୁ ପୁରୁଷ ମନେକରେ ରୂପା ଉପରେ ସୁନାଲତା ମାଡିଛି କି ବା ଧଳା ମେଘରେ ବିଜୁଳି ଦେଖା ଯାଉଛି କି ।

୧୩ । ନୀଳେନ୍ଦୀ ବରପତ୍ର—ନୀଳକଇଁ ପାଖୁଡ଼ା, କୁତୁକେ—କୌତୁକରେ,


Digitized by srujanika@gmail.com

ବାମା ବାମଦେବ ଦୁଇ ଯେଣୁ ବିପ୍ରବଞ୍ଚସ୍ତୀ ଦ୍ୱନ୍ଦକର ପୂର୍ଣ୍ଣଚନ୍ଦ୍ର ଦ୍ୱିଭାଗ କଲେ । ଖଣ୍ଡେ ଖଣ୍ଡେ ଭାଲ ଦେଶେ କୀରତି ପ୍ରକାଶ ଅଶେ ଶେଷେ ପ୍ରମୋଦ ମାନସେ ଅଣି ବହିଲେ । ଯେଣୁଅଛି ଚନ୍ଦନପାଟୀ । ଲୋକନେ ଏହି ଉପମା ମନେ ପ୍ରକଟି । ୧୪ ।

ଝିଲମିଲମାଳ ପାନ-ପର୍ବରେ ଅତି ଶୋଭନ ମାର ମଙ୍ଗଳ ପଲ୍ଲବ ତୋରଣା ପରି । କତୁରି କୁନ୍ତଳୀ ଝଳ ବାତେ ଚଳେ ଅଳିଅଳି ପକ୍ଷ ଗୁଳ କରା ଉଡି ଯିବାକୁ ଭ୍ରମି । ମୁକୁତା ସୀମନ୍ତ ଉପରେ । କାଳନ୍ଦୀ-ମଧ୍ୟେ କି ବହେ ଜାହ୍ନବୀଧାରେ । ୧୫ ।

ଶଙ୍କାରୁ କରନ୍ତି ଯୋଷା ଚୂର୍ଣ୍ଣଚିକୁରକୁ ଖୋପା ଦଶୁଛି ଯନ୍ତୁ ଚଇଁସି ବନ୍ତୁ ଭଇଁସି । କେତୁମୁଣ୍ଡତୁଣ୍ଡେ ପଶି ଗଲାଣି ଶରଦଶଶୀ କେବଳ କିରଣ ଦଶୁଅଛି ମାଧୁରୀ । ଅଡ଼ଖୋପା କୁସୁମ ତୋରି । ହାହାକାର କର ଗୁଣ୍ଡୀଭୂତ କି ତାରି । ୧୬ ।

ଗଣ୍ଡଖଣ୍ଡପରେ ପଦ୍ମରାଗତାଟଙ୍କର ସଦ୍ମ ଚନ୍ଦ୍ରଠାରେ ସାନ୍ଦ୍ରସ୍ନେହୀ ଅରନ୍ତା କି ସେ । କରେ ବିପରୀତ ରତି ସେପରି ହୋଏ ପ୍ରତୀତ ମେଳିଣ ସେ ଜ୍ୟୋତି ଅସି ଫୁଲେ କି ଦଶେ । ଜଣାଉଛି ରସିକା କର୍ଣ୍ଣ । ତୋ ଶୋଭା ଯଶ ହେଲାଣି ମହୀରେ ପୂର୍ଣ୍ଣ । ୧୭ ।

ଅଛି ବକ୍ତ୍ରମଲ୍ଲୀକଢ଼ୀ ବିଧାତା କି ବଚ୍ଛେ ଗଢି ସୁନ୍ଦରୀସଂସାରେ ଇନ୍ଦ୍ର କରି ଦେଇଛି । ଧନୁର୍ଯ୍ୟ-ବୃତ୍ରଅସୁର ନାଶ କରଣ ଏଥିର ଥିରଗମନା କି ଥିର ହୋଇ ରହିଛି । କହୁଛି ଝଲକା ଝଲକ । ମୁହିଁ ରଖିନାହିଁ ସୁର ନେତ୍ରେ ପଲକ । ୧୮ ।

---

ମୃଗାଙ୍କ—ଚନ୍ଦ୍ର, ଅଙ୍ଗ—ଦେହ,

୧୪ । ବାମଦେବ—ମହାଦେବ, ଦ୍ୱନ୍ଦ୍ୱ—କନ୍ଦଳ, ଭାଲ—କପାଳ, କୀରତି—ଯଶ ଲୋକନେ—ଦେଖିବାରୁ, ପ୍ରକଟି—ପ୍ରକାଶ ହୋଇ ।

୧୫ । ପଲ୍ଲବ ତୋରଣ—ପତ୍ରରେ ହୋଇଥିବା ଫାଟକ, କତୁରି କୁନ୍ତଳ—ମୁହଁ-ଉପରକୁ ପଡିଥିବା ଛୋଟବାଳ; ବାତେ—ପବନରେ, ଅଳିଅଳି—ଭ୍ରମର-ସବୁ, ସୀମନ୍ତ—ମୁଣ୍ଡର ସିନ୍ଥି, ସିଁଥା ।

୧୬—ଚିକୁର—ବାଳ, ଚୂର୍ଣ୍ଣ—ଛୋଟ, କେତୁମୁଣ୍ଡତୁଣ୍ଡ—ରାହୁ ପାଟିରେ, ଗୁଣ୍ଡୀ-ଭୂତ—ଏକତ୍ରିତ,

୧୭ । ଗଣ୍ଡ—ଗାଲ, ସଦ୍ମ—ସ୍ଥାନ, ସାନ୍ଦ୍ର—ଅତ୍ୟନ୍ତ, ପ୍ରତୀତ—ବିଶ୍ୱାସ ।

୧୮ । ବକ୍ତ୍ର—ଗ୍ରୀବା, ଇନ୍ଦ୍ର—ଶ୍ରେଷ୍ଠ, ଥିର ଗମନା—ଧୀରଗମନା, ସୁର—ଦେବତା,


Digitized by srujanika@gmail.com

ପାନ କଲ ପୂର ତୁଣ୍ଡେ ଫୁଟି ଦିଶୁଅଛି ଗଣ୍ଡେ ମୁକୁରେ ଜବା କୁସୁମ ପ୍ରଭବନ୍ତମ୍ବ କି । ଶ୍ୱାସବଶେ ଫୁଟଲ ଘୋଣା ତହିଁ ଲାଜ ନାଡ଼ିକଣା ଉତ୍ଫୁଲ୍ଲ ତିଳଫୁଲକୁ ଭୃଙ୍ଗ ଚୁମ୍ବେ କି । ଥୋପିପଡ଼େ ରଙ୍ଗ ଅଧରେ । ଭମ୍ବୁହୀନ ପକ୍ୱବିମ୍ବେ ମନ ନ ଧରେ । ୧୯ ।

ଦମ୍ଭଉଦଧି ମନ୍ଥନ ଅଚଳସ୍ତନ ଚନ୍ଦନ ଲେପନ ହୋଇ ଶୋଭନ ବସନ ଗଲା । ସୁଧାକୋଷ ବେନି ଅଣି ଢାଙ୍କି କି କାଚଢାଙ୍କୁଣୀ ଭଲ ଦପ୍ପିତ ଭୋଗକୁ ରଖିଛି ବାଳୀ । ସ୍ଫଟିକପ୍ରାସାଦ ସଦୃଶୀ । ନବଘନ କାନ୍ତି ଅଛି ତହିଁରେ ମିଶି । ୨୦ ।

ଯାହାଁଲ ତାଡ଼ ସଜାଡ଼ି କଳଅସ୍ତ୍ର ଶଙ୍ଖଚୂଡ଼ୀ ସୁପ୍ରୀତରେ ଦେଖିବାରୁ କାନ୍ତି ଅଧିକା: ଷ୍ଠୀରେ ନୀରେ ଭରସ୍ଥିତ ନଖେ ମଞ୍ଜୁ ମଞ୍ଜୁଆତ ଶର୍ବିତ ହୋଇଛି ପୂର୍ଣ୍ଣ ଗୃହ ତାରକା । ଊର୍ମ୍ମୀ ଦଣ୍ଡସାର ଭଅର । ବାଟ ହେବ କୁଣ ଅଣି ଯାଉଛି ବନ୍ଧୁ । ୨୧ ।

ଦରଶନେ ବ୍ରେମବ୍ରଜ ଦଣ୍ଡେ ଫଣସ୍ୱ ଉପୁଜ ଭଳ ନାହିଁ ବେଣୀ ଫୁଟି ଦିଶୁଛି କସ । ଗୁହିଁ କଚ୍ଛପଜଘନ ଭ୍ରାଜିଲ୍ଲ ସନ୍ଦେହମାନ ଏ ତାହା ବନ୍ଧନରକ୍ଷୁ କଲା ମାନସ । ଉରୁ ଦେଖି ଦୂରୁଁ ସେ ଲୋଭି । ମାଂସଳ ଗଜର ପକ୍ୱ ଚୂତ କି ଶୋଭି । ୨୨ ।

---

୧୯ । ପ୍ରଭବମ୍—ପ୍ରକାଶହେବ, ମୁକୁର—ଆରସୀ, ଜବା—ମନ୍ଦାର, ଘୋଣା—ନାକପୁଡ଼ା, ଉତ୍ଫୁଲ୍ଲ—ଆନନ୍ଦ, ଭୃଙ୍ଗ—ଭଅଁର, ପକ୍ୱବିମ୍—ପାଚିଲା କଇଁଚ କାକୁଡ଼ି,

୨୦—ଉଦଧି—ସମୁଦ୍ର, ଅଚଳ—ପର୍ବତ, ବସନ—ଲୁଗା, ସୁଧାକୋଷ—ଅମୃତ-ଭାଣ୍ଡ, ଦପ୍ପିତ—ରାକ୍ଷସ, ପ୍ରାସାଦ—କୋଠା, ନବଘନ—ନୂଆମେଘ,

ଦମ୍ଭରୂପ ସମୁଦ୍ରକୁ କୁଚରୂପ ପର୍ବତରେ ମନ୍ଥିତ ସମୁଦ୍ର ମନ୍ଥନରେ ସୁଧା ବାହାରେ ଏଠାରେ ଚନ୍ଦନ ବୋଲ ହୋଇଥିବା ଓ ଲୁଗା ଘୋଡ଼ାଇ ହୋଇ ଥିବାରୁ ସେହିପରି ଦିଶେ । ଅମୃତ ଭାଣ୍ଡ ହେଲା କୁଚ; ସେ ଦୁଇଟିକୁ ଅଣି ତା ଉପରେ କାଚ ଢାଙ୍କୁଣୀ ଘୋଡ଼ାଇଲା ପରି ଲୁଗା ଘୋଡ଼ା ହୋଇଛି । କାରଣ କାଳେ ରାକ୍ଷସ ଅମୃତ ଖାଇବେ ଏଠାରେ କାଳେ ପୁରୁଷ ଭୋଗ କରିବ ।

୨୧ । ଷ୍ଠୀରେ—ପିଣ୍ଡିରେ, କର—ହାତ, ନୀରେ—ତଳରେ, ମଞ୍ଜୁ—ସୁନ୍ଦର, ଊର୍ମ୍ମୀ—ଲାଜ, ଦଣ୍ଡସାର—ଖଣାଦଣ୍ଡ ।

୨୨ । ଫଣସ୍ୱ—ସନ୍ଦେହ, ଉପୁଜ—ଜାତହୋଇ, କଚ୍ଛପ—କଇଁଚ, ଜଘନ—ଜଙ୍ଘ, ପକ୍ୱ—ପାଚିଲା, ଚୂତ—ଅମ୍ବ ।


Digitized by srujanika@gmail.com

ଶାଢ଼ୀଧଡ଼ି ଘେନି ଜଡ଼ି ନିବଡ଼େ ଗ୍ରୀବା ନିବାଡ଼ି ଅଛି କେତେ ଛନ୍ଦେ ଭଙ୍ଗ ବଦେକ ଭଳି । କବନ୍ଦମ୍ବୁଭୂବଧର ପବିଛବି ମନୋହର ଚିତ୍ର-ମତ୍ତ ଦ୍ୱିରଦ ବନ୍ଧନ ଶିକୁଳି । ଉପମା ବୁଡ଼ାଇବ କେତେ । ଶୋଭନଦୀ କି ଭଉଁରୀ ଦେଇ ଘୂରେ । ୨୩ ।

ନିତମ୍ବ ନିଗମ ସ୍ଥାନ ପାଶ ପାଇଛି ମଦନ ଧରିବାକୁ ଅଛି ପକ୍ଷୀ କରି ମମତା । କଲେ କି ନୟନ ମନ ଗ୍ରୀବାରେ ତାର ସଦନ ହେଲେ ସେ ଗ୍ରୀବାସଦନ ଏ ଫଣୟ ତା । ଅବକାଶ ରଖିଲା ନାହିଁ । ଥାଉ ଶୋଭା ଦେଖିବାକୁ ଉଚ୍ଛୁନ୍ନ ଯହିଁ । ୨୪ ।

ଉଜୁ ନ ଉଜୁ ବାନ୍ଧିବା ଅଗ ମୁଁ ନିଦ୍ରା ଭାଙ୍ଗିବ ତନୁ ହେଲେ ଛୁଇଁଥିବ ଏ ବଡ଼ ଲାଭ । ଯେ ପାରେ ବାଲା ମନାଇଁ ନିଶ୍ଚେ ମର୍ତ୍ତ୍ୟେ ଇନ୍ଦ୍ର ସେହି ମନରେ ଭାବନା କରି ପରମଶୁଭ । ଜାନୁ ଧରି ଦେଲା ଝୁଲାଇ । ପୁଂସ- କର ଲାଗି ନିଦ୍ରା ବିନାଶ ହୋଇ । ୨୫ ।

ଉଠେ ଭାଙ୍ଗନ୍ତେ ଅଳସ କି ଶୋଭା କୁଚକଳଶ ଟେକି ହୋଏ କି ମେରୁକୁ ଜିଣିବା ଗର୍ବେ, ଉର୍ଦ୍ଧେ ଛନ୍ଦ କରି ବେନି ଶୋଭା ଲପନକୁ ଘେନି ଚନ୍ଦ୍ରେ କି ବିଧୁନ୍ତୁଦ୍ଧୁ ହୋଇଲା ଏବେ । ମୁଖ ଜୃମ୍ଭାବଶେ ରଞ୍ଜିତା ଦରବିକଶିତ କୋକନଦ ଯେମନ୍ତ । ୨୬ ।

ନୟନେ ଚଞ୍ଚଳ ମିଶେ ଗଣିବଣା ଏଣୀ କି ସେ ସର ପ୍ରାପ୍ତ ଯାଇ ପୁଂସଲାଖେ ପଡ଼ିଲା । ସେ ସୁନ୍ଦର ପାରାବାର ରସରତନଆକର ମୀନ ପ୍ରାପ୍ତ ହୋଇ ତହିଁ ବେଗେ ବୁଡ଼ିଲା । ଲାଜେ ମୁଖ ନୁଆଇଁ ଘନେ । ସମ୍ଭାବନା କଲା ପ୍ରାପ୍ତ ଉଠିଲା ଛନ୍ଦେ । ୨୭ ।

---

୨୩ । ନିବଡ଼େ—ଠାଣିକରି, ଗ୍ରୀବା—କଣ୍ଠ, ଭୂବଧର—ପର୍ବତ, ପବି—ବଜ୍ର, ଦ୍ୱିରଦ—ହାତୀ ।

୨୪ । ନିତମ୍ବ—ପିଚ୍ଛ, ମଦନ—କନ୍ଦର୍ପ, ମମତା—ଇଚ୍ଛା, ସଦନ—ଗୃହ, ଅବକାଶ—ଫୁରସତ ।

୨୫ । ତନୁ—ଦେହ, ମର୍ତ୍ତ୍ୟେ—ପୃଥିବୀରେ, ବିନାଶ—କ୍ଷୟ ।

୨୬ । ଲପନ—ମୁଖ, ବିଧୁନ୍ତୁଦ୍ଧୁ—ଚନ୍ଦ୍ରକୁ ଘେରାଇବା, ଜୃମ୍ଭା—ହାଇ, ରଞ୍ଜିତ—ଶୋଭିତ, ଦରବିକଶିତ—ଦରଫୁଟା, କୋକନଦ—ପଦ୍ମ ।

୨୭ । ଗଣିବଣା—ପଲଛଡ଼ା, ଏଣୀ—ମୃଗୀ, ପାରାବାର—ସମୁଦ୍ର, ଆକର—ଖଣି, ସମ୍ଭାବନା—ଆଦର ।


Digitized by srujanika@gmail.com

ଶତ୍ରୁଷ୍ଟ ନୃହଇ ମାର ନାହିଁ ଫୁଲଧନୁଶର ସୁଧାକର ନୋହେ ତହିଁ କଳଙ୍କ ଅଛି । ଅତ୍ରଦେବତାମାନଙ୍କୁ କପି । ଅଣବା ମନକୁ ମୋହଇ ସୁକୃତୁଁ ଏ ସୁରୂପ ହୋଇଛି । ମୋର ପୁଣି ସୁକୃତ କେତେ । ଏମନ୍ତ ଶୋଭା ହେବାରୁ ଜାତ ଜଗତେ । ୨୮ ।

ନିକଟେ ଗୋକୁଳେ ହରି ମୋହନରୂପକୁ ଧରି ଥିଲେ ନାଶ କରିଛନ୍ତି ଅବନୀଭାର । ଏତେବେଳେ ଅବତାର କମ୍ପା ହୋଇବ ତାଙ୍କର କି ମୂର୍ତ୍ତିମନ୍ତ ଉପମାଦ୍ରବ୍ୟଙ୍କ ସାର । ଏରୂପ ବର୍ଣ୍ଣରୁଁ ସୁକେଶୀ । କ୍ଷୀର ନୀର ପ୍ରାୟ ମନ ପୁରୁଷେ ମିଶି । ୨୯ ।

ଏକାଳେ କରି କୋରକ କରି ତରୁଣତଳକ ବୋଇଲା ହେ ଜୀବେଶ୍ୱର ବିନୟ ଘେନ । ଚରଣେ ଅଳତା ପରି ପଛେ ପଛେ ଲଗି ପରି ଅନୁସରିଥିବାକୁ ମୋ ହେଉଛି ମନ । ମୋତେ ଦିଅ ବସନ ଭାଗ୍ୟ । ହେଲିଣି ସବୁମତେ ମୁଁ କୃତାର୍ଥ ଯୋଗ୍ୟ । ୩୦ ।

ଯେବେ ମୋର ଭାଗ୍ୟ ନାହିଁ ତୋତେ କି ପାରନ୍ତି ଗୃହୀ ବିଶେଷତ ତନୁ ଛୁଇଁ ଏ କଥା ଭାବ । ମୋ ମତେ ମୁଁ ତୋ ସେବକ ହେଲିଣି କାମପାବକ ଜାଳିଲେ ଏହୁ ଅଯଶ କାହାକୁ ହେବ । ବିନୟ ପ୍ରଶଂସାକୁ ବାଣୀ । ନାହିଁ ମୁଁ କି କହିବି ତୁ ଦୟାଳୁମଣି । ୩୧ ।

ମିଥ୍ୟା ନୋହେ ନିଦ୍ରାବ୍ୟାଜେ ନେଇ ଯମଦୂତକୁ ଯେ ରଖିଥିଲୁ ପକ୍ଷ୍ମକୋଷ୍ଠୁଁ କରି ବାହାର । ହୃଦରେ ମାରି ଓଠାର ଘେନିଗଲୁ ଝଟ କରି ଦେଖ ମୁକୁରେ ରୁଧିରେ ହୋଏ ଜର୍ଜ୍ଜର । ହାସ ଔଷଧିଶ ପ୍ରକାଶ । ନ କଲେ ନବୀନା ଗଲି ସିନା ବିନାଶ । ୩୨ ।

---

୨୮ । ସୁଧାକର—ଚନ୍ଦ୍ର, ଜଗତ—ସଂସାର ।

୨୯ । ଅବନୀଉପର—ପୃଥ୍ୱୀଉପର, ଗୋକୁଳ—ଗୋପପୁର, ଅବତାର—ଜନ୍ମ, କ୍ଷୀର—ଦୁଧ, ନୀର—ପାଣି ।

୩୦ । କୋରକ—କୋଳ, ତରୁଣ—ଯୁବା, ଚରଣ—ପାଦ, ବସନଭାଗ୍ୟ—ଲୁଗାରଭାଗ୍ୟ, ଅର୍ଥାତ ଲୁଗା ତ ସବୁବେଳେ ଦେହରେ ଲାଗିଥାଏ ମୋତେ ସେହିପରି ସବୁବେଳେ ଘେନିଥା ।

୩୧ । କାମପାବକ—କନ୍ଦର୍ପଅଗ୍ନି, ଅଯଶ—ନିନ୍ଦା, ବାଣୀ—କଥା ।

୩୨ । ନିଦ୍ରାବ୍ୟାଜେ—ନିଦଛଳରେ, ପକ୍ଷ୍ମକୋଷ୍ଠୁ—ପତାକୋଷରୁ, ରୁଧିର—ରକ୍ତ ଔଷଧିଶ—ଚନ୍ଦ୍ର ।

ସେ ରମଣୀ ଚନ୍ଦ୍ରମଣି ହୋଇଲା ଏମନ୍ତ ମଣି ଗୃହ୍ଣି ଚନ୍ଦ୍ରେ, ଦ୍ରବୀଭୂତ କଲା ନାଗର । ହାସ ପୂର୍ବଲା ପରସ୍ପେ ଶ୍ରୀମୁଖ ପ୍ରସନ୍ନ ହୋଏ ହେଲା ଜାଣି ବଳନେବେ ତା ସୀତ୍କାର । କର ଧର ଶିରେ ଲଗାଇ । ତୋଳ ଭର ସୁରସିକ ପଲ୍ୟଙ୍କେ ନେଇ । ୩୩ ।

ବସି ବସାଇଲା ତୋଳେ ଲପନ ଚୁମ୍ବିବାବେଳେ ଢେମା କରେ ହେଲା ବେଗେ ରତନମୁଖୀ । ଜେମା କାଢ଼ି ମୋତିମାଳା ଲମ୍ବାଇଲା ପୁଂସଗଳା ପରସ୍ପର ବରଣେ ହୋଇଲେ ପ୍ରମୋଦୀ । ସେକାଳକୁ ଅସ୍ତ ଚନ୍ଦ୍ରମା । କୁମାର ସ୍ୱରୂପ ବାଡେ ଲେଖି ପ୍ରତିମା । ୩୪ ।

ଦେବୀ ଯେ ମାୟା ହରିଲା ବୀରକୁ ସ୍ୱପୁରେ ନେଲା ରଜନୀ ବିନାଶ ନିଦ୍ରା ସେକାଳେ ହତ । ବଜ୍ର କମ୍ପା ନ ପଡ଼ିଲା ଏ ଦଣ୍ଡ କାହିଁକି ହେଲା ପିଶୁନ ଧାତା କି କଲା ଦାରୁଣ କୃତ । ଭ୍ରମ ବୋଲି ବସ୍ତୁ ହୋଇ । ଉପଇନ୍ଦ୍ର ବାବର ଏ ରସ କହି । ୩୫ ।

———

---

୩୩ । ସୀତ୍କାର—ମାନବା ।

୩୪ । ରତନମୁଖୀ—ସୁନାମୁଖୀ, ପ୍ରମୋଦୀ—ଆନନ୍ଦିତ ।

୩୫ । ରଜନୀ—ରାତ୍ରି, ବିନାଶ—ଶେଷ, ପିଶୁନ—ଖଳ, ନିଷ୍ଠୁର ।

ଲାବଣ୍ୟବତୀ ଚନ୍ଦ୍ରଭାନୁ ରୂପରେ ମୁଗ୍ଧ ହୋଇ ମନରେ ଚନ୍ଦ୍ରାକର ଶିବ ପାର୍ବତୀଙ୍କି କାତରରେ ଡ଼ାକନ୍ତେ ଶିବ ପାର୍ବତୀ ଯୋଗ୍ନୀ ଦ୍ୱାରା ଚନ୍ଦ୍ରଭାନୁକୁ ଲାବଣ୍ୟବତୀ ପୁରରେ ପ୍ରବେଶ କଲେ, ସେଠାରେ ଚନ୍ଦ୍ରଭାନୁ ଲାବଣ୍ୟବତୀକ ଉଠାଇ ପରସ୍ପର ବରଣମାଳା ଦେଇ ଆନନ୍ଦରେ ଶୋଇଲେ, ଏହି ସମୟରେ ଯୋଗ୍ନୀମାନେ ଚନ୍ଦ୍ରଭାନୁକୁ ସେଠାରୁ ଆଣି ନିଜପୁରରେ ଛାଡ଼ିଦେଇ ଗଲେ ।

——o——

## ଦ୍ଵାଦଶ ଛାନ୍ଦ ।

( ଲାବଣ୍ୟବତୀର ବିଳାପ । )

ରାଗ ଭଇରବୀ ।

ଚେତ ଚତୁରା ତୁହିଁ ଲୋ ନିଶିନାଶେ ପାଶେ ନାହିଁ ଦିବ୍ୟତରୁଣ ।
ମାରି ହୃଦେ ହାତ ନାଥ ନାଥ ବୋଲି ଅତି କଲେ କଳ୍ପ କାରୁଣ୍ୟ ।
ଖୋଜେ ଅଧୀରେ । ଚେତନା ହତ ସେ ବଧୂରେ ।
ଶେଯ ଲେଉଟାଇ କବରୀ ଫିଟାଇ କର ଉର କୁଚସନ୍ଧରେ । ୧ ।
ପୁଣି ବୋଲଇ ହେ ଜାଣି ମୁଁ ନ ଥିଲି ଦଇବ ତୁ ଏଡ଼େ ଦାରୁଣ ।
କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ ପରଶିଲୁ କେଉଁ କାରଣ ।
ଭୁଞ୍ଜି ବସିବା—ବେଳେ କୁଳିଶ ବୃଷ୍ଟି କଲୁ ।
ଯେବେ କଲୁ ତେବେ ପରାଣ ନ ନେଲୁ ଏଡ଼େ ବ୍ୟାକୁଳ କରି ଦେଲୁ ।୨।
ଏ ବାଣୀ ଶ୍ରବଣେ ଶୁଣି ସଖୀଗଣେ ପଚାରିଲେ ଏ କି ବିଷୟ ।
ତାରତରଳନୟନରେ ସରଳ ହୃଦୟା ପୂରାଇଛୁ ଲୁହ ।
ନାରୀରତନ । ବାଳଶ ପରି ତୁ ହୋଇଲୁ ।
ପୁରୁଷପଦ ଦିବାକର ଅଗମ୍ୟ ପୁରେ କାହୁଁ ପ୍ରିୟ ପାଇଲୁ । ୩ ।

---

### ୧୨ଶ ଛାନ୍ଦ

୧ । ଚେତ—ଚେଇଁ, ନିଶିନାଶେ—ରାତ୍ରିଶେଷରେ, କାରୁଣ୍ୟ—ରୋଦନ, ଶେଯ—ବିଛଣା, କବରୀ—ବାଳ, କୁଚସନ୍ଧି—ସ୍ତନମଧ୍ୟ, ଏହା ଲେଖିବାର ତାତ୍ପର୍ଯ୍ୟ ଏହି ଯେ ଚନ୍ଦ୍ରଭାନୁ ଯିବାରୁ ଲାବଣ୍ୟବତୀ ଉଠି ଦେଖିଲେ ପୁରୁଷ ନାହିଁ । ତହୁଁ ଶେଯ ଲେଉଟାଇଲେ—ତା ନା ଚନ୍ଦ୍ରଭାନୁ କାଳେ ଚନ୍ଦ୍ର ଓ ଭାନୁ ତୁଲା ରାଶିକି ଯାନ୍ତି—ଶେଯରେ ତ ତୁଳାଅଛି କାଳେ ଯାଇଥିବେ । ପୁଣି ବାଳକୁ ଫିଟାଇଲେ. କାରଣ ଚନ୍ଦ୍ରତ ମେଘରେ ରହନ୍ତି କାଳେ ବାଳରୂପ ମେଘରେ ଏ ଲୁଚିଥିବେ, ପୁଣି ଚନ୍ଦ୍ରତ ପର୍ବତ ମଧ୍ୟରେ ଅସ୍ତ ହୁଅନ୍ତି, ଏ କାଳେ କୁଚପର୍ବତ ସନ୍ଧିରେ ଥିବେ, ଏହା କବିର କଳ୍ପନା ।

୨ । ଦାରୁଣ—ନିଷ୍ଠୁର, କ୍ଷୁଧାତୁର—ଭୋକିଲ, ସୁଧାତୁଲ୍ୟ—ଅମୃତ ସମାନ, ଭୁଞ୍ଜିବସିବା—ଖାଇବସିବା, କୁଳିଶ—ବଜ୍ର ।

୩ । ତାର—ତରା, ତରଳ—ଢଳ ଢଳ, ନୟନ—ଆଖି, ନାରୀରତନ—ନାରୀଶ୍ରେଷ୍ଠ, ବାଳଶ—ବାତୁଳ, ଦିବାକର—ସୂର୍ଯ୍ୟ, ପ୍ରିୟ—ସ୍ୱାମୀ ।

ସଖୀମାନେ କହିଲେ କାନ୍ଦୁଛ କାହିଁକି, ଏପୁରକୁ ତ ସୂର୍ଯ୍ୟ କିରଣ ପଡ଼େ ନାହିଁ କେଉଁ ପୁରୁଷ କିପରି ଆସିବ ମିଛରେ କାନ୍ଦୁଛ ।


Digitized by srujanika@gmail.com

ବୋଲେ ନାଗରୀ ସାଗରେ ସ୍ନାନ କରି ଯେମନ୍ତ ତୃଷା ନ ତୁଟିଲା ।
କଳ୍ପତରୁରେ ଫଳ ନାହିଁ ଯେମନ୍ତ ତେମନ୍ତ ଦଶା ତ ଘଟିଲା ।
ଦିବ୍ୟ ପୁରୁଷେ । ଆସି ରସି ବସି ମୋ ପାଶେ ।
ଅଙ୍ଗେ ଅଙ୍ଗମେଳ ରସଜାତବେଳ ଶତ୍ରୁଦହୋଇଲା କି ଦୋଷେ ।୪।
ଆଳୀ ଭାଳିଲେ ଚନ୍ଦନମହୀରୁହ ପରସୁ ଏହୁ ଅନ୍ତଃପୁର ।
ଭୁଜଙ୍ଗ କଞ୍ଚୁକେ ବେଷ୍ଟିତ ହେବାରେ ସର୍ବ ଦିବସେ ଭୟଙ୍କର ।
ଅଛି ତହିଁରେ । ପବନର ମାତ୍ର ପ୍ରବେଶ ।
ଏ କେଉଁ ଦେବରେ ଗମ୍ୟ ହୋଇଥିବ ଭେଦିତ ନ ଥିବ ମନୁଷ୍ୟ ।୫।
କେମାକୁ ପୁଚ୍ଛିଲେ ତାଣ୍ଡବଚିତ୍ରକୁ ଦେଖିଛୁ ତ ଶିବସଦନେ ।
ତହୁଁ କେଉଁ ଦେବେ ବଶ ହେଲୁ ଏବେ କି ଅବା ରସିଲୁ ମଦନେ ।
ଶୁଣି ସୁନ୍ଦରୀ । ଶିର କମ୍ପାଇ କଲା ନାହିଁ ।
ଧାତ୍ରୀପୁତ୍ରୀ ମତ୍ରୀ ସୁତାକୁ ବୋଇଲା ସ୍ୱପନରେ ଭୁଲ କିପାଇଁ ।୬।
ଚିକୁରଶୋଭି ମୁକୁର ପ୍ରତିବିମ୍ବ ଆଲିଙ୍ଗନେ ଯେବେ ଆସିବ ।
ମୃଗତୃଷ୍ଣା ଜଳ ତୃଷାକୁ ନାଶିବ ସ୍ୱପ୍ନ ତେବେ ସତ ଦିଶିବ ।
କହେ ସଚିବ—ସୁତା ସବୁ ବଡ଼ ଦଇବ ।
ତାହା ମନେ ଥିଲା ଅଗାଧ ସମୁଦ୍ର ଚଳୁଭିତରେ ( ୧ ) ସମ୍ଭାଇବ ।୭।

---

୪ । ସାଗର—ସମୁଦ୍ର, ସ୍ନାନ—ଗାଧୋଇବା, ତୃଷା—ଶୋଷ, କଳ୍ପତରୁ—କଳ୍ପବୃକ୍ଷ, ଅଙ୍ଗ—ଦେହ ।

୫ । ଆଳି—ସଖି, ଚନ୍ଦନ ମହୀରୁହ—ଚନ୍ଦନ ଗଛ, ଅନ୍ତଃପୁର—ଭିତରପୁର, ଭୁଜଗ—ସର୍ପ, କଞ୍ଚୁକ—ପ୍ରହରୀ, ଗମ୍ୟ—ଆସିବା ।
ସଖିମାନେ କହିଲେ ଚନ୍ଦନ ଗଛର ସୁବାସ ଥିବାରୁ ସାପମାନେ ତା ଦେହରେ ଥାନ୍ତି ଏ ପୁରରେ ରାଜରାଣୀ ଥିବାରୁ ସର୍ପରୂପ ପହରୀବାଲା ଘେର ରହିଛନ୍ତି, ଏକମାତ୍ର ପବନ ଆସିପାରେ, ଆଉ କିଏ ଆସିବ, ଏଠାକୁ କେଉଁ ଦେବତା ବା ଆସିଥିବ, ମନୁଷ୍ୟର ତ ସାଧ୍ୟନୁହେ ।

୬ । ତାଣ୍ଡବଚିତ୍ର—ମହାଦେବ ତାଣ୍ଡବ ନୃତ୍ୟ ବେଳେ ସବୁ ଦେବତା ଥାନ୍ତି, ସେ ଚିତ୍ର ଦେଖିଥିବ, ଶିବସଦନେ—ମହାଦେବଙ୍କ ମନ୍ଦିରରେ, ମଦନ—କନ୍ଦର୍ପ, ଧାତ୍ରୀପୁତ୍ରୀ—ଦାସୀଝିଅ ।

୭ । ଚିକୁରଶୋଭ—ଅତିସୁନ୍ଦରୀ, ମୁକୁର ପ୍ରତିବିମ୍ବ—ଦର୍ପଣରେ ଦେଖାଯିବା ରୂପ, ମୃଗତୃଷ୍ଣା—ମରୀଚିକା, ଅଗାଧ—ଅସୀମ, ଚଳୁ—ଅଞ୍ଜୋଳ, ଅଗସ୍ତି ସପ୍ତସମୁଦ୍ର ଚଳୁରେ ଧରିଥିଲେ ।


Digitized by srujanika@gmail.com

ସେ ପୁଣି ବୋଇଲା ସେ କଥା ସେରୂପେ ଏ କଥା କୁଳୁଟିପ୍ଳବନ ।
ପବନକୁ ପାଶ ପାତବସିଥିଲେ ସେ ତାହିଁ ହୋଇବ ବନ୍ଧନ ।
ପୁଣି ସେ କହେ । ଉଷା-ଅନିରୁଦ୍ଧ କେମନ୍ତ ।
ସେ ବୋଲେ ସତେ ଯଦୁପୁରେ ସେ ଥିଲା ଜାଣିଲେ ଏ ତାଙ୍କୁ ସମ୍ମତ ।୮।

ପଦ୍ମମଳା ନାମେ ସଜଣୀ ବୋଇଲା ଜେମାକୁ ଅନାଇଁ ସଖୀକି ।
ଅଛିଥାଉଁ ଦେଖି ନ ପାର ସଙ୍କେତ ଖେଳ ହୁଅ ତାହିଁ ପାଇଁକି ।
ନୋହେ ସ୍ୱପନ । ସତ ଗୃହିଁକି ନା ବାଳାକୁ ।
କେଉଁ ଦେବାର ଏ ମାୟା ହେଲେ ହେବ ଲଭିଛୁ ବଲ୍ଲଭଲୀଳାକୁ । ୯ ।

ଗଣ୍ଡମଣ୍ଡଳ ପାଟଳ ଚୁମ୍ବିବାରେ ତାମ୍ବୁଲବୋଳ ତ ଲାଗିଛି ।
ପାନବଶରେ ରଦବାସ ବଶେଷ ଶୋଭିଦନ୍ତଷତ ହୋଇଛି ।
ଚନ୍ଦ୍ର ଚନ୍ଦନ । ଠାବେ ଠାବେ ଅଙ୍ଗେ ଲାଗିଛି ।
କାମକାତରେ ଭିଡିଛି ଥରଥରେ କଙ୍କଣ ପଦରେ ପୀଡିଛି ।୧୦।

ଛୁଇଁବାବେଳରେ ଶ୍ରୀଅଙ୍ଗ ଜେମାର ଦେଇଥିବ ସିନା ଆଦରେ ।
ଯେଉଁ ମୁଦ୍ରିକା ଅନାମିକାମଣ୍ଡନ କେହୁ ଦେଖିଛ କି ଏ ପୁରେ ।
ଯହୁଁ ଦେଖାଇ । ଏରୂପେ ସଙ୍କେତନିକର !
ଏକାଳେ ଜଣେ ଗୃହିଁ ବୋଲେ ବାଡ଼କୁ ସେ ପଶ ଏ ଶବ୍ଦ ସୁନ୍ଦର । ୧୧ ।

---

୮ । ସେରୂପ—ସେହିପରି. କୁଳୁଟି ପ୍ଳବନ—କୁଣ୍ଡରେ ପହଁରିବା, ବା ବୁଡ଼ିବା ଉଷା ଅନିରୁଦ୍ଧ—ବାଣାସୁର ଝିଅ ଉଷାକୁ ଗୁପ୍ତଭାବରେ କୃଷ୍ଣଙ୍କ ପୁଅ ଅନିରୁଦ୍ଧ ହରଣ କରିବାରୁ ଯୁଦ୍ଧହେଲା, ଶେଷରେ ବାଣ ପରାସ୍ତ ହୋଇ ଉଷା ଅନିରୁଦ୍ଧର ବିବାହ କଲା ।

୯ । ସଙ୍କେତ—ଚିହ୍ନ. ବଲ୍ଲଭଲୀଳ:—ସ୍ୱାମୀସୁଖ ।

୧୦ । ଗଣ୍ଡ ମଣ୍ଡଳ—ଗାଲସହ ଓଷ୍ଠ, ପାଟଳ—ନାଲି, ତାମ୍ବୁଲବୋଳ—ପାନବୋଳ, ପାନ ବଶରେ—ପିଇବା ଇଚ୍ଛାରେ, ରଦବାସ—ଓଷ୍ଠ, ଦନ୍ତକ୍ଷତ—ଦାନ୍ତଦାଗ, ଦାନ୍ତଦ୍ୱାରା ଖଣ୍ଡିଆ, ଚନ୍ଦ୍ର—କର୍ପୂର, କାମ କାତରେ—କନ୍ଦର୍ପ ଖେଳରେ, କଙ୍କଣ ପଦରେ ପୀଡ଼ିଛି—କଙ୍କଣ ଦାଗ ଗୋଡରେ ରହିଛି ।

୧୧ । ମୁଦ୍ରିକା—ମୁଦି, ଅନାମିକା—କାଣିଅଙ୍ଗୁଠି ପାଖ ଅଙ୍ଗୁଠି, ସଂକେତନିକର—ଚିହ୍ନସବୁ, ବାଡ଼—ଚଏପଟ ।

ଉପମାସୃଷ୍ଟି ସୃଷ୍ଟି କର ରମ୍ଭୋଷ୍ଠୀ ଦୁର୍ଲ୍ଲଭବଲ୍ଲଭରୂପକୁ ।
ଦେଖି ଭାଳିଲେ ପରମେଷ୍ଠି ଗୋଟିଏ କଲା କୋଟିଏ କନ୍ଦର୍ପକୁ ।
ସର୍ବ ସଜନୀ । ଅନିମିଷ ହୋଇ ରହିଲେ ।
ନୋହିଲେ କାହିଁକି ଜଗତମୋହିନୀମନକୁ ମୋହିଲା କହିଲେ ।୧୨।
ପ୍ରବୋଧ କଲେ ଏ ବିଧିରେ ସଧିରେ ବୁଦ୍ଧିରେ ଦେଖାଇ ପ୍ରମାଣ ।
ପୁରୁଷପଦେ ଏହାକୁ ସ୍ତ୍ରୀପଦେ ତୋତେ ଧାତା କଲା ନିର୍ମାଣ ।
ଅତ୍ର ଅନନ୍ତରେ । ସଙ୍ଗତ କାହୁଁ ଉଥଳିବ ।
ତୁଳାପାତ୍ରେ ଉଣା ଅଧିକ ପଦାର୍ଥ ପଡ଼ିଲେ କି ସମେ ରହିବ ।୧୩।
ଏତେ କହି ଦେଲେ ନୀତିକି ବଢ଼ାଇ ସେ ଦିନୁ ବହିଲା କ୍ଷୀଣକୁ ।
ସ୍ୱପନସଙ୍ଗ ପ୍ରସଙ୍ଗ ଚିନ୍ତ ଚିତ୍ର ଗୃହିଁ ହରୁଥାଏ ଦିନକୁ ।
ସଦା ହେବାକୁ । ଶରଧା ହୋଏ ଏହା ଭାବ ।
ପୁଣି ସେ ପୁରୁଷପାଶକୁ ଅଇଲେ ଅଞ୍ଚଳେ ଅଞ୍ଚଳ ବାନ୍ଧିବ ।୧୪।
ବିରହ ଅଧିକ ଧ୍ୱଜ କଲା ବେଶ ହାସ୍ୟ ଭାଷ ଧରାଶୟନ ।
ଅପଘନେ ଘର କଲା ସ୍ମରଜ୍ୱର ନୀରପୂର ହେଲା ନୟନ ।
ମହା ଆକୁଳ । ଜନିତ ହୋଇଲା ନିରତେ ।
ସ୍ତୋକ ସ୍ତୋକ କରି ତନୁକୁ କାଟିଲା ମଦନ ବସାଇ କରତେ ।୧୫।
ବୋଲଇ ସଖି ରେ ବିଚିତ୍ର ନାଗର ସ୍ନେହସାଗରରେ ମଜ୍ଜିଲି ।
ଅବଶ୍ୟ ଲଭିବ ଜୀବରତନକୁ ଏମନ୍ତ ଚିତ୍ତରେ ହେଜିଲି ।
ଏତେ ବେଳକୁ । ଜୀବନ ଆଶାକୁ ତେଜିଲି ।
କାମଭ୍ରମେ ପଡ଼ି କରମବଶରେ ସୁଖ ନ ପାଇ ମୁଁ ବୁଡ଼ିଲି ।୧୬।

---

୧୨ । ଉପମାସୃଷ୍ଟି—ଉପମାସତ୍ତ୍ୱ, ସୃଷ୍ଟି—ତିଆରି, ରମ୍ଭୋଷ୍ଠୀ—ଲାବଣ୍ୟବତୀ, ଦୁର୍ଲ୍ଲଭ—ଦୁଷ୍ପ୍ରାପ୍ୟ, ସୁନ୍ଦର, ପରମେଷ୍ଠି—ବ୍ରହ୍ମା, ଅନିମିଷ—ଏକ ଦୃଷ୍ଟିରେ ଚକ୍ଷୁପତା ନ ପକାଇ ।

୧୩ । ପ୍ରବୋଧ—ଶାନ୍ତ, ବିଧିରେ—ନିୟମରେ, ସଧୀରେ—ଧୀରଭାବରେ, ଧାତା—ବିଧାତା, ନିର୍ମାଣ—ତିଆରି, ତୁଳାପାତ୍ର—ଓଜନକରିବା ତରାଜୁ ।

୧୪ । ନୀତି—ପ୍ରାତଃକୃତ୍ୟ, କ୍ଷୀଣ—ସରୁ, ପ୍ରସଙ୍ଗ—ବିଷୟ, କଥା, ଅଞ୍ଚଳ—କାନି, ସ୍ୱପନ ସଙ୍ଗ—ସ୍ୱପନରେ ମିଳନହେବା,

୧୫ । ଧ୍ୱଜ—ଉଚ୍ଚ, ଧରା—ପୃଥିବୀ, ଶୟନ—ଶୋଇବା, ଅପଘନ—ଦେହ, ସ୍ମରଜ୍ୱର—ମଦନବିକାର, ନୀର—ପାଣି, ନୀରପୂର—ଲୋତକ ପୂର୍ଣ୍ଣ, ସ୍ତୋକ—ମେଖା, ଥର । ୧୬ । ଜୀବନ—ପ୍ରାଣ ।

ଯିବାକୁ ଜୀବ ଶୋଚନା ହେଉନାହିଁ ଏହି କଥାକୁ ମନେ ଭାବ ।
ସାଗର ସ୍ନାନ ଫଳ କି କ ବ୍ୟର୍ଥ ହେବ ମନାସିବା ପାଇବ ।
କୃପା କର କି । ଅଜ କର୍ଣ୍ଣଧାର ହୋଇବ ।
କଳ୍ପ କଥା ଯେହୁ ଅନ୍ୟଥା କରନ୍ତି ଏମନ୍ତ ଦାରୁଣ ଦଇବ । ୧୭ ।

ସଖୀ କହିଲେ ଦୁଃଖ ସହି ଧୈର୍ଯ୍ୟ ହେଲେ କାର୍ଯ୍ୟ ଲଭ ଅବଶ୍ୟ ।
ହରି ଅରିଘାତ ସହି ରହିଲାରୁ ହରି ପିଇଛନ୍ତି ପୀୟୂଷ ।
ତୁ ଯେ ତୃଷାର୍ତ୍ତୀ,—ଚାତକୀ ତୋ ତୃଷା ହରିବ ।
ମଙ୍ଗଳ ଚଳନେ ଉଇଁଲା ଘନ କି ଜଳ ବରଷା ନ କରିବ । ୧୮ ।

ଏକାଳେ ବଳୟଶୋଭି କୁବଳୟନୟନୀ ମଳୟ ସମୀରେ ।
ଛଳେ ଭୋଗୀ ପ୍ରୀତି ତୁମ୍ଭଙ୍କୁ ବୋଲୁଛି ସେହି ଗୁଣ ବହି ମୋଠାରେ ।
ଅହେ ପବନ । ବୋଲାଅ ଜଗତଜୀବନ ।
ଏବେ ମୋ ଜୀବନ ନେବାକୁ ହୋଇଛ ଯଥା ସର୍ପ ପାତେ ଜୀବନ । ୧୯ ।

ଯହିଁ ତହିଁ ତୋତେ ମଧୁକାଳ ହୋଏ ଦକ୍ଷିଣ ଶବଦ ପ୍ରକଟ ।
ସେତୁ ହେତୁରେ ଯେଉଁମାନେ ରଖିଲେ କି ନିନ୍ଦବା ସେ ତ ମର୍କଟ ।
ମନ୍ଦ ମରୁତ । ବୋଲୁଛି ଯେଣୁ ତନୁ ପୋଡ଼ୁ ।
ଦେବତା ହୋଇଲେ ପୁଣ ମାତାଗୁଣ ରାବଣ ପରାୟ ନ ଛାଡ଼ୁ । ୨୦ ।

---

୧୭ । ଶୋଚନା—ଦୁଃଖ, ସାଗର—ସମୁଦ୍ର. ବ୍ୟର୍ଥ—ଅକାରଣ, କର୍ଣ୍ଣଧାର—ନାବିକ, ଦାରୁଣ—ନିଷ୍ଠୁର ।

୧୮ । ହରି—ମାଙ୍କଡ଼ ବିଷ୍ଣୁ, ଅରି—ଶତ୍ରୁ, ଶସ୍ତ୍ର, ଘାତ—ଆଘାତ, ସମୁଦ୍ର ମନ୍ଥନ ବେଳେ ବିଷ୍ଣୁଙ୍କ ଚକ୍ରଘାତ ସହିକରି ହରି ଅମୃତ ପିଇଥିଲା । ତୃଷାର୍ତ୍ତୀ—ଶୋଷୀ, ମଙ୍ଗଳ ଗ୍ରହ ଚଳଲେ ବର୍ଷା ବେଶି ହୁଏ ।

୧୯ । ବଳୟ—ଖଡ଼ୁ, କୁବଳୟ—ରକ୍ତପଦ୍ମ, ନୟନ—ଚକ୍ଷୁ, କୁବଳୟ ନୟନୀ—ରକ୍ତପଦ୍ମଚକ୍ଷୁ, ମଳୟ—ସୁଗନ୍ଧଯୁକ୍ତ, ସମୀର—ପବନ, ଜଗତ ଜୀବନ—ସଂସାରର ପ୍ରାଣ, ଓ ପବନ, ଜୀବନ—ପାଣି ।

୨୦ । ମଧୁକାଳ—ବସନ୍ତ ସମୟ, ଦକ୍ଷିଣ ଶବଦ—ଦକ୍ଷିଣ ନାୟକର ଆଖ୍ୟା, ଦକ୍ଷିଣ ନାୟକ ତାର ସ୍ତ୍ରୀ ବ୍ୟତୀତ ଅନ୍ୟକୁ ଅନାଏ ନାହିଁ । ସେତୁ—ବନ୍ଧ ଏଠାରେ ସେତୁବନ୍ଧ । ମର୍କଟ—ମାଙ୍କଡ଼, ମରୁତ—ପବନ. ତନୁ—ଦେହ ରାବଣର ମା— ନିକଷା ଅସୁରୁଣୀ ରାବଣ ଋଷିପୁତ୍ର ହେଲେ ମଧ୍ୟ ମା ଗୁଣରେ ବଡ ଦୁଷ୍ଟ ଥିଲା ।

ଲାଗିଲେ କାମ। ବ୍ୟଥିତ ନ କରିବୁ କାଳେ ବୋଲିକ ଖଣ୍ଡଭୂତ ।
ଏତେକ ବଚନଙ୍କ ଇନ୍ଦ୍ର( ୧ ) ନୋହିଲା ଦେହରୁ ହେବ ବଳବନ୍ତ ।
ଜଳ ପବନ । ଏକ ବିନା ସୁତ ନ ଘେନ ।
ରାମଠାରୁ ( ୨ ) ଜଣାଯାଉଛି ନିସତ ହେବ ଗଲାବେଳେ ଜୀବନ । ୨୧

ପୁଣ ଶୁଣ ପିକବାଣୀ ଗୁଣି ଜଇମିନିକ ମଣି ବଜ୍ରପାତ ।
ଚେତନାବଶେ ଅବଶେ ବସେ ଭ୍ରମେ ମୋ ହୃଦର କେଉଁ ମହତ ।
ମୁଁ ଯେ ଅବଳା । ମୋ ବଧ ଜଗତେ କଳୁଷ ।
ବକୁଳଆସବ ଅଶୁଁ ଦ୍ୱିଜ ହେଲେ ହୋଇଲୁ କି ଜ୍ଞାନ-ବିନାଶ । ୨୨ ।

ପଞ୍ଚମସ୍ୱରେ ତୋ ପଞ୍ଚଶର ଥିଲା ପଞ୍ଚତ୍ୱ ଇଚ୍ଛା କରି ମୋର ।
କଳକଣ୍ଠ ନାମ ଆଦ୍ୟ ବର୍ଣ୍ଣେ ଏବେ ଆଶ୍ଳେଷ କଲୁ କି ଆକାର ।
ଆଗୁଁ ଜାଣି ମୁଁ । ନ ଥିଲ ଏମନ୍ତ ବୋଲିଣ ।
ବ୍ୟାଧ ପୋଷି ବଧ କରୁଥିଲେ ତୁ କମା ଦେଖାନ୍ତୁ ବଡ଼ପଣ । ୨୩ ।

କୁସୁମଶରକୁ ପୁଣି ବୋଲୁଅଛୁ ହତ୍ୟା ଘେନିବୁ କି ମୋହର ।
ଏ କେଉଁ ବଡ଼ାଇ ମନୁ ଜାତ ହୋଇ ମନ୍ମଥ ପଦ ପୁରସ୍କାର ।
ତୁ କି କସ୍ତୁରୀ । ଠାରୁ ଏ ଦୀକ୍ଷାକୁ ପାଇଲୁ ।
ପଶୁସମ୍ଭବ ଅଚେତ ଦ୍ରବ୍ୟ ସଙ୍ଗେ କରୁରେ ତୁଳନା ହୋଇଲୁ । ୨୪ ।

---

୨୧ । ଖଣ୍ଡଭୂତ—ଖଣ୍ଡିଆଭୂତ ( ୧ ) ଇନ୍ଦ୍ର ମାତାଗର୍ଭରେ ପବନକୁ ଅଣଚାଶ ଖଣ୍ଡ କରିଥିଲେ ମଧ୍ୟ ସେ ଅକ୍ଷୟ ହେତୁ ଅଣଚାଶ ରୂପଧରି ବଳବାନ ହେଲେ ( ୨ ) ରାମ ସମୁଦ୍ରକୁ ସ୍ତୁତି କରିଲା ଠାରେ ସମୁଦ୍ର ନ ଶୁଣନ୍ତେ ରାମ ମାରିବାକୁ ବସନ୍ତେ ବାଟଦେଲା ।

୨୨ । ପିକବାଣୀ—କୋଇଲି ସ୍ୱର ଅର୍ଥାତ୍ କୋଇଲିସ୍ୱର, ବଜ୍ରପରି ଜଣାଗଲା ବଜ୍ର ପଡିଲେ ଯେପରି ଜୈମିନି କି ସ୍ମରଣ କଲେ ତାହା ନିବାରଣ ହୁଏ. କଳୁଷ—ନିନ୍ଦା, ବକୁଳ—ବଉଳ, ଆସବ—ମଦ, ଦ୍ୱିଜ—ବ୍ରାହ୍ମଣ, ପକ୍ଷୀ

୨୩ । ପଞ୍ଚମସ୍ୱରେ—କୋଇଲି ସ୍ୱରପରି ମଧୁର ସ୍ୱରରେ, ପଞ୍ଚଶର—ଫୁଲଶର, ପଞ୍ଚତ୍ୱ—ମରଣ. କଳକଣ୍ଠ ଆଦ୍ୟରେ ଆକାର ଦେଲେ, କାଳକଣ୍ଠ ହେଲା ବ୍ୟାଧ—ଶବର ।

୨୪ । କୁସୁମଶର—କନ୍ଦର୍ପ, ବାଣ କସ୍ତୁରୀ ଦୀକ୍ଷା—କସ୍ତୁରୀ ଯେଉଁ ମୃଗଠାରୁ ବାହାରେ ସେ ନାଶହୁଏ ସେହିପରି କନ୍ଦର୍ପ ମନରୁ ଜାତ ହୋଇ ମନକୁ ଦହିଲା ।


Digitized by srujanika@gmail.com

ଯେ ବୋଲେ ମାର ତାହାକୁ ତୁହି ମାର ନ ମାର ବୋଲେ ମୁଁ ନିରତେ ।
ମୋ ତନୁ ନାଶ କରି ବାସ କରିବୁ କାହିଁ ବିଗ୍ରହ କରୁ ଏତେ ।
ଦେଖ ଅନଳ । କାଷ୍ଠକୁ ନଷ୍ଟ କରି ଲିଭେ ।
ପ୍ରେତ ହେବାରୁ ପ୍ରେତପତି ସମୀପେ ନେବା ବିଗ୍ରହ କରୁ ଏବେ । ୨୫ ।
ଯାହା କୁମାର ତେଡ଼େ ମିଛିକି କରି ଛାଡ଼ିବୁ କି ନୋହିବ ବେଭାର ।
ଯାହା କୁ ମାର ତହିଁରୁ କେତେ ଭୂତ ପ୍ରାପତ ହେଲେଣି ତୋହର ।
ମୁଁ ତା ହୁଡ଼ିଛି । ଏହି ସୂକ୍ତରୁ ନିଷ୍ଠୟ ।
ଗର୍ବରେ ଭୂତ ସ୍ୱରୂପ ହୋଇଥିଲୁ ଅନୁଚିତ ଚିତ୍ତ-ଜଦୟ । ୨୬ ।
ଯୋଗ ରଣ ଶମ୍ଭୁ ଶୋଷକୁ ରଖିଲେ ଆପଣାର ବାଧା ସେ କଥା ।
ସର୍ବ ସର୍ବଜ୍ଞତା କଲ କଥା ପୁଣି କାହିଁକି କଲେ ସେ ଅନ୍ୟଥା ।
ନାହିଁ ଶୋଚନ । ହେଲେ ହେଲି ମୁଁ ହୀନମାନ ।
ପୁଣି ଜାଣିବେ ବିଷବୃକ୍ଷ ସ୍ଥାପିବା ଉମା କରି ଯେ ଦାନ ମାନ । ୨୭ ।
କାମିର କେଉଁ ଦେବତାରେ ବିଶ୍ୱାସ ନିଶ୍ୱାସ ଦୁଇ କଥା ନାହିଁ ।
ସିନ୍ଧୁଶମ୍ବରେ ଶମ୍ବର ବୁଡ଼ାଇଲା ତେବେ ବହିଲୁ ଜୀବେ ତୁହି ।
ଏତେ କହି ସେ । ଖରଶ୍ୱାସ ତେଜି ମଦନ ।
ଅଳୀଅଙ୍କେ ତନି ପଡ଼ିଲାଟିବ ଲକୁ କର୍ଣ୍ଣ ଫୁଙ୍କି କଲେ ଚେତନ । ୨୮ ।

---

୨୫ । ମାର—କନ୍ଦର୍ପ, ମାର—ମାରପକାଇବା, ପ୍ରେତପତି—ଯମ, କନ୍ଦର୍ପ ମରିବାରୁ ପ୍ରେତହୋଇ ଯମ ନିକଟକୁ ଗଲା ପୁଣି ଜୀବନ ପାଇଲା ।

୨୬ । କୁମର—ପୁତ୍ର, ଭୂତ—ସମ୍ପତ୍ତି, ଚିତ୍ତଜଦୟ—ମନଦେବା ।

୨୭ । ସର୍ବଜ୍ଞତା—ମହାଦେବ, ଅନ୍ୟଥା—ଅକାରଣ, ଉମା—ପାର୍ବତୀ, ମହାଦେବ କାମକୁ ତୁଚ୍ଛ କରିଥିଲେ । ଉମା ମାନକରିବାରୁ ପୁଣି କନ୍ଦର୍ପବାଧା ପାଇଲେ ଓ କନ୍ଦର୍ପଙ୍କୁ ଜୀବଦାନ ଦେଲେ ଏ ହେଲା ଯୋଗୀ·ପକ୍ଷରେ ବିଷ ସଦୃଶ ।

୨୮ । କାମୀର—କାମୁକଲୋକର, ସିନ୍ଧୁଶମ୍ବର—ସମୁଦ୍ରପାଣି, ଶମ୍ବର—ସମ୍ବରାସୁର କାମ ଆସି ରୁକ୍ମିଣୀ କୋଳରେ ଜନ୍ମ ହୁଅନ୍ତେ ସମ୍ବରାସୁର ଅଲୁଡ଼ଶାକୁ ଚୋରାଇ ନେଇ ସମୁଦ୍ରରେ ପକାଇ ଦେଇଥିଲା ସେଠାରେ ତାକୁ ମାଛ ଗିଳିଥିଲା ସେ ମାଛ ସମ୍ବରାସୁରକୁ କେଉଟ ଧରି ଭେଟିଦେଲା । ମାଛ କାଟନ୍ତେ ତା ପେଟରୁ ସୁନ୍ଦର ଶିଶୁ ମିଳିଲା । ସମ୍ବରାସୁର ବଳ ପୂର୍ବକ ରତିକୁ ନିଜ ସ୍ତ୍ରୀ କରିବ ବୋଲି ଘରେ ରଖିଥିଲା । ରତିକି ସେ ଶିଶୁକୁ ଦେଲା ନାରଦ ଏସବୁ ବିଷୟ ରତିକୁ କହନ୍ତେ ସେଠାରେ କନ୍ଦର୍ପ ବଡ଼ ହୋଇ ସମ୍ବରାସୁରକୁ ମାରି ରତିକି ଉଦ୍ଧାର କରିଥିଲା । ଏବେ କଷ୍ଟରେ କନ୍ଦର୍ପର ଜୀବନ ରହିଲା ।

ସଲିଳ ସିଞ୍ଚିଲେ ସଧୀରେ ବାନ୍ଧିଲେ ପଲ୍ଲବଶଯ୍ୟାରେ ଶୁଆଇ ।
ଦେଲେ ମୃଣାଳ ବ୍ୟାଳ ମଣି ରମଣୀ ରମକ୍କ ସୁପର୍ଣ୍ଣ ବୋଲଇ ।
କରେ ଭଜନ । ଶିବ ଶିବ ବୋଲି ବନିତା ।
ଗଳାର ହାର କରୁ କରୁ ବାହାର ଫୁଟି ପାଟିଗଲେ ମୁକୁତା । ୨୯ ।
ସହଚରୀଏ ତା ଚରିତ ଅନାଇଁ ତୁରିତେ ଏମନ୍ତ ବିଗୁରି ।
ଦୂର କରଣ ଶୁକ ସାରୀ ପଞ୍ଜରୀ ଉପାଡିବା ପୁଷ୍ପମଞ୍ଜରୀ ।
ଜଳାକବାଟି । ଉଶୀର ବାଟି କଲେ ହତ ।
ବିଗୁରିଲେ ନବବଧୂ ବଧୂ କେହି ନ ଦେଖିବ ଏହା ଭ୍ରିବ ତ । ୩୦ ।
ଜଣେ କହିଲା ଅତି ଯତ୍ନ କରଣ ଗୋପ୍ୟମନ୍ଦିରେ ରଖିଥିବା
କେ କହେ ଜନନୀ ହକର ସେକାଳେ ହେଲେ କି ଉପାୟ କରିବା ।
କେଉଁ ସଜନୀ । ବୋଇଲା ଏ ବିଗୁର ଭଲ ।
ଘାସ ଦିଅଇ ଶଶ କୃଶ ହରିବା ମାଡିବସୁ ଚନ୍ଦ୍ରମଣ୍ଡଳ । ୩୧ ।
କେ କହେ ଏ କଷ୍ଟ ନୋହେ ଗଗନକୁ କେ ପୂର୍ଣ୍ଣ କରିବେ ଗମନ ।
ରାହୁ ଯୋଡ ହେବା ନିମିତ୍ତ କରିବା ଜରାଦେବତୀକ ପ୍ରସନ୍ନ ।
ଶୁଣି ସେ ବୋଲେ । ସେ ପାପୀ ଶରୀର ଅମର ।
ସିଂହିକାସୁତ ଉଦରକୁ ଚୀରିବ ପରି ହନୁମାନ ପ୍ରକାର । ୩୨ ।
ଚତୁର ସଖୀ ବୋଇଲା ସବୁପର ବିଗୁର ଏହି ରେ ସଜନି ।
କି ମନେ ବଶ କରନ୍ତାଇଁ ରହନ୍ତା ଏ ପୁରେ ଦିବସ ରଜନୀ ।
ମନ୍ତ୍ରାମାନ୍ତିକ । ଜନମାନଙ୍କୁ ଗୋ ପଗୁର ।
ମନ୍ତ୍ରୀନନ୍ଦନା ବୋଇଲା ଏଥୁଁ ଉହୁଁ କର କିମ୍ପା ବୃଥା ବିଗୁର ।୩୩।

---

୨୯ । ସଲିଳ—ପାଣି, ପଲ୍ଲବଶଯ୍ୟା—କଅଁଳଆପନ ବିଛଣା, ମୃଣାଳ—ପଦ୍ମନାଡ଼, ବ୍ୟାଲ—ସର୍ପ, ସୁପର୍ଣ୍ଣ—ଗରୁଡ଼, ଅଣ୍ଡା ଦେବବୋଲି ପଦ୍ମନାଡ଼ ଦିଅନ୍ତେ ସାପ ମନେକରି ଗରୁଡ଼କୁ ସ୍ମରିଲାପରି ସେ ଉଠି ବସିଲା, ତାର ବିରହ ବେଦନା ବେଶି ହେବାରୁ ବେକର ହାର ଗରମ ହେଉଥିବା ହେରୁ ତରବର କରି ଛିଣ୍ଡାନ୍ତେ ମୁକ୍ତାସବୁ ଫାଟିଗଲା ।

୩୦ । ପୁଷ୍ପମଞ୍ଜରୀ—ଫୁଲଗଛ, ଉଶୀର—ବେଣା, ଯେଉଁ ସବୁ ସୁନ୍ଦର ଜିନଷ ଦେଖିଲେ କାମ ଜାତ ହୁଏ ସେ ସବୁକୁ ସଜନମାନେ ପାଖରୁ ଦୂର କଲେ କାରଣ ବିରହ ବେଶ ହେଲେ କାଳେ ପ୍ରାଣ ଯାଇପାରେ ।

୩୨ । ଜରା ଦୈବଜ୍ଞ—ଜରାରମାତା, ଜରା ଦୁଇଫାଳ ହୋଇଥିଲା ତାକୁ ସେ ଯୋଡ ଜୀବଦାନ ଦେଇଥିଲା, ହନୁ ସିଂହିକା ଗର୍ଭକୁଚିର ବାହାରିଲାପରି ଚନ୍ଦ୍ର ତ ରାହୁକୁ ପରାସ୍ତ କରି ବାହାରିବ ।

୩୩ । ମନ୍ତ୍ରାଯାନ୍ତ୍ରିକ—ଯେଉଁମାନେ ଭଲ ଯନ୍ତ୍ର ଜାଣନ୍ତି—

ବଡ଼ ହୋଇବ କସ ହୋଇ ଅର୍ଜିଲ୍ଲ କର୍ମ ବିନା ଭୋଗ ହୋଇବ ।
ସାଗର ମନ୍ଥନେ ଗରଳ ପାଇଲେ ଭୋଗ କରନ୍ତି ମହାଦେବ ।
ଶୁଣି ଏ ବାଣୀ । ସମସ୍ତେ ବୋଇଲେ ପ୍ରମାଣ ।
ଶିରୀଷଦେହା ରେ ଏହା ଅରଜିଲୁ କଲେ ଅନ୍ତ କଉେ ଲାବଣ୍ୟ ।୩୪।

ଲାବଣ୍ୟନଧିର କ ବ୍ୟାଧି ବୁଝି ଏ ଶବ୍ଦ ରାଜା ରାଣୀ ଶୁଣିଲେ ।
ହୋଇ ଉତ୍ସୁକ ଚକିତ୍ସକ ମନ୍ତ୍ରୀକ ହକରା କରାଇ ଆଣିଲେ ।
ଶୁଣି ସେ ଯାଇଁ । ଦେଖିଲେ ରମଣୀରତନ ।
ଜାରତା ମୃଦୁସୁଲ୍ଲା ଆଗେ କହିଲେ ଏ ଜ୍ୱରକୁ ଏହି ବଧାନ । ୩୫ ।
ରସବନା ଏ ନ ଯୁଝିବ ରୁଚବ ମଧୁର ଆହାର ହୋଇଲେ ।
ଶାନ୍ତ ହେବ ଚିନ୍ତା ତାପ ରାଜେ ଚନ୍ଦ୍ରଭାନୁରେ ଏକ ଶଯ୍ୟା କଲେ ।
ରୋଗ ବଷମ । ରାଗଜନ୍ୟ ହୋଇ ହୋଇଛି ।
ପୃଚ୍ଛପାକରେ ଯେତେକ ଅଉଷଧି ଏ ଗୁଣ ନ କରବେ କଛି ।୩୬।

ଇତରେ ଯେତେ ସଖୀ ଥିଲେ ଶୁଭତରେ ରହିଲେ ବରସ ମତରେ ।
ଚତୁର ନାମେ ମାଳିନୀ ପରବେଶ ଏହି ସମୟେ ଅନ୍ତଃପୁରେ ।
ପୁଷ୍ପ ଶୃଙ୍ଗାର । ଯେନି ସନ୍ନିକଟ ହୋଇଲା ।
ଯେମନ୍ତ ସ୍ୱବେଶ ଯହିଁକ ପ୍ରବେଶ ଆରନ୍ଧକୁ ସେ ରହିଲା ।୩୭।
ହେ ରାମ କାମସୁନ୍ଦର ଗୁଣବନ୍ତ ଶିଳୀମୁଖ ଧନୁ ଧାରଣ ।
ସିତାମ୍ବୁଜମୁଖୀ ପ୍ରୀତ ପ୍ରମୋଦିତ ହର ବିନ୍ଦପଣ ପ୍ରମାଣ ।

---

୩୪ । ଶିରୀଷଦେହା—ଶିରୀଷ ଫୁଲ ଦେହ ଯେ ଲାବଣ୍ୟବତୀ—

୩୫ । ବ୍ୟାଧି—ବେମାର, ଉତ୍ସୁକ—ଉଚ୍ଛନ, ଚକତ୍ସକ—ବୈଦ୍ୟ, ମୃଦୁସୁଲ୍ଲା—ସୁକେଶୀ, ।

୩୬ । ରସ—ବୃଷ ଲତାଦ ରସ, ପୁଣି ଶୃଙ୍ଗାର ରସ, ମଧୁର ଆହାର—ସୁମିଷ୍ଟ ଖାଦ୍ୟ, ଓଷ୍ଠର ମଧୁପାନ, ଚନ୍ଦ୍ରଭାନୁ—ସତ୍ୟାସମସ୍ତେ, ରାଜପୁତ୍ର, ଚନ୍ଦ୍ର କରଣ, ରାଗଜନ୍ୟ—କ୍ରୋଧ ସକାଶ, ବରହ ସକାଶ,

୩୮ । ଶିଳମୁଖ—ଭ୍ରମର, ସିତାମ୍ବୁଜ—ଧଳା ପଦ୍ମ, ହର—ସୂର୍ଯ୍ୟ ଓ ଶମ୍ଭୁ, କାମ ଯେପର ଭଅଁରକୁ ନେଇ ଧନୁ କରଥାଏ—ରାମ ସେହିପର ଶିଳମୁଖ କ ବାଣକୁ ଧରଛନ୍ତି—ସୂର୍ଯ୍ୟ ଯେପର ସିତାମ୍ବୁଜ ଧଳାପଦ୍ମକୁ ପ୍ରେମ କରନ୍ତି ରାମ ସେହିପର ସୀତାଙ୍କର ମୁଖ ପଦ୍ମକୁ ଦେଖି ପ୍ରେମ ହୁଅନ୍ତି—

ଜାଣ ବରହ । ବପତ୍ତି ହର ଉଡପର ।
କହେ ଉପେନ୍ଦ୍ର ଭଞ୍ଜ ବୀରବର ଏ ଛାନ୍ଦ ଅତି ମନୋହର । ୩୮ ।



## ତ୍ରୟୋଦଶ ଛାନ୍ଦ ।

( ମାଳମୀର ବେଶ ବର୍ଣ୍ଣନ । )

ସ୍ୱଗ କଳ୍ପଣିକ—ମୁନିବର ବାଣୀରେ ଗାଇବ ।

ଏଥୁ ଅନନ୍ତରେ ଉପ । ଶୁଣ ହେ ମାଳିନୀ ବେଶ । ଟେଭ୍ରଫାଲ ପଣ୍ଟ ଖୋଷା । ଖୋଷିଚ୍ଛି ଯୋଷା ଯେ । ୧ । ଗର୍ଭିକ କଲ୍ପ ଚଳ୍ପ । ପ୍ରକାଶେ ବନୁ ଭଳିସ୍ । ଖଞ୍ଜିଅଛୁ ଗୋଟି ଚମ୍ପା । ଧଇର୍ଯ୍ୟ କମ୍ପା ଏ । ୨ । ଅନ୍ଧାର ଜଣାରେ ନଭେ । ନିର୍ମଳ ତାସ୍ କ ଶୋଭେ । ଦଶଇ ଢେମନ୍ତ ପର୍ । ଲୋଚନ-ତାସ୍ ଏ । ୩ । ଏଥକୁ କେଶ ନିଭଙ୍ଗେ । ଧାସ୍ ଦେଖାଇଛୁ ମାଙ୍ଗେ । ଘନ ସ୍ତୁ ଭୃଙ୍ଗଶ୍ରେଣୀ । ଅଚ୍ଛି କ ଜାଣି ଏ ।୪। ଲଲାଟେ ଚନ୍ଦନ ଟିତା । ସିନ୍ଦୁର ବନ୍ଦୁ ଶୋଭିତା । ଚନ୍ଦ୍ର କୋଳେ କ ସବିତା । ଏହ ଭଙ୍ଗିତା ଏ । ୫ । ଶ୍ରବଣେ ଗୃରୁକୁଣ୍ଡଳ । ଦୋହଲେ ଗଣ୍ଡମଣ୍ଡଳ । ସୁବର୍ଣ୍ଣ ପାଣୀ ଉପରେ । ଶିଶୁକୁ ହରେ ଏ । ୬ । ଫୁଲଗୁଣା ମାଟଗୁଣା । କରଇ

---

ଲବଣ୍ୟବତୀ ବରହରେ ଅସ୍ଥିର ହେବାରୁ ସଖିମାନେ ତାହାକୁ ନାନାହ, ଉପଚ୍ୟାରରେ ଶାନ୍ତ କରାଇବାକୁ ବସିଲେ, ଓ ପିତା ମାତା ଶୁଣି କିଛି ରୋଗ ମନେକରି ବୈଦ୍ୟଙ୍କୁ ମଧ୍ୟ ପଠାଇଲେ. ବୈଦ୍ୟ ଦେଖିଲେ ଏ ବରହ ବ୍ୟାଧି ଏହାକୁ ଉପଚ୍ୟାର କାମରୋଗ—ଜରତା ଧାଇବ କହିଦେଲେ ।



## ତ୍ରୟୋଦଶଛାନ୍ଦ ।

୧ । ଟେଭ୍ରଫାଲ—ନାରଙ୍ଗ ନେମ୍ବୁର ଫାଲ, ଯୋଷା—ସ୍ତ୍ରୀ ।
୨ । ଗର୍ଭକ—ଉତରେ ପୁରାଇବା, ରତ୍ନଭଳିସ୍—ସୁନାଭଳିସ୍,
୩ । ଜଣାରେ—ରାତରେ. ନଭେ—ଆକାଶରେ,ଲୋଚନ—ଚକ୍ଷୁ,ତାସ୍—ବନ୍ଦସ୍ଥ
୪ । କେଶ—ବାଳ, ନିଭଙ୍ଗେ—ନଡଧାରରେ, ଘନ—ମେଘ, ସ୍ତୁ ସ୍ତୁଚ୍ଛଦ ଭୃଙ୍ଗଶ୍ରେଣୀ—ଭଅଁର ସବୁ
୫ । ଲଲାଟେ—କପାଳରେ, ସବତା—ବାଲସୂର୍ଯ୍ୟ,
୬ । ଶ୍ରବଣରେ—କାନରେ. ଗୃରୁ—ସୁନ୍ଦର,

ବିବେକ ବଣା । ନାସା ପୃଷ୍ଠକେ ପୃଷ୍ଠକେ । ଥାଇ ସୃଷ୍ଠକେ ଏ । ୭ । ଲଞ୍ଜି ବିସ୍ଥାନେ କଜ୍ଜ୍ୱଳ । ନୟନେ ଦଶେ ଉଜ୍ଜ୍ୱଳ । ପଦ୍ମେ କି ଭ୍ରମର ଖେଳା । ତେମନ୍ତ ତେଜାଳା ଏ । ୮ । କଣ୍ଠେ ସୁନାକଣ୍ଠି ମାଳୀ । ପ୍ରବାଳେ ହୋଇଛି ଝଳ । ପଛକୁ ରୁଚିର ଫୁଲ୍ଲ । ମାନସ ଭୁଲ ଏ । ୯ । ଉଚ ଘଞ୍ଚ କୁଚ ବେଳ । ହେଲାଦନୁ ଯଉବନୀ । ଦେଖି ତ ନାହିଁ ଅବନୀ । ଲୋଚନ ବେଳ ଏ । ୧୦ । ମାରିବାକୁ ଯୁବାକୁଳ । କାମ କର ଅନୁକୂଳ । ଟେକିଛି କି ଶାଢ଼ୀଘର । ତଥା ସୁନ୍ଦର ଏ । ୧୧ । ବିଦମାଳୀ ପାଠବ୍ରତ । ତାଡ଼ରେ ଭୁଜ ଘାପିତ । କମ ଅଦ ଖଡୁବାସ୍ଥି । ହସ୍ତରେ ଶୋହ୍ନ ଏ ।୧୨। ବାମକରରେ ଅଙ୍ଗୁଳି । ନିସର ମୁଦ୍ରିରେ ଝଳ । ଚରଣରେ ବଳା ଘଟେ । ନାଦ ପ୍ରକଟେ ଯେ । ୧୩ । ପ୍ରପଦରେ କଂସାମୁଦି । ଶବଦେ ଧଇର୍ଯ୍ୟ ଖେଦ । ବେଢ଼ରେ ଅଳତା ଚିତ୍ର । ଅତି ବଚିତ୍ର ଯେ । ୧୪ । ବ୍ୟକ୍ତ ବଞ୍ଚଣୀ ଘଟେନ୍ତ । ଉରୁଉପରେ ଲମ୍ବିତ । ବନ୍ଧନ ଛନ୍ଦନ ନୀବୀ । ମୋହନ ଛବି ଯେ । ୧୫ । ସ୍ତନ ଊର୍ଦ୍ଧ୍ୱେ କଣ୍ଠତଳେ । ମଣିବନ୍ଧେ କରମୂଳେ । ପାଦ ପରେ ଚିବୁକରେ । କି ମନୋହରେ ଯେ । ୧୬ । ହରିତାଳୀ କାଳୀ ଶିତା । ଉକୁଟାଇଛି ବନିତା । ଦେହ ତ ଅତ୍ୟନ୍ତ ଗୋରି । ତହିଁକି ଚୋରି ଯେ । ୧୭ । ନୋହେ ଉଚ ଖର୍ବ ଅତି । କଥା ଏ ନୋହେ ·

---

୭ । ବିବେକ—ଭୃକୁଟି, ନାସା—ନାକ, ପୃଷ୍ଠକେ—ପୁଡ଼ାରେ,

୮ । ଲଞ୍ଜି—ଲଞ୍ଜ, କଜ୍ଜ୍ୱଳ—କଳା,

୯ । ପ୍ରବାଳ—ପୋହଳା, ରୁଚିର—ସୁନ୍ଦର, ଫୁଲ୍ଲ—ଭଣ୍ଡି ବା ଫୁଲ, ମାନସ—ମନ,

୧୦ । ଘଞ୍ଚ—ଲଗାଲଗି, କୁଚ—ହୁଷ୍ଣ, ଯୌବନୀ—ଯୁବାବସ୍ଥା ପାଇଥିବା,

୧୧ । ଶାଢ଼ୀଘର—ଲୁଗାରଘର,

୧୨ । ପାଠବ୍ରତ—ପାଠବରତ, ଭୁଜ—ହାତ, ବ୍ୟାପିତ—ସୁନ୍ଦର,

୧୩ । ବାମକରର—ବାଁ ହାତର, ଚରଣକେ—ଗୋଟାଏ ଗୋଟାଏ ଗୋଡ଼ରେ, ନାଦ—ଶବ୍ଦ, ପ୍ରକଟେ—ବାହାରେ

୧୪ । ପ୍ରପଦରେ—ପାଦ ଅଙ୍ଗୁଠିରେ, ଧଇର୍ଯ୍ୟ—ମନ, ବେଢ଼ରେ—ଗୋଇଠିରେ

୧୫ । ବ୍ୟକ୍ତ—ପ୍ରକାଶିତ; ବଞ୍ଚଣୀ—ବଞ୍ଚଣା, ଉରୁ—ଜଙ୍ଘ

୧୬ । ମଣିବନ୍ଧ—ଖଡୁ ପିନ୍ଧିବା ଯାଗାଗଣ୍ଠି,

୧୭ । ଉକୁଟାଇଛି—କୁଟାଇଛି, ବନିତା—ସ୍ତ୍ରୀ,

ଯୁବତୀ । ପୀନ ନୋହୁ କ୍ଷୀଣ ନୋହେ । ଏମନ୍ତ ଦେହଶ୍ରୀ ଯେ । ୧୮ । ଖର୍ବବର୍ଜିତ ଗଣ୍ଠି ଶିର । ପାଶଲା ରସାଳ ପତ୍ର । ବୟସ ଷୋଳ ବତ୍ସର । ଏଥିଭିତର ଯେ । ୧୯ । କୁସୁମ ଗୁଙ୍ଗଡ଼ା କରେ । ଗୋଡ଼ାଇଛନ୍ତି ଭ୍ରମରେ । ଗଜ ପଦସ୍ତେ ମନ୍ଥର । ଗମନ ତାର ଯେ । ୨୦ । ପଣନ୍ତ ଦେଇଛନ୍ତି ଶିରେ । ଧରନ୍ତି ଦକ୍ଷିଣ କରେ । ମୁଖ ହସିଲାର ପ୍ରାନ୍ତେ । କି ଶୋଭା ପାଏ ଯେ । ୨୧ । ମନ୍ଦୀଚୁତା ଅଗେ ନେଇ । ସୁମନ ସମ୍ଭାର ଥୋଇ । ଧୀରେ ହର ଉମା ଅଙ୍କ । କହିଲା ବଙ୍କା ଯେ ।୨୨। ଏତ କି ବୋଲି ପଚାର । କେତକୀକଣ୍ଟ ଗଜରୀ । ଶମ୍ଭୁକୁ ନେଲା ସତ୍ତ୍ୱରେ। ପ୍ରମୋଦଭରେ ଯେ । ୨୩ । ଛବୋଲେ କେମା ସାବଧାନ । ତୁଅ ଅପୂର୍ବ ବିଧାନ । କହୁଛି ରତିର ଅପି । ସୁଧାବରଷି ଯେ । ୨୪ । ରମା ଶୁଣି ବୋଲେ ରସ । କେମନ୍ତ କଥା ସେ ଭ୍ରଷ୍ଟ । ଶୁଣି ଅରମ୍ଭିଲ ରଙ୍ଗେ । ମାଳତୀ କହି ଯେ । ୨୫ । ତୋ ଖଟଣୀପୁଲ ମୋର । ଏଣୁ ଭଲ ବାଞ୍ଛା ତୋର । ବରକୁ ମୁଁ କହୁଥାଇଁ । ହେବେ ଜଣାଇଁ ଯେ । ୨୬ । ଗଲା ଚାଲି ଚନ୍ଦ୍ରାର୍ଦ୍ଧଶୀ । ଦେଖାଇଥିଲ ଉପବାସୀ । ଦେଉଳ ଭିତରେ ଯାଇଁ । ଜାଗର ଦେବ ଯେ । ୨୭ । ରହିଥିଲ ଉଜାଗରେ । ରଜନୀ ଅନ୍ତ ପ୍ରହରେ । ଅଳପ ଅଇଲା ଢୋଳ । ଏମନ୍ତ ବେଳ ଯେ । ୨୮ । ଲକ୍ଷିତେ କଥା ସୁନ୍ଦର । ଏକ୍ଷେଣି ବେଶ ଠାକୁର । ଶିରେ ଜଟା ଅର୍ଦ୍ଧଶଶୀ । ମଞ୍ଜୁଳ ଦଶି-

---

୧୮ । ଖର୍ବ—ବାଙ୍ଗର, ପୀନ—ମୋଟା, କ୍ଷୀଣ—ସରୁ,

୧୯ । ଖର୍ବବର୍ଜିତ—ନଥିବା, ରସାଳ—ଆମ୍ବ,

୨୦ । କୁସୁମ—ଫୁଲ, ମନ୍ଥର—ଧୀର,

୨୨ । ସୁମନସମ୍ଭାର—ଫୁଲସବୁ, ହରଉମା—ଶିବପାର୍ବତୀ, ବଙ୍କା—ଜ୍ଞାନୀ,

୨୩ । କେତକୀକଣ୍ଟ—କେତକୀ ଫୁଲ ବର୍ଣ୍ଣଠାରୁ ବଳ, ପ୍ରମୋଦଭରେ—ଅତିଆନନ୍ଦରେ,

୨୪ । ସୁଧା—ଅମୃତ,

୨୫ । ରମା—ସ୍ତ୍ରୀ—ଲାବଣ୍ୟବତୀ, ଭ୍ରଷ୍ଟ—ଲୁବ୍ଧ,

୨୬ । ବାଞ୍ଛା—ଇଚ୍ଛା,

୨୮ । ଉଜାଗରେ—ଅନିଦ୍ରାରେ, ରଜନୀ—ରାତି, ଢୋଳ—ନିଦ,

୨୯ । ଅର୍ଦ୍ଧଶଶୀ—ଅଧାଚନ୍ଦ୍ର, ମଞ୍ଜୁଳ—ସୁନ୍ଦର ।

ମାଲୁଣୀ ବେଶ




କୁସୁମ ଗୁଙ୍ଗଡା ଭରେ । ଟୋକା ଛନ୍ତି ଭ୍ରମରେ ।


Digitized by srujanika@gmail.com

ଯେ । ୨୯ । କୁନ୍ଦ କ୍ଷୀର ଦର ରୁଚି । ଓଡ଼କ ଗଞ୍ଜି ଉହିଁ ଶୁଚି । ହୋଇ-ଛନ୍ତି ଦିଗମ୍ବର । ଭସ୍ମଧୂସର ଯେ । ୩୦ । ପାର୍ବତୀଙ୍କି ବାମକରେ । ଧରିଅଛନ୍ତି ସ୍ନେହରେ । ଦକ୍ଷିଣ କରରେ ବେଣ । ବଳେ ବିନେଣ ଯେ । ୩୧ । ସେ ବେଣ ମୋତେ ଛୁଅଇଁ । ତକ୍ଷଣେ ମୋ ଚେତା ହୋଇ । ଗୃହିଁ ଶିବ ଶିବା ରମ୍ୟ । କଲି ପ୍ରଣମ୍ୟ ଯେ । ୩୨ । ମୁଖ ମୃଦୁହାସେ ପୂର୍ଣ୍ଣ । କଲେ ମୋତେ ଅବଧାନ । ନୃପଜାପାଇଁ ତୁ ମୋତେ । ଜଣାଉ ନିତେ୍ୟ ଗୋ । ୩୩ । ଚନ୍ଦ୍ରମୁଖୀ ଏ ନିଶାରେ । ଶୋଇଥିଲା ଚନ୍ଦ୍ରକରେ । ମୋର ଅଙ୍କରେ ଯୋଗିନୀ । ସ୍ୱରୂପେ ଘେନି ଯେ । ୩୪ । ପ୍ରବେଶ ବାଳା ପାଶର । ଚିହ୍ନାଇଦେଇ ଅନ୍ତର । ସେ ପୁଣି ନିଦ୍ରା ଭଙ୍ଗିଲା । ବନସ୍ତ୍ରୀ ହେଲା ଯେ । ୩୫ । ସ୍ୱମା ସୀତ୍କାର ବେଳେ । ଅଲିଙ୍ଗନ ହେବା ଛଳେ । ଯୋଗିନୀ ମାୟାର ବଶ । ହରିଲା ପୁଂସ ଯେ । ୩୬ । ଏଣୁ ବହୁତ ବ୍ୟଥିତ । ହେଉଛୁ କେମନ୍ତ ଜାତ । ତୁ ଯାଇ କହ ବାଳାକୁ । ଲଭିବ ତାକୁ ଯେ । ୩୭ । ମୁଁ ପୁଚ୍ଛା କଲି ଏମନ୍ତ । କେଉଁ ରଜାର ସେ ସୁତ । ନାମ ତାର କସ ପୁଣି । କହିଲେ ଶୁଣି ସେ । ୩୮ । କର୍ଣ୍ଣାଟେ କାଞ୍ଚି ନଗରେ । ଶଶି ଶେଖର କୋଳରେ । ହୋଇଅଛି ସେ ଜନମ । ଲୋକାଭିରାମ ଯେ । ୩୯ । ଚନ୍ଦ୍ରଭାନୁ ତାର ନାମ । କାମିନୀମୋହନ କାମ । ରମଣୀ ତାକୁ ପାଇବ । ସୁଖୀ ହୋଇବ ଯେ । ୪୦ । ସାଧୁ ଶୁଣ ବ୍ରହ୍ମଗୃସ୍ତ । ପରବେଶ କାଳି ପର । ଘେନି ତାହାର ସନ୍ଦେଶ । ହେବ ଏ ଦେଶ ଯେ । ୪୧ । ଏତେ ଅଜ୍ଞା ଦେଇ ହର । ହୋଇଲାବେଳୁଁ ଅନ୍ତର ।

---

୩୦ । କୁନ୍ଦ—କୁନ୍ଦଫୁଲ; କ୍ଷୀର—ଦୁଧ; ଦର—ଅଙ୍ଗ; ଏସବୁ ଧଳା; ଦିଗମ୍ବର—ଲଙ୍ଗଳା; ଭସ୍ମଧୂସର—ପାଉଁଶ ବା ବିଭୂତିରେ ବୋଳ ହେବାରୁ ପାଉଁଶିଆ ଦିଶୁଥିଲେ ।

୩୨ । ରମ୍ୟ—ସୌନ୍ଦର୍ଯ୍ୟ; ପ୍ରଣମ୍ୟ—ନମସ୍କାର ।

୩୩ । ନୃପଜା—ରାଜସୁତା; ନିତେ୍ୟ—ପ୍ରତିଦିନ ।

୩୪ । ଚନ୍ଦ୍ରକରେ—ଚନ୍ଦ୍ର କରଣରେ ।

୩୬ । ସୀତ୍କାର—ସମ୍ଭତ; ଅଲିଙ୍ଗନ—କୋଳ ।

୩୯ । ଲୋକାଭିରାମ—ମନୁଷ୍ୟ ମଧ୍ୟରେ ଅତି ସୁନ୍ଦର ।

୪୦ । କାମିନୀ ମୋହନ—ସ୍ତ୍ରୀ ମୋହକାରୀ; କାମ—କନ୍ଦର୍ପ;

୪୧ । ସନ୍ଦେଶ—ଖବର; ବ୍ରହ୍ମଗୃସ୍ତ—ଯୋଗୀ ।

ଅଜ ମୋତେ ନିଦ୍ରା ନାହିଁ । ଅଚଳ କହୁ ଯେ । ୪୨ । ନାମ ଶ୍ରବଣ ତାହାର । ହେଲା ଚନ୍ଦ୍ରଦିବାକର । ଫଣସ୍ତ୍ର ଅନ୍ଧାର ଦୂର । କଲା ତାହାର ଯେ । ୪୩ । ମୁଣି ସେ ଜନ ପରସ୍ତେ । ଅଶାତରୁ ପଲ୍ଲବାଏ । ପ୍ରମୋଦ ପଦ୍ମ ପ୍ରକାଶେ । ରବ ସଦୃଶେ ଯେ । ୪୪ । ଶୁଣି ଯଥା ଘନଘୋଷ । ତୃଷାର୍ତ୍ତ ଗୃହକ ତୋଷ । ବରଷିବ କର ମତ । ହୋଇ ତୃପତ ଯେ ।୪୫। କେବଣ ଚକୋର ମୋହ୍ମ । କର୍ପୂରକୁ ଡକୁ ଗୃହିଁ । ସେ ଚନ୍ଦ୍ର ପାଇଲେ ଯଥା । ତଥା ଏ କଥା ଯେ । ୪୬। ଚୂତ ହେଲେ ପଲ୍ଲବତ । ଭାବ ହେବେ ମୁକୁଳତ । ପିକ ଯଥା ଅନନ୍ଦତ । ହେଲେ ତେମନ୍ତ ଯେ । ୪୭ । ସର୍ନ୍ଧିପାତର ନାଡିକା । ଲାଗିଲେ ଯଥା ତାଡକା । କଷ୍ଟୁ କଷ୍ଟୁ ହୋଏ ଭଲ । ତେମନ୍ତ ମନ ଯେ । ୪୮ । ବାଳକ ପରସ୍ତ୍ର ହୋଇ । ପୃଚ୍ଛା କଲେ ତାହି ତାହି । ମାଳନୀକି କଲେ ଦାନ । ରତ୍ନ ବସନ ଯେ । ୪୯ । ଗିରିଜା ନିମିତ୍ତେ ପୁଣି । ଦେଲେ ସେ ଶତ କାଛେଣୀ । ଖଞ୍ଜିଲେ ମନ୍ଦାରମାଳୀ । ଉପନ ବଳ ଏ । ୫୦ । ଶମ୍ଭୁଅଙ୍ଗେ ଗୋଦୋହନ । ପାଇଁ ଦେଲେ ଧେନୁମାନ । ବଲ୍ଵପତ୍ର ଜଳଶାୟୀ । ଭୋଗର ପାଇଁ ଯେ ।୫୧। ବଗ୍ରଂଟକ ଦେଲେ ଗଣି । ନାଗ ଚନ୍ଦ୍ର ପାଇଁ ପୁଣି । ସୁବର୍ଣ୍ଣ ବଣିକକରେ । ଦେଲେ ସତ୍ତ୍ଵରେ ଯେ । ୫୨ । ଚତୁରଙ୍କୁ କହେ ଜେମା । ଜଣାଇବ ହର ଜମା । ଘମୃରେ ବାଣୀ ଏମନ୍ତ । ମୋହ ଶପଥ ଗୋ । ୫୩ । ଯେବେ

---

୪୩ । ଚନ୍ଦ୍ର ଦିବାକର—ଚନ୍ଦ୍ରଭାନୁ ।

୪୪ । ଅଶାତରୁ—ଅଶାଗଛ; ରବ—ସୂର୍ଯ୍ୟ ।

୪୫ । ଘନଘୋଷ—ମେଘଶବ୍ଦ, ତଷାର୍ତ୍ତ—ଶୋଷୀ; ତୃପତ—ସନ୍ତୋଷ ।

୪୭ । ଚୂତ—ଆମ୍ବ; ମୁକୁଳତ—ବଉଳବା ।

୪୯ । ତାହି ତାହି—ଥରକୁ ଥର; ରତ୍ନ ବସନ—ସୁନା ଓ ଲୁଗା ।

୫୦ । ଗିରିଜା—ପାର୍ବତୀ; କାଛେଣୀ—ଲୁଗା; ମନ୍ଦାରମାଳୀ—ମନ୍ଦାରଫୁଲର ମାଳା; ଉପନ—ପୂଜା; ବଳ—ଭୋଗଦ୍ରବ୍ୟ ।

୫୧ । ଶମ୍ଭୁ—ମହାଦେବ; ଗୋଦୋହନ—ଗାଇ ଦୁହିଁବା; ଧେନୁମାନ—ଦୁଧିଆଳ ଗାଇସବୁ; ବଲ୍ଵପତ୍ର—ବେଲପତ୍ର ।

୫୨ । ବଗ୍ରଂଟକ—କଉଡ଼ି; ନାଗ—ସର୍ପ; ଚନ୍ଦ୍ର—ଗୁନ୍ଦ; ସୁବର୍ଣ୍ଣ ବଣିକ—ସୁନାରୀ ବଣିଆ ।

୫୩ । ଚତୁରଙ୍କୁ—ମାଳନୀକ; ଶପଥ—ରାଣ ।

ଲଭିବ ତେସ ପୂଜା । ମୋ ଜୀବଥିବାରେ ସେବା । ଦଶନ୍ନହିଁ ଦେନାହିବ ଦାନେ । ବନ୍ଧି ବିଧାନେନ ଯେ । ୫୪ । ନ ଥିଲେ ଲଭିବା ଯୋଗ । ମରଣ କରିବେ ରୋଗ । ମୋ ଭୂଷା ଚମ୍ପା ଗଢ଼ାଇ । ପୂଜିବେ ସଖୀ ଯେ । ୫୫ । ପୁଣି ବୋଲେ ସହଚରୀ । ଅତୁର ନୁହ ସୁନ୍ଦରୀ । ଦୂରକରେ ଭୁଞ୍ଜେ ଶ୍ରେଣୀ । ହେଲେ କି ସୁଖୀ ଗୋ । ୫୬ । ପକ୍ଷୀ ପକ୍ଷ ଥିଲେ ପାଇ । ଶକ୍ୟାନୁରୂପେ ଗମଇ । ହେଲାଣି ଏ କାର୍ଯ୍ୟ ପୂର୍ଣ୍ଣ । ସୂଚକମାନ ଗୋ ।୫୭। ଦାଶ୍ୱନ୍ତ୍ରୁ ବନ୍ଧି ସୁମୁଖେ । ସ୍ୱପ୍ନ ସତ ହେଲା ଦେଖ । କିଛିକାଳ ଧର ଧୈର୍ଯ୍ୟ । ଲଭିବୁ କାର୍ଯ୍ୟ ଗୋ । ୫୮ । ହେମନ୍ତ ଋତୁ ପ୍ରବେଶ । ପଦ୍ମବନ କରେ ଧ୍ୱଂସ । ମୂଳ ଥିବାରୁ ବସନ୍ତେ । ପଲ୍ଲବେ ସତେ ଯେ । ୫୯ । କ୍ଷୀଣ ହୋଇ କଷ୍ଟ ସହୁ । ଜୀବମାନେ ଥିଲେ ତୁହୁ । ଲଭିବୁ ପରମ ଭୋଗ । ଅଛୁ ଏ ଯୋଗ ଗୋ । ୬୦ । ମାଳତୀ ଅଗମ୍ୟ ବନେ । ଫୁଟିଲେ ବସନ୍ତ ମନେ । ଭୃଙ୍ଗେ କି ଭୋଗ୍ୟ ନୁହଇ । ପରାଣ ସହ ଗୋ । ୬୧ । ଏକଥା ଭାବ ତୁ ଚିତ୍ତ । ମଧୁମକ୍ଷିକା ସଞ୍ଚିତ । ଦେବଭୋଗ୍ୟ ହୁଏ କେହି । ବସନ୍ତ ସହ ଗୋ । ୬୨ । ଫଣୀ ଜାଗ୍ରତେ ଚନ୍ଦନ । ଥିଲେହେଁ କର ଭାବନ । ଭୋଗ ହେଉଛୁ କି ନାହିଁ । ପରାଣ ସହ ଗୋ ।୬୩। ଯେବେବେଳି କୁସୁମ ଫୁଟେ । ତେବେ ସୁଗନ୍ଧ ପ୍ରକଟେ । ଯହିଁ ତହିଁ ନଯାଇଲା । ସମୁଦ୍ରେ ତୁଲ ଗୋ ।୬୪। ଏମନ୍ତ ବଚନ ସିଦ୍ଧି । କର ମାନସ ପ୍ରବୋଧି । ଯତନ କଲେ ଲଳନା । ସଖୀ ପାଳନା ଏ । ୬୫ । ନାୟକ ସୁଖଦାୟକ ।

---

୫୪ । ଜୀବ ଥିବାରୁ—ପ୍ରାଣଥିବା ଯାଏ; ସେବା—ପୂଜା;
୫୫ । ଭୂଷା—ଅଳଙ୍କାର; ଚମ୍ପା—ଚମ୍ପାଫୁଲ;
୫୬ । ଅତୁର—ଅସ୍ଥିର; ଭୁଞ୍ଜେ—ଖାଏ ।
୫୭ । ଶକ୍ୟାନୁରୂପେ ( ଶକ୍ୟ + ଅନୁରୂପେ ) ଶକ୍ୟ—କ୍ଷମତା; ଅନୁରୂପେ—ଅନୁସାରେ; ସୂଚକ—ଚିହ୍ନ ।
୫୯ । ଧ୍ୱଂସ—ନାଶ;
୬୦ । ପରମ ଭୋଗ—ଶ୍ରେଷ୍ଠଭୋଗ ।
୬୧ । ଅଗମ୍ୟ ବନ—ଘୋର ଜଙ୍ଗଲ; ଭୃଙ୍ଗ—ଭଅଁର;
୬୨ । ମଧୁମକ୍ଷିକା—ମହୁମାଛି ।
୬୩ । ଫଣୀ—ସର୍ପ;
୬୪ । ସୁଗନ୍ଧ—ବାସନା; ପ୍ରକଟେ—ବାହାରେ ।
୬୫ । ମାନସ—ମନ;

ତା ନାମ ଭବ ତାରକ । ଜପିଲ୍ଲ ହୃଦରେ ଧର । ଅବନୀଶିଶ୍ରୀ ଏ । ୬୭ । ମାଳମା ହେଲ୍ଲ ସେଲ୍ଷଣ । ଗଲ୍ଲ ନିଜପୁର ପୂର୍ଣ୍ଣ । ଏ ଛାନ୍ଦ ହୋଇଲ୍ଲ ଶେଷ । ଅତ ହରଷ ଏ । ୬୭ । ହଂସବଂଶକୁ ଶୋଭିତ । ସଦା ଶ୍ରୁତି-ରଞ୍ଜିତ । କର୍ପୂରକାନ୍ତି ଗଞ୍ଜିତ । କାନ୍ତି ପୀଡ଼ିତ ଏ ।୬୮। ସେ ସାମ ବଧିରେ ଧ୍ୟାୟୀ । ଭଞ୍ଜ ବୀରବର କହି । ତୁମ୍ଭ ରଚନା ସମସ୍ତ । ପୂର୍ବ ଏ ଗୀତ ହେ । ୬୯ ।

———✻———

## ଚତୁର୍ଦ୍ଦଶ ଛାନ୍ଦ ।

### ( ଚନ୍ଦ୍ରଭାନୁର ଅନୁତାପ ଓ ଶୋକ । )

ରାଗ କଳହଂସ କେଦାର ।

ଶୁଣ ରସିକ ରସ ଏଥୁ ଅନ୍ତରେ । କୁମର ଶୋଇଅଛୁ ପୁରଚତ୍ୱରେ ଯେ । କାତର ହୋଇ ଗୃହେଁ ନିଦ୍ରା ବନାଶେ । ନାହିଁ ଯାମିନୀ ନାହିଁ କାମିନୀ ପାଶେ ଯେ । ୧ । ବସି ଶୋଷିଲ୍ଲ ଥାଇ ତାଠାରେ ମନ । ଏଣୁ ସ୍ୱପନେ ଦେଖା ଦେଲ୍ଲ ସେ ଧନ ଯେ । ଉରଦେଶକୁ ଗୃହେଁ ଦେଖିଲ୍ଲ ହାର । କୁଙ୍କୁମେ ହୋଇଅଛୁ ସେ ଜରଜର ଯେ । ୨ । ଅହା ରେ ସୁକୁମାର

---

୬୭ । ନାୟକ—ପୁରୁଷ; ତାରକ—ମନ୍ତ୍ରର ନାମ; ଅବନୀ ଶିଶ୍ରୀ—ପୃଥିବୀର ସୁନ୍ଦରୀ ଲାବଣ୍ୟ ବତୀ ।

୬୮ । ହଂସ ବଂଶ—ସୂର୍ଯ୍ୟବଂଶ; ଶ୍ରୁତି ରଞ୍ଜନ—କର୍ଣ୍ଣ ମୋହିତ; କର୍ପୂର—ରାକ୍ଷସ, କାନ୍ତି—ତେଜ ।

ଲାବଣ୍ୟ ବତୀର ବିରହ ଅବସ୍ଥା ଭୋଗ ବେଳେ ମାଳମା ଫୁଲନେଇ ଆସି ଶିବ ପାର୍ବତୀଙ୍କ ବରର କଥା କହିବାରୁ ଲାବଣ୍ୟବତୀ ସନ୍ତୋଷ ହେଲ୍ଲ ସେ ମାଳମାକୁ ପୁରସ୍କାର ଦେଇ ବିଦାୟ କଲ୍ଲ, ଏବଂ ଲାବଣ୍ୟବତୀ ସନ୍ତୋଷ ହେଲୁ ଶିବ ପୂଜା କରାଇଲ୍ଲ ।

———✻———

ଚତୁର୍ଦ୍ଦଶ ଛାନ୍ଦ ।

୧ । ପୁରଚତ୍ୱରେ—ନଗରର ଅଗଣାରେ; ଯାମିନୀ—ରାତ୍ରୀ; କାମିନୀ—ସ୍ତ୍ରୀ ( ଚନ୍ଦ୍ରଭାନୁ ନଗରର ଅଗଣାରେ ଶୋଇ ରାତ୍ରି ଶେଷରେ ନିଦ ଭାଙ୍ଗନ୍ତେ ଦେଖିଲ୍ଲ ଆଉ ରାତିନାହିଁ କ ସେ ସ୍ତ୍ରୀ ମଧ୍ୟ ନାହିଁ ।

୨ । ଉରଦେଶ—ଛାତି; ସେ ସ୍ତ୍ରୀଠାରେ ମନଦେଇ ଭାବିଲ୍ଲ ସ୍ୱପନ ନା ସତ୍ୟ ମାତ୍ର ଛାତିକ ଦେଖେତ ହାର ଓ ହଳଦୀ ଚିହ୍ନ ଅଛୁ ।

ନୃପକୁମାରି । ବୋଲି ହୃଦରେ ଦଷ କରକୁ ମାରି ଯେ । ଜଳକଳଶେ
ଚନ୍ଦ୍ର ବିମ୍ବକୁ ଧରି । ପାରିଲି ନାହିଁ ସୁଧା ଭୋଗକୁ କରି ଯେ । ୩ । ମନୁ-
ମୂର୍ଚ୍ଛନ୍ତି ଏବା ସ୍ୱପନ ବୋଲି । ଜାଣିଲି ଏହି ଦେହେଁ କୃତାର୍ଥ ହେଲି
ରେ । ସାକ୍ଷାତ ପରି ଦେଇ ସ୍ୱପନ ସଙ୍ଗ । କଲୁ ତ କାମବ୍ୟାଧକର-
କୁରଙ୍ଗ ରେ । ୪ । ସ୍ୱର୍ଗସମ୍ପଦ ଯେଉଁ କର୍ମରେ ଥାଇ । ବଚନ୍ନ ମଣେ
ବଜ୍ରପତନ ତହିଁ ରେ । ତୋର ହୃଦୟ ବନ୍ଧୁ କରୁଣାସ୍ଥାନ । ତହୁଁ
ଅଙ୍କୁର ଯଥା କଠିନସ୍ତନ ରେ । ୫ । ମନକୁ ଯେବେ ପାଶେ ରଖିଲୁ
ତୋର । କି ଅପରାଧେ ମୋତେ କଲୁ ଅନ୍ତର ରେ । ଜାଣିବାରେ ମୋ
ଦୋଷ ନାହିଁ ତ କିଛି । ଦରଶେ ଯା ଦଣ୍ଡ ପୂର୍ଣ୍ଣ କରୁଣା ଅଛିରେ । ୬ ।
କି ଏବା ମୋତେ କାନ୍ତ ବୋଲିବା ପାଇଁ । ଲଜ୍ଜା ପାଇଲୁ ଗୃହୁ ଚନ୍ଦ୍ରମା-
ମୁହିଁ ରେ । ସେବି ମୁଁ ଥାନ୍ତି ପାଶେ ହୋଇ କୋୟୁର । ଏହା କ୍ଷମା ନ
କଲୁ ନାଗସ୍ୱରବର ରେ । ୭ । ଶିବ କେମନ୍ତେ ଦେଖ ବହୁଲେ ଶିରେ ।
ଶଶୀ ଶବଦ ଥାଉଁ ଚନ୍ଦ୍ର ସ୍ନେହରେ ଯେ । ଏମନ୍ତ ଅଣ ତୋର ଅବ-
ଧାନକୁ । ପ୍ରଭୁ ସେ ବଡ଼ କରେ ଦାସଜନକୁ ରେ ।୮। ଭସ୍ମକୁ ଅଙ୍କୁରାଇ
ଯାହା ନୟନ । ତା ଥାଉଁ ଭସ୍ମ ହେଲେ ଅଣାୟିଜନ ରେ । ଏ ଅପଯଶ
ଦୋଷ ହେବ କାହାର । ଚରଣ ଧରେ ମୁଁ ଯେ ଶରଣ ତୋର ରେ ।୯।
କଲେ ତୁ ଶିର ଅନୁଗ୍ରହ ସୁଦନ୍ତି । ଅଲତାଶିନେ ଶିନ୍ଧକାର ହୁଅନ୍ତି ରେ ।
ସେବାରେ ଅଳୀ ଫୁଲଗୁନ୍ଥାରେ ମାଳୀ । ହୋଇ ଲଗାନ୍ତି କାମବଦନେ
କାଳୀ ରେ । ୧୦ । ପରିଣେଶ୍ୱର ବନା ଅନ ବଚନେ । ଡ଼ାକନ୍ତି ନାହିଁ

---

୩ । ଜଳକଳଶିରେ—ପାଣି ମାଠିଆରେ; ଚନ୍ଦ୍ର ବିମ୍ବ—ଚନ୍ଦ୍ରର ପ୍ରତିବିମ୍ବ ବା ଛାଇ
୪ । କାମବ୍ୟାଧ—କାମ ବାଣୁଆ, କର କବାତରେ କୁରଙ୍ଗ କି ହରିଣ ପଡ଼ିହେଲା ।
୫ । ସ୍ୱର୍ଗସମ୍ପଦ—ସ୍ୱର୍ଗସୁଖ; ବଚନ୍ନ—ଅସ୍ପର୍ଯ୍ୟ କରୁଣାସ୍ଥାନ—ଦୟାର ଜାଗା
ଅଙ୍କୁର—ଜାତହୋଇ, କଠିନ ସ୍ତନ—ଟାଣୁଆ କୁଚ ।
୬ । ଅପରାଧେ—ଦୋଷରେ, ଦରଶେ—ଦଗରେ ପୁଣି ଦେଖିବାରେ ।
୭ । କୋୟୁର—ଶୂକର, ନାଗସ୍ୱରବର—ନାଗସ୍ୱରଶ୍ରେଷ୍ଠ ।
୮ । ଅବଧାନ—ବିଚାର,
୯ । ନୟନ—ଚକ୍ଷୁ, ଅଂକୁରାଇ—ଜାତ କରାଇ, ଅପଯଶ—ନିନ୍ଦା,
୧୦ । ସୁଦନ୍ତି—ସୁନ୍ଦରଦନ୍ତି, ଅଳୀ—ସଖୀ ।
୧୧ । ପ୍ରସଙ୍ଗ ବଶେ—କଥାରେ ।


Digitized by srujanika@gmail.com

ଛୋଟେ ରଜନୀ ଦନେ ରେ । ପ୍ରସଙ୍ଗବଶେ ଅବମ୍ବିଲେ ତୁ କୋପ ।
ଛଡ଼ାଇଥାନ୍ତି ଗ୍ରୀଷ୍ମ ପ୍ରକାଶି ତାପ ରେ । ୧୧ । ଦ୍ରାକ୍ଷାରୁ ସ୍ୱାଦୁ ଘନସାରୁଁ
ଶୀତଳ । ପିକୁଁ ସୁସ୍ୱର ଲବଣୀରୁ କୋମଳ ରେ । ଭ୍ରଷା କହନ୍ତି ବେଳେ
ନାସା ଫୁଲାଇ । ଚକ୍ରବର୍ତ୍ତୀପଣକୁ ଗଣନ୍ତି ନାହିଁ ରେ । ୧୨ । ଏତେ
ସହନ୍ତି ନାହିଁ ଖଳ ବଧାତା । ମୁଁ ତାବ କେଉଁ ଶତ୍ରୁ ନ କଲ ଚିନ୍ତା
ଯେ । ତୁଷାର ନାଶ କରେ ଜନମସ୍ଥାନ । ତାଠାରେ ନ ସମ୍ଭାଦେ ଏକୁଟି-
ପାନ ରେ । ୧୩ । ଦୁବଳ ମାରବାକୁ ସମସ୍ତେ ଅଗ । ଢାମକୁ ମହାଦେବ
କଲେ ଅନଙ୍ଗ ଯେ । ନୋହିଲି ତାଙ୍କ ଦର୍ପଦଳନ ଜଳ । ବନା
ଦୋଷରେ ଶରେ ମୋତେ ତ ଜାଳ ରେ ।୧୪। ମିତ୍ରେ ଶୁଣି ବୋଇଲେ
ଜୀବନ ରଖ । ଜୀବନରୁ ଅଧିକ କେହି ନ ଲେଖ ହେ । ଜୀବନ ଥିଲେ
ହୋଏ ସବୁ ପ୍ରାପତ । ହୁଅଇ ସମ୍ଭାବତ ଅସମ୍ଭାବତ ହେ । ୧୫ । ଧ୍ରୁବ-
ବାଳକ ବ୍ରହ୍ମଜ୍ଞାନ କହିଲା । ଅଗସ୍ତି କରୋଦରେ ସିନ୍ଧୁ ରହିଲା ଯେ ।
ପକ୍ଷ ନ ଥାଇ କପି ଗଗନଗତ । କର୍ପୂରରୁ ଶରହେ ଜାତ ତପତ
ଯେ । ୧୬ । ବଷହିଁ ହୋଏ ହୃତ ସନ୍ନିପାତରେ । ବାସୁକୀ ବନା ପୃଥ୍ୱୀ
ଧାରଣ ନରେ ଯେ । ରାଜ୍ୟ ନ ଥାଇ ସବ ସମ୍ମତେ ରାଜା । କନ୍ଦର୍ପ ପାଞ୍ଚ-
ଅଛି ପୃଥ୍ୱୀରେ ପୂଜା ଯେ । ୧୭ । ଜଳ ବହ୍ନିନେ ସବୁକାଳେ ପ୍ରକାଶ ।
ସବତା-କରେ ହୋଇଅଛି ସାରସ ଯେ । ଶବଦ ଶୁଣେ ସର୍ପ ଶ୍ରୁତ ନ
ଥାଇ । ପ୍ରହଲ୍ଲଦ ମହୀନ୍ଦ୍ର ଜନକଦ୍ରୋହୀ ହେ । ୧୮ । ଏ କଥାମାନ ଯଥା
ହୋଇଛି ଯେନ । ତଥା ସତ ହୋଇବ ତୁମ୍ଭ ସ୍ୱପନ ହେ । ସ୍ୱପନ ଯେବେ
ତୁମ୍ଭେ ସତ ନ କର । କହ କାହିଁକି ଅଛି ତା ଦେଲି ହାର ଯେ ।୧୯ ।

୧୨ । ଦ୍ରାକ୍ଷା—ଅଙ୍ଗୁର, ଘନସାର—କର୍ପୂର, ଲବଣୀ—ଲହୁଣୀ, ଚକ୍ରବର୍ତ୍ତୀ—
ଲକ୍ଷେ ରାଜାଙ୍କ ଉପରେ ଯେ ବଡ଼ ।

୧୩ । ତୁଷାର—କାକର, ଧାତା ଜନମ ସ୍ଥାନ—ପଦ୍ମବନ ।

୧୪ । ଅନଙ୍ଗ—ଦେହଶୂନ୍ୟ, ଦର୍ପ—କ୍ଷମତା ।

୧୬ । କରଜରେ—ହାତ ଉଦରେ, ଅଗସ୍ତି ସମୁଦ୍ରକୁ ହାତରେ ଧର ଚଳୁ
କରିଥିଲେ । ହନୁମାନର ପକ୍ଷୀ ନ ଥାଇ ସେ ଶୂନ୍ୟରେ ଯାଉଥିଲା ।
ଶରହରେ କର୍ପୂର ମଧ୍ୟ ଅଗ୍ନିପର ଜଣାଯାଏ ।

୧୮ । ସବତା—ସୂର୍ଯ୍ୟ, କରେ—କରଣରେ, ସାରସ—ପଦ୍ମ, ଶ୍ରୁତ—କାନ,
ମହୀନ୍ଦ୍ର—ରାଜା, ଜନକ—ପିତା ।

ଯେବେ ସୁଯୋଗ ନାହିଁ ତୁମ୍ଭ କର୍ମର । ତାହିଁ ସିଂହଳଦ୍ୱୀପ ତାହିଁ ଏ ସ୍ୱବ ହେ । ତାହିଁ ସିଦ୍ଧଯୋଗିମା ତେ ତାହିଁ ଥିଲା । ସ୍ୱପ୍ନ ପର ମାୟାରେ ସାକ୍ଷାତ ହେଲା ଯେ । ୨୦ । ଅରତ ହେଲେ କାର୍ଯ୍ୟ ନୁହଇ ବେଗ । କାଳକୁ ଗୃହିଁ ହେବ ହୁଅଇ ଯୋଗ ହେ । କୁମାର ଦହେ ମୋର ମୋହିଲା ଚିତ୍ତ । ଅରତ ହୋଇବାର ନୋହେ ଅପ୍ରୃତ୍ତ ଯେ । ୨୧ । ନାରୀରୁ ବଡ ହୋଇ ଜଗତେ ନାହିଁ । ବାନରୀରୁହେ (୧) ହେଲେ ପବନ ମୋହ ଯେ । ଏବେ ଅଦ୍ଭୁଷ୍ଟରଜା ଦୁଜେ ଧୀବରୀ (୨) ପରାଶର ଋଷିର ବଡେଇ ହର ଯେ ।୨୨। ଅମୂଲ୍ୟ ରମାରନୂ ଦେଖା ଭିତ୍ତରେ । ବଶ ନୋହିବ କେହୁ ଯୁବା ସଂସାରେ ଯେ । ଏମନ୍ତ ପଦାର୍ଥ କ ଲାବଣ୍ୟନିଧି । ସ୍ୱପ୍ନେ ତା ପରି ଦେଖି ନ ଥିବ ବିଧିଯେ । ୨୩ । ବାଳୀର ଶୋଭା ସୁବେଶକୁ ସୁବେଶ । ଅଧରେ ସମାପତ ହୁଅଇ ହାସ ଯେ । ଅରୁଣ ତୋଳେ ନବ ଚନ୍ଦ୍ରମା ଦିଶି । ବଜୁଳି ପରି ଯାଇ ସେକ୍ଷଣେ ମିଶି ଯେ । ୨୪ । କାଚ କଳଶେ ଯଥା ଜଳ। ଗୁପତ । ପଡିଲା ପଦ ଦିଶେ ନ ପଡ଼ଇ ତ ଯେ । ହସିଲାବେଳେ ଖସିପଡିଲା ପରି । ଖସି ନ ପଡ଼େ ତଥା ଅମୃତ ଧାରି ଯେ । ୨୫ । ତା ନେତ୍ର ଗତାଗତ ଅପାଙ୍ଗ ସର । ଦୁଇ ଦିଗକୁ ଢ଼ାଳେ କେମନ୍ତେ କର ସେ । ଅନଙ୍ଗ କ ତୁରଙ୍ଗ ଧାଉଁଡ ଦେଇ । ତାର ସନ୍ଧାନେ ଧୈର୍ଯ୍ୟ ଘଉଡ ନେଇ ସେ । ୨୬ । ଗୃହିଁବା ମାତ୍ରେ ବୁଡି ଯାଇ ଚେତନ । କେତେ ମାଧୁରୀ ତହିଁ ପକ୍ଷ୍ମପତନ ଯେ । ଯେଣୁ କ ବେଣୁ ତାଙ୍କୁ ସୁଦ୍ଧ । ଉଦିତ ମୃଦିତକୁ ଉତ୍ତେ ନୀଳାବ୍ଜ ଯେ । ୨୭ । ସୁସଙ୍ଗ ଘଙ୍ଗ କୁଚଯେମନ୍ତ ଦିଶେ । କେମନ୍ତ ବୋଲି ଲୁହା ନ ଯିବ ଶେଷେ ଯେ । ଏମନ୍ତ ହେଲେ ବାଣୀ ପବନପାଇଁ । ବର୍ଣ୍ଣନା

୨୦ । ସାକ୍ଷାତ—ଦେଖା ।
୨୧ । ଅରତ—ଅଳ୍ପଳ, ଅପ୍ରୃତ୍ତ—କ୍ଷମତା, ବଳ ।
୨୨ । ବାନରୀ—ଅଞ୍ଜନା ନାମ୍ନୀ ବାନରୀ ସହିତ ପବନ ପ୍ରୀତି କରିବାରୁ ହନୁମାନ ଜନ୍ମ ହେଲା । ଧୀବରୀ—କେଉଟୁଣୀ (ସତ୍ୟବତୀ) ସଙ୍ଗେ ପରାଶର ମୋହିତ ହୋଇଥିଲେ ।
୨୪ । ବାଳୀ—ସ୍ତ୍ରୀ, ଅଧର—ଓଠ, ଅରୁଣ—ବାଳସୂର୍ଯ୍ୟ ।
୨୬ । ଅପାଙ୍ଗ—ଆଖିକୋଣ, ତୁରଙ୍ଗ—ଘୋଡ଼ା, ଶର—ଶର ।
୨୭ । ଚେତନ—ଚେତା, ମାଧୁରୀ—ମଧୁରତା, ପକ୍ଷ୍ମ ପତନ—ଆଖିପତା ପକାଇବା, ସୁରାନ୍ଧ—ଚନ୍ଦ୍ର, ନୀଳାବ୍ଜ—ନୀଳପଦ୍ମ ।
୨୮ । ସୁସଙ୍ଗ—ସୁନ୍ଦର, ଘଙ୍ଗ—ଲଗାଲଗି, ବାଣୀ—ସରସ୍ୱତୀ ।


Digitized by srujanika@gmail.com

କଳୁଥାଇ ଉପମା ଦେଇ ଯେ । ୨୮ । ସୁନ୍ଦର ସଦନେ କି ସ୍ୱର୍ଣ୍ଣ ପଞ୍ଜୁରୀ । ଧାତା ରଖିଛୁ ଅକ୍ଷିପକ୍ଷିଙ୍କ ଧରି ଯେ । ମେରୁ ଏଡ଼କ ବୋଲି ଜଇ ଦେଖାଇ ମନ ମିହିରକର ଖସି ନ ଯାଇ ଯେ ।୨୯। ବାଳୀ ଅନେକ ଦାହ କନକ-ବଲ୍ଲୀ । ଭୁଜାନ୍ତରକୁ କୋଡ଼ ସମସ୍ତେ ବୋଲି ଯେ । ସ୍ତନ ମଧୁର ମଧୁ କୋଷକୁ ଅଣି । ସଞ୍ଚିଲେ ରୋମାବଳୀ ସରଘାଶ୍ରେଣୀ ଯେ । ୩୦ । ଶୃଙ୍ଗାର ରସଲତା ରୋମାଳୀ ବ୍ୟାଜ । ଫଳିଛି ପ୍ରେମାମୃତ ଫଳ ଉରଜ ଯେ । ଇତର ଭାଗ୍ୟେ ପରାପତ ହେବ ସେ । ଧନ୍ୟ ବର୍ତ୍ତିଲ ସ୍ତନ ମଣ୍ଡିତ ଭାଷେ ଯେ । ୩୧ । ଜାଣିଲି ସେହି ସ୍ତନ କାହିଁ ସମାନ । ଲଭି ଏମାନ ଲଭିଲେ କି ଏ ମାନ ଯେ । ଶ୍ରୀଫଳ ଯେ ଶ୍ରୀମନ୍ତ ପ୍ରଥମ ହୋଇ । ତୃଣରାଜ ପଦକୁ ପଛେ ପକାଇ ଯେ । ୩୨ । ରୁଦ୍ରଶିବ ହେବାର ସଂଶୟ ଦୂର । ଏତେ କାଳକେ ଅଦି ହେଲା ସୋହର ଯେ । ଯେବେ ଲଭିଲଟି ସେ ସ୍ତନସ୍ପର୍ଶ କାନୁସିଂହାସନେ ବସିବ ବଶ୍ୟ ଯେ । ୩୩ । କୁମାର ବୋଲେ ଅନ ବ୍ୟବସାୟୁକୁ । କର କି କାର୍ଯ୍ୟ ବର୍ତ୍ତୁଥିବା ତାହାକୁ ଯେ । କାନ୍ତି ଏମନ୍ତ ସ୍ୱଳ ତହିଁକି ଗୃହି । ଭାଲେ ତଳକ ଲେଖି ହୋଇବ ଯହିଁ ଯେ । ୩୪ । ପୀୟୂଷପିତୁଳାକୁ ସୁନା ରଶାଣ । ଏହା ଭାବି କି ଧାତା କଲା ଉଆଣ ଯେ । ସଂସାରସାର ସବୁ ଲାବଣ୍ୟମାନ । ପ୍ରତିବମ୍ବ ଦେଖିବ ହେବାକୁ ସ୍ଥାନ ଯେ ।୩୫। କି ଗଉରବ ଅନ୍ୟ ଗଉର ଦ୍ରବେ । କୁଙ୍କୁମ ଶୋଭା କରେ ସେ ଅବୟବେ ଯେ । ସିନ୍ଧୁକୁ ଗୁରୁ କରି ମନ ଏମନ୍ତ । ମିଶିବ ଅଙ୍ଗେ ଜଳେ

---

୨୯ । ସଦନ—ଘର, ମିହିର—ସୂର୍ଯ୍ୟ, କର—କିରଣ, ମେରୁରୁ ଖସିଯାଏ ନାହିଁ ।

୩୦ । ଦାହ କନକ—ପୋଡ଼ା ସୁନା, ବଲ୍ଲୀ—ଲତା, ଭୁଜାନ୍ତର—( ଭୁଜ + ଅନ୍ତର ) ଭୁଜ—ହାତ, ଅନ୍ତର—ଅଲଗା, ମଧୁକୋଷ—ମହୁଫେଣା, ସରଘା ଶ୍ରେଣୀ—ମହୁମାଛିମାନେ ।

୩୧ । ରୋମାଳୀ—ରୋମସବୁ, ବ୍ୟାଜ—ଛଳନା, ସଂଯତ—ମିଳିବା ।

୩୨ । ଶ୍ରୀଫଳ—ନଡ଼ିଆ, ବେଲ; ଶ୍ରୀମନ୍ତ—ଲକ୍ଷ୍ମୀବନ୍ତ, ଶୋଭାଯୁକ୍ତ; ତୃଣରାଜ—ନଡ଼ିଆ ।

୩୩ । ରୁଦ୍ର—ଭୟଙ୍କର, ମହାଦେବ; ଶିବ—ମହାଦେବ, ସ୍ତନସ୍ପର୍ଶ—ସ୍ତନ ଛୁଇଁବା ।

୩୪—ପୀୟୂଷ ପିତୁଳା—ଅମୃତମୟ ରୂପ ପ୍ରତିମା, ଲାବଣ୍ୟବତୀ, ପ୍ରତିବମ୍ବ—ଛାଇ ସୁନାରଶାଣ—ସୁନାକୁ ଘଷିବା ।

୩୫ । ଗଉର—ଗୋରା, ଧଳା; ଅବୟବ—ଦେହ, ଶରୀର ।


Digitized by srujanika@gmail.com

ଜଳ ଯେମନ୍ତ ଯେ ।୩୬। ମମତା ଏହି ଖଗବର ପ୍ରକାର । ତା ଆଗେ ବସି-
ଥିବ ଯୋଡ଼ଣ କର ଯେ । ପାର୍ବତୀ ଶିବ ଅର୍ଦ୍ଧ ଅଙ୍ଗ ପରିରେ । ସେ
ଆଲିଙ୍ଗନ ହୋଇଥିବ ଶରୀରେ ଯେ । ୩୭ । ବସ୍ତୁ ହୋନ୍ତି କମଳା ପରାୟେ
ସେହି । ଅନ୍ତର ହୋଇ ଦଣ୍ଡେ ନ ଯିବ କାହିଁ ଯେ । କଳେବରକୁ ଯଥା
ନ ଛାଡ଼େ ଛାଇ । ମୁଁ ତାକୁ ନ ଛାଡ଼ିବ ତେମନ୍ତ ହୋଇ ଯେ । ୩୮ ।
ଯେବେ ଜୀବନେ ଥିବ ଉପାୟ କର । ତପେ ହେଲେ ମନାଇ ହର ଗଉରୀ
ଯେ । ଲଭିବ ବଳ୍ଲଭୀ-ରତନ ଅବଶ୍ୟ । ଯୋଗେ ସଙ୍ଗମ ନୋହିଁ ହୋଇ-
ଲେ ନାଶ ଯେ । ୩୯ । ତାକୁ ପାଇବ ଅଛି ଏହି ଭରସା । ଚନ୍ଦ୍ର ଲଭିଲା
ମଳୀ ଉରୁ ଶଶା (୧) ଯେ । ତା ନାମ କରୁଥିବ ମୁଁ ସୁମରଣ । ଗଲେ
ତ ଜୀବ ହେବ ମୋ ସୁମରଣ ଯେ । ୪୦ । ପୁରୋଧାସୁତ ବୋଲେ ତୋ
ଶତ୍ରୁ ମରୁ । ଦୁର୍ଗା କୃପାରୁ ହେଉ ଗ କର ତୁ ଭୀରୁ ଯେ । ସାଧୁତ ଶୁକ
ବ୍ରହ୍ମପୁରୀ ଯାଇଛି । ସେ ଆସିଲେ ଉପାୟ କରିବା କିଛି ଯେ । ୪୧ । ଦ୍ୱୀପ
ସପତ ଶୋଭା ଜମ୍ବୁ ପ୍ଲକ୍ଷରେ । କୁଶ କ୍ରୌଞ୍ଚ ଶାକ ଶାଲ୍ମଳୀ ପୁଷ୍କରେ ଯେ
ଲବଣେକ୍ଷୁ ସୁରା ସର୍ପି ଦଧି ଦୁଗ୍ଧ । ପୟ ଘେନି ସପତ ସମୁଦ୍ର ସିନ୍ଧ ଯେ
। ୪୨ । ପୂର୍ବେ ନରରାଜାଏ ଅଛନ୍ତି ଭ୍ରମି । ସିଂହଳଦ୍ୱୀପେ ଅଛି କରିନ୍ଦ୍ର-
ଗାମୀ ଯେ । ଏଥିପାଇଁ ଛାଡ଼ିବ କାହିଁ ଜୀବନ । ଅବିରତେ କରିବା ଉପାୟ-
ମାନ ଯେ । ୪୩ । ସେତ ସ୍ୱଭାବେ ସ୍ତିରୀ ପୁଂସ ଭଜିବ । ରସିକ ଜଣେ
ଯିନା ବନ୍ଧୁ ହୋଇବ ଯେ । ଏମନ୍ତ ବଚନରେ ବୋଧିଲେ ଚିତ୍ତ । ଏ ଛାନ୍ଦ
ଅତି ରମ୍ୟ ହୋଇଲା ପ୍ରାନ୍ତ ଯେ । ୪୪ । ଦୈତ୍ୟହନ୍ତା ଚତୁରଭୁଜ

---

୩୬ । ଖଗବର—ଗରୁଡ଼ ।

୩୮ । କଳେବର—ଦେହ ।

୪୦ । ବଲ୍ଲଭୀରତନ—ସ୍ତ୍ରୀ ଶ୍ରେଷ୍ଠ (୧) ଶଶା ଯେପରି ଚନ୍ଦ୍ରକିରଣରୁ ଜଳ ମନେକରି ଯାଇ ମରଗିବାରୁ ଚନ୍ଦ୍ର ଦେହରେ ରହିଲା, ସେ ହେଲା ଚନ୍ଦ୍ରର କଳଙ୍କ, ସୁମରଣ—ଉତ୍ତମ ମରଣ ।

୪୧ । ପୁରୋଧା—ପୁରୋହିତ, ସୁତ—ପୁଅ, ଭୀରୁ—ଭୟାଳୁ ।

୪୩ । କରିନ୍ଦ୍ରଗାମୀ—ହସ୍ତୀଗମନା, ଅବିରତ—ସର୍ବଦା ।

୪୪ । ରମ୍ୟ—ସୁନ୍ଦର, ପ୍ରାନ୍ତ—ଶେଷ ।

୪୫ । ଚିତ୍ରଭାନୁ—ଅଗ୍ନି, ଦୈତ୍ୟହନ୍ତା—ରାକ୍ଷସନାଶକାରୀ, ରଞ୍ଜିତ—ଶୋଭିତ, ଦୁରିତ—ଦୁଃଖ ।

ରଞ୍ଜିତ । ଶିବଭ୍ରମନ୍ତୁ ପରସ୍ପୁ ତେଜ ଜ୍ୱଳିତ ଯେ । ହେ ସ୍ୱମ ନାଗପୂର୍ଣ୍ଣ
ଭୁବନ ଧ୍ୱଂସ । କହଇ ଉପେନ୍ଦ୍ର ଭଞ୍ଜ [illegible]ରକ୍ଷ ଯେ । ୪୫ ।



## ପଞ୍ଚଦଶ ଛାନ୍ଦ ।

( ଇନ୍ଦ୍ରଜାଲିକର ମାୟା ଦେଖାଇବା )

ରାଗ ବସନ୍ତଭୈରବ ।

ଶୁଣ ଜନେ ଏଣୁ ବିଧାତାକୁ ବଡ଼ ବୋଲି । ବ୍ୟାଜେ ଧନ ଅର୍ଜ୍ଜନେ ଅନେକ ଦେଶ ବୁଲି ସେ । ସିଂହଳଦ୍ୱୀପେ ପ୍ରବେଶ ହେଲା ନଟବର । ଲୋକବଶକାରୀ ସେ ବିନୋଦ ନାମ ତାର ଯେ । ହସ୍ତେ ବାନ୍ଧି କାଖେ ଯାଇଅଛି ସର୍ପପେଟୀ । ଦେହେ ଘଷି ହୋଇଛି ଚନ୍ଦନ ପରି ମାଟି ଯେ ।୧। ମନ୍ତ୍ରବିଦ୍ୟା ପଣ୍ଡିତ ଫଳିଛି ବାହୁ ବେନି । ତାହିଁତ ଶୋଭିତ ଯେ ମୟୂର-ଚୂଳ ଘେନି ଯେ । ବକ୍ରଜୁଡ଼ାକୁ ବେଢିଛି ଅସଂଲାର ଫୁଲ । ଉଦ୍ଧବ ଧରିଛି ଭଲ କଳାଉରମାଳ ଯେ । ସୁନାମୋଡ଼ଅ ପନସକଟିଆ କୁଣ୍ଡଳ । ଦୋହଲି ଶୋଭା କରୁଛି ତା ଗଣ୍ଡମଣ୍ଡଳ ଯେ । ୨ । ହସ୍ତ ଦଶେ ସୁନାଖିଲ ଝଲଝଲ ଟକ୍ରେ । ପାଟେ ପାଟ ଯାଉଛି ସେ ଜମ୍ବୁଫଳ ମତେ ଯେ । ସିନ୍ଦୂର ଚିତାହିଁ ତା ହଟକେଶ୍ୱର ପଣେ । ବନ୍ଧୁକ ଘଷି ହୋଇଛି ଯୁଗଳ ଈକ୍ଷଣେ ଯେ । ବକଶାମଳ ବାନା ତା ଭୁଜଙ୍ଗ ପଇତା । ମହାମହା ଗୁରୁମାନଙ୍କର ଦର୍ପ-

---

ସ୍ୱପନ ପ୍ରସଙ୍ଗ ଚନ୍ଦ୍ର ରାଜସୁତ ଲାବଣ୍ୟବତୀଙ୍କ ଚନ୍ତାକର ଦୁଃଖିତ ହେଲା ଓ ଏହି ସମୟରେ ତାର ବୟସ୍ୟମାନେ ତାଙ୍କୁ ପ୍ରବୋଧ ଦେଲେ ଓ ସେ ଲାବଣ୍ୟବତୀର ସନ୍ଧାନ ମଧ୍ୟ ପାଇଲା ।



### ପଞ୍ଚଦଶ ଛାନ୍ଦ

୧ । ବ୍ୟାଜେ—ଛଳନାରେ—କପଟରେ, ସର୍ପପେଟୀ—ସାପପେଡ଼ି ।

୨ । ବକ୍ରଜୁଡ଼ା—ବଙ୍କାଜୁଡ଼ା ( ଜୁଡ଼ା ବଙ୍କାବନ୍ଧା ); ଗଣ୍ଡମଣ୍ଡଳ—ଗାଲ ।

୩ । ଝଲଝଲ—ଚକଚକ, ଜମ୍ବୁଫଳ—ଜାମୁକୋଳି, ଯୁଗଳ—ଦୁଇ, ଈକ୍ଷଣ—ଆଖି । ବକ—ବଗ, ଶାମଳ—ଶାଳନ୍ଦପକ୍ଷୀ, ଭୁଜଙ୍ଗ—ସାପ, ଦର୍ପହନ୍ତା—ଗର୍ବନାଶକାରୀ ।

ହନ୍ତା ଯେ । ୩ । ରୁଣ୍ଡ ଶିକଳୀ ଚରଣେ କର କଙ୍କଣରେ । ଶଗଜଣ୍ଟ ହେମ ବାଳୀ ବାମଶ୍ରବଣରେ ଯେ । ପିନ୍ଧନ୍ତି ପଟନୀଫେଟା ପର ମାଳା କର । ରଙ୍ଗପାଟ ଖଣ୍ଡିଏ କଟିରେ ମାଧୁରୀ ଯେ । ବେଢିଛନ୍ତି ଶିଷ୍ୟ ଉପଶିଷ୍ୟ ବେଶ ହୋଇ । କେ ଚଉତନା କେ ପାଗ ମୁଣ୍ଡେ ମଣ୍ଡିଅଛି ଯେ । ୪ । ପିନ୍ଧି ଚଳନାକାଛକୁ ବାନ୍ଧଛନ୍ତି ତାହି । ଭାଲେ କାଳୀ ଟିକା କେ ବଭୂତଭୂଷା ଦେଖି ଯେ । ବହିଛନ୍ତି ସେ ଦୀର୍ଘଶଳାକା ଅଧ ଢୋଲ । ଘଣ୍ଟ ନାଟ ଅବଟା ବଣପା ଯେ ମଞ୍ଜୁଳ ଯେ । ମଧ୍ୟବର୍ତ୍ତୀ ପ୍ରେମରୂପା ନାଚେ ନଟୀସାର । ବୟସରେ ଷୋଡଶୀ ବେଶରେ ମନୋହର ଯେ । ୫ । ସେ ବଟପୀ ବଟପଧଇର୍ଯ୍ୟ-ବଟପିଙ୍କ । ଛେଦନେ କୁଠାର ପରି ମନରେ ଉଚକ ଯେ । ଚିତ୍ତେ କର ଧରିବାକୁ ଦର୍ପଣ ଫୁଟକ । ମୁଖ ମାଠି ଛଇଲେ କରନ୍ତି ଜକଜକ ଯେ । ଅଙ୍ଗେ ସଙ୍ଗ କରିଅଛି ସେ ବନହଳଦୀ । କାନ୍ତି ହୋଇଛି ପାଟଳଅମ୍ବ ପ୍ରତିଦ୍ୱନ୍ଦୀ ଯେ । ୬ । କବରୀରେ ଅଳକାକୁ ନୂତନେ ଖଣ୍ଡିଛି । ଫୁଲଗୁଡ଼ାଏ ଜଟାରେ ଯତନେ ମଣ୍ଡିଛି ଯେ । ଦଣ୍ଡିଛି ସେ ଜଳଦ ବକାଳୀ ମହୋଜ୍ଜ୍ୱଳ । ବହଳ କରି ଘେନିଛି ନୟନେ କଜ୍ଜ୍ୱଳ ଯେ । ମୃଗ ହୋଇ-ଲାକୁ ଅଛି ଚଞ୍ଚଳଗୃତୁରି । ଖେଳାଭୂମି ଯାକ ବାସିଦେଇଛି କସ୍ତୁରୀ ଯେ ।୭। ଅଭ୍ରଟିକା ଶୁଭ୍ର ହୋଇଅଛି ଭାଲପଟ । ଭାନୁକର ଲାଗି ଫୁଟକଟଫୁଟ ଫୁଟ ଯେ । ଜଳେ କି ତହିଁ ଜ୍ୱଳନ କାମଡ଼ାଲୀ ( ୧ ) ବହି । ଅପୁଥିଲ ଉପମାକୁ ସେ ବାମା ଲଭଇ ଯେ । ଶବଲକ୍ଷ କଟାକ୍ଷ ତା ପାଇଁ ଯୋଗି-ରାଜ । ବନ୍ଧବା ଭୟେ ଥରଲେ ମୃଗଚର୍ମ ତେଜି ଯେ । ୮ । ବେଣୀପୃଷ୍ଠରେ

---

୪ । ରୁଣ୍ଡ—ଏକତ୍ରିତ, ଚରଣ—ଗୋଡ଼, ହେମ—ସୁନା, ଶ୍ରବଣ—କାନ ।

୫ । ଭାଲେ—କପାଳରେ, ବଭୂତ—ପାଉଁଶ, ଦୀର୍ଘ—ଲମ୍ବା, ଶଳାକା—ବାଡ଼ି ନଟୀ—ନାଚବାଲୀ ।

୬ । ବଟପୀ—ଅସତୀ, ବଟପ—ଲମ୍ପଟ, ବଟପି—ଗଛ, ପ୍ରତିଦ୍ୱନ୍ଦୀ—ଶତ୍ରୁ ।

୭ । ଜଳଦ—ମେଘ, ବକାଳୀ—ବଗସନ୍ତି, ବାଲକଳାମେଘ ତା ପରେ ବଗପର ଫୁଲ ନାଇଚ ।

୮ । ଭାନୁକର—ସୂର୍ଯ୍ୟକିରଣ, କାମଡ଼ାଲୀ—କନ୍ଦର୍ପର ଡ଼ାଳପାରଧି—( ଡ଼ାଳ ପାରଧି ହେଉଛି, ଶବରମାନେ ମୁଣ୍ଡରେ ନଅଁ ଖପରି ହାତରେ ନଅ-ଖୁଣ୍ଟା ଧରି ବଣରେ ବୁଲିଲେ ମୃଗମାନେ ମନକୁ ଆସିଲେ ତାକୁ ମାରନ୍ତି ଏହାକୁ ଡ଼ାଳ ପାରଧି କହନ୍ତି । କଟାକ୍ଷ—ଚାହାଁଣୀ, ଯୋଗୀରାଜ—ତପସ୍ୱୀମାନେ ।


Digitized by srujanika@gmail.com

ତା ଗୁଣା-ନାକଚଣା ଅଛି । ନାସାଦଣ୍ଡି ଫୋଡ଼ାଇ ଗୁଣାଏ ଲଗାଇଛି ଯେ । ଉନ ପୂତେ ମୋତେ ରତିବଚକ୍ଷଣାଗଣେ । ନାସ୍ତି ନାହିଁ ବୋଲି ଚିହ୍ନ ବହୁଛି ଆପଣେ ଯେ । ସୁନା ମଲ୍ଲୀକଢ଼ୀ ଫୁଲ କାଲପଟିଆମ । ବାଳାର କଣ୍ଠଛି ଶ୍ରବଣକୁ ମନୋରମ ଯେ । ୯ । ଓଢ଼ିରେ ହଲାଇ ସେ ଝଲକ ଝଲକାକୁ । ଅପ ବୋଲି ପାଶକୁ ଡ଼ାକଇ ପୁରୁଷଙ୍କୁ ଯେ । ଅଧରେ ଯେ କରଅଛି ପାନରଙ୍ଗ ସଙ୍ଗ । ପ୍ରବାଳ ଉପିଲା ଥୋଇ ପଡ଼ଇ କି ରଙ୍ଗ ଯେ । ଲୁଟାଇଛି ଚିବୁକେ ମକ୍ଷିକା ଗୃହୁଚନ୍ଦ । ଓଷ୍ଠେ ମଧୁ ସଞ୍ଚିବାକୁ କି ସେ ଉପସ୍ଥିତ ଯେ । ୧୦ । ଲାକ୍ଷା ଶିଙ୍ଗାରସେ ପଗୁଇଛି ଦନ୍ତରାଜି । ଦେଉଛି ସେ ପାଟଲା ଡ଼ାଳିମ୍ବମଞ୍ଜି ଗଞ୍ଜି ଯେ । କାଚମାଳୀ ମୋତିମାଳୀ କଣ୍ଠିମାଳୀ ମଞ୍ଜୁ । କମ୍ବୁକଣ୍ଠେ ଲଗାଇଅଛି କି କୁନ୍ଦାରଞ୍ଜୁ ଯେ । ନବଘନ ଦେଖା ପ୍ରାପ୍ତ ଗିରିଶୃଙ୍ଗ ଗିଳ । ଉରଜକୁରେ ଖଚିତ ହୋଇଛି ନୀଳଚେଲୀ ଯେ । କକ୍ଷଭୁଜ ଅଙ୍କୁ ବୋଲି ସେ ଅଛି ଗ୍ରାସି । କାଳିନ୍ଦୀରୁ ମୃଣାଳ ବାହାର ପରି ଦିଶି ଯେ । ସେ ଭୁଜେ ବାନ୍ଧିଛି ରୁପାସୂତା ବନ୍ଦମାଳୀ । ପାଣିରେ ତା ପାଣିବାଚ ମିନ୍ଧା ଚଉଅଲୀ ଯେ । ଅଞ୍ଜନଚନ୍ଦେ ରଞ୍ଜନ କରଜ ପାପୁଲି । ଦର୍ପଣବସା ମୁଦରେ ଦୀପିତ ଅଙ୍ଗୁଲୀ ଯେ । ୧୨ । ଅଛି ଜଙ୍ଘତଳେ ଭିଡ଼ି ଦେଇ କଟିଡ଼ୋରେ । ପିନ୍ଧିଛି ସେ ଅତଳସ ଲହଙ୍ଗା ଉପରେ ଯେ । ବାନ୍ଧିଅଛି କ୍ଷୁଦ୍ରଘଣ୍ଟି ବାଜେ ଝଣଝଣ । ଉଚେ ଉପରଣ ଜରିଜଡ଼ିତ ସୁଷମ ଯେ । ଝଣଝଣ ହୋଇ ଖଞ୍ଜାପାହୁଡ଼ ଚରଣେ । ଡ଼ାକେ ରସିକେ ସଞ୍ଚିତ ଧନ ବିତରଣେ ଯେ । ୧୩ । ରୋମାବଳୀ ଗୃହି ଜନେ ଭ୍ରମ ଉପୁଜଇ ।

---

୯ । ରତିବିଚକ୍ଷଣା—ରତିରେ ପାରଦର୍ଶୀ ଅର୍ଥାତ୍ ରତି ପଣ୍ଡିତା ।

୧୦ । ଅଧର—ଓଷ୍ଠ, ମକ୍ଷିକା—ମାଛି, ମଧୁ—ମହୁ, ଅମୃତ ।

୧୧ । ଲାକ୍ଷା—ଅଲତା, ଦନ୍ତରାଜି—ଦାନ୍ତସଜ୍ଘ, ମଞ୍ଜୁ—ସୁନ୍ଦର, ପିନ୍ଧିବାରୁ, କମ୍ବୁ—ଶଙ୍ଖ, ନବଘନ—କଳାମେଘ, ଗିରିଶୃଙ୍ଗ—ପର୍ବତଶିଖ, ନୀଳଚେଲୀ—ନୀଳବସ୍ତ୍ର କାଞ୍ଚୁଲା, ନେଳିଆ ଶାଢ଼ୀ ।

୧୨ । କକ୍ଷ—କାଖ, ଭୁଜ—ହାତ, ମୃଣାଳ—ପଦ୍ମନାଡ଼, ପାଣି—ହାତ, କରଜ—ନଖ, ଅଞ୍ଜନଚନ୍ଦେ—କଳା ଛଟାରେ ।

୧୩ । ଉପରଣ—ଓଢ଼ଣୀ ଚଦର, ଜରିଜଡ଼ିତ—ଜରି କାମ ହୋଇଥିବା, ସୁଷମ—ସୁନ୍ଦର, ବିତରଣେ—ବଣ୍ଟିବାରେ ।

ସ୍ତନପେଟୀରୁ କି କାଳବ୍ୟାଳ ବାହାରଇ ଯେ । ମୁଖ ଲଗାଇଛୁ ଛନ୍ନି ଛନ୍ନି ପ୍ରପଦରେ । ଧରଛୁ ଅମୃତ ଘଟାଧନ ବେନି କରେ ଯେ । ଏମନ୍ତରେ ନଟ ନଟୀ ରାଜଦ୍ୱାରେ ଯାଇ । ଦେଖିବାକୁ ଲୋକେ ଛନ୍ତି ସଙ୍ଗତେ ଗୋଡ଼ାଇ ଯେ । ୧୪ । ସିଂହଦ୍ୱାରେ ବସି ବଜାଇଲେ ଢୋଲ ତୂରୀ । ନୃପତିସମ୍ମୁଖରେ ଯାଇଁ ଜଣାଇଲେ ଦ୍ୱାରୀ ଯେ । ହେ ବନ୍ଧୁ ବନ୍ଧୁ କୁମୁଦ ବିଧୁ ମହାରାଜ । ଆସିଛୁ ଇନ୍ଦ୍ରଜାଳିକ କର୍ଣ୍ଣାଟ ତା ରାଜ୍ୟ ଯେ । ଶୁଣି ତୁମ୍ଭ ଦାତୃଗୁଣ ଭରିବାକୁ ନଟ । ଆଶ୍ୱ ବୋଲିବାକୁ ତହିଁ ନୃପତି ମୁକୁଟ ଯେ । ୧୫ । ଗୃହଁ ଦେଲେ ପ୍ରତିହାରୀ ଦଶବଂଶ ଧାଇଁ । ସମ୍ମୁଖରେ ସେ ଭେଟାଇଲେ ନଟ ନଟୀ ନେଇ ଯେ । ରାଜା ପଗୁରିଲେ ଅହୋ କି କି ବିଦ୍ୟା ଜାଣ । ସେ କହିଲା ଦ୍ୱୀପେଶ୍ୱର ସାବଧାନେ ଶୁଣ ହେ । କୁହୁକ ଗୋଟିକାଞ୍ଜନ ସ୍ତମ୍ଭନ ମୋହନ । ରଣ ଜିଣାଟନେ ଜାଣେ ମୁଁ ଭୋଜରାଜନ ଯେ । ୧୬ । ଗଦ ପଦେ ବିଖ୍ୟାତନେ ମୁଁ ଧନ୍ୱନ୍ତରୀ । ଗୁରୁଏ ଦେଲନ୍ତି ମୋତେ ମହାଗୁରୁ କରି ଯେ । ମାୟା ରଚନରେ ମୟ ପରି ମୋତେ ଜେନ ! ପୁଣ ଏ ଅଙ୍ଗନାସାରେ ଗୁଣ ଅକଥନ ଯେ । ନୃତ୍ୟ ଦେଖିଲେ ବାସବ ରମ୍ଭା ପାସୋରିବେ । ଗାନ ଶୁଣିଲେ ବୀଣାକୁ କର୍ପା ପ୍ରଶଂସିବେ ହେ । ୧୭ । ଅମ୍ଭ କୁଳଧର୍ମ ବିଦ୍ୟାରେତ ନାହିଁ ସରି । ତୁମ୍ଭେ କି ଅଜ୍ଞା କରୁଛ କହ ଦଣ୍ଡଧାରି ହେ । ନୃପତି ବୋଇଲେ ରହ କରିସାରୁଁ ସନ୍ଧ୍ୟା । ପ୍ରମାଦୁଣ ଦେଖାଅ ଜାଣିବା ତୁମ୍ଭ ବିଦ୍ୟା ହେ । କେତେବେଳେ ହେଲା ତହିଁ ସନ୍ଧ୍ୟା ଅବଶେଷ । ରାଜା ଅବରୋଧନାସ୍ୱ ଜଗତୀ ପ୍ରବେଶ ଯେ । ୧୮ । ବଡ

୧୪ । ରୋମାବଳୀ—ଲୋମସବୁ, ଭ୍ରମ—ଭୁଲ, ସ୍ତନ ପେଟିରୁ—ସ୍ତନ ପେଡ଼ରୁ, କାଳବ୍ୟାଳ—କାଳସର୍ପ, ପ୍ରପଦ—ଗୋଡ଼ ଅଙ୍ଗୁଠି ।

୧୫ । ଦାତୃଗୁଣ—ଦାନପଣ, ନୃପତି ମୁକୁଟ—ରାଜଶ୍ରେଷ୍ଠ, କୁମୁଦ—କଇଁ, ବିଧୁ—ଚନ୍ଦ୍ର, କଇଁଫୁଲ ବନ୍ଧୁ ଚନ୍ଦ୍ରକୁ ଦେଖିଲେ ଯେପରି ତାର ଆନନ୍ଦ ହୁଏ, ଆପଣଙ୍କ ଆପଣ ବନ୍ଧୁ କି ପରିଜନ ମଧ୍ୟ ଦେଖିଲେ ସେହିପରି ଆନନ୍ଦ ହୁଅନ୍ତି ।

୧୬ । ପ୍ରତିହାରୀ—ପହରିହାରୀ, ଦଶବଂଶ—ଦଶ କୋଟିଏ ଜଣ, ଭୋଜରାଜନ—ଭୋଜବାଜିରେ ଶ୍ରେଷ୍ଠ ।

୧୭ । ଧନ୍ୱନ୍ତରୀ—ଦେବତାଙ୍କର ବୈଦ୍ୟ, ମୟ—ବଡ଼ ମାୟାବୀ ଅସୁର, ଅଙ୍ଗନା—ସ୍ତ୍ରୀ, ସାର—ଶ୍ରେଷ୍ଠ, ଅକଥନ—ଖୁବ୍‌ବେଶି ।

୧୮ । ଅବଶେଷ—ଶେଷ, ଅବରୋଧ—ପରଦାବନ୍ଦୀଘର, ଅନ୍ତଃପୁରେ ଥିବା ସ୍ତ୍ରୀ, ନାସ୍ୱ—ଏଠାରେ ରାଣୀ ।

ବଡ଼ଭୀ-ମସ୍ତକ ମଣ୍ଡିଳା କୁମାରୀ । କେବଳ ଅଛନ୍ତି ସଙ୍ଗେ ପ୍ରିୟ ସହଚରୀ
ଯେ । କରନ୍ତି କଥନ୍ଦ ଗତ ଏ ପାଞ୍ଚ ସ୍ୱଭାବ । ରାମଚରିତ ଦେଖିଲେ କାମ
ପୂର୍ଣ୍ଣ ହେବ ଯେ । ଏହିକାଳେ ଜାଲିକ ବୋଇଲା ନେନ ବୁଜ । ନେନ
ବୁଜନ୍ତେ ରଚିଲା ସେ ମାୟାସମାଜ ଯେ । ୧୯ । ଗୃହୀ ଲୋମୋଦ୍ଗମ
ଜନେ ଲୋମପାଦ ବୋଲେ । ଜରତୀ ରତୀରେ ଋଷ୍ୟଶୃଙ୍ଗ ଅସି
ହେଲେ ଯେ । ସେ ଦେଶରେ ବୃଷ୍ଟି କଲା ତୁଷ୍ଟି ହେଲେ ରାଜା ।
ଶାନ୍ତା କାନ୍ତା ଦେଇକର କଲେ ଦିବ୍ୟ ପୂଜା ଯେ । ଦଶରଥ
ମନୋରଥ ସାର୍ଥ ହେବାପାଇଁ । ସେ ମୁନିଙ୍କ ଘେନି ଗଲେ ରଥରେ
ବସାଇ ଯେ । ୨୦ । ଗୃହୁ ଚରୁ ସ୍ୱରୂପେ ହୋଇଲେ ପଦ୍ମନାଭ ।
କଉଶଲ୍ୟା କେକେୟୀ ସୁମିତ୍ରା ଭକ୍ଷି ଗର୍ଭ ଯେ । ଅଭିରାମ ଶ୍ରୀରାମ ଭରତ
ଶୁଭରତ । ସଲକ୍ଷଣ ଲକ୍ଷ୍ମଣ ଶତ୍ରୁଘ୍ନ ହେଲେ ଜାତ ଯେ । କ୍ରତୁ ରକ୍ଷା
ହେତୁ ବିଶ୍ୱାମିତ୍ର ଅସି ନେଲେ । ବନେ ତାଡ଼କା ଶମନଭୁବନେ ପେଷିଲେ
ହେ । ୨୧ । ସୁବାହୁ ସୁବାହୁ ଚଳେ ମାର ମାରିଚଙ୍କୁ । ଅକାଶରେ ଶରେ
ଉଡ଼ାଇଲେ ଯେ ଯଶକୁ ଯେ । ପଥରେ ପଥରେ ନାରୀ କରି କଲେ ମୋଦ ।
ଦାସବତ୍ସଳ ଦାସରେ ଧୁଆଇଲେ ପଦ ଯେ । ଖଣ୍ଡପରଶୁକୋଦଣ୍ଡ ବେନି
ଖଣ୍ଡ କରି । ସୀତାବିବାହ ନିର୍ବାହ ନୃପଦର୍ପ ହରି ଯେ । ୨୨ । ବକ୍ର ପରି

---

୧୯ । ବଡ଼ଭୀ—କୋଠା, ମସ୍ତକ—ଉପର, କୁମାରୀ—ଲାବଣ୍ୟବତୀ ।

୨୦ । ଲୋମଦ୍ଗମ—ରୋମ ଠାଙ୍କୁରିବା, ଲୋମପାଦ—ଜଣେ ସୂର୍ଯ୍ୟବଂଶୀୟ ରାଜା, ଜରତୀ—ଜଣେ ବେଶ୍ୟା, ରତୀରେ—ଛଳନାରେ, ଋଷ୍ୟଶୃଙ୍ଗ—ଋଷି-ଜଣେ, ତୁଷ୍ଟି—ସନ୍ତୋଷ, କାନ୍ତା—ସ୍ତ୍ରୀ, ସାର୍ଥ—ସଫଳ, ଲୋମପାଦ ଦେଶରେ ବର୍ଷା ନ ହେବାରୁ ଜରତୀ ବେଶ୍ୟା କୌଶଳକରି ଋଷ୍ୟଶୃଙ୍ଗ ମୁନିଙ୍କ ଦେଶକୁ ଆଣିବାରୁ ବର୍ଷା ହେଲା, ଲୋମପାଦ ଖୁସି ହୋଇ ତାଙ୍କ ଝିଅ ଶାନ୍ତାକୁ ଋଷ୍ୟଶୃଙ୍ଗଙ୍କୁ ବିଭାକରି ଆନନ୍ଦ ହେଲେ—ଦଶରଥ ମଧ ପୁତ୍ର ସକାଶ ତାଙ୍କୁ ନେଲେ ।

୨୧ । ଗୃହୁ—ସୁନ୍ଦର, ଚରୁ—ଯଜ୍ଞ ଅନ୍ନ, ପଦ୍ମନାଭ—ବିଷ୍ଣୁ, ଶୁଭରତ—ମଙ୍ଗଳ-କାମୀ, ସଲକ୍ଷଣ—ଉତ୍ତମ ଲକ୍ଷଣରେ ପୂର୍ଣ୍ଣ, କ୍ରତୁ—ଯାଗ, ଶମନ ଭୁବନ—ଯମପୁର ।

୨୨ । ସୁବାହୁ—ସାର୍ଦ୍ଧବାହୁ (ରାମଚନ୍ଦ୍ର) ପଥରେ—ବାଟରେ, ମୋଦ—ଆନନ୍ଦ, ଦାସରେ—କେଉଟଙ୍କୁ, ଖଣ୍ଡପରଶୁ—ମହାଦେବ, କୋଦଣ୍ଡ—ଧନୁ ।

ଭୃଗୁପତି ଭୃଗୁକୁ ଭେଦିଲେ । ଅଭିଷେକ ଛାଡ଼ି ମମତା ପିତା କଟିଲ ଯେ । ମନ୍ଥରମନ୍ତ୍ରନେ କାନ୍ତାନୁଜ ଘେନି ସଙ୍ଗେ । ବଚିନ ଚିତ୍ରକୂଟରେ ବହିଲେ ରଙ୍ଗେ ଯେ । ବକ୍ର କଲେ ଶକ୍ରସୁତଚକ୍ର ନେତ୍ରରାଜ । ଭରତ ପ୍ରବୋଧି ସୁବୃଦ୍ଧିରେ ଗିରି ଡେଇଁ ଯେ । ୨୩ । ଖରଯୂଥେ ବରଯୂଥେ ବଧ ବଗୁବଲେ । ଅମଳାନବସ୍ତ୍ର ବ୍ରହ୍ମଣସ୍ତ୍ରକୁ ପାଇଲେ ଯେ । ଦଣ୍ଡକାରଣ୍ୟକୁ ପଣ୍ଡି ସୂର୍ପଣଖା ଦଣ୍ଡି । ଖର ଖର ଦୂଷଣ ତ୍ରିଶିର ଶିର ଖଣ୍ଡି ଯେ । ହେମସାରଙ୍ଗରଙ୍ଗରେ ଲଙ୍କା ଦଣ୍ଡଧାରୀ । ସୀତା ଶିତାଂଶୁମୁଖୀଙ୍କ ଉଟଜରୁ ହରି ଯେ । ୨୪ । ଫଳଦାନେ ମୋକ୍ଷଫଳ ଲଭିଲା ଶବରୀ । କ୍ଷୀରପାନେ ବର-ବରଜରେ ବାଞ୍ଛା ପୂରି ଯେ । କାମ କାମନାକୁ ମୂନ ଚିତ୍ତେ ଜନ୍ମାଇଲେ । ପମ୍ପାସରେ କୋକଶୋକକାରକ ହୋଇଲେ ଯେ । ମିତ୍ରବଂଶୀ ମିତ୍ର ବସି ମିତ୍ରପୁତ୍ରସଙ୍ଗେ । ଭେଦ ଶାଳ ଦୁନ୍ଦୁଭିଅସ୍ଥିଙ୍କ ଗୃହିଲେ ରଙ୍ଗେ ଯେ । ୨୫ । ଶାଖାମୃଗବୃନ୍ଦ ମୃଗରାଜକୋଟିବଳ । ଶର ଶରଭରେ କଲେ ବିନାଶ ଚପଳ ଯେ । ମାଲ୍ୟବନ୍ତ-ଧରଣୀଧରରେ ପୂର ବସି । ରଘୁବୀର ବରହେ ବରଷାକାଳ ବଞ୍ଚି ଯେ । କୁକ୍କୁଟକୁ ମୁକୁଟ ସେ ଗିରିକୂଟେ ଦେଇ । ଲଭି ବଲଭୀ ଉଦନ୍ତ ଦୂତ ପଠାଇ ଯେ । ୨୬ ।

---

୨୩ । ଭୃଗୁପତି—ପର୍ଶୁରାମ, ଭୃଗୁ—ପର୍ବତ, ମମତା—ଇଚ୍ଛା, ମନ୍ଥର ମନ୍ତ୍ରନେ—ମନ୍ଥରାଦାସୀ କପଟରେ ।
କାନ୍ତାନୁଜ ( କାନ୍ତ + ଅନୁଜ ) କାନ୍ତା—ସ୍ତ୍ରୀ ( ସୀତା ) ଅନୁଜ—ସାନଭାଇ ( ଲକ୍ଷ୍ମଣ ) ଶକ୍ରସୁତ—ଇନ୍ଦ୍ରପୁଅ, ଚକ୍ର—ଗୋଲ ।

୨୪ । ଖରଯୂଥେ—ଖରଅସ୍ତ୍ରରେ, ବରଯୂଥେ—ବିରାଧ ରାକ୍ଷସକୁ, ବଧ—ବିନାଶ, ଖର—ଶୀଘ୍ର, ଖର—ଖର ରାକ୍ଷସ, ହେମ—ସୁନା, ସାରଙ୍ଗ—ମୃଗ, ଦଣ୍ଡଧାରୀ—ରାଜା, ଶୀତାଂଶୁମୁଖୀ—ଧଳା ପଦ୍ମମୁଖି, ଉଟଜ—ପତ୍ର କୁଡ଼ିଆ ।

୨୫ । ବର ବରଜ—ଶ୍ରେଷ୍ଠ ଗୋପାଳ, ବାଞ୍ଛା—ଇଚ୍ଛା, କୋକ—ଚକ୍ରବାକ ପକ୍ଷୀ, ମିତ୍ରବଂଶୀ—ସୂର୍ଯ୍ୟବଂଶୀ, ମିତ୍ରପୁତ୍ର—ସୂର୍ଯ୍ୟଙ୍କ ପୁଅ ସୁଗ୍ରୀ ।

୨୬ । ଶାଖାମୃଗ—ବାନର, ମୃଗରାଜ—ସିଂହ, ଶରଭ—ଫାଳ, ମୂନ, ଚପଳ—ଶୀଘ୍ର, ଧରଣୀଧର—ପର୍ବତ, କୁକ୍କୁଟ—କୁକୁଡ଼ା, ଗିରିକୂଟେ—ପର୍ବତ କୋଡରେ, ବଲଭୀ—ସ୍ତ୍ରୀ . ଉଦନ୍ତ—ବାର୍ତ୍ତା ।

ଜଳେ ସେତୁ କଲେ ଶିଳେ ନଳେ ଦେଇ ଯଣ । ଲଙ୍କା ବେଢି ଶଙ୍କା କରାଇଲେ ଦୈତ୍ୟବଂଶ ଯେ । ବିଷଧରପାଶ ତ୍ରାସ ନାଶ କଲା ବୀଶ । ଅନୀକନୀ ଅନେକ ହୋଇଲେ ରଣେ ନାଶ ଯେ । ଘଟକର୍ଣ୍ଣ ଘଟତ୍ୟାଗ ଅତିକାୟ କ୍ଷୟ । ପୁରୁହୂତଜିତ ହତ ବ୍ରହ୍ମାସ୍ତ୍ର ଉଦୟ ଯେ । ୨୭ ।
ହନୁମାନ ଗନ୍ଧମାଦନଗମନ ଲୀଳା । ଭରତ ଉଦନ୍ତ ପ୍ରାପ୍ତ ଲକ୍ଷ୍ମଣ ଜୀଇଲା ଯେ । ଶ୍ରୀରାମଚନ୍ଦ୍ର ନରେନ୍ଦ୍ର ଶର ସର୍ପ ନେଇ । ଲଙ୍କପତି ଅଙ୍କପେଟୀ-ଭିତରେ ପୂରାଇ ଯେ । ଅଭୀଷଣ ବିଭୀଷଣେ ଅଭିଷେକ କରି । ବଇଦେହୀ ଦହି ଅନଳରେ ହେମ ପରି ଯେ । ୨୮ । ପୁଷ୍ପକରେ ପୁଷ୍କରେ ସବଳେ ଚଳେ ଗତି । ଯୋଦ୍ଧାବର ଅଯୋଧ୍ୟାରେ ହୋଇଲେ ନୃପତି ଯେ । ଦେଖାଇଁ ଦେଖାଇଁ ରାମାୟଣ ମହୋତ୍ସବ । ଚନ୍ଦ୍ରବଦନୀକି ଦେଖାଇଲା ଅନ୍ୟଭାବ ଯେ । କର୍ଣ୍ଣାଟରାଜନନ୍ଦନ ରାମ ଆଗେ ଭାବି । ବିଶ୍ୱମ୍ଭର ଆଗେ ବିଶ୍ୱକେତୁ ଯଥା ଶୋଭି ଯେ । କୁମାରୀକି ଶୁଭୁଛନ୍ତି ଏମନ୍ତ ଜଣାଉଛି । ଆନ ବରେ ମୋର ପ୍ରୟୋଜନ ନାହିଁ କହୁ ଯେ । ୨୯ । ହେ ରାମ ଶ୍ୟାମ ସୁନ୍ଦର ଅଛ ଦୟା କର । ସୁଗ୍ରୀବକୁ ତାରା ବିଭୀଷଣେ ମନ୍ଦୋଦରୀ ଯେ । ଲାବଣ୍ୟବତୀ ଯୁବତୀ-ଶିରୋମଣି ମୋର । ମନୋହାରୀ ହୋଇବ ଏମନ୍ତ କୃପା କର ହେ । ୩୦ । ସେ ନବୀନା ବିନା ଆନେ ନ ରସେ ମୋ ମନ । ଦହନ କରୁଛି ମୋତେ ମଦନଦହନ ହେ । ପ୍ରଭୁ ତୁମ୍ଭେ ବିରହବେଦନା ଅନୁଭବୀ । ନ ଘେନିଲେ ଆଜ କାହା ଆଗେ ଜଣାଇବ ଯେ । କରୁଣା-ଲୋଚନେ ରାମ ଅଶ୍ରୁବାଣୀ ଭାଷି । ଦେଖି ଶୁଣି ଏମନ୍ତ ସେ କସ୍ତୁରୀସୁବାସୀ ଯେ । ୩୧ । ଆଲୀଙ୍କି ଦେଖାଇ ଦେଲା ଅଙ୍ଗୁଳି ଦେଖାଇ । ସ୍ୱପନସମ୍ପତ୍ତି

---

୨୭ । ସେତୁ—ବନ୍ଧ, ଶିଳେ—ପଥରରେ, ଶଙ୍କା—ଭୟ, ବିଷଧର ପାଶ—ନାଗପାଶ, ତ୍ରାସ—ଭୟ, ବୀଶ—ଗରୁଡ଼, ଅନୀକନୀ—ପାଇକ ସୈନ୍ୟ, ଘଟତ୍ୟାଗ—ଦେହ ଛାଡ଼ିବା, କ୍ଷୟ—ନାଶ, ପୁରୁହୂତ—ଇନ୍ଦ୍ର, ପୁରୁହୂତଜିତ—ଇନ୍ଦ୍ର ଜୟକାରୀ ( ଇନ୍ଦ୍ରଜିତ )

୨୮ । ଉଦନ୍ତ—ବାର୍ତ୍ତା, ନରେନ୍ଦ୍ର ଶର—ବ୍ରହ୍ମାସ୍ତ୍ର, ଅଭୀଷଣ—ଶାନ୍ତ, ଦହି—ପୋଡ଼ି, ଅନଳ—ନିଆଁ, ହେମ—ସୁନା ।

୨୯ । ପୁଷ୍ପକରେ—ପୁଷ୍ପକ ଯାନରେ, ପୁଷ୍କରେ—ଆକାଶରେ, ସବଳେ—ଦଳ ବଳସହିତ, ବିଶ୍ୱମ୍ଭର—ବିଷ୍ଣୁ, ବିଶ୍ୱକେତୁ—କନ୍ଦର୍ପ, ଏଣେ ରାମାୟଣକୁ ତେଣେ ମାୟାରେ ଲାବଣ୍ୟବତୀକୁ କର୍ଣ୍ଣାଟ ରାଜସୁତ ଚନ୍ଦ୍ରଭାନୁକୁ ଦେଖାଉଛି ।

୩୧ । ଅନୁଭବୀ—ଭୋଗୀ, କରୁଣା—ଦୟା, କସ୍ତୁରୀ ସୁବାସୀ—କସ୍ତୁରୀ ବାସୀ ।


Digitized by srujanika@gmail.com

ପତି ପୂରୁଷ ମୋ ଏହି ଯେ । ସଖୀ ବୋଇଲା ସୁନ୍ଦରସୃଷ୍ଟି-ପୁରନ୍ଦର । ଏଥର ଝଇଲେ ପାଶେ ଏ ଉପାୟ କର ଯେ । ଉଦ୍ଧତକୁ ବଗୁର ନ କର କମ୍ବୁକଣ୍ଠୀ । ଭେଟିଁ ଦେବୁ ଅଞ୍ଚଳେ ଅଞ୍ଚଳେ ଦୃଢ଼ ଗଣ୍ଠି ଯେ । ୩୨ । ବାହୁବନ୍ଧନେ ବାନ୍ଧିବୁ ଅତିଯତ୍ନ କରି । ଯାଇ ନ ପାରିବ ଶେଷ ହୋଇଲେ ଶର୍ବରୀ ଗୋ । ରତିଭୋଗ ଯାଏ ଯେବେ ସହିବ ଦଇବ । ସେ ପ୍ରେମ-ରଜ୍ଜୁରେ ବାନ୍ଧ ହୋଇଣ ବହିବ ଗୋ । ଯେଉଁ ରତି-ରସ ବଶକରଇ ବ୍ରହ୍ମାଙ୍କୁ । ଅଧିକ କି କରିବା ଧୃଷ୍ଟ ଭ୍ରମରକୁ ଗୋ', ସଜନୀ ଏ ମଧୁର ବଚନେ କହିଁ କହିଁ । ଜଗତୀ ପ୍ରବେଶ ସେ କୃପାର ଗୃହିଁ ଗୃହିଁ ଯେ । କୁମାରୀ ବଗୁରେ ସ୍ୱପ୍ନ ସଙ୍ଗ ଦନ ନାଶୀ । ସେହି ଶୁଭଲଗ୍ନ ହେନି ବାହୁଡି କି ଅପି ଯେ । ଏମନ୍ତେ ସେ ରସିକ ପ୍ରକାଶେ ବଚନକୁ । କଣିଲା ଧନ ଜୀବନ ମନ ଲୋଚନକୁ ଗୋ । ୩୪ । ମଧୁ ବିନା ମଧୁପର ଅନ ଗତି ନାହିଁ । ବଧୁ ବିନା ଅଟନ କି କୁମୁଦ ପ୍ରକାଶଇ ଗୋ । ଚନ୍ଦ୍ର ବିନା ଅନ ଗତି ନାହିଁ ଯେ ଜଗତେ । ଅନକୁ ନ ବର ଏକା ବରିବୁ ତୁ ମୋତେ ଗୋ । ଏତିକି ମାଗୁଣି ମୋ ବେଢକୀବରନାକୁ ସେ କୁମର କରୁଁ ଏ ବିନୟ ରଚନାକୁ ଯେ । ୩୫ । ସଖୀ ବୋଲେ ଅସ୍ତୁ ସଖୀ ସତ୍ୟର ଜନନୀ । ବରଣି ଯେ କରିଛୁ ମୁକୁତାମାଳ ଘେନି ଯେ । କୋଟିକଲ୍ପେ ଏ କଥା ହୋଇଛୁ ନାହିଁ ଅନ । ଘନ ତେଜି ଗଙ୍ଗାଜଳେ ଗୃତକର ମନ ଯେ । ତୁମ୍ଭେ ପୁରୁଷେ ସହଜେ ଚନ୍ଦ୍ରମା ପ୍ରକାର । ତାହା-ପତି ହୋଇଲେ କୁମୁଦେ ଭୋଗ କର ଯେ । ଚନ୍ଦ୍ରମୁଖୀ କି ରଖିଛୁ ସଖୀ ଥିଲା ଲାଜ । ମଠନ କରେ ଗଳାରେ ବେଢ଼ାଇ ଦେବ ଭୁଜ ଯେ । ଜାଣି ତାହା ସହଚରୀ ଅନ୍ତର ହେବାକୁ । କୁହକକୁଶଳ ହରି ନେଲା ସେ ମାୟାକୁ ଯେ । କୁମାର କୁମାରୀ ଗତି ଆନକୁ ନ ଦେଶି । ସ୍ୱମାୟୁଣି ଚଦିତେ ସମସ୍ତେ ହେଲେ ତୋଷୀ ଯେ । ୩୬ । ପଠ ହାଟକ କଟକ

---

୩୨ । ସୁନ୍ଦର ସୃଷ୍ଟି ପୁରନ୍ଦର—ଜଗତରେ ଯେତେ ସୁନ୍ଦର ତା ମଧ୍ୟରେ ଏ ପ୍ରଧାନ, ଅଞ୍ଚଳ—କାନି ।

୩୩ । ଶର୍ବରୀ—ରଜନୀ ।

୩୪ । ମଧୂ—ମଧୁ ବା ଅମୃତ, ମଧୁପ—ଭ୍ରମର ।

୩୬ । ସତ୍ୟର ଜନନୀ—ସତକଥା କହିବାରେ ପ୍ରଧାନ ।


Digitized by srujanika@gmail.com

ଘୋଟକ ରଚନ । ହାଟ ବାଟ ଜୁର ଶାଢୀ ବାସ କଲେ ଦାନ ଯେ । ଯେତେ ଲୋକ ଦେଖୁଥିଲେ ଦେଲେ ସର୍ବ ଜୁର । ସବୁରୂପେ ପୂର୍ଣ୍ଣ ହେଲା ମନୋରଥ ତାର ଯେ । ବ୍ୟାକୁଳ ଅନଳେ ଦଗ୍ଧ କୁଟିଳକଟାକ୍ଷା । ଶତ୍ରୁ ମିତ୍ର ହେଲା ପ୍ରାପ୍ତ ମୋହ କଲା ରକ୍ଷା ହେ । ୩୮ । କେତେବେଳ ଏମନ୍ତେ ରହିଲା ଭାବମୟୀ । ଜନନୀ ହକର କେତେ ଦଣ୍ଡକୁ ବଞ୍ଚାଇ ଯେ ଏ ଉତ୍ତରୁ ଶଙ୍କା ଉପୁଜାଇ ଦେଲେ ଆଳୀ । ଗୁପତ କଥା ପ୍ରକଟ ହେଲା ନବବାଳା ଗୋ । ତୁ ରାଜକୁମାରୀ ତୋତେ ହେବ ବଡ଼ ଲାଜ । ସହିବ ଅଳ୍ପ ମହତ୍ତ୍ୱ ନ ପାଇବୁ କାର୍ଯ୍ୟ ଗୋ । ୩୯ । ହଳାହଳ ପାନେ ପ୍ରାଣ-ରକ୍ଷା ବାଞ୍ଛା କରୁ । ସନ୍ନିପାତକୁ ସେ ହିତ ହୁଏ ସିନା ସ୍ୱରୁ ଗୋ । ତେଜ ବେଗ ଜନମିଲେ ଅଜ ରକ୍ଷା କାହିଁ । ଚତୁରୀର ଏତେକ ବିବେକ ହେଉ ନାହିଁ ଗୋ । ଏହି ବଡ଼ ଭୟ ତା ନିଗୂଢ଼ ହୋଇବର । ପଳାଇଲା ପ୍ରାଣକୁ ରଖିଲା ବଳେ ଧରି ଯେ । ୪୦ । ନଷ୍ଟ ଯାଇ କେତେ-ଦିନେ କର୍ଣ୍ଣାଟେ ପ୍ରବେଶ । କୁମାରକୁ କହିଲା ଦୁର୍ଲ୍ଲଭ କନ୍ୟା ବଶ ଯେ । ନାପ ଦେଶ ପଚାରିଲେ ତାହିଁ ପ୍ରକାଶିଲା । କୁମାର ବଚୃରେ ମୋର ସୁକୃତ ଦଶିଲା ଯେ । ଅଘକରୀନ୍ଦ୍ର ପାରିନ୍ଦ୍ର ଅଯୋଧ୍ୟାନରେନ୍ଦ୍ର । ଭାବି ଛାନ୍ଦ ଶେଷ କଲା ଭଞ୍ଜ ଉପେନ୍ଦ୍ର ଯେ । ୪୧ ।



---

୩୮ । ପଟ—ଲୁଗା, ହାଟକ—ସୁନା, କଟକ—ଖଡ଼ୁ, ଘୋଟକ—ଘୋଡ଼ା, କୁଟିଳ କଟାକ୍ଷା—ଯେ ବଙ୍କେଇ କରି ଚାହିଁପାରେ ।

୩୯ । ଜନନୀ ହକର—ମାଇଡାକ, ପ୍ରକଟ—ପ୍ରକାଶ ।

୪୦ । ହଳାହଳ—ବିଷ ।

୪୧ । ସୁକୃତ—ଯଶ, ଅଘ କରୀନ୍ଦ୍ର—ପାପ ରୂପକ ହାତୀ, ପାରିନ୍ଦ୍ର—ସିଂହ ।

ଲାବଣ୍ୟବତୀକ ଦେଖିବା ଉଦ୍ଦେଶ୍ୟରେ କର୍ଣ୍ଣାଟସୁତ ଭୋଜ ବାଜକକୁ ପଠାଇ ଥିଲା । ସେ ସିଂହଳରେ ରାମାୟଣ ଦେଖାଇ ଓ ଲାବଣ୍ୟବତୀକ ମାୟାରେ ଚନ୍ଦ୍ରଭାନୁକୁ ଦେଖାଇ ତାର ଉତ୍କଣ୍ଠା ବଢ଼ାଇ ଫେର ଆସି କୁମାରକୁ କହିବାରୁ ସେ ସନ୍ତୋଷ ହେଲା ।

—o—

## ଷୋଡଶ ଛାନ୍ଦ ।

( ଚନ୍ଦ୍ରଭାନୁର ମିତ୍ର ଆଗରେ ଲାବଣ୍ୟବତୀ ରୂପ କଥନ । )

ରାଗ ଗୁଜ୍ଜରୀ ।

ଇନ୍ଦ୍ରଜାଲକ ମୁଖଁୁ ଶୁଣି । ବଶ ହେବାରୁ ପୃଥୁଶ୍ରୋଣୀ ।
ଚିତ୍ତେଇ ଶୋଭା ଅନୁରାଗ । କଲୁ ପ୍ରକାଶେ ଚିତ୍ର ଆଗ ।
ହା ହା ସେ ନରେନ୍ଦ୍ର କୁମାରୀ । ଅବନୀ ଶିରୀ ସୁକୁମାରୀ ।
ପଲ୍ୟଙ୍କ ଅଙ୍କେ ଶୋଇଥିଲା । ସୁକୃତଦୂତୀ ଭେଟାଇଲା ।୨
ସଂସାରେ ଯେତେ ବୃଷ୍ଟି ଅଛି । ତାଠାରେ ପୃଷ୍ଟି ସେ ହୋଇଛି ।
ଏଣୁ ଜଗତଜୟୀରୂପ । ପୁଣି କନ୍ଦର୍ପ ରସକୂପ ।୩।
ତହୁଁ ନୟନ ମୀନ ପଣ । କି ଚିତ୍ର ବଢ଼ିବାର ଗୁଣ ।
ଅଗ ପଛକୁ ସମ ଶୋଭା । ଶୋଭାବୃନ୍ଦରେ ହେମ ପ୍ରଭା ।୪।
ପ୍ରଭାମାନଙ୍କ ନିଜ ଧାମ । ଅନ୍ୟୋଽନ୍ୟ ନାମରୂପ ସମ ।
ସମ ନୋହିଲେ ଅଙ୍ଗ କାହିଁ । ମୁକୁର ଦେଖାଦେଲେ ଦୁଇ ।୫।
ଅଲଙ୍କାରକୁ ଅଲଙ୍କାର । ନିଶ୍ଚୟ ସେହି ସୁମାବର ।
ଭାବାଦି ଯେତେ ଅଲଙ୍କାର । ସେମାନ ଅଲଙ୍କାର ସାର ।୬।
ଅନୁରାଗର ବଷ ସେହି । ଅନୁରାଗକୁ ଜନମାଇ ।
ଯୌବନଶୋଭା ସେ କାମିନୀ । ଯୌବନ ଶୋଭା ତାହା ଘେନି ।୭।
ମୁଖ ପ୍ରଶଂସା କଳାକର । ତାହା ପ୍ରଶଂସା ମୁଖ ତାର ।
ତା ରୂପ ଅସ୍ତ୍ର କର ଘେନ । ରୂପାସ୍ତ୍ର ବୋଲାଇ ମଦନ ।୮।

---

### ଷୋଡ଼ଶ ଛାନ୍ଦ

୧ । ପୃଥୁଶ୍ରୋଣୀ—ସୁନ୍ଦରୀ, ଚିତ୍ତେଇ—ମନେ କରି, ଅନୁରାଗ—ସ୍ନେହ ।
୨ । ନରେନ୍ଦ୍ର କୁମାରୀ—ରାଜା ଝିଅ, ଅବନୀ ଶିରୀ—ପୃଥିବୀର ଭୂଷଣ, ସୁକୃତ ଦୂତୀ—ପୁଣ୍ୟରୂପକ ଦୂତୀ ।
୩ । କୂପ—କୂଅ, ମୁକୁର—ଆରସି ।
୪ । ବିଷ—ପଦ୍ମନାଡ଼, ଶୋଭାବୃନ୍ଦ—ସୁନ୍ଦର ସମୂହ, ପ୍ରଭା—ତେଜ ।
୮ । କଳାକର—ଚନ୍ଦ୍ର, ରୂପାସ୍ତ୍ର—କନ୍ଦର୍ପ ।

ସୁବାସସାର ସଞ୍ଚାରଣୀ । ଯୋଷାରେ ସସାର କାବେଣୀ ॥
କୁଙ୍କୁମକାନ୍ତି ଅସମରେ । ସଙ୍କୋଚ ବହୁଛି ନାମରେ ।୯।
ସୁନ୍ଦରୀ ପୁରନ୍ଦର ମୋହ । ସୁନ୍ଦରୀପୁରନ୍ଦରୀ ଏହ ॥
ଦେଖି ତା ସର୍ବାଙ୍ଗସୁନ୍ଦର । ଶଚ୍ଚୀ ଶଚ୍ଚିବ ପୁରନ୍ଦର ।୧୦।
କ ତପ କର ଧିବା ଶାଢ଼ୀ । ସେ ବାଲା ପ୍ରତିଅଙ୍ଗେ କଢ଼ି ॥
ଜାଣିଲେ ଯେ ତପ ସାଧନ୍ତି । ତେତିକିବେଳୁଁ ହୁଏ ମତି ।୧୧।
ନିଦ୍ରା ଭଗ୍ନ ସଲଗ୍ନ ବେଳେ । ଭୃଙ୍ଗୀଏ ଅନୁକୂଳ କଲେ ॥
ଲୁଟି ଯେ ଗଲେ ଧୈର୍ଯ୍ୟଧନ । ପ୍ରଥମେ ଧରନେଲେ ମନ ।୧୨।
ଅଙ୍ଗ ଦେଶରେ ନାଇ ପ୍ରୀତି । ହୋଇଥିବେ ଯେ ଦେବ ସନ୍ଧି ॥
କେ କେତେବେଳେ ବଳଅର । ହୋଇଲେ ଅନୁଗ୍ରହ ତାର ।୧୩।
ଉରଜ ପୁରଚକ୍ରବର୍ତ୍ତୀ । ଦେଖାଇ ବଶେଷ ଉନ୍ନତି ॥
ଲେଖାଇ ନେଲା ହାତ ପନ । ହେଲି ବୋଲି ମୁଁ ତୋର ଭୃତ୍ୟ ।୧୪
କନକ ମହୀଧର ଠାରୁ । ହୃଦରେ ରଖିଛି ତା ସ୍ୱରୁ ॥
ଲମ୍ବୁ ସ୍ୱପଙ୍କ ବର୍ଣ୍ଣପନ୍ତି । ହେମାଳୀ ବୋଲାଉଅଛନ୍ତି ।୧୫।
ଯହୁଁ ଏମନ୍ତ ଧୈର୍ଯ୍ୟବନ୍ତ । ରଖି ନ ପାରଲା ଗୁରୁତ୍ୱ ॥
ଅଜ କାହାର ତାକୁ ଗୃହୁଁ । ବାଞ୍ଛା ନୋହୁବ ଦାସ ହୋଇ ।୧୬।
ଚାଲୀ ଚାଳିଲାବେଳେ ନେତ୍ର । ଜୀବନ ହୋଇଲା ଅରତ ॥
ଖେଳି ଅଛୁନ୍ତି କାଳ ଅହ । ଏ ମୋତେ ଦଂଶିବାର ପାଇଁ ।୧୭।
ପିଚ୍ଛଡ଼ାପେଡ଼ା ମଧ୍ୟେ ଥିଲା । କରୂପେ ଫିଟି ଏ ଅଇଲା ॥
ନ ମାନବାରୁ ଗଦ ପଦ । ନିଶସ୍ତ୍ର ହେଲା ବଷବୈଦ୍ୟ ।୧୮।
ଏକାଳେ ନେବ ବୋଧ ତାକୁ । ତାଲି ଏ ଦେବ ଅମୃତକୁ ॥
ଅଙ୍କୁ ତ ହୋଇଲା ଅମର । ଦେଖି ଏ ଶିଶୁ ପ୍ରାପ୍ତ ମୋର ।୧୯।
ଅନୁରାଗ ଗୃହିଣି ସେହ । ଅପାଙ୍ଗ ଥିଲା ସାକ୍ଷୀ ହୋଇ ॥
ଶୋଭା ସେ ଦଶିଲା ଏମନ୍ତ । ଫୁଲ୍ଲାରବନ୍ଦେ ଅଳସୁକ୍ତ ।୨୦।

---

୯ । ପୁରନ୍ଦରୀ—ଇନ୍ଦ୍ରାଣୀ ।
୧୪ । ଉରଜ—କୁଚ, ଚକ୍ରବର୍ତ୍ତୀ—ରାଜାଙ୍କ ମଣ୍ଡଳମଣି ।
୧୫ । କନକ—ସୁବର୍ଣ୍ଣ, ମହୀଧର—ପର୍ବତ ।
୧୭ । ଅହ—ସାପ ।
୧୮ । ପିଚ୍ଛଡ଼ା—ଅଖିପତା, ବଷବୈଦ୍ୟ—କେଳା ।
୨୦ । ଅପାଙ୍ଗ—ଅକ୍ଷି କୋଣ, ଫୁଲ୍ଲାର ବନ୍ଦ—ଫୁଟିଲା ପଦ୍ମ, ଅଳ—ଭଅଁର ।

ଅନଙ୍ଗ ପବନ ବହାରେ । ଝଟିତ ଚାଳିବା ଛଳାରେ ।
ଯେଣୁ ଶୁକ୍ଳ ରଙ୍ଗ କଳା । ପଲକ ହବା ଚିତ୍ର ଭଲ । ୨୧ ।
ଲୋହିତ କି ଇତର ପୁଣ୍ୟ । ତ୍ରିବେଣୀ ଘାଟେ ହଳ ସ୍ନାନ ।
କଟାକ୍ଷ ଅଙ୍କୁଶ ସଦୃଶୀ । ମନମାତଙ୍ଗଙ୍କୁ ଆକର୍ଷି । ୨୨ ।
ଭ୍ରୂଲତା ମାହୁନ୍ତ ଅଟେହି । ତାର ଅଧୂତ୍ର ବହନେଇ ।
ଜାନୁ ଅର୍ଗଳର ନିକଟେ । ଥୋଇ ଶିକୁଳା ନୀବାକୁଟେ । ୨୩ ।
ନିତମ୍ବେ ପକାଇଲା ବାନ୍ଧ । ଭ୍ରମମଦର ପାନେ ବୋଧ ।
ଭାବିଲି ସ୍ୱର୍ଗଦ୍ୱାର ଏହି । ମୋକ୍ଷ ଏଥିରେ ଅଛି ରହି । ୨୪ ।
ସନ୍ନିଧେ ମଧ୍ୟେ ସିଂହ ସ୍ଥିତ । ନୋହିଲେ ହୁଅନ୍ତା ଏମନ୍ତ ।
ନିତମ୍ବ ଚନ୍ଦ୍ରବିମ୍ବ ସତ । ସେ ସ୍ଥାନେ ହୁଅଇ ଉଦିତ । ୨୫ ।
ଲଭିଲି ଯେତେ ପୁଣ୍ୟ ତେତେ । ଲଙ୍ଘି ତା ପାରନ୍ତି କେମନ୍ତେ ।
ଜଘନ ଭଦ୍ରାସନ ଗୋପ୍ୟ । ବିଶ୍ରାମେ ଇନ୍ଦ୍ରପଦ ସ୍ଥାପେ । ୨୬ ।
ଏହି ଅଭୀଷ୍ଟ କରୁଅଛି । ନ ଜାଣି ଧାତା କି ଲେଖିଛି ।
ମନ ବୁଦ୍ଧି ନୟନ ପ୍ରାଣ । ତାହାର କିଣା ହେଲେ ଜାଣ । ୨୭ ।
ଏଣୁ ମୋ ଭଲ ମନ୍ଦ କଥା । ନୋହିଲା ନବୀନବନିତା ।
ମୋର ଦେହରେ ମୋ ଅଧୂତ୍ର । କେହି ରହିଲା ଯେନ ଚିତ୍ର । ୨୮ ।
ଦାହକନକବରଣୀକି । ସୁଭାଗ୍ୟ ଗଲା ମୋର ବକି ।
ଓଷ୍ଠ ପ୍ରବାଳପାଟେ ଥିଲା । ହାସ ମୁକ୍ତାରେ କିଣିଲା । ୨୯ ।
ସେ ତାହା କିଣି ଗଲା ସିନା । ଏବେ ମୁଁ ପାଉଛି ବେଦନା ।
ରତିରତନ ବରତନ । ଦେଇ କରିବାକୁ ଯତନ । ୩୦ ।
କେ ଯାଇ ଜଣାନ୍ତା ମୋ ପାଇଁ । କରୁଣାକଲ୍ପତରୁ ସେହି ।
ଅହା କରନ୍ତା ଏହା ଶୁଣି । ସ୍ତମ୍ଭକୁ ନିଅଇ ସେକ୍ଷଣି । ୩୧ ।
ଦିଅନ୍ତା ଅଂଶତ ସମ୍ପତ୍ତି । ଦହନ୍ତା ପାଇବା ବସତି ।
ମନକୁ ମନାଇ ସେବାରେ । ମଜ୍ଜନ୍ତି ମୁଁ ନିଶି ଦିବାରେ । ୩୨ ।
ଯାହାର ନାସାଫୁଲ୍ଲପଣ । ଫୁଲାଇ ଦେଇ ଫୁଲବାଣ ।
ବସ୍ତ୍ରରେ ଏ ତୂଣୀ ସମରେ । ଅସ୍ତ୍ରେ ତ ଜିଣାଇବ ହରେ । ୩୩ ।

---

୨୨ । ମାତଙ୍ଗ—ହାତୀ ।
୨୬ । ଜଘନ—ଜଙ୍ଘ, ଭଦ୍ରାସନ—ସିଂହାସନ ।
୨୯ । ଦାହ କନକବରଣୀ—ପୋଡ଼ା ସୁନାପର ବର୍ଣ୍ଣ ।
୩୦ । ଶମ୍ବରାରି—କନ୍ଦର୍ପ, ରାମା—ସ୍ତ୍ରୀ ।
୩୩ । ଫୁଲବାଣ—କନ୍ଦର୍ପ, ତୂଣୀ—ଶରମୁଣା ।

ସବୁ ପ୍ରବେଶ ମାନେ ତାଙ୍କୁ । ସେ ପୁଣି ପ୍ରବେଶ ବେଶକୁ ।
ମଳିନ ହୋଇଥିଲେ ବେଶେ । ଜଗତ ମୋହିପାରଇ ସେ । ୩୪ ।
ପଙ୍କ ମଧ୍ୟରେ ପଦ୍ମ ଥାଇ । ଯଥା ରସିକ ଭୃଙ୍ଗ ମୋହି ।
ଯେମନ୍ତ ଦେବତାଏ ଶିରେ । ବହନ୍ତି ବଭ୍ରୁ ସୂର୍ଯ୍ୟ କରେ । ୩୫ ।
ଶର କରନ୍ତି ଶମ୍ବର । ରମା ସୁଷମା ସେହିପର ।
ସ୍ୱଭାବେ ମୋର ବେନି ଅକ୍ଷି । ଯହିଁ ପଡ଼ଇ ରହେ ଲାଖି । ୩୬ ।
ସେ କୋଟି କୋଟି ହୋଇଥିଲେ । ସେ ଶୋଭା ଦେଖିଥାନ୍ତି ଭଲେ ।
ଅଙ୍ଗକେ ଶତ ଶତ ରଖି । ସୁଖୀ ହୁଅନ୍ତି ଦେଖି ଦେଖି । ୩୭ ।
ଯେ ବାଳା ଚରିତ ଅଶେଷ । ଏମନ୍ତ କହୁଁ କହୁଁ ହଂସ ।
ଗୃହୁ ପ୍ରତ୍ୟୁଷ କଲା ଆନ । ଏ ଛାନ୍ଦ ହୋଇଲା ସମ୍ପୂର୍ଣ୍ଣ । ୩୮ ।
ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ । ବରହ୍ମକୋଷରୁ ସମ୍ଭବ ।
ମନୁଷ୍ୟ ଏହି ଅଦ୍ଭୁତ । ଭଞ୍ଜାନୁଭଞ୍ଜ ନାମ ସତ । ୩୯ ।
ବଶିଷ୍ଠ ବଶିଷ୍ଠ ପାଳକା । ଶ୍ରୀରାମେ ଦତ୍ତ ରାଜଟୀକା ।
ସେ କୁଳେ ରାଜା ଧନଞ୍ଜୟ । ସମସ୍ତ ଗୁଣର ନିଳୟ । ୪୦ ।
ଘୁମୁସର ଅଧିକପଣେ । ଲୋକେ ବିଖ୍ୟାତ କବିଗୁଣେ ।
ତଦ୍ଭବ ତାହାଙ୍କ ତନୁଜ । ନରେଶ ନୀଳକଣ୍ଠ ଭଞ୍ଜ । ୪୧ ।
ତାହାଙ୍କ ଜ୍ୟେଷ୍ଠସୁତ ମୁହିଁ । ଉପେନ୍ଦ୍ର ଭଞ୍ଜ ନାମ ବହି ।
ତାରକମନ୍ତ୍ର ପରସାଦେ । ମୋହର କବିପଣ ଉଦେ । ୪୨ ।
କଳଙ୍କବର୍ଜ୍ଜିନ ମୋ ଗୀତ । ଖଳ-ରାହୁରେ ଅଦୂଷିତ ।
ବଚନ ସୁଧାକର ଏହି । ସୁମନାବୃନ୍ଦ ସୁଖଦାୟୀ । ୪୩ ।
ନାରିକେଳ ଯେ ରସପୂର । ଭକ୍ଷି ନ ପାରଇ ବାନର ।
ତାର କି ସ୍ୱାଦୁ ଯଶ ନୋହି । ପ୍ରସଙ୍ଗୁ ଗଲି ମଧ୍ୟ କହି । ୪୪ ।

---

୩୫ । ବଭ୍ରୁ—ବିଷ୍ଣୁ ।
୪୦ । ନିଳୟ—ଘର, ସ୍ଥାନ ।
୪୧ । ତନୁଜ—ପୁତ୍ର ।
୪୩ । ଅଦୂଷିତ—ପ୍ରଶଂସ୍ୟ, ସୁଧାକର—ଚନ୍ଦ୍ର, ସୁମନାବୃନ୍ଦ—ପଣ୍ଡିତମାନେ ବା ଦେବତାମାନେ ।
୪୪ । ନାରିକେଳ—ନଡ଼ିଆ ।

# ସପ୍ତଦଶ ଛାନ୍ଦ ।

( ବୃନ୍ଦୁଗୃହୁ ଲାବଣ୍ୟବତୀର ବାର୍ତ୍ତା ଘେନି ଚନ୍ଦ୍ରଭାନୁ ନିକଟରେ ପ୍ରବେଶ । )

ରାଗ ଶଙ୍କରାଭରଣ ।

ବହିତ୍ର ଲାଗିଲା ଯାଇ ସିଂହଳଦ୍ୱୀପରେ । ସାଧବ ଯୁବତୀମାନେ ଅତି ପ୍ରମୋଦରେ । ଗଲେ ବହିତ୍ର ବନ୍ଦାଇ । ଅର୍ଘ୍ୟସ୍ଥାଳୀମାନ କରେ ହୁଳହୁଳି ଦେଇ । ୧ । ରତ୍ନାକର ସାଧୁତ ଭଗିଣୀ ମେଘମାଳା । ଦଇବେ ସେଦିନ ଭ୍ରାତୃପୁରେ ଯାଇଥିଲା । ତାକୁ ଜାୟା ସଙ୍ଗେ ଦେଖି । ହୋଇଲା ବୋଇତଅଳ ଅତିଶୟ ସୁଖୀ । ୨ । ପୁରେ ପ୍ରବେଶ ଏକାନ୍ତେ ବଲ୍ଲଭା ସଙ୍ଗତେ । ହାସ-କଉତୁକ କେଳେ କହୁଛି ପୁଣିତେ । ଧନ ମୋହ ଗୁଣ ତୋତେ । ମୁଁ ଯାହା ବୋଲିବି ତାହା କରିବୁ ତ୍ୱରିତେ । ୩ । ବିପରୀତ ମାଗିବେ ପରା ଏମନ୍ତ ଘେନି । ଅତିରସିକା ଚତୁରୀ ଦଣ୍ଡେ ହେଲା ତୁନି । କହ ଶୁଣିବା ସେ କଥା । ବୋଇଲା ଲଜ୍ଜିତ ହୋଇ ପୋତିଲା ସେ ମଥା । ୪ । ନାୟକ କହିଲା ତୋ ନଣନ୍ଦ ମେଘମାଳା । ପରିହାସ ତାହା-ଠାରେ ତୋର ପ୍ରବର୍ତ୍ତିଲା । ସେ କୁମାରୀ ପ୍ରାଣ ପରି । ତୁ ତାହାକୁ କହିବୁ କହିବ ଯାଇକରି । ୫ । ବିଦ୍ୟାନଗ୍ର ନୃପତିନନ୍ଦନ ଚନ୍ଦ୍ରଭାନୁ । ଲାବଣ୍ୟ-ବତୀର ଶୋଭା ଶୁଣିଲାରୁ ଦିନୁ । ହୋଇଅଛି ଅତିବଶ । ନ ପାଇଲେ ଜୀବନରେ କ୍ଷଣେ ନାହିଁ ଆଶ । ୬ । ସୁନ୍ଦରପଣକୁ ଅଙ୍ଗ ଗାରେ ବାହି ନାହିଁ । କୁଳେ ଉଜ୍ଜ୍ୱଳ ସାମର୍ଥେ ଭୋଗ କରେ ମହୀ । ଅବଧି ତ ହେବ ବିଭା । ଭଜୁ ସେ ରସିକକୁଞ୍ଜରକୁ ମହୀଶୋଭା । ୭ । ସୁମନା ବୋଇଲା

---

## ସପ୍ତଦଶ ଛାନ୍ଦ

୧ । ବହିତ୍ର—ବୋଇତ, ( ଡଙ୍ଗା ବା ଜାହାଜ ) ସାଧବ—ସାହୁକାର, ଯୁବତୀ—ସ୍ତ୍ରୀ, ପ୍ରମୋଦ—ଆନନ୍ଦ ।

୨ । ରତ୍ନାକର—ଜଣକର ନାମ, ସାଧୁତ—ବଣିକ, ଭଗିନୀ—ଭଉଣୀ, ଭ୍ରାତୃପୁରେ—ଭାଇ ଘରେ, ଜାୟା—ସ୍ତ୍ରୀ, ବୋଇତଅଳ--ବଣିଜାର, ବଣିକ ।

୩ । ଏକାନ୍ତ—ଏକୁଟିଆ, ତ୍ୱରିତେ—ଶୀଘ୍ର ।

୪ । ବିପରୀତ—ଓଲଟା ।

୫ । ପରିହାସ—ଥଟ୍ଟା ।

୬ । ଗାରେ—ଲେଶ ମାତ୍ର, ମହୀ—ପୃଥିବୀ, ରସିକ କୁଞ୍ଜର—ରସିକ ଶ୍ରେଷ୍ଠ, ମହୀଶୋଭା—ପୃଥିବୀର ଭୂଷଣ, ଶ୍ରେଷ୍ଠ ସୁନ୍ଦରୀ ଲାବଣ୍ୟବତୀ ।

ଦେଖ ଏ ପ୍ରାଣ ଯାହାର । ଏ କଥାକୁ କାହିଁ ପାଇଁ ନିସ୍ପୃହ ତାହାର । ଏତେ କହି ଗଲା ଉଠି । ମେଘମାଳା ପାଶରେ ପ୍ରବେଶ ସମ୍ବର୍ତ୍ତେଷ୍ଟୀ । ୮ । ବସି ପାଶେ ଘଡ଼ିଏ ମାତିଲା ପରିହାସେ । କ୍ରମଶେ କ୍ରମଶେ କଥା ପକାଇଲା ବଶେ । କେମା ବର୍ଣ୍ଣ ନୋହିବେ କି । କି ଉପାୟ ତାତ ମାତ କରନ୍ତି ଏଥିକି । ୯ । ସେ ସମା ଉଚ୍ଚକଥିଲା କନ୍ଦୁର୍ଗୃସ ଶୁକ । କୌଣସୁଗ୍ରୀ ତା ସଙ୍ଗତରେ କର ଅବଲୋକ । ଏବେ ମନରେ ବଖୁରେ । ଭ୍ରାତା ବହି ପଠିଅଛନ୍ତି ଏହା କରେ । ୧୦ । ମାଳିନୀ କହିବାର ଅଧୃଷ୍ଟ ଯତ ହୋଇ । ମୁଁ କମାଇଁ ଲୁଚିବଟି ପଣୀର ବଢ଼ାଇ । ପାଶିଁ ଏମନ୍ତ କହିଲା । ଯମେ ବର ମିଳିଲେ ସବାହ ହେବ ବାଲା । ୧୧ । ମାନସର ହେଲେ ସିନା ମରାଳ ବସିବ । ମେଘନୀର ହେଲେ ସିନା ଗୃତକ ତୋଷିବ । ମନେ ମନହିଁ ମିଶିବ, ଚନ୍ଦ୍ର ହେଲେ ସିନା ଚକୋରକୁ ଉଲ୍ଲାସିବ । ୧୨। ରତ୍ନ ମଞ୍ଜୁଷରେ ଯେବେ ହୋଇଲ ରସିବ । ତେବେ ସିନା ଅତଅନ୍ତ ସୁନ୍ଦର ଦଶିବ । ଶୁଣି ଏ କହେ ଏମନ୍ତ । ଏହି ସଧିରେ ମିଳୁଲେ ହେବ କି ସମ୍ମତ । ୧୩ । ଦ୍ୱିତୀୟା ବୋଲେ ସମ୍ମତ ନୋହିବ କାହିଁକି । ବଧାତା ଘଟାଇ ଦେଇ ଯେ ଯୋଗ୍ୟ ଯହିଁକି । ପ୍ରତିବନ୍ଧ ଅଛି ଏତେ । ସ୍ୱପ୍ନବଶେ ପ୍ରତ୍ୟକ୍ଷେ ଦେଖିଛି ଦନେ ସ୍ୱଚ୍ଛେ । ୧୪ । ଦୀର୍ଘନେତ୍ରୀ ସତ୍ୟ-ଜନୟିତ୍ରୀ ବୋଲି ଜେନ । ଅଙ୍ଗୀକାର କଲା କଥା ନ କରବ ଆନ । ସତ୍ୟେ ବସ ଭଷି ହର । ସତ୍ୟେ ଲଙ୍ଘି ନାହିଁଟି କୂଳକୁ ଅକୂପାର ।୧୫। ଅସୁରଯୁବତୀ ବୃନ୍ଦାବତୀ ପୂର୍ବେ ଥିଲା । ଶ୍ରୀପତି କେତେ ସୁନ୍ଦର ବର ନ ରସିଲା । ମାୟାଧର ଛଳେ ମାୟା । ସତ୍ୟ ଘେନି ଅନଳେ ଦହନ କଲା କାୟା । ୧୬ । ତଥାପିହିଁ ଶୁଣି ତା ସେ କେମନ୍ତ ସୁନ୍ଦର । ପ୍ରଥମା କହେ

---

୮ । ସୁମନା—ସ୍ତ୍ରୀ ।
୯ । ବଶେ—ବିଷୟରେ ।
୧୦ । ଅବଲୋକ—ଦେଖିବା ।
୧୨ । ମାନସର—ମାନ ସରୋବର, ମରାଳ—ହଂସ ।
୧୩ । ମଞ୍ଜୁଷା—କଡ଼ୀ, ବଉଲ, ସମ୍ମତ—ରାଜି ।
୧୪ । ପ୍ରତିବନ୍ଧ—ବାଧା ।
୧୫ । ଦୀର୍ଘ ନେତ୍ରୀ—ଲମ୍ବା ଆଖି ଯାହାର ଲାବଣ୍ୟବତୀ, ସତ୍ୟ ଜନୟିତ୍ରୀ—ଯେ ସତକଥା କହେ ସତୀ, ଅଙ୍ଗୀକାର—ସ୍ୱୀକାର, ଅକୂପ ର—ସମୁଦ୍ର ।
୧୬ । ଅସୁର ଯୁବତୀ—ମୟୂଦୈତ୍ୟ ସ୍ତ୍ରୀ, ଶ୍ରୀପତି—ବିଷ୍ଣୁ, ମାୟାଧର—ବିଷ୍ଣୁ, ଦହନ—ପୋଡିବା, କାୟା—ଦେହ ।

ଜାଣିଛି କାମାବେଶ ତାର । କାହିଁପତ ପ୍ରିୟସୁତ । ଚନ୍ଦ୍ରଭାନୁ କେମାରେ
ହୋଇଛି ଅନୁରକ୍ତ । ୧୭ । ଏତେ ବୋଲି ପ୍ରାଣପ୍ରିୟପାଶକୁ ଗମନ ।
ପୁନରପି କହନ୍ତି ସେ ସକଳ ବିଧାନ । ଯେଣି ବ୍ରହ୍ମଚଷ୍ଟି କୀର । ପୋତ-
ପାଳ ବସି କରେ ଏମନ୍ତ ବିଚର । ୧୮ । ତ୍ରିବିଧ ଦୂତ ଶାସ୍ତ୍ରରେ ଲକ୍ଷିତ
ହୋଇଛି । ତ୍ରିବିଧ ଦୂତରୁ ଅତ କାର୍ଯ୍ୟ ନାହିଁ କିଛି । ପଢ଼େ ଯେଉଁ
କାର୍ଯ୍ୟ ଯହିଁ । ସେ କାର୍ଯ୍ୟ ନିର୍ବାହ କରେ ପ୍ରତ୍ୟୁତ୍ତର ଦେଇ । ୧୯ । ପ୍ରଭୁ
ପଚାରିଲେ ଶଙ୍କା ନ ଥାଇ ଯାହାର । ତାହାକୁ ସଂସାରେ କହି ସ୍ୱର୍ଣ୍ଣସ୍ୱାର୍ଥ
ଚର । ଦୂତ ହେଲେ ମିଛ କହି । କାର୍ଯ୍ୟକାଳେ ମିଥ୍ୟା କହିବାର
ଦୋଷ ନାହିଁ । ୨୦ । ନର ଅବା କୁଞ୍ଜର ବା ଅଶ୍ୱଥାମା ହତ । କାର୍ଯ୍ୟେ
କହିଲେଟି ଯୁଧିଷ୍ଠିର ସତ୍ୟବନ୍ତ । ଅମ୍ଭେ କହିବା ଏମନ୍ତ । ଚିତେ ସ୍ୱପ୍ନେ
ଦେଖିଛି ବା ତାକୁ ନୃପସୁତ । ୨୧ । ବ୍ରହ୍ମଚଷ୍ଟି କହନ୍ତି ଚତକ ଯହିଁ
ଥାଇ । ସେହିସ୍ଥାନେ ନିତି ନିତି ଘନ ବରଷଇ । ସ୍ୱପ୍ନେ ଦେଖିଅଛି ବୀର ।
ପରମ କରମବନ୍ତମାନଙ୍କେ ସେ ସାର । ୨୨ । ବନଦୁର୍ଗୋପାସନା
ମୋର ସବୁ ଦିନେ । ସେ କହିଲେ ଅସୁ ଅସୁ ଦେଖିଲି ସ୍ୱପନେ । ଜାଣି
ସାକ୍ଷାତ ପ୍ରକାର । ବେନି ଚିତ୍ର ରଚିତ କରନ୍ତୁ ପରସ୍ପର । ୨୩ । ଏତେ
ବୋଲି ଶୁକ ଦେଲେ ମେଘମାଳା କରେ । ଅଦୂର୍ଯ୍ୟ ପ୍ରାନ୍ତଯାଏ ଛଥନ
ସେ ଧୀରଗିରେ ମେଧାବତୀ ଯେଣି ସଖୀ । ଅବରୋଧରେ ଯାଇଣି
ଭେଟିଲା ସୁମୁଖୀ । ୨୪ । ପୁଂସପ୍ରତିରୂପ ଚିତ୍ର ଲେଖା ଯେଉଁ ପୁଟେ ।
ତହିଁ ଶୋଇଛନ୍ତି ନବୀନା ପଲ୍ଲବଶେଯରେ । ବାଡ଼ଚିତ୍ର ଚହିଁ କୀର । ହେଲା
କାର୍ଯ୍ୟ ବୋଲିଣି ଚିତ୍ରକୁ କଲା ସ୍ଥିର । ୨୫ । ଅନାଇଁଲା ସେ ଶୋଭା
ହୋଇଛି ଅନ ଅନ । କୈଳାସପର୍ବତ ପ୍ରାୟ ମେରୁ ପର ସ୍ତନ । ନେନେ
ପୂରିଅଛି ଜଳ । ଦୂର କରିଦେଇଅଛି ଉଜ୍ଜ୍ୱଳ କଜ୍ଜ୍ୱଳ । ୨୬ । ଫାଟିଫୁଟି

---

୧୮ । କୀର—ଶୁଆ, ପୋତପାଳ—ଜାହାଜ ଚାଳକ ବା ବଣିକ ବୋଇତଅଳ ।
୧୯ । ତ୍ରିବିଧ—ତିନି ପ୍ରକାର ।
୨୦ । ଶଙ୍କା—ଭୟ, ସ୍ୱର୍ଣ୍ଣସ୍ୱାର୍ଥ—ଅତି ଉତ୍ତମ, ଚର—ଦୂତ ।
୨୧ । ୨୨ । କୁଞ୍ଜର—ହାତୀ, ପରମ—ଶ୍ରେଷ୍ଠ, କରମବନ୍ତ—ଭାଗ୍ୟବନ୍ତ, କପାଳିଆ ।
୨୪ । ଅବରୋଧ—ଅନ୍ତଃପୁର, ସୁମୁଖୀ—ସୁନ୍ଦରୀ ।
୨୫ । ପ୍ରତିରୂପ—ଛବି, ବାଡ଼ଚିତ୍ର—କାନ୍ଥଚିତ୍ର,
୨୬ । ତନୁ—ଦେହ, ନଭ—ଆକାଶ, ଶଶୀ—ଚନ୍ଦ୍ର

ପଡୁଅଛି ମୁକ୍ତାମାଳିକା । ଚନ୍ଦନ ପଙ୍କ ତନୁରେ ହେଉଛି ଫୋଟକା । ନଭେ ଦ୍ୱିତୀୟାର ଶଶୀ । ଉଦୟ ହେଲା ପରାୟ ଶେଷେ ଶୋଭା ଦିଶି ॥ ପାକ କଲା ଶାକ ପ୍ରାୟ ଜଳଜର ପୂର୍ଣ୍ଣ । ମୃଣାଳନାଳ ପଡିଲା ମାନେ ଗାତ୍ରେ ବର୍ଣ୍ଣ । ଉଶୀରର ଲେପ ଯହିଁ । ତପତ ଲୋହେ କମ୍ବାଳ ପରାୟ ଶୁଖଇ ॥ ବଜ୍ର ଶାଣେ ବସିଲେ ନ ତୁଟେ ଶୋଭା ଯଥା । ତଥା କ୍ଷୀଣ ହେଲେ ଲଭି ମନମଥ ବ୍ୟଥା । ଶୋଭା ହୋଇନାହିଁ ହତ । ରତ୍ନ ରତ୍ନଙ୍କ ସମାନ ନୋହିବ ଏମନ୍ତ । ୨୯ । ଦନ୍ତି-ଦନ୍ତପିତୁଳା କି ରଜତପିତୁଳା । ତୁଳା-କୋମଳାଙ୍ଗୀ ବହିଅଛି ଏହି ତୁଳା । ଗଣ୍ଡେ ବହେ ଲୁହଧାର । ପୋଛି-ବାରୁ କେବଳ ଦିଶୁଛି ତେତେ ଗୋର । ୩୦ । ଦେଖିବାର ଲୋକେ ନୋହିବାକୁ ଭ୍ରମବନ୍ତ । ରମା ବହିଛି କି ଏତେ ହେମାଙ୍ଗୀ ସଙ୍କେତ । ହାସହାନେ ଦଶେ ମୁଖ । ଦିନ ଥାଉଁ ଉଦୟ କି ବଶଦମୟୂଖ ।୩୧। ଶୁକ ଏ ଦଶାକୁ ତାର ଅନାଇଁ ବସ୍ତୁରେ । ଧାତାର ଦାରୁଣ ହୋଇ ନାହିଁତ ସଂସାରେ । ଏତେ ଦୁଃଖ ତ ଏହାର । ଏତେ ଏତେ ବିଧି କଲା କେବଣ ବୁଦ୍ଧିର । ୩୨ । ଭୋଗୀଭୋଗକୁ ପୋଷିଲା ମଳୟଅନଳ । ଶିବ ଭାଗେ କଲା ସିନ୍ଧୁ ମନ୍ଥନେ ଗରଳ । ଦେଲା ରାହୁକୁ ଅମୃତ । କଳାନିଧି ପର ଦ୍ରବ୍ୟେ କଳଙ୍କ ଅଙ୍କିତ । ୩୩ । ତୀର୍ଥରାଜଜଳ କଲା ଲବଣ ସହିତ । ଧର୍ମେ ନୀଚପରାଭବ ବହିଲା ଯେମନ୍ତ । ତଥା କୋମଳ ପିଣ୍ଡକୁ । ବହିଲା ଉଦ୍ଦଣ୍ଡ ଫୁଲ-କୋଦଣ୍ଡ ଦଣ୍ଡକୁ ।୩୪। ଧୈର୍ଯ୍ୟ ରଖି ନ ପାରି ସେ ପୁଚ୍ଛିଲା ଏସନ । ଥୋକାଏ ଦିନ ହୋଇଲା ବୋଲି ପାଶୁଁ ଭଜନ । କ୍ଲେଶ ସ୍ୱଚ୍ଛର ହୃଦୟେ । ନ ବହି କି କଥା ଏହୁ କହ ତ ନିଶ୍ଚୟେ ।୩୫। ଏ ବଚନେ

---

୨୮ । ଶାକ—ଶାଗ, ପାକ—ସିଦ୍ଧ, ମୃଣାଳନାଡ଼—ପଦ୍ମନାଡ଼, ଗାତ୍ର—ଦେହ, ଉଶୀର—ବେଣା, ତପତ—ତତଲା, ଲୋହ—ଲୁହା, କମ୍ବାଳ—କାହୁଥ,

୨୯ । ମନମଥ—କନ୍ଦର୍ପ,

୩୦ । ଦନ୍ତୀ ଦନ୍ତ—ହାତୀ ଦାନ୍ତ, ପିତୁଳା—ପ୍ରତିମା, ରଜତ—ରୁପା, ତୁଳକୋମଳାଙ୍ଗୀ—ତୁଳାଭଳି ନରମଦେହୀ,

୩୧ । ହେମାଙ୍ଗୀ—ସୁନାଦେହୀ, ବିଶଦମୟୂଖ—ଚନ୍ଦ୍ର,

୩୩ । ଭୋଗୀ—ଭୋଗ—ସାପରଭୋଗ; ଅନଳ—ପବନ, ଗରଳ—ବିଷ କଳାନିଧି—ଚନ୍ଦ୍ର,

୩୪ । ତୀର୍ଥରାଜ—ସମୁଦ୍ର, ଧର୍ମେ—ଧର୍ମକାଳରେ, ନୀଚ—ହୀନ, ପରାଭବ—ଅପମାନ, ଉଦ୍ଦଣ୍ଡ—ଦୁଷ୍ଟ, ଫୁଲକୋଦଣ୍ଡ—କନ୍ଦର୍ପଧନୁ,


Digitized by srujanika@gmail.com

ଚଞ୍ଚଳଲୋଚନେ ବାଳା ଗୃହିଁ । ଶଢ଼ିଲ୍ଲ ଅପଣାର ପୋଷିଲ୍ଲ ଶୁକ ତହିଁ । ବଗୃବଲ୍ଲ ଶୁଭ ହେଲ୍ଲ । ଶିବ ଅଙ୍କ ଘଟିଲ୍ଲ ଚତୁର୍ଗ କହୁଥିଲ୍ଲ । ୩୬ । ତାଙ୍କ ନଗରକୁ ସଖୀ ନେଇଥିଲ୍ଲ ମାଗି । ଜାଣିଲ ସେ କୁମର ମୋହରେ ଅନୁ- ରାଗୀ । କମ୍ପା ନୋହିଲେ ଅଛଲ୍ଲ । କହ ବୋଲି ନେତ୍ରାନ୍ତରେ ସଖୀକ ଠାରିଲ୍ଲ ।୩୭। କହୁଛୁ ହେମମଞ୍ଜରୀ ଫଳାଣନ ଗୃହିଁ । ଯେଙ୍କ ଦନ ସ୍ୱପନେ ଏ ହେଲ୍ଲ ଭୂତସ୍ନେହୀ । ପ୍ରେତ ଅତନୁ ବଗୃର । ପ୍ରେତପତପାଶେ ନେବ ଜୀବନ ଏହାର । ୩୮ । ଶୀତଭାନୁ ଏହୁ ନାମ ଆଦ୍ୟ ଦ୍ୱିଅକ୍ଷର । ଲ୍ଲଭ ସନ୍ତାପିତ କରୁଅଛୁ ନିରନ୍ତର । ତେଜ ଅନଳ ପ୍ରକାର । ବହିବାରୁ ଦହୁ ହେଉଅଛୁ କଳେବର । ୩୯ । ପିକ ଭଳ ପ୍ରଥମରେ ଅକାର ବହୁଛୁ । ଯାମହିଁ ଆକାର ବନା ବାଳାରେ ହୋଇଛୁ । ଜଣା ନ ଯାଇ କ ଦଶା । ଏଣୁ ନଦୀ ବପରୀତ ହୋଇଲ୍ଲ ସୁବୃଶା ।୪୦। ଶୁକ ଏ ଉତ୍ତର କଲ୍ଲ ଭଉରେ ଯେ ଲେଖା । ଏ ପୁରୁଷ ବନୁ ତ ଅନକୁ ନାହିଁ ଦେଖା । ଏହୁ ଦେଖିଛୁ ବାଳାକୁ । ଶବସ୍ୱପ୍ନେ ଶନ୍ତା କରେ ନିରତେ ଲୀଳାକୁ । ୪୧ । ଏହା ବରହକୁ ତା ବରହ ଅଛୁ ବଳ । ଅନୁରାଗୀ ମଧ୍ୟେ ଏ ଦୁହିଙ୍କି ସାର କଲ । ଧାତା ସୁନ୍ଦର ଫସାରେ । ଜନୁ ରଜା କରଅଛୁ ସ୍ତ୍ରିରୀ ପୁରୁଷରେ ।୪୨। ତା ହୃଦବନରେ ଜଳୁଅଛୁ କାମାନଳ । ଘନ ହୋଇ ଘନରସବଣରୁ ଶୀତଳ । କରୁ କରକରଦନା । ତପତ ଲୋହ ଜମ୍ବାଳ ଏହାର ବେଦନା ।୪୩। ନ ହରବ ନିକ ଚନ୍ଦ୍ର-ଭାନୁ ସେ ବୋଲ୍ଲର । ଉଦୟୁ ଲଭିଛୁ ସିନା ଏହୁ ତାପ ପାଇଁ । ଶୁଣି ଏ କଥା ତାହାର । ବୋଇଲେ ଲଳନାକୁ ପାଳନ ପୁନଃ କର । ୪୪ । ତେଇ ଲେଖି ଅତ୍ୟନ୍ତ କାତର କାମୁଁ ରଖ । ଶୁକର ଏ

---

୩୭ । ଅନୁରାଗୀ—ସ୍ନେହୀ,

୩୮ । ଅତନୁ—କନ୍ଦର୍ପ, ପ୍ରେତପତ—ଯମ

୩୯ । ଶୀତଭାନୁ—ଚନ୍ଦ୍ର ସୂର୍ଯ୍ୟ(ପର ଲାଗୁଛୁ,) ନରନ୍ତର—ସର୍ବଦା, କଳେବର— ଦେହ,

୪୦ । ପିକ—କୋଇଲି, କଳ—ରବ, ଯାମ—ଦଣ୍ଡ ବା କ୍ଷଣ, ଏଠାରେ ଯାମ ଅକାର ଗଲେ ଯମ ନଦୀ—ବପରୀତ ଦୀନ—ଦୁଃଖୀ ହୋଇଛୁ—

୪୧ । ଭଉ—କାନ୍ଥ, ନରତେ—ସର୍ବଦା,

୪୨ । ଘନ—ମେଘ, ଘନରସ—ମେଘପାଣି, କରକରଦନା— ଭୁଅପଥର ପର ଦନ୍ତ ବା ଡ଼ାଳମ୍ବ ମଞ୍ଜିପର ଦନ୍ତ,

ବାଣୀ ଶୁଣି ସର୍ବେ ଲଭି ସୁଖ । ସେ ବୋଇଲେ ଅମ୍ଭେ ନାସ୍ତି । ପ୍ରଥମରେ ଲେଖିବୁଁ ହି ପତ୍ରିକା କ ଭବ । ୪୫ । ରବିକର ପରଶେ ପଦ୍ମକୁ କରେ ତୋଷ । ପଲ୍ଲବେ ଲତା ଉପସ୍ଥିତରେ ମଧୁମାସ । ଚୂତ ମୁକୁଳ ଅଶନ । ହୋଇଲେ ସିନା କହଇ କୋକିଳ ବଚନ । ୪୬ । ଘନ ଗରଜିଲେ ସିନା ମୟୂର ଅନାଇଁ । ଆନନ୍ଦରେ ନୃତ୍ୟ କରି ବାଣୀ ପ୍ରକାଶଇ । କୀର ବୋଇଲା ଏ ସତ । ତେବେ ପ୍ରେମପତ୍ର ଯାଇ ଆଣୁ ଆମ୍ଭ ଦୂତ । ୪୭ । ମେଘମାଳା ପଠିଆଇ ବୋଧି ବ୍ରହ୍ମଗୃଷ୍ଠ । ଯେତେ କହିଲେ ତା ଅଗେ କହିବା ବିସ୍ତାରି । ଗଲା ସେ କୁମାରପାଶ । ନାରୀମାନସ ଉଲ୍ଲାସ ଛନ୍ଦ ହେଲା ଶେଷ । ୪୮ । ମହିଷ ଶଳଯିତ୍ରୀ ଅତି ସୁରଭି ସ୍ୱରୂପ । ସଦାଶିବ ସୁଖଦାନ କରଣେ ଲୋଲୁପ । ରାମ ଦୁର୍ଗା ଇଷ୍ଟଦେବୀ । ଉପେନ୍ଦ୍ର ବୀରବର ଦୁଃଖନାଶେ ଭାବି । ୪୯ ।

---o---

## ଅଷ୍ଟାଦଶ ଛାନ୍ଦ ।

( ବ୍ରହ୍ମଗୃଷ୍ଠ ଚନ୍ଦ୍ରଭାନୁ ଠାରୁ ପତ୍ର ନେଇ ଲାବଣ୍ୟବତୀ ପାଖରେ ପୁନର୍ବାର ପ୍ରବେଶ । )

ରାଗ ମାଳବ ।

ଶୁଣ ବିଶୁଦ୍ଧ ବୁଧ ଏଥୁଅନ୍ତେ । ଚିତ୍ରରୁ ଚିତ୍ର ଚରିତ୍ର ସୁଚିତ୍ତେ । ୧ ।

---

୪୬ । ରବିକର—ସୂର୍ଯ୍ୟ କିରଣ, ମଧୁମାସ—ବସନ୍ତଋତୁ, ଅଶନ—ଭକ୍ଷ,
୪୭ । ନୃତ୍ୟ—ନାଚ,
୪୮ । ମହିଷବଳଯିତ୍ରୀ—ରାକ୍ଷସ ଜୟକାରୀ, ମହିଷାସୁର ନାଶକାରୀ, ସୁରଭି—ସୁନ୍ଦର, ଦେବତା ଗାଇ, ଲୋଲୁପ—ଲୋଭ,

ସାଧୁ ବା ବଣିକ ଶୁଆକୁନେଇ ଯାଇ ଶୁଆ ସେଠାରେ ଚନ୍ଦ୍ରଭାନୁକୁ ଦେଖି ଏ ସବୁ ବୃତ୍ତାନ୍ତ ଜାଣି ଆସି ଲାବଣ୍ୟବତୀ କ କହନ୍ତେ ଲାବଣ୍ୟବତୀ ଉଛାଠରେ ପତ୍ର ଦେବାକୁ କହିବାରୁ ସଖିମାନେ କହିଲେ ସ୍ତ୍ରୀର ଆଗରୁହି ପତ୍ରଦେବା ବିଧି ନୁହେ ତେଣୁ ବ୍ରହ୍ମଗୃଷ୍ଠ କ ପଠାଇ ତାଙ୍କଠାରୁ ପତ୍ର ଅଣିବାର ବ୍ୟବସ୍ଥା କଲେ ।—

---o---

## ଅଷ୍ଟାଦଶ ଛାନ୍ଦ ।

୧ । ବିଶୁଦ୍ଧ—ପବିତ୍ର, ଶ୍ରେଷ୍ଠ, ବୁଧ—ଜ୍ଞାନୀ, ପଣ୍ଡିତ, ଚିତ୍ର—ଆଶ୍ଚର୍ଯ୍ୟ, ଚରିତ୍ର—ବିଷୟ, ଆଚରଣ,

କୁମର ଗୃହମିତ୍ର ସଙ୍ଗେ ବସି । ବୀଣାଜିଣା ବାଣୀ ପ୍ରସଙ୍ଗ ଭାଷି । ୨ ।
ପ୍ରେମବୀଜ ତାର ରୋପିତ ହୃଦେ । ରୋମାଞ୍ଚିତ ବ୍ୟାଜେ ଅଙ୍କୁରଉଦେ ॥
ତାହାକୁ ବୃଦ୍ଧି କରିବାର ପାଇଁ । ସ୍ୱେଦ ସଲିଳ ପ୍ରକାଶିତ ହୋଇ । ୪ ।
ବୋଲଇ ଅଦ୍ଭୁତସ୍ଥଳୀ ସୁନ୍ଦରୀ । ଫୁଲକୁ ଫଳ ଯେଣୁ ଜାତ କରି । ୫ ।
ଏ ଯେଣ କରଇ ବିବେକ ବଣା । ଫୁଲରୁ ଫଳ ଜାତ ଥିଲା ଶୁଣା । ୬ ।
ଶଙ୍ଖ ଉପରେ ପଦ୍ମ ବିକଶିତ । ଏହୁ ନୁହଇ କି ଅତି ଅଦ୍ଭୁତ । ୭ ।
ପଦ୍ମ-ମଧ୍ୟରୁ ଶଙ୍ଖ ଜାତ ଶୁଣି । ବସ୍ତୁ ବହୁଛନ୍ତି ବିଚିତ୍ର ପୁଣି । ୮ ।
ନ ପୁଣି ଚିତ୍ତରୁ ହୋଏ ବିସୋର । ଭଲ ନିଧି ନାମ ଦେଲେ କୁବେର ॥
ସଂସାରେ ପ୍ରକଟ ହେବାକୁ ଧାତା । ସଂଖ୍ୟା ଗଣନାରେ ରଖିଲା କି ତା ।୧୦
ପୁଣି ନୟନଯୁଗେ ଦେଖିଅଛୁ । କେମନ୍ତ ପ୍ରକାରେ ପାରିବ ମୂର୍ଚ୍ଛି । ୧୧ ।
ଏମନ୍ତ ପ୍ରକାଶ କଥନ ବେଳେ । ବ୍ରହ୍ମଗୃହୀ ଅସି ସ୍ଥମ୍ଭରେ ମିଳେ । ୧୨ ।
ନମସ୍କାର କରି ଦେଇ ଆସନ । ସାଧୁତ ଶୁକ ନ ଦେଖି ଉଚ୍ଛନ୍ନ । ୧୩ ।
ଭାବେ ମୋର ଯେତେ ସୁକୃତ ଥିଲା । ସ୍ୱପ୍ନ ଦର୍ଶନ ଦିନ ଭୋଗ ହେଲା ॥
ଏବେ ତ ସୁକୃତ ହୋଇଛୁ ଊଣା । କାହିଁକି କରିବ ବାଳା କରୁଣା ।୧୫।
ଦୁର୍ଲ୍ଲଭ ପଦାର୍ଥେ ଦେବାରୁ ମନ । ଅଜ ହୋଇଲା ମୋ ମରଣ ଦିନ ॥
ସେ ବାଣୀ ସଙ୍ଗେ ଜୀବନ ଯିବୁଟି । ରହୁ ବ୍ୟାକୁଳ ମୋତେ ନ ଦେବୁଟି ॥
ଦ୍ୱିଜ ରୀତ ଦେଖି ବିସ୍ମିତ ଭଲା । ନ ଭଜିଲା ଶଙ୍କା ଏହାର ହେଲା । ୧୮ ।

---

୩ । ପ୍ରେମବୀଜ—ପ୍ରେମମଞ୍ଜି, ରୋମାଞ୍ଚିତ—ରୋମଟାଙ୍କୁରିବା, ବ୍ୟାଜେ—ଛଳନାରେ, ଅଙ୍କୁର—ଗଜା,
୪ । ସ୍ୱେଦ ସଲିଳ—ଝାଳପାଣି,
୫ । ଅଦ୍ଭୁତସ୍ଥଳୀ—ଆଶ୍ଚର୍ଯ୍ୟ ଜାଗା,
୬ । ବିବେକ—ବୁଦ୍ଧି ବିଚାର, ବଣା—ଭୁଲ,
ଫୁଲ ଦେହରୁ ଫଳ ହୁଏ ମାତ୍ର ଲାବଣ୍ୟବତୀର ଫଳ ସ୍ୱରୂପ କୁଚ ହେବାରୁ ସେ ପୁଷ୍ପବତୀ ହେଲା—
୭-୮ । ବିକଶିତ—ପ୍ରକାଶିତ, ବିଚିତ୍ର—ଆଶ୍ଚର୍ଯ୍ୟ,
୯ । ବିସୋର—ଭୁଲିବା, ନିଧି—ସମୁଦ୍ର, ଏଠାରେ ଲାବଣ୍ୟନିଧି,
୧୧ । ନୟନଯୁଗ—ଚକ୍ଷୁ ଦୁଇ. ମୂର୍ଚ୍ଛି—ସ୍ଥିର,
୧୩ । ଆସନ—ବସିବାଜାଗା,
୧୪-୧୫ । ସୁକୃତ—ପୁଣ୍ୟ, କରୁଣା—ଦୟା,
୧୮ । ଦ୍ୱିଜ—ବ୍ରହ୍ମଗୃହୀ, ରୀତ—ଢଙ୍ଗ, ଶଙ୍କା—ଭୟ,

ଅଣକା ତାହିଁକି ନ ଥିବ ପୁଣି । ସ୍ୱର୍ଗକୁ ପକାଉଅଛୁ ନିଃଶ୍ରେଣୀ । ୧୯ ।
ପୂର୍ଣ୍ଣ ଚନ୍ଦ୍ରକୁ ବଢ଼ାଉଛୁ ପାଣି । ତମରଜନୀରେ ଦେଖିବ ପୁର୍ଣ୍ଣ । ୨୦ ।
କହିଲ ଏମନ୍ତ ବଚନ ଛଳ । କରୁଣା-ବୃକ୍ଷ କି ନିର୍ଗୁଣ ଫଳ । ୨୧ ।
ମାନସ ଦେଇ ସେବିଲେ ମହେଶ । ପ୍ରାଣୀର ବ୍ୟାଧି କି ନୁହଇ ନାଶ ।୨୨
ଯାଚକ ଦାନ ମାଗିଯାଇ କଣ୍ଠେ । ଶୂନ୍ୟେ ଅସିଛୁ କି ଶୁଣିଛ କଣ୍ଠେ ।୨୩।
ମେଘ କି କରେ ଅଳପ ବରଷା । ନିଷ୍ଫଳ କାହିଁ ହୋଇଛୁ ତପସ୍ୟା ।୨୪।
ଏ ବାଣୀ ରାଜାଙ୍କ ଧରି ରଖିଲେ । ଯମପାଶେ ପ୍ରାଣ ପଳାଉ ଥିଲେ । ୨୫ ।
ଦୁଷ୍ଟଫଣସ୍ୱକୁ ପକାଇ ହାଣି । ଯାବତ ବନ୍ଧୁଙ୍କ ପକାଇ ପୁଣି । ୨୬ ।
କନ୍ୟା ସ୍ୱପ୍ନରେ ଯେମନ୍ତ ଦେଖିଲା । ବାଡ଼ରେ ଦେବା ଶବଦରେ ଲେଖିଲା ॥
ଦଣ୍ଡ ଦଣ୍ଡକରେ ଫୁଲକୋଦଣ୍ଡ । ସେ ଦନୁ ଯେଉଁ ରୂପେ ଦେଲା ଦଣ୍ଡ ॥
ତାହିଁକି ବୋଇଲା ପୁରୁଷ ସାର । ବାଳାଠାରେ ନାହିଁ ବନଯ୍ୟ ତାର ।୨୯
ଏମନ୍ତରେ ଯେଉଁ ବାଳା ସୌନ୍ଦର୍ଯ୍ୟ । ଗୃହିଁ ରହିବ ନାହିଁ ପଣୁ ଧୈର୍ଯ୍ୟ ।୩୦
ପାଷାଣ ନେବ ତରଳ ପଦବୀ । ଏଥି ଉତ୍ତରେ ଆଉ କି କହିବି । ୩୧ ।
ଧାତା ଦାରୁଣ ହେବା ନୁହେ ବଡ଼ । ନ ଜାଣେ ରସ ଜନ୍ମୁ ବେଦଜଡ଼ ।୩୨।
ଏଥିଁ ଉତ୍ତରୁ ଅମୃତ ପ୍ରବେଶ । ସଖି ସଙ୍ଗେ ଦୂତ ପେଷିଲେ ପାଶ । ୩୩ ।
ତୁମ୍ଭର ଭାଗ୍ୟ ଅଛୁ ବଳିଆର । ଶୁଣିଲା ଯକ୍ଷି ହେଲା ସୀତ୍କାର । ୩୪ ।
ଚତୁର୍ଗୁଣ ନ ଦେଲା ଚିତାଉ । ବହୁତ କହି କି ହୋଇବ ଅଉ ।୩୫।
ଯିବାକୁ ଜୀବ କଣ୍ଠେ ଅଛୁ ରହି । ଲେଉଟାଅ ତାକୁ ପତ୍ରିକା ଦେଇ ।୩୬।
ଏ ବାଣୀ ଶ୍ରବଣେ ମିତ୍ରକୁ ଗୃହିଁ । କୁମାର କହିଲା ଗଦ୍‌ଗଦ ହୋଇ । ୩୭ ।
ଶୁଭିଛୁ ଯେତେ ତା ସୁଦର୍ପଣ । ତେତିକି ଅଛୁ ଅନୁରାଗ ପୁଣ । ୩୮ ।
ତାକୁ ଲେଖିବାକୁ ବନଯ୍ୟଭାବେ । ବଚନେ ଆଉ କି ଜଗତେ ଥିବେ ।୩୯।
ଉଅଇଁ ଉଅଇଁ ବନଯ୍ୟ ଭାଷା । ଶେଷ ହୋଇଯିବ ଜୀବନ ଆଶା । ୪୦ ।
ଗଲେ ଏ କଥାକୁ ନାହିଁ ଶୋଚନା । ଦୁଃଖ ପାଇବ ମଞ୍ଜୁଳ ଲୋଚନା ॥

---

୧୯ । ନିଃଶ୍ରେଣୀ—ନିସଣୀ—ସିଢ଼ି,
୨୦-୨୧ । ପାଣି—ହାତ, ତମ ରଜନୀ—ଅନ୍ଧାରରାତି, ନିମନା—ନିଫଳ,
୨୨ । ମାନସ—ମନ, ବ୍ୟାଧି—ରୋଗ,
୨୩ । ଯାଚକ—ମାଗଲାଲୋକ, କଣ୍ଠେ—କଣ୍ଠିରାଜାକୁ,
୨୫ । ଦୁଷ୍ଟଫଣସ୍ୱ—ମନ୍ଦବଗ୍ରର,
୩୧ । ପାଷାଣ—ପଥର, ତରଳପଦବୀ—ତରଳିଯିବା,
୩୨ । ଦାରୁଣ—ନିଷ୍ଠୁର, ଜନ୍ମୁ—ଆରମ୍ଭରୁ,
୪୧ । ମଞ୍ଜୁଳଲୋଚନା—ସୁନ୍ଦର ଚକ୍ଷୁଯୁକ୍ତା,

ଯଥାକଥା କର ତାକୁ ଜଣାଣ । ଲେଖିବା ତୁଳକ କାଗଜ ଅଣ । ୪୨ ।
ଅଣି ଲେଖିଲେ ବରୁର ବରୁର । ପତ୍ରିକା ଘେନିଗଲେ ବ୍ରହ୍ମଗୁରୁ । ୪୩ ।
କହିବାକୁ ଯେତେ କହିବା ବାଣୀ । ଶେଷହିଁ ଶେଷ ନ କରିବେ ପୁଣି । ୪·
ଦୂତ ସିଂହଳଦ୍ୱୀପରେ ପ୍ରବେଶ । ସୁମୁଖୀସଖୀ ଦେଖି ହେଲା ତୋଷ ।୪୫।
ଅବରୋଧକୁ ସଙ୍ଗେ ଘେନିଗଲା । ପୁରପ୍ରାଙ୍ଗଣେ ନେଇ ବସାଇଲା ।୪୬।
କୁମାରୀ ବସିଛି ସଖୀଙ୍କ ସଙ୍ଗ । ଶୁକ କହୁଛି କୁମାର ପ୍ରସଙ୍ଗ । ୪୭ ।
ଏକାଳେ ମିଳି କହେ ଏ ଭାଟକୁ । ଯେଉଁ ଗୋସାଇଁ ତୋ ପ୍ରାଣ ପାଶକୁ ॥
ଯାଇଥିଲେ ଅଣିଛନ୍ତି ପ୍ରମୋଦେ । ମୋହନ ମନ୍ତ୍ରର ପତ୍ରର ମୁଦେ । ୪୯ ।
ଉଚ୍ଛନ୍ନେ ବାଳା ପଚାରିଲା କାହିଁ । ବୋଇଲା ଅଛିଛି ଦ୍ୱାରେ ବସାଇ ।୫୦।
କି କୃତ୍ୟ କଲୁ ମନ୍ତ୍ରୀପୁତା ବୋଲେ । ଦେଖିଥିବେ ତାକୁ ଦୁଆର ପାଳେ ।୫୧।
ସେ ବୋଲେ ସେ ଜାଣେ ଚକ୍ଷୁବନ୍ଧନ । ସ୍ତ୍ରୀଙ୍କ ବୋଲି ଚିହ୍ନି ଯାଉଁନ୍ତି ଜନ ।
ଏଥିରେ ହରଷ ଅଧିକ ହେଲା । ଦ୍ୱାରାନ୍ତର ହୋଇ ଜେମା ରହିଲା ।୫୩।
ଦ୍ୱିଜକୁ କହିଦେଲା ମେଘମାଳା । ନମସ୍କାର କରୁଅଛନ୍ତି ବାଳା । ୫୪ ।
ମନୋରଥ ଅସ୍ତୁ ହେଉ ଏ ବାଣୀ । କଲ୍ୟାଣ କଲା ଯୋଡ଼ି ଦେନି ପାଣି ।୫୫।
ଜଠାରୁ ଚିଠାଉ ବାହାର କଲା । ଏଠାରୁ ଏ ଛାନ୍ଦ ଶେଷ ହୋଇଲା ।୫୬।
ରାମଜିତ ରମ ରାମବିନୋଧୀ । ଉପଇନ୍ଦ୍ର ବୀର ସନ୍ତାପ ଛେଦ । ୫୭ ।



୪୪ । ଶେଷ—ଶେଷଦେବ ଅନନ୍ତ ଏହାଙ୍କର ସହସ୍ର ମୁଖ—ଏ ସହସ୍ର ମୁଖରେ ଶେଷକରି ପାରିବେ ନାହିଁ—

୪୯ । ପ୍ରମୋଦେ—ଆନନ୍ଦରେ, ପତ୍ରମୁଦେ—ବନ୍ଦଉଠିରେ

୫୧ । ଦୂଆରପାଳେ—ଦ୍ୱାରୀମାନେ,

୫୭ । ରାମଜିତ—ପର୍ଶୁରାମ ଜୟକାରୀ, ରମ୍ୟ—ସୁନ୍ଦର ବିନୋଦୀ—କୌତୁକୀ,

ବ୍ରହ୍ମଗୁରୁ ଲାବଣ୍ୟବତୀ ପାଶରୁ ଯାଇ ଚନ୍ଦ୍ରଭାନୁକୁ ଦେଖିଲା ସେ ଲାବଣ୍ୟବତୀ ସକାଶେ ଉତ୍କଣ୍ଠିତ ଅଛି । ତହୁଁ ତାହାକୁ ଲାବଣ୍ୟବତୀ ପଠାଇବାର କହି ପତ୍ର ମାଗନ୍ତେ ଚନ୍ଦ୍ରଭାନୁର ପତ୍ର ନେଇ ଲାବଣ୍ୟବତୀଙ୍କ ଦେବା ।—



# ଊନବିଂଶ ଛାନ୍ଦ ।

( ଲାବଣ୍ୟ ବତୀର ପତ୍ର ପ୍ରାପ୍ତି ଏବ ପଠିବା )

ରାଗ କନଡ଼ା ।

ଶୁଣି ମହୀଦେବ ହସ୍ତରେ ପତ୍ରିକା ବହି ପୁଲକିତ ଗାତ୍ରକୁ । କରି ନିଜସ୍ଥାନ ବେନି ନେତ୍ରକୁ । ଚଞ୍ଚଲେକ୍ଷଣୀ ଅଞ୍ଚଳେ ଭରି ଭରି ପାଏଡ଼ା କଲା ପତ୍ରକୁ ସେ । ସୁନ୍ଦରୀ । ଯେସନି ଶିରେ ଲଗାଇଲା ସତ୍ୱରେ । ଶଶୀ କରଗତ ଚିନ୍ତି ଚିତ୍ତରେ । ମୁଦରେ କୁମୁଦ ହାସକୁ ପ୍ରକାଶି ମୁଦ ଭାଙ୍ଗିଲା କି ତହୁଁରେ ସେ । ସୁନ୍ଦରୀ । ୧ ।

ଯୋଖିଲା ଏମନ୍ତ ଦେଖିଲା ଅଲକ୍ତେ ଲେଖିଲା ଅକ୍ଷରପନ୍ତିକି । କେଉଁ ପୁଣ୍ୟେ ଉଇଁକଲା ମୋଉଳି । ବଢ଼ିଲା ଆନନ୍ଦସାଗର ପଢ଼ିଲା ରସଗର୍ଭ ଭାରତୀକି ସେ । ସୁନ୍ଦରୀ । ପଦ ପଦକେ ପଦବୀ ପ୍ରଦାନ । ମୋହ ହେଲେ ଶ୍ରୁତିମନ ନୟନ । ମାରଦର ଦୂର ହେବାକୁ ପ୍ରଥମେ ତ୍ରିରଜଶମ୍ଭୁ ବନ୍ଦନ ରେ । ସୁନ୍ଦରୀ । ୨ ।

ଅତ ସଉନ୍ଦର୍ଯ୍ୟବତୀ ମୁନି ଧୈର୍ଯ୍ୟକର୍ମାକାରୀ ଶର୍ମାଗଜରୀ । ମହୀ-ମହିଳାର ଚର୍ମାଚଉଁରୀ । ଯାହା ସୁଷମା ସମାନ ନୋହି ହରଅଙ୍ଗେ ଲୁଚିଲା ଗଉରୀ ରେ । ସୁନ୍ଦରୀ । ଯେଣୁ ପରମାନନ୍ଦ ସମୁଦାୟ । ଦୀପ୍ତି ମଣ୍ଡିତ ସ୍ନେହ ସୁଧାମୟ । ଶୋଭୁ ସିନ୍ଧୁ ଜାତ ରମା କି ଚନ୍ଦ୍ରମା ଛୁଟନ୍ତୁ ନାହିଁ ଏ ଫଣମ୍ଭୁ ରେ । ସୁନ୍ଦରୀ । ୩ ।

---

## ଊନବିଂଶଛାନ୍ଦ ।

୧ । ମହୀଦେବ—ବ୍ରାହ୍ମଣ, ପତ୍ରିକା—ଚିଠି, ପୁଲକିତ—ଆନନ୍ଦିତ, ଗାତ୍ର—ଦେହ, ଚଞ୍ଚଲେକ୍ଷଣୀ—ଶ୍ରୀଭ୍ରୂକୃଷ୍ଣୋଜୀ, ଶିରେ—ମୁଣ୍ଡରେ, ଶଶୀ—ଚନ୍ଦ୍ର, କରଗତ—ଆୟତ୍ତ, ମୁଦରେ—ଆନନ୍ଦରେ, ମୁଦ—ବନ୍ଦ ( ଜଉମୁଦ )

୨ । ଅଲକ୍ତେ—ଅଲତାରେ —( ଲାଲସ୍ୟାହି ) ଅକ୍ଷରପନ୍ତି—ଅକ୍ଷରସବୁ, ରସଗର୍ଭ—ରସପୂର୍ଣ୍ଣ, ଭାରତୀ—କଥା, ପଦକ—ପୁରସ୍କାର-ସ୍ୱର୍ଣ୍ଣପଦକାଦି, ଶ୍ରୁତି—କାନ, ମାରଦର—କନ୍ଦର୍ପବାଧା, ତ୍ରିରଜଶମ୍ଭୁ—ବୃଷଶିବ,

୩ । ଧୈର୍ଯ୍ୟକର୍ମାକାରୀ—ବିବେକ ଅସ୍ଥିରକାରୀ, ଶର୍ମାଗଜରୀ—କନ୍ଦୁକପରଗୋରୀ, ମହୀ—ପୃଥିବୀ, ମହିଳା—ସୁନ୍ଦରୀସ୍ତ୍ରୀ, ପରମାନନ୍ଦ—ଶ୍ରେଷ୍ଠସୁଖ, ରମା—ଲକ୍ଷ୍ମୀ ।

ଶୋଭା ପ୍ରଶଂସାରେ ଫସାରେ କଣେ ତୁ ନାହିଁ ତୋ ରୂପ ସମସର ଉପମା ଏ ରହିଲେ ଅପସର । ବରବର୍ଣ୍ଣନା ବର୍ଣ୍ଣନା ମୁଁ ନ କଲି ଏହି କଥାକୁ ବିଗୃହି ରେ । ସୁନ୍ଦରି । କବିଗଣେଶ ଗଣେଶ ହୋଇବ । ଶେଷ-ବଦନକୁ ପୁଣି ବହିବ । ବିଧାତା ଆୟୁଷ ପାଇଲେ ତୋ ଶୋଭା-ଲେଶ ଶେଷ ବା କହିବ ରେ । ସୁନ୍ଦରି । ୪ ।

ସୁରନଗରୀନାଗରୀଶିରଭୂଷା ଯୋଷାରତନ ରସାଳସି । କେତେ ବାର ଗଙ୍ଗାରେ ଥିଲି ଝାସି । ଶିର* ଦେଇଣ ଶିଶିରକରଶିର ମନାଇବା ପୁଣ୍ୟ ଦଣି ରେ । ସୁନ୍ଦରି । ହେଲି ଜଣାଣ ଦେବା ଯୋଗ୍ୟ ମୁହିଁ । ଏ ପୁଣ୍ୟରୁ କି ଏଡ଼େ ଭାଗ୍ୟ ହୋଇ । ପ୍ରଭୁ ସେବକକୁ ବଡ଼ କରେ ତୋର ଅନୁଗ୍ରହ ଫଳ ଏହି ରେ । ସୁନ୍ଦରି । ୫ ।

ରଙ୍ଗରାଜୀବଚରଣରେ ଶରଣ ପଶିଲି ଏ ଯେମନ ଭରସା । ଗଜ ନୋହିବେ ତୋ ଗତିସଦୃଶା । ଶରଣେ କାରଣ କଲି ଅଙ୍ଗୀକାର ବାରଣଗତି ପ୍ରଶଂସା ରେ । ସୁନ୍ଦରି । ଅଣା କେବେହେଁ ନୋହିବ ଛେଦିତ । ଶ୍ରବଣରେ ହୋଇଲଣି ମୋହିତ । ରସଜ୍ଞଦୟା ସୁହୃଦୟା ଦୟାଳୁ ନାମ ଜଗତେ ବଦିତ ରେ । ସୁନ୍ଦରି । ୬ ।

ମନ ମୀନ ହୃଦସରୋବରରେ ଥିଲା କଟାକ୍ଷ ବଡ଼ଶୀ ପକାଇ । ତାର ବଦନେ ପ୍ରେମ ସ୍ୱାଦୁ ଦେଇ । ଆକର୍ଷି ନେଇ ଜରଜ କଳଶୀରେ ମଦାଳସୀ ଅଛୁ ଥୋଇ ରେ । ସୁନ୍ଦରି । ତୋର ମୁଖ ମନୋରମ ମନ୍ଦିରେ । ମୋର ନୟନେ ରହିଲେ ବନ୍ଦିକରି । ବନ୍ଦୀ ହୋଇଲେ ତ ଏ ଦୁହିଙ୍କ ସୁଖ କଥନ ନୋହେ ବନ୍ଦରେ । ସୁନ୍ଦରି । ୭ ।

---

୪ । ଅପସର—ଘୁଞ୍ଚି, କବିଗଣେଶ—କବିଶ୍ରେଷ୍ଠ ।

୫ । ସୁରନଗରୀ—ଦେବପୁରୀ, ନାଗରୀ—ସ୍ତ୍ରୀ: ଶିର—ମୁଣ୍ଡ; ଭୂଷା—ଅଳଙ୍କାର, ଦେବପୁର ନାରୀଙ୍କର ମୁଣ୍ଡଉପରେ ତୁହି, ଶିର—ଶିବଙ୍କ-ପାଖରେ ଏକାଗ୍ରଧ୍ୟାନକରି ଖାଲରେ ମୁଣ୍ଡହାଣିଲେ ତାକୁ ଶିର କହନ୍ତି ଶିଶିର କର ଶିର—ଚନ୍ଦ୍ର ଯାହାଙ୍କ ମସ୍ତକରେ ଅର୍ଥାତ୍ ମହାଦେବ ।

୬ । ରଙ୍ଗରାଜୀବ—ରକ୍ତପଦ୍ମ, ଗଜ—ହାତୀ, ବାରଣଗତି—ଗଜଗତି, ବା ହାତୀପରଚାଲି ।

୭ । ସରୋବର—ପୋଖରୀ, ବନ୍ଦୀ—ଭାଟ ।

ବିରହ ଅନଳ ପ୍ରଜ୍ୱଳିତ ଅତି ମୋତେ ଭଇବ ବୋଲି ଦାହ । କାଁପି ନ ଦହେ ଯେନେ ମୁଁ ସନ୍ଦେହ । ତୋ ପ୍ରେମନୀର ହୃଦୟରେ ଧରିଣ ଯେଣୁ କଲକର ଦେହ ରେ । ସୁନ୍ଦରୀ । ଜୀବ ନେବ କାପ ଅଛି କଠୋର । ଯକୁ ଭଲ ରଖିଛୁ ଏହା ଭଲ । ଚଳିଗଲେ ଘଟ ଛାଡ଼ି ପିବ ଯିନା ପରିପୂର୍ଣ୍ଣ ସ୍ନେହବାବ ରେ । ସୁନ୍ଦରୀ । ୮ ।

ଅବଧାନେ ଅଛି ଦେବାରେ ଦେବତା ଭୋଗ ସେ ଦାନ୍ତରେ ବିହୀନ । କରେ ନିମିଷ ହତ ଦରଶନ । କୁଚ-କାଞ୍ଚନଶିଖରରେ ବାହାର ଅଧରେ ଅମୃତ ପାନ ରେ । ସୁନ୍ଦରୀ । ହୋଇବାରୁ ଜରୁରମ୍ଭାରେ ସ୍ନେହୀ । ମୋକ୍ଷପଦ ମୀବାରେ ଅଛି ରହି । ଅଜ ଦୁର୍ଲ୍ଲଭ ହୋଇ ତୋତେ କେ ଅଛି କେବଳ ଦୁର୍ଲ୍ଲଭ ତୁହି ରେ । ସୁନ୍ଦରୀ । ୯ ।

ଗୁଣସରିତ ସଂଗ୍ରହକୁ ସାଗର ବିଗ୍ରହ ନିଷ୍ଟୟ ତୋହର । ସତେ ରୂପରତନର ଆକର । ତହିଁ ମହତୀ ଯୋଗ ଏବେ ପଡ଼ିଛି ମଜ୍ଜନେ କୃତାର୍ଥ କର ରେ ସୁନ୍ଦରୀ । ଏକେ କାମଧେନୁ ପରି ରମ୍ଭୋରୁ । ଦୁକେ ତୁ ଯେ ପୂରିତ ସୁରତରୁ । କାହାକୁ କହିବ ଦୁର୍ଦ୍ଦଶା ମୋହର ନ ତୁଠିଲେ ଏ ଜତ୍ତ୍ୱରୁ ରେ । ସୁନ୍ଦରୀ । ୧୦ ।

ଘନେ କୁଲିଶ ଚନ୍ଦନେ ଅହି ଥିଲେ ଭୟରୁ ଗୃହକ ପବନ । ତହିଁ ସେନେହ ଯନ୍ତ୍ରଣା କି ଯେନ । କର୍ମକୁ ଗୃହଁ ନିର୍ଦ୍ଦୟ ହେଲେ ମୋତେ ଯୁଝ ନ ପାରିବ ଧନ ରେ । ସୁନ୍ଦରୀ । କାମ କରୁ ପଛେ କଲେ ଅଶୁଭ । ଶାହୁ ପ୍ରାପ୍ୟ ମୋର ଅଣା ଅରମ୍ଭ । ହରଅନ୍ଦ ଦେବେ ବିରୋଧୀ ହୋଇଲେ ଛାଡ଼ିଇ କି ସୁଧାଲୋଭ ରେ । ସୁନ୍ଦରୀ । ୧୧ ।

---

୮ । ଦାହ—ପୋଡ଼ିବା, ଭାଳ—ଚନ୍ଦ୍ରାକର, ଘଟ—ଦେହ, ପରିପୂର୍ଣ୍ଣ—ପୂରିଥିବା ।

୯ । କାଞ୍ଚନ ଶିଖରୀ—ସୁନାପର୍ବତ—ମେରୁ, ଊରୁରମ୍ଭା—ଯାହାର ଜଙ୍ଘ କଦଳୀଗଛ କାଣ୍ଡ ପରି ଗୋଲ ଓ ଗଡ଼ାଣିଆ ।

୧୦ । ଗୁଣ ସରିତ—ଗୁଣନଦୀ, ବିଗ୍ରହ—ପ୍ରତିମା, ଆକର—ଖଣି, ସୁରତରୁ—କଳ୍ପଦ୍ରୁମ ।

୧୧ । ଘନ—ମେଘ, କୁଳିଶ—ବଜ୍ର, ଅହି—ସର୍ପ, ହର—ମହାଦେବ, ବିରୋଧୀ—ବିପକ୍ଷ ।

ହୃଦକେଦାରରେ ଅନୁରାଗବୀଜ ଅଛି ଯତ୍ନ କରି ପୁଣିଛି । ଭଲ ଭାଳ ହେଲା ଯହୁଁ ଜାଣିଛି । କ୍ରମେ ସେ ଅଙ୍କୁର ଘନରସ ବୃଷ୍ଟି ବହ୍ନିନେ ଦୁଃଖୀ ହୋଇଛି ରେ । ସୁନ୍ଦରି । ନ ଭରିବ କି କରିବ ବରଷା । ପଛେ ତୁ ଯେ ମହାଜ୍ୟୋତିଷ ଯୋଷା । ନାସିକାପୋତ ବୃହସ୍ପତି ଚଳନ ଯୋଗକୁ ଚେକଛୁ ଅଣା ରେ । ସୁନ୍ଦରି । ୧୨ ।

ଅଛୁ ଯେଉଁ ଜୀବ ବୀଣା ଜଣା ବାଣୀ କଣା ଅଙ୍ଗଦେଶେ ତୋହର ବେଢେ଼ ଉଚସା ସନ୍ତାପ ବ୍ୟାଧିର । ଶମନପାଶେ ଛନ୍ଦିନ ପାଶେ ଧରି ନେବାପାଇଁ ତତପର ରେ । ସୁନ୍ଦରି । ଭଲ ଗୋଚର ମୋର ଦୋଷ ନାହିଁ । ହେବ କାହାକୁ ଏ ଅଯଶ ସହି । ତୋତେ ଏମନ୍ତ ବୋଲିବା ଅଧିକାର ମୁଁ ପୁଣି ପାଇଲି କାହିଁ ରେ । ସୁନ୍ଦରି । ୧୩ ।

ନବବନିତା ଅପୂର୍ବ ପୁଷ୍ପଲତା ପ୍ରକାଶ ଫୋଲକାଡ ଫୁଲ । ତିଳପୁଷ୍ପ କୁନ୍ଦ ଗୁର କମଳ । କୁମୁଦ ବନ୍ଧୁଲି ପାଟଳୀ ନାଅଳୀ ଚମ୍ପା ଶିରୀଷ ଉତ୍ପଳ ରେ । ସୁନ୍ଦରି । ଷଣକୁସୁମ ଅଶୋକ ମନ୍ଦାର । ଭ୍ରମି ଭୃଙ୍ଗ ମୁଁ ଚୁମ୍ବନେ ଅତୁର । କେତକୀ ବରନା ନାମ ଅଙ୍ଗୀକାର କଲେ ସରିଲା ଟି ମୋର ରେ । ସୁନ୍ଦରି । ୧୪ ।

ଅନଙ୍ଗ ବଧିବା ଇଚ୍ଛା କରି ତୋରେ ବନ୍ଧ ନ ପାରୁଥିବ ବାଣ । ଶୋଭା ଅନାଇଁ କ୍ଷୀଣ ହେବ ଗୁଣ । ମୁଁ କି ଉପାୟେ ତୋ ଦରଶନ ଯାଏ ଜୀଇବି କହିବ ପୁଣରେ । ସୁନ୍ଦରି । ବଞ୍ଚିଥିଲେ ଅଛୁ ଏତେ କାରଣ । ଲାକ୍ଷା ଲେଖିବି ଧରି ତୋ ଚରଣ । ଶବ୍ଦ ଗୁହିଁ ତୁ ଯେ ପ୍ରଶଂସାକରିବୁ ସେ ବାଣୀ ହେବ ଶ୍ରବଣ ରେ । ସୁନ୍ଦରି ।୧୫।

---

୧୨ । ହୃଦ—ମନ, କେଦାର—କିଆରି, ଅନୁରାଗ—ସ୍ନେହ, ବୀଜ—ମଞ୍ଜି, ଅଙ୍କୁର—ଗଜା, ଘନରସ—ମେଘ; ବୃହସ୍ପତି ଚଳିଲେ ବର୍ଷା ହୁଏ । (୧)

୧୩ । ବ୍ୟାଧ—ବାଣୁଆ, ଶମନ—ଯମ ।

୧୪ । ନାକ—ତିଳଫୁଲ, ଦାନ୍ତ—କୁନ୍ଦ, ମୁଖ—ଧଳା, ପଦ୍ମ, ଓଷ୍ଠ—ଲାଲପଦ୍ମ ବାଳ—ନୀଳପଦ୍ମ ଦେହଗନ୍ଧ—ଗୋଲପି ପଦ୍ମ, ହାସ—କୁମୁଦ, ଅଧର—ବନ୍ଧୁଲି, ଶ୍ରବଣ—ପାଟଳି, ନଖ—ନାଅଳି, ଅଙ୍ଗୁଠି—ଚମ୍ପା, ଦେହ—ଶିରୀଷ, ଆଖି—ଉତ୍ପଳ, ଦେହରଙ୍ଗ—ଷଣ, କପାଳ—ଅଶୋକ ହାତ ପାପୁଲି ଗୋଟିଏ—ମନ୍ଦାର ।

୧୫ । ଅନଙ୍ଗ—କନ୍ଦର୍ପ, ଲାକ୍ଷା—ଅଲତା,

ଗଣ୍ଡକୁ ଶୋଭା ହେବା ଭଳି କୁସୁମ ଗୁନ୍ଥି ଦେଇଥିବ ସୁଗାତ୍ରି । ଶିବରାତ୍ରି କରିବ ସବୁ ରାତ୍ରି । ଆଗ କି ପାରିବ ସେବା ଜାଣି କୃପା କରୁ ସିନା କୃପାପାତ୍ରି ରେ ।ସୁନ୍ଦରି । ଇଚ୍ଛା ମନ ଭିତରେ ଦେହ ରହୁ । ଏ ନୋହିଲେ ବିଧାତା ପଣ ହେଉ । ଯାଇଁ ତୋ ପାଶେ ମୋ ସେବା ଦେଖାଇବା ଯୋଗ ବେଗ ହୋଇ ହେଉ ରେ । ସୁନ୍ଦରି । ୧୬ ।

କ୍ଷିତି ଥିଲେ ନରପତି ଶୋଭା ପାଇ ରାତି ଥିଲେ ଚନ୍ଦ୍ର ଉଜ୍ଜ୍ୱଳ । ପଦ୍ମ ଥିଲେ ସରୋବର ମଞ୍ଜୁଳ । ଘନ ସେହିମତି ଯୁବତୀଙ୍କଠାରେ ଥିବା ସୁବାର ମଙ୍ଗଳ ରେ । ସୁନ୍ଦରି । ଲଭି ନାହିଁ ଯେ ବଲ୍ଲଭାପୁରସ । ମହାସମ୍ପତ୍ତି ଥାଇ ହେବ କସ । ନୟନ ନ ଥାଇ ଦେବ ଦର୍ଶନେ ଗଲା ପ୍ରାୟ ଉପହାସ ରେ । ସୁନ୍ଦରି । ୧୭ ।

ଯେମନ୍ତେ ଯୁବତି-ପରଶ ପରଶୁ ପୁରୁଷ-ଲୋହ କରେ ହେମ । ଉଙ୍ଗୀବଚନ ହିମଧାମ ସମ । ହୃଦୟୁସ୍ଥଳ ଚନ୍ଦ୍ରକାନ୍ତ ମଣିର ଦ୍ରବୀଭୂତକୁ ସେ କ୍ଷମ ରେ । ସୁନ୍ଦରି । ଏହା ଶୁଣିଛୁ ରସିକବଦନ । ଅନୁଭବ ନାହିଁ ମୋର ଏମାନ । କି କରି ଜାଣିବ କରିକଟିଗତି କରିବୁ ଏ ଅବଧାନ ରେ । ସୁନ୍ଦରି । ୧୮ ।

ଶିରଫୁଲ ଗର୍ଭ କେତେକାଳ ଶୋଭା କି ଶୀତଳକାରୀ ଚନ୍ଦନ । ଏ ବଚନ କି ତୋଠାରେ ବନ୍ଦନ । କି ବୋଲି ବୋଲିବ ମଣାଗ୍ରମଣକ ପର୍ଯ୍ୟୁ ଭ୍ରମୁଛି ମନରେ । ସୁନ୍ଦରି । ବନ୍ଧୁ ଧନ ତୋତେ ରେ ପ୍ରେମଶୀଳା । ବୋଲିବ କି ନାହିଁ ଶତ୍ରୁ ରସିଲା । ଗଲେ ପ୍ରାଣ ରହୁ ବନ୍ଧୁ ଧନ ଦୁଇ ଥିଲେ ଅଛୁ ଏ ଶୁଣିଲା ରେ । ସୁନ୍ଦରି । ୧୯ ।

ଅଭଦଭଦ୍ର ମୁଁ ବହିତବଣିଜ କରୁଛୁ ଉପାୟ ବଳରେ । ଭଲ ମନ୍ଦ ଅଛୁ କି କପାଳରେ । ଦଇବ ଯେ ତୁହି ସେ ତୋତେ ଗୋଚର ଦୟାରେ ଲଗା କୂଳରେ ରେ । ସୁନ୍ଦରି । ମାର-ତସ୍କର ଯେମନ୍ତ ଦର ଅଛୁ । ପ୍ରାଣଧନ ଲୁଟିବାକୁ ଜଗିଛୁ । ଅଷ୍ଟସାତ୍ତ୍ୱିକ ଅଣଗୁଣ ପବନ ଛନ୍ଦ ଭ୍ରମେ ପଡ଼ାଉଛୁ ରେ । ସୁନ୍ଦରି । ୨୦ ।

---

୧୬ । ସୁଗାତ୍ରୀ—ସୁନ୍ଦରଦେହା, କୃପାପାତ୍ରୀ—ଦୟାବତୀ ।

୧୭ । ନରପତି—ରାଜା, କ୍ଷିତି—ପୃଥିବୀ, ଏଠାରେ ରାଜ୍ୟ ।

୧୮ । ଯୁବତୀପରଶ—ସ୍ତ୍ରୀ ଦେହ ପରଶପଥର, କରୀ—ହାତୀ ।

୨୦ । ବହିତ—ବୋଇତ, ମାର—କନ୍ଦର୍ପ, ତସ୍କର—ଚୋର, ଅଷ୍ଟସାତ୍ତ୍ୱିକ—ଙ୍ଖିଦ୍ୱାର, ଦାହ, କମ୍ପ, ସ୍ୱେଦ, ଲୋମହର୍ଷ, ହାଇ, ଅଳସ, ମୂର୍ଚ୍ଛା, ଆଠପ୍ରକାର, କାମବିକାରରେ ଏସବୁ ଲକ୍ଷଣ ହୁଏ ।

ନେନେ କର୍ଣ୍ଣକୁ ଅକ୍ଷେପ କରି ଦଳି ନିବିଡେ କରନ୍ତୁ ବନ୍ଧନ । ହାସେ ହରିଚନ୍ଦ୍ର ଦର୍ପ ଦଳନ । ଜୀମୂତବାହନପଦ ଦରଶନ ଜନେ କରୁଅଛୁ ଦାନ ରେ । ସୁନ୍ଦରି । ବଚନରେ ଅନୁସରି ଥିବ ଯେ । ଦାନିମାନଙ୍କୁ ଜିଣିଛୁ ଭାବି ଯେ । ତନଦାନକୁ ମୁଁ ଅର୍ଥୀ ହୋଇଅଛୁ ବୋଲନ୍ତୁ ନାହି ନ ଦେବ ରେ । ସୁନ୍ଦରି । ୨୧ ।

ଦେଖା ଭେଟାଇଲା ନିଶାର୍ଦ୍ଧେ ପଲ୍ୟଙ୍କେ କରିଥିଲୁ ବାଳା ଶୟନ । ହା ହା କି ଶୋଭା ଦେଖିଲା ନୟନ । ସେହି ନୁଟିକେ କୋଟି କୋଟି ମଘବାସମ୍ପତ୍ତି କରନ୍ତୁ ଦାନ ରେ । ସୁନ୍ଦରି । ଯେବେ ଚିତ ହୁଅନ୍ତା ସେ ମୁହୂର୍ତ୍ତ । ଯୁବାବୃନ୍ଦେ ହୋଇଥାନ୍ତି ସାମନ୍ତ । ଭୀରୁ ଉରୁ ଛୁଇଁ ଟୁଙ୍ଗୀର ଦେବାର ନୋହେ ଇତର ସ୍ମୃତ ରେ । ସୁନ୍ଦରି । ୨୨ ।

ନିଦ୍ରା ବିନାଶ ଅଳସଭର ଯେଣି କଷାଇତ ନେତ୍ର ଚାତୁରୀ । ମୋତେ ବନ୍ଦେ ଅନାଇଁଲୁ ଖ କରି । ଅନୁରାଗଜଳେ ବୁଡ଼ାଇ କମଳ ବେଗେ ଢାଳିଦେଲୁ ପରି ରେ । ସୁନ୍ଦରି । ଲାଜବଶରୁ ରସିକାସିହାଣି । ଚାହିଁ ନ ଚାହିଁଲୁ କଲୁ ଚାହାଣୀ । ଜଉ ପୂର୍ଣ୍ଣଚନ୍ଦ୍ର ମଣ୍ଡଳ ମଧ୍ୟରେ ବସିଲା ପଦ୍ମ ସୃଷ୍ଟି ରେ । ସୁନ୍ଦରି । ୨୩ ।

ବିନୟରେ ମୋ ଲୟ ଦେଇ ଉଦୟ କଲୁ ଯେ କରୁଣା କାହିଁତ । ପ୍ରାଣ ରଖିଲା ସେ ସୁଧା ସହିତ । ମାଣିକ୍ୟ କୁହରେ ହୀରା ଫୁଟିଲା ପରି ସ୍ମିତହାସ ଜାତରେ । ସୁନ୍ଦରି । ମୋର ଜନ୍ମାନ୍ତେ ଖଣ୍ଡିତ ଥିଲା । ସେହି ସମୟେ ନିଶି ନାଶ ହେଲା । ବଢ଼ିବାରୁ ମହାସନ୍ତାପ ନୟନ ମନେ ଆନ ନ ରୁଚିଲା ରେ । ସୁନ୍ଦରି । ୨୪ ।

ଚାତୁରୀ ଚାଟୁକୁ ଚାତୁରୀ କରି ଯେ ଯେତେ ବାଣୀ କହି ଯୁକତେ । ସେ କି ସମ ହେବ କାହିଁ ଜଗତେ । କର ଯୋଡ଼ି ମୁଁ ଜଣାଉଛି ସନ୍ଦେଶ ଦୋଷ ନ ଧରିବୁ ଚିତ୍ତେ ରେ ସୁନ୍ଦରି । ସବୁ ସଖୀଙ୍କି ସନ୍ତୋଷ ମୋହରି । ତୁମ୍ଭ ସଙ୍ଗତେ ଜଣେ ମୋତେ କରି । ମନ ମନାଇଁ ଅବକାଶ ଅନାଇଁ ଯେଣାଇଁ କହି ଗୁମ୍ଫରି ରେ । ସୁନ୍ଦରି । ୨୫ ।

---

୨୧ । ହରି—ଚନ୍ଦ୍ର, ଚନ୍ଦ୍ର—କର୍ପୂର, ଜୀମୂତବାହନ—ଇନ୍ଦ୍ର ।

୨୨ । ନିଶାର୍ଦ୍ଧେ—ରାତ୍ରିଅଧରେ, ମଘବା—ଇନ୍ଦ୍ର, ଭୀରୁ—ସ୍ତ୍ରୀ, ଉରୁ—ଜଙ୍ଘ,

୨୩ । କଷାଇତ—ଲାଲ, କମଳ—ପଦ୍ମ ।

୨୪ । ଉଦୟ—ଜାତ, ସୁଧା—ଅମୃତ, କୁହର—ଗାତ, ବା ଗୁହା, ସ୍ମିତହାସ—ଦରହାସ ।

୨୫ । ଚାଟୁ—ବିନୟ, ସନ୍ଦେଶ—ଖବର, ଅବକାଶ—ଫୁରସତ ।

ବେଗେ ଦୂତକୁ ମେଲାଣଦେଇ ଦେବ ଶ୍ରୀହସ୍ତ ସନ୍ତକ ଲେଖକୁ । ପାଇ ପାଇ ମୁଁ ଅଲେଖ ସୁଖକୁ । କୃଶ ହେଲେ ଆଶାଦଣ୍ଡ ଅବଲମ୍ବନ କର ଘଜଞ ଦୁଃଖକୁ ରେ । ସୁନ୍ଦର ! ଜିବ ଜୀବନେ ପ୍ରଭୁର ଗମ୍ଯକୁ । ବ୍ୟଥା କହ ଦାଣ୍ଡାଇବ କାମକୁ । ଏତକ ବାସନା ଏ ବନା ନବୀନା ମିତ୍ରକୁ ଯାହା ଜର୍ମିଲୁ ରେ । ୨୬ ।

ବଳଆଇ ଯେ ତ୍ରିବଳୀଶୋଭନୀକ କହିବାକୁ ଅଛୁ ଅତୁର । ପ୍ରୀତ ବରୋଧୀ ଯେତେ ସହଚରୀ । ଦଇବେ ହୋଇବେ ପ୍ରବୋଧ କରିବୁ ତାହାଙ୍କର କର ଧର ରେ । ସୁନ୍ଦର । ପର ଉପକାର ଯଶ ଥୋଇଲେ । ଦେଖ ମହାଦେବ ବଷ ଖାଇଲେ । ଦେଖ ଭୃତ୍ୟପଦ ହୃଦେ ଧର ହର ଭବଗ୍ରାହୀ ବୋଲାଇଲେ ରେ । ସୁନ୍ଦର । ୨୭ ।

ପଢି ଏ ପତ୍ର ରୋମାଞ୍ଚିତ ଗାତ୍ର କ ହେଲା ଅନୁରାଗ ଅଙ୍କୁର । କବା ମାଗିବ ଯୁବା ସଙ୍ଗ ବର । ଆନନ୍ଦ ଅଶ୍ରୁଜଳରେ ଅଭିଷେକ କରାଇଲା କୁଚହର ସେ । ସୁନ୍ଦର । ଦେଖି ଦ୍ୱିଜକୁ ସେ ମୋଛକଳାପ । ମନେ ଏ କଥା କର ସଙ୍କଳପ ; ଏହାରଠାରେ ଏ ହାର ଥିଲେ ଦେଖି ଜାଣନ୍ତି ସିନା ସନ୍ତାପ ସେ । ସୁନ୍ଦରୀ । ୨୮ ।

ପ୍ରତିଉତ୍ତର ପତର ଦେଇ ତାଙ୍କୁ ବାତରହାଗରୁଁ ଉଦ୍ଧର । କହେ ଏକାଳେ ବ୍ରହ୍ମଗୃହୀ କୀର । ଅନୁନୟ ଲେଖ ଛନ୍ଦ ପୂର୍ଣ୍ଣ ହେଲା ରସିକ ଉଲ୍ଲାସକର ହେ । ସୁଜନେ । ରାମ ଲକ୍ଷ୍ମଣ ଅମ୍ବୁଜବଦନ । ବୃଷାସନଙ୍କର ଯେହ୍ନେ ବଦନ । କହେ ଉପେନ୍ଦ୍ର ଭଞ୍ଜ ବୀରବର ତାଙ୍କ ପାଦେ ଦେଇ ମନ ହେ ସୁଜନେ । ୨୯ ।



୨୬ । ଅଲେଖ—ଅତ୍ୟନ୍ତ, କୃଶ—ସରୁ, ଆଶାଦଣ୍ଡ—ଆଶାବାଡ଼ି ।
୨୭ । ତ୍ରିବଳଶୋଭନୀ—ପେଟରେ ତନୋଟିରେଖାଥିବାରୁ ସୁନ୍ଦର ଦଶୁଥିବା, ଲାବଣ୍ୟବତୀ, ଭୃତ୍ୟ—ଚାକର ।
୨୮ । ରୋମାଞ୍ଚିତ—ରୋମଟାଙ୍କୁରିବା, କୁଚହର—ସ୍ତନଲଗ୍ନ, ସଙ୍କଳ୍ପ—ଭାବନା ।
୨୯ । ଅମ୍ବୁଜ ବଦନ—ପଦ୍ମମୁଖ, ବୃଷାସନ—ମହାଦେବ ।

ଲାବଣ୍ୟବତୀଙ୍କୁ ବ୍ରହ୍ମଗୃହୀ ଚନ୍ଦ୍ରଭାନୁ ପତ୍ର ଦଅନ୍ତେ ସେ ସେହି ପତ୍ର ପଢ଼ି ଅତ୍ୟନ୍ତ ଆନନ୍ଦ ହୋଇ ପୁନର୍ବାର ପ୍ରତ୍ୟୁତ୍ତର ପତ୍ର ଦେଇ ଶୁକକୁ ବ୍ରହ୍ମଗୃହୀଙ୍କ ପଠାଇବାକୁ ମନସ୍ଥ କଲା ।



## ବିଂଶତି ଛାନ୍ଦ ।

( ଲାବଣ୍ୟବତୀବରଚିତ୍ରାଙ୍କଦେଖିଶୁକ ଓ ବ୍ରହ୍ମଗୃଧ୍ରବରଚନ୍ଦ୍ରଭାନୁନ୍ନାକଚ୍ଛକୁଗମନ )

ରାଗ ଚିନ୍ତାଭୈରବ ।

ଅଣି କାଗଜକୁ ନବବାଳୀ । ଅନୁସରନ୍ତୁ ନ ଲେଖିଲା କାଳୀ । କୁକୁମେ ଲିଖିତ ବର୍ଣ୍ଣ କଜବର୍ଣ୍ଣ ଭାଲ ଅଳୀଙ୍କ ନାମରେ ଛଳ ସେ ସୁନ୍ଦରୀ ।୧। ବଢ଼େ ବୀରବର ଭୂପସୁତ । ଗଣେଶ୍ୱର ସମାନେ ପଣ୍ଡିତ । ଗୁଣରେ ନାହିଁତ ଅବନୀମଣ୍ଡଳେ ଏଣୁକରି ଗୁରୁ ପ୍ରଶଂସିତ ହେ । ସୁନ୍ଦର । । ୨ । ମହାମନ୍ଦା ମନୋହର ଧାମ । ଅମ୍ଭେ ବୋଲୁଅଛୁଁ ଅନୁପମ । ହେମ ତୁଲେ ଗୁଞ୍ଜ ତୁଳନା ପରାୟେ ଯାହା ଇଚ୍ଛା ବୋଲନ୍ତୁ ସେ କାମ ହେ । ସୁନ୍ଦର । ୩ । ଦାତାପଣ କର୍ଣ୍ଣେ ଅଛୁଁ ଶୁଣି । ତାହାଙ୍କ ଲକ୍ଷ୍ୟ ଦେବାକୁ ପୁଣି । ଯାଚକ ମାନସ ଏରୂପେ ସନ୍ତୋଷ ଏକା ଏହାର ହେଲା ଧରଣୀ ହେ । ସୁନ୍ଦର ।୪। ପୁଣି ବଧ କରିବାରେ ଅରି । କର ଯଶକୁ ଅଛି ବିସ୍ତାରି । ଦୟାକୁ ଗୁଣ ତ ନୁହଇ ଜାଣିବା ତୁମ୍ଭେ କେତେ ପରଉପକାରୀ ହେ । ସୁନ୍ଦର । ୫ । ଯାହା ରତନ କୋଷ ସହିତ । ସଦା ଅଛି ଟ ସମୁଦ୍ରବତ । ଏହି କଥାମାନ ବଚିନ ମଣିଲୁଁ ସେହୁ ଗୈରିକ ନେଇ କା ଚିତ୍ର ହେ । ସୁନ୍ଦର । ୬ । ସ୍ୱପ୍ନେ ଦେଖାଦେଲା ଯେଉଁ ନିଶା । ହୋଇଥିଲା ସେ ଦିନ ସୁଦଶା । ଜଳକଳଶ ଚନ୍ଦ୍ରବିମ୍ବ ଧରିବା ପରି ଯେତୁ କରୁଥିଲା ଆଶା ହେ । ସୁନ୍ଦର । ୭ । ଏତେ

---

## ବିଂଶ ଛାନ୍ଦ ।

୧ । ନବବାଳୀ—ନୂଆ ନାଗରୀ, କାଳୀ—କଳା ସ୍ୟାହି, ବର୍ଣ୍ଣ—ଅକ୍ଷର, ଅଳୀ—ସଖୀ ।

୨ । ବଢ଼େ—ପ୍ରବଢ଼େ, ଭୂପସୁତ—ରାଜା ପୁଅ, ଅବନୀ—ପୃଥିବୀ, ମଣ୍ଡଳ—ସମୁଦାୟ, ଗୁରୁ—ଅତ୍ୟନ୍ତ, ପୁଣି ବୃହସ୍ପତି ଦେବଗୁରୁ ।

୩ । ମନୋହର—ସୁନ୍ଦର, ହେମ—ସୁନା, ଗୁଞ୍ଜ—କାଇଁଚ ।

୪ । ଧରଣୀ—ପୃଥିବୀ, ଯାଚକ—ଭିକ୍ଷାରୀ ।

୫ । ଅରି—ଶତ୍ରୁ, କର—ହାତ ।

୬ । ରତନ—ସୁନା, କୋଷ—ଭଣ୍ଡାର ।

୭ । ନିଶା—ରାତି, ଚନ୍ଦ୍ରବିମ୍ବ—ଚନ୍ଦ୍ରଛାଇ, ପାଣି ମାଠିଆକୁ ଅନାଇଲେ ତା ଭିତରେ ଚନ୍ଦ୍ର ଛାଇ ପରି ଚନ୍ଦ୍ର ଦେଖାଯାଏ ।

ଦଇବେ ହେଲ ସେ ସତ । କେହ୍ନେ ନୋହିବ ପୂର୍ଣ୍ଣି ଲୋଭିତ ।
ଜୀବନ ଯିବ ପାଖରେ ନ ପାଇଲେ ଏହି ବାଣୀ ହୋଇବ ବଦତ ହେ ।
ସୁନ୍ଦର । ୮ । ଯାର ପଦହଣ୍ତ୍ରକ ଶତେ କୋଶ । ତାର ମେରୁ ଲଙ୍ଘିବାକୁ
ଆଶ । ଜଳେ ସଗରସୁତ ପ୍ରାୟ ସଜୀବେ ତାପାନଳେ ନୋହେ କ୍ଳେଶ
ନାଶ ହେ । ସୁନ୍ଦର । ୯ । ହରି ହର ସୁପ୍ରସନ୍ନ ଥିବ । ମାର ପୁରନ୍ଦର
ବଶ୍ୟ ହେବ । ଭାଗ୍ୟ ଭଗୀରଥ ହୋଇ ଯେବେ ତବ ସ୍ନେହ-ଗଙ୍ଗାଜଳ
ମଜ୍ଜାଇବ ହେ । ସୁନ୍ଦର । ୧୦ । ଭାବେ ମହୀ ଅନାଇ ଯାହାକୁ । ଏକାବର
ରହିବ ଏହାକୁ । ତାକୁ ସେ ଏକାନ୍ତେ ରସିବ ବୋଇଲେ ବାଳା ନ
ଯଉବ ଉତ୍ସାହକୁ ହେ । ସୁନ୍ଦର । ୧୧ । ଛଳେ ସେ ଦାସ୍ୟ ସଲିଳରାଶି ।
ନ ଭବବେ ମୋତେ ନିଜ ଦାସୀ । ସେନାଇ କହିବା କଥା ଏ ନୁହଇ
ସେନ ତୁମ୍ଭଙ୍କୁ କେମନ୍ତ ଦଣି ହେ । ସୁନ୍ଦର । ୧୨ । ଦୂତ ସଙ୍ଗେ ଅଇଲେ
ଦେଖିବ । କଥା ଯଥାର୍ଥ କେ ବା ଲେଖିବ । କୃଶକଟୀ ଅଟେ ପାଞ୍ଚେଟି
ଯିବାର ବଧୂ ସ୍ତ୍ରିଶ୍ୟ କରନ୍ତୁ ଦଇବ ହେ । ସୁନ୍ଦର । ୧୩ । ଫୁଲ ଭୃଙ୍ଗର
ଭୃଙ୍ଗ ଫୁଲର । ଫୁଲ କରଇ କି ଅଭିସାର । ପ୍ରତି ପ୍ରତିନିଧି ମନକୁ ପେଷିଛୁ
ତାହା ସଙ୍ଗେ ଏବେ ବଜେ କର ହେ । ସୁନ୍ଦର । ୧୪ । ଯେବେ ନାହିଁ
ଏତେ ଅନୁଗ୍ରହ । କେମା ନେନେ କାର୍ଯ୍ୟା କଲ ଗୃହ । ତୁମ୍ଭ ପୁର ତ
ଅଳକାରୁ ଅଧିକ ତହୁଁ ରମ୍ୟ ହେଲା କିଏ କହ ହେ । ସୁନ୍ଦର । ୧୫ ।
ହୃଦବନେ ଥିଲା ମନମୃଗ । ତହିଁ ବରହ ଅନଳ ବେଗ । ପଳାଇ ତୁମ୍ଭ
ଶୋଭାବନେ ପଶିଲା ତହିଁ ନାହିଁ ପର ଏ ଉଦ୍‌ବେଗ ହେ । ସୁନ୍ଦର ।୧୬।

---

୯ । ଲଙ୍ଘିବାକୁ—ଟପିବାକୁ, ଅଶା—ଇଚ୍ଛା, ସଗର ସୁତ—ସଗର ରାଜାଙ୍କ ପୁଅ, ସଜୀବେ—ଜୀବନରେ, କ୍ଳେଶ—କଷ୍ଟ, କପିଳ ମୁନିଙ୍କ କୋପାନଳରେ ସଗର ସୁତମାନେ ମରୁ ନ ଥିଲେ, ତଥିରେ କଅଁଳ ଦନରେ ଜଳୁଥିଲେ ।

୧୦ । ହରି—ବିଷ୍ଣୁ, ହର—ମହାଦେବ, ମାର—କନ୍ଦର୍ପ, ପୁରନ୍ଦର—ଇନ୍ଦ୍ର, ବଶ୍ୟ—ବାଧ୍ୟ, ପୁରନ୍ଦର ବଶ୍ୟ—ଇନ୍ଦ୍ର ବାଧ୍ୟ ଐରାବତ ।

୧୧ । ମହୀ—ପୃଥିବୀ, ବାଳା—ସ୍ତ୍ରୀ, ଏଠାରେ ଲାବଣ୍ୟବତୀ ।

୧୨ । ସଲିଳ—ପାଣି, କୃଶକଟି—ସରୁ ଅଣ୍ଟା ।

୧୩ । ଯଥାର୍ଥ—ପ୍ରକୃତ ।

୧୪ । ଭୃଙ୍ଗ—ଭଅଁର, ଅଭିସାର—ସଙ୍କେତ ଯାଗାକୁ ବେଶ ହୋଇଯିବା ।

୧୫ । ପୁର—ନଅର, ଅଳକା—କୁବେରର ପୁର ।

ପ୍ରଭୋ ବସ୍ତିର କରିବ ମନ ; ସ୍ମରଣର ହିଁ ଏହି ବିଧାନ । ପ୍ରକଟି କୁଜ୍ଝଟି ତପନଙ୍କୁ ଘୋଟି ନାଶ କରିଦେଇ ପଦ୍ମବନ ହେ । ସୁନ୍ଦର । ୧୭ । ପରମର୍ଶ ସେ ଜନଙ୍କୁ ମାରେ । ଈଶ୍ବରଙ୍କୁ ମାନ ଜ୍ୱାଳା କରେ । ତୁମ୍ଭେ ବଳବନ୍ତ ଅବଳା କୋମଳା ଅମ୍ଭ ପ୍ରାଣସଜନୀ ବେଭାରେ ହେ । ସୁନ୍ଦର । ୧୮ । ସ୍ୱାମୀ ତୁମ୍ଭ ସ୍ନେହୀ ହେଲାଠାରେ । ବିରହ ଯେ ଅଙ୍ଗ ଭୋଗ କରେ । ଏ ଓଣା ତାହାଙ୍କୁ ହେବ ମନେ ମନେ ବସି ଭାବନା କରିବ ଥରେ ହେ । ସୁନ୍ଦର । ୧୯ । ଜାତ ପଦ୍ମିନୀହାସକୁ ଗୃହି । ନିତ ମହାନାସ କରୁଥାଇ । ଚନ୍ଦ୍ର ସେ ହିଂସାରେ ସାନ୍ଦ୍ର ହୋଇ ଏବେ ଚନ୍ଦ୍ର ତନୁକୁ ଦେଉଛି ଦହି ହେ । ସୁନ୍ଦର । ୨୦ । ଜାଣପରି ଇନ୍ଦ୍ର ଜାଲମାୟା । ସବୁ ଦିଗେ ଦେଖାଇଛ କାୟା । ମାୟା କରି ମୋହିବାକୁ ତୁମ୍ଭଠାରେ ବାଳା ହୋଇନାହିଁ କି ବିନୟା ହେ । ସୁନ୍ଦର । ୨୧ । କେତେ କୁସୁମ ଜଗତେ ନାହିଁ । ରବିକର ନ ପାରଇ ସହି । ତଲେ ଶେଫାଳିକା ଏ ନବମାଳିକା ତଥା ବେଦନା ସହି ନୁହଇ ହେ । ସୁନ୍ଦର । ୨୨ । ତୁମ୍ଭ କୀର୍ତ୍ତିଚନ୍ଦ୍ରମା ଉଦିତ । କୁଳ କୁମୁଦକୁଳ ମୋଦିତ । ତାତ ସିନ୍ଧୁମାତ ଚକୋର ଜ୍ୟୋତ୍ସ୍ନାପିଣୀରେ ମଣ୍ଡିତ କଲ ଜଗତ ହେ । ସୁନ୍ଦର । ୨୩ । ନୃପସୁତ ତାରାମଧ୍ୟେ ଶୋହି । ପର ତସ୍କରଙ୍କୁ ଭୟ ଦେଇ । ଅମ୍ଭ ସଜନୀ ରଜନୀଠାରୁ କାମତମ ନ ଖଣ୍ଡିଲା ତାହିଁ ପାଇଁ ହେ । ସୁନ୍ଦର । ୨୪ । ଭାନୁ ଉଦିଲେ ପିହିତମଣି । ଯଥା

---

୧୭ । ପରଶର—କନ୍ଦର୍ପ ବାଣ, କୁଜ୍ଝଟୀ—କୁହୁଡ଼ି, ତପନ—ସୂର୍ଯ୍ୟ ।

୧୮ । ପରମର୍ଶ—ପୂର୍ବରୁ କ୍ଷମାନ୍ୱିତେ, ଈଶ୍ୱର—ମହାଦେବ, ଅବଳା—ବଳହୀନା ସ୍ତ୍ରୀ ।

୨୦ ମହାନାସ—ଅତ୍ୟନ୍ତ ଭୟ, ସାନ୍ଦ୍ର—ଅଗ୍ନି ।

୨୧ । କାୟା—ଦେହ, ବିନୟ—ନମ୍ରତା ।

୨୨ । କୁସୁମ—ଫୁଲ, ଜଗତ—ସଂସାର, ରବିକର—ସୂର୍ଯ୍ୟ କିରଣ, ଶେଫାଳିକା—ଗଙ୍ଗଶିଉଳି, ନବମାଳିକା—ନଅଳି ଫୁଲ ।

୨୩ । କୁଳ—ବଂଶ, କୁମୁଦ—କଇଁ, କୁଳ—ସମୂହ, ତାତ-ସିନ୍ଧୁ—ପିତା ହେଲେ ସମୁଦ୍ର, ମାତ ଚକୋର—ମା ହେଲେ ଚକ୍ଷୁଅ ।

୨୪—ନୃପସୁତ—ରାଜପୁତ୍ର, ତାରାମଧ୍ୟେ ଶୋହି—ଅନ୍ୟ ରାଜପୁତ୍ର ତାରା ହେଲେ ସେମାନଙ୍କ ମଧ୍ୟରେ ତୁମ୍ଭେ ଶୋଭିତ, ପର—ଶତ୍ରୁ, ତସ୍କର—ଚୋର, ଶତ୍ରୁ ଚୋରଙ୍କୁ ଭୟ ଦିଅ ।

ଅଗ୍ନି ଜାତ କରେ ପୁଣି । ତୁମ୍ଭ ପୀରତିବଶରେ ମହାବ୍ୟଥା ତଥା ପାଉଛ୍ଛି ରମଣୀମଣି ହେ । ସୁନ୍ଦର । ୨୫ । ଅମ୍ଭ ସଖୀ ଅତି ସ୍ନେହାଧୀନ । ଲଭିବ କି ହେଲେ ହୀନମାନ । ଅନଳେ ଦହିଲେ ସୁବାସକୁ ନାକି କେବେ ଛାଡ଼ିଇ ଚନ୍ଦ୍ର ଚନ୍ଦନ ହେ । ସୁନ୍ଦର । ୨୬ । ମନେ କରିଅଛି ପଙ୍କଜାକ୍ଷୀ । ପଲ୍ଲ ପ୍ରୀତିରେ କପୋତପକ୍ଷୀ । ଧନ୍ୟ ଶବଦ ତ ସେରୂପେ ରହିବ ଅଗ ସ୍ନେହରେ ତାହାକୁ ଲେଖି ହେ । ସୁନ୍ଦର ।୨୭। ମହାଶଙ୍କା ହୋଏ ଏହା ଭାବି । ବୀରଯଶେ ବର୍ଣ୍ଣିଛନ୍ତି କବି । ଅତି କଠିନ ଉରସ୍ଥଳ ବାଜିଲେ ସରୂପେ ହତ ହୁଏ ପବି ହେ । ସୁନ୍ଦର ।୨୮। ନାରିବୋଧ ଏହା ଶୁଣିକରି । ହୋଇଥିବ ନାରିକେଳ ପରି । ଦୟାଶୀଳ ନାମ ନୋହିଲେ ତାହାଙ୍କ ହୃଦେ ଅଛି ଘନରସ ପୂରି ହେ । ସୁନ୍ଦର । ୨୯ । ଚନ୍ଦ୍ର ମାର ଅଶ୍ୱିନୀକୁମାର । ଏମାନେ ଯେ ପରମ ସୁନ୍ଦର । ଏ ମୂର୍ତ୍ତି ହୋଇ ଯିତବେ ଉତପତ୍ତି ବୋଲି ପ୍ରଶଂସା ଖ୍ୟାତି ତୁମ୍ଭର ହେ । ସୁନ୍ଦର । ୩୦ । ଶୋଭା ଗୃହଁ ଶିଳା ଦ୍ରବୀଭୂତ । କର ଉଚ୍ଛନ୍ନ ଯୁବାର ଚିତ୍ତ । ନୃପନନ୍ଦନୀର ବ୍ୟାଧି ନାଶ କଲେ ଅମ୍ଭେ ଜାଣିବୁଁ ଏ କଥା ସତ ହେ । ସୁନ୍ଦର । ୩୧ । ଯେହୁ ଗୁଣ ବଶ୍ରାମ ମଣ୍ଡପ । କାହିଁ ସୁତ ତାଙ୍କ ଅନୁରୂପ । ଅମ୍ଭ ସଖୀ ଯେ ତୁମ୍ଭର ହୋଇବ କେଉଁ ସ୍ଥାନେ କରିଥିଲା ତପ ହେ । ସୁନ୍ଦର । ୩୨ । ଆଜ

---

୨୫ । ମିହିରମଣି—ସୂର୍ଯ୍ୟକାନ୍ତ ମଣି, ଭାନୁ—ସୂର୍ଯ୍ୟ, ସୂର୍ଯ୍ୟକାନ୍ତ ମଣିରେ ସୂର୍ଯ୍ୟ ତେଜ ପଡିଲେ ସେଥିରୁ ନିଆଁ ବାହାରେ ।

୨୬ । ଚନ୍ଦ୍ର—କର୍ପୂର, ଅନଳ—ନିଆଁ ।

୨୭ । ପଙ୍କଜାକ୍ଷୀ—ପଦ୍ମନେତ୍ରୀ, କପୋତୀ ଶବରର ଜାଲରେ ପଡିବା ଦେଖି କପୋତ ସ୍ନେହ ନ ଛାଡ଼ିପାରି ସେହି ଜାଲରେ ଯାଇ ପଡ଼ିବାରୁ ବନ୍ଧନ ହେଲା ।

୨୮ । ପବି—ବଜ୍ର, ଉରସ୍ଥଳ—ଛାତି ।

୨୯ । ନାରିକେଳ—ନଡ଼ିଆ, ନଡ଼ିଆର ବାହାରଟି ଟାଣ ମାତ୍ର ଭିତର ତାର କୋମଳ ।

୩୦ । ମାର—କନ୍ଦର୍ପ, ମୂର୍ତ୍ତି—ରୂପ, ଉତପତ୍ତି—ଜାତ ।

୩୧ । ଶିଳା—ପଥର, ଦ୍ରବୀଭୂତ—ତରଳ ହେବା ।

୩୨ । ଗୁଣ ବଶ୍ରାମ ମଣ୍ଡପ—ଗୁଣମାନଙ୍କର ଆଶ୍ରୟ ନେବା ସ୍ଥଳ, ଅତ୍ୟନ୍ତ ଗୁଣବାନ, ଅନୁରୂପ—ସମାନ ।

ଅଧିକ ଜଣାଏ କିସ । କ୍ଷମା କରିବା ଜଣାଣ ଦୋଷ । କର୍ମ ମୋହ ସ୍ତମ୍ଭ ପ୍ରତିବନ୍ଧ ଯେଣୁ ଲେଖି ନ ପାରିଲି ରାମାଛିଣ ହେ । ସୁନ୍ଦର ।୩୩। ଶିବରାତ୍ରୀ ରାମରେ ଜନ୍ମିବ । ରାମେଶ୍ୱର ଦେବଠାରେ ହେବ । ଯେବେ କରୁଣା ଅରୁଣାଧରାଠାରେ ଥିବ ସେଠାକୁ ବିଜେ କରିବ ହେ । ସୁନ୍ଦର । ୩୪ ।

ପତଙ୍ଗ ପତଙ୍ଗ ସେନେହ ଧାରି । ଯଥା ଅନଳ ତାହାକୁ କାରି । ବିଜେ ନ କଲେ ଏ ପୀରତି କୀରତି ଖ୍ୟାତି ହୋଇବଟି ସେହିପରି ହେ ।ସୁନ୍ଦର ।୩୫। ଲେଖି ଏରୂପେ ପତ୍ରିକା ତାଳ । ମର୍ତ୍ତ୍ୟନନ୍ଦନା ହସ୍ତକୁ ଦେଲି । ପାଠକରି ଯେଣୁ ରସଗର୍ଭ ଭାଷା ଅତି ତୃପତି ହୋଇ ମୂଦଲି ସେ । ସୁନ୍ଦରୀ ।୩୬। କରି ବନ୍ଧନ ରୁଚିର ଚୀରେ । ଜତୁ ଦେଲି ଯତନେ ଉପରେ । ଦୁର୍ଗା ମାଧବ ସୁନ୍ଦର ବ୍ରହ୍ମଗୃହୀ କରେ ଦେଲାଅତି ହରଷରେ ସେ । ସୁନ୍ଦରୀ ।୩୭। କାର ସନ୍ନିଧେ ଦ୍ୱିଜର ଅଗେ । ସଖୀମାନେ କହିଲେ ସରାଗେ । ବେଗେ ଆଗମନ ନ କଲେ କୁମାର ରାମା ନେଲାଟି ଶମନ ଭୋଗେ ହେ । ସୁନ୍ଦର । ୩୮ । ଯତ୍ନେ ଯେନଣ ଅମୂଲ୍ୟ ମୃଦ । ଦୁଇଦ୍ୱିଜ ହୋଇଲେ ପ୍ରମୋଦ । ମେଲାଣି ହୋଇ ସାଧୁତିକୁ କହିଣ ତରି ହରିଙ୍କ ମଙ୍ଗଳପ୍ରଦ ହେ । ସୁଜନେ । ୩୯। ଯେଣୁ କାଞ୍ଚି ଶୋଭନୀ ଉଦନ୍ତ । କାଞ୍ଚିପୁରେ ଗମନ ତୁରିତ । ଉପଇନ୍ଦ୍ରଭଞ୍ଜ ବୀରବର ଚିତ୍ତ-ଭୃଙ୍ଗ ରାମ ପାଦପଦ୍ମେ ରତି ହେ । ସୁଜନେ । ୪୦ ।



୩୩ । ପ୍ରତିବନ୍ଧ—ବାଧା, ରାମା ଛିଣ—ସ୍ତ୍ରୀ ଶ୍ରେଷ୍ଠ, କାମ ବିକାରରେ ଅଷ୍ଟସାତ୍ତ୍ୱିକ ହୁଏ ଯଥା, କମ୍ପ ପ୍ରଭୃତି ।
୩ । ଅରୁଣାଧରା ( ଅରୁଣ + ଅଧରା ), ଅରୁଣ—ଲାଲ ସୂର୍ଯ୍ୟ, ଅଧରା—ଓଷ୍ଠୀ,
୩୫ । କୀରତି—ଯଶ, ବିଜେ—ଆସିବା ।
୩୬ । ମର୍ତ୍ତ୍ୟନନ୍ଦନା—ମର୍ତ୍ତ୍ୟ ଝିଅ ରସଗର୍ଭ—ରସପୂର୍ଣ୍ଣ, ତୃପତି—ସନ୍ତୋଷ ।
୩୭ । ରୁଚିର ଚୀର—ସୁନ୍ଦର ପାଟକନା ଜତୁ—ଜଉ ।
୩୮ । ସରାଗେ—ସ୍ନେହରେ, ଶମନ ଭୋଗ—ଯମପୁର ଯିବା, ମୃତ୍ୟୁ ।
୪୦ । କାଞ୍ଚି ଶୋଭନୀ—ଚନ୍ଦ୍ରହାର ଶୋଭନୀ, ଉଦନ୍ତ—ବାର୍ତ୍ତା ।

ଲାବଣ୍ୟବତୀ ନିଜର ମନର ଭାବ ବିନମ୍ର ଭାବରେ କୁଙ୍କୁମରେ ଲେଖି ସେ ପତ୍ରକୁ ଜଉମୁଦ କରି ବ୍ରହ୍ମଚାରୀ ହାତରେ ଦେଇ ପଠାଇଲା ।



# ଏକତ୍ରିଂଶ ଛାନ୍ଦ ।

( ଚନ୍ଦ୍ରଭାନୁର ବରହ ଓ ବର୍ଷା ବର୍ଣ୍ଣନ ଶ୍ଳୋକ ପଢ଼ିବାପର ରାମେଶ୍ବର ଗମନ ବସ୍ତୁର । )

ରାଗ ଭୈରବ ।

ଏଥୁଅନ୍ତେ ଦେଖେ ଯାଇ ହୋଇଲା ବରଷା । ବସ୍ତୁର କରଇ ଥିଲା ଏମନ୍ତ ଭରସା । ୧ । ରସାଳସା ସଙ୍ଗ ହେଲା ଜଗତ୍ସୁ ହୋଇବ । କେତେ ବେଗେ ଏ ଋତୁକୁ କଲା ଦୁର୍ଦ୍ଦଇବ । ୨ । ବୃଦ୍ଧି ହେଲା ନଦୀମାନ ଲୋଚନ କରବେ । କୋଳ ଅବଲମ୍ବ କର ପଥିକେ ତରବେ ।୩। କୋଳ ଅବଲମ୍ବ ନାହିଁ କାମ ନଦୀ କେହି । ତରବ କୋଳସ୍ବରୂପୀ କ ଅଛନ୍ତ ବହି । ୪ । ସୁମନା ଚୁମ୍ବନେ ଭୃଙ୍ଗ ହୋଇ ତୋଷମନ । ଥାଉ ସୁମନା ଚୁମ୍ବନ ନାହିଁ ଦରଶନ ।୫। ଘନରସ ଯୋଗେ ବନ ଦାବାନଳ ଲିଭେ । ଘନରସ ଯୋଗ ନାହିଁ କ କରବ ଏବେ ।୬। ହୃଦବନ ଦାବାନଳ କେବେ ହେବ ଶାନ୍ତ । ମୋର କର୍ମ ଯେନି ହେଲା ଅପୂରବ ଗତ । ୭ । ନ ଲିଭଇ ଅଧିକେ ଏବେ ଜଳଇ ଯେନ । ଶିଖୀ ନାମ ଯେ ଦେଇଛି କେକୀକି ସେ ଧନ୍ୟ । ୮ । କାମୀ ହୃଦ ଖାଣ୍ଡବ ଦହନେ ଏ ପାଣ୍ଡବ । କଲାଣି ଶିଖା ପ୍ରକାଶ ଆରମ୍ଭ ତାଣ୍ଡବ । ୯ । ଆରେ ଶ୍ୟାମା କ କରବ ତୁହି ପରିତ୍ରାଣ । କୋଳ ଯୋହକୁ ଭଳିଲା କ୍ରମର ସେଷଣ । ୧୦ ।

---

## ଏକତ୍ରିଂଶ ଛାନ୍ଦ ।

୧ । ଭରସା—ଆଶା ।

୨ । ରସାଳସା—ସୁନ୍ଦରୀ ଲାବଣ୍ୟବତୀ, ସଙ୍ଗ—ଏକତ୍ରିତ, ମିଳନ, ଦୁର୍ଦ୍ଦଇବ—ମନ୍ଦ ବଧାତା ।

୩ । ଲୋଚନ—ଦେଖିବା, କୋଳ—ଡ଼ଙ୍ଗା, ଅବଲମ୍ବ—ଆଶ୍ରୟ ।

୬ । ଦାବାନଳ—ବନଅଗ୍ନି, ଘନରସ – ଶ୍ରେଷ୍ଠ ରସ, ରତିରସ ।

୮ । ଶିଖି—ମୟୂର, ଅଗ୍ନି, କେକୀ—ମୟୂରୀ ।

୯ । ପାଣ୍ଡବ ଅର୍ଜ୍ଜୁନ ଇନ୍ଦ୍ରଙ୍କ ଅଜାଣରେ ଖାଣ୍ଡବବନ ଅଗ୍ନିକି ଦେଇଥିଲେ, ସେହିପର କାମୁକ ଲୋକର ହୃଦୟରୂପ ଖାଣ୍ଡବ ବନକୁ ଭୋଗ କରବାରେ ତୁମ୍ଭେ ପାଣ୍ଡବ ସ୍ବରୂପୀ ।

୧୦ । ଶ୍ୟାମା—ସୁନ୍ଦରୀ ସ୍ତ୍ରୀ, ପରିତ୍ରାଣ—ଉଦ୍ଧାର ।

ସଖା ମୁଖେ ଜଳ ସିଞ୍ଚି ଅଞ୍ଚଳେ ବିଞ୍ଚିଲେ । ଚେତନ ବଦନେ ପଲ୍ଲବ ଟେଣେଯେ ଶୁଆଇଲେ । ୧୧ । ଏ ସମୟେ ପରବେଶ ବ୍ରହ୍ମଗୃହୀ କୀର । ଏ ଗୀତ ଦେଖି ଭାଷିଲେ ଧୀର ହେବା ବୀର । ୧୨ । ଉଠ ଓହେ ରସିକ ଯିବା ସୁନ୍ଦରୀ ସନ୍ନିଧି । ଅଙ୍ଗେ ସାଧୁଛୁ ସେ କାମନାଶ ଅବ୍ଜଷଧି । ୧୩ । ବାଳ ଶଇବାଳ ନବପ୍ରବାଳ ଅଧର । କୋମଳବାହୁ କମଳନାଳ ମନୋହର । ପ୍ରେମଜଳେ ପୂର୍ଣ୍ଣ ନାଭି ରସକୂପ ଲେଖ । ହାସ ଘନସାର ଅବ୍ଜଷଧିଈଶ ମୁଖ ହେ । ୧୫ । ଅଧର ରୋଚକ ଦ୍ରବ୍ୟମାନ ଅଛି ସଞ୍ଚି । ମାରକ୍ଷର ଛୁର କେତେ ଯାଇ ସିନା ଘୁଞ୍ଚି ଯେ । ୧୬ । ଦଶନ ଡ଼ାଳିମ୍ବବୀଜ ମାତୁଲିଙ୍ଗ ସ୍ତନ । ବଚନ ସିଦ୍ଧାରେ ଆଗ ହର ନେଇ ମନ । ୧୭ । ମୃତ ପ୍ରାୟ ହୋଇଥିଲା ମହୀପତିସୁତ । ଏ ବାଣୀ ଶ୍ରବଣ ହେଲା ସଞ୍ଜୀବନୀ ମନ୍ତ୍ର । ୧୮ । ଉଠି ବସି ଅନାଇଁଲା ଦୂତଙ୍କ ବଦନ । ନୂତନ ଅନ୍ଧ ପ୍ରାପତ ହେଲା କି ନୟନ । ୧୯ । ଅତି ଦରିଦ୍ର ରତନ ପାଇଲାର ପରି । ଶୁକ ଶିର ଚୁମ୍ବି ଦ୍ୱିଜେ ନମସ୍କାର କରି । ୨୦ । କୃତକୃତ୍ୟ ଦୂତ ହେଲା ଘେନିଲା ଚିଠାଉ । ଶୁଣି କେତେ ରସ ଜାତ 'ଫିଠାଉ ଫିଠାଉ । ୨୧ । ମୃଦ ଦେଖି ମୃଦ ହେଲା ଲଭି ଲୋଭୀ ନେନ । ପ୍ରେମ ଅଙ୍କୁର ରୋମାଞ୍ଚ ପୂର୍ଣ୍ଣ ହେଲା ଗାତ୍ର । ୨୨ । ସଙ୍କେତ ଜାଣିବା ପାଇଁ ମନ ଉଦବେଗ । କରକୁ ସ୍ତୁତ କରୁଛି ବେଗ ଭାଙ୍ଗ ଭାଙ୍ଗ । ୨୩ । ଶ୍ରବଣକୁ ଶ୍ରବଣ ହୁଳୁଳ ହେଉଅଛି । ରସ ଆସ୍ୱାଦନକୁ ରସନା ଏକା ଇଚ୍ଛି ଯେ । ୨୪ । ଜୀବ ଭଣେ ଅନୁକୂଳ କଲା ଏହା ଭାବ । ଅସୀଉକାରରେ ଯିବ ସୀଉକାରେ ଥିବ ଯେ । ୨୫ । କବା ବାଲା ମୃଦେ ତାକୁ ଶଙ୍ଖେ ପୂରାଇଲା । ଚାଠଙ୍କ ଚକି ଅଲ୍ଲାଦ ରଖିବ ବୋଇଲା । ୨୬ । ସର୍ବେ ନେନେ ସ୍ତୁତି କଲେ ହୋଇବୁ ତୁ ମୋହ । ମୃଦ ଫିଟୁ ଦୁଃଖ ତୁଟୁ ବର୍ଣ୍ଣ ଦେଖ ତୁହି ଯେ ।୨୭।

---

୧୩ । ସନ୍ନିଧି—ପାଖକୁ, ଶଇବାଳ—ଶିଉଳ, ଘନସାର—କର୍ପୂର, ଅବ୍ଜଷଧି ଈଶ—ଚନ୍ଦ୍ର ।

୧୬ । ରୋଚକ—ରୁଚିବା, ଦଶନ—ଦାନ୍ତ, ମାତୁଲଙ୍ଗ—ଟେଭା, ସିଦ୍ଧା—କନ୍ଦ ।

୨୨ । ମୁଦ—ବନ୍ଦପତ୍ର, ମୁଦ—ଆନନ୍ଦ, ଗାତ୍ର—ଦେହ, ରୋମାଞ୍ଚ—ରୋମ ଠାଙ୍କୁରିବା ।

୨୪ । ଶ୍ରବଣ—କାନ, ଶ୍ରବଣ—ଶୁଣିବା, ରସନା—ଜିଭ ।

୨୬ । ଚାଠଙ୍କ—କାପ ।

ପ୍ରଥମେ ଚୋଦ୍ଦ ପରେ ଯେଣି ସିନା ବସୁଁ । ଅମ୍ଭଙ୍କୁ ଲକ୍ଷଣ ସୁଖ ଭୁଞ୍ଜୁ କେଉଁ ଯଶୁଁ ଯେ । ୨୮ । ମୂର୍ଖଙ୍କୁ ବୁଝାଇବାର ଅତି କଷ୍ଟ ଜାଣି । କେତେବେଳେ ବଳମ୍ବ ଛାଡ଼ାଏ ଯେଣି ପୁଣି ଯେ । ୨୯ । ନିବଡ଼ ନିତଙ୍କ ଏହୁ ରୂପେ ଏହୁ ଭର । ଯେଣି ଫେଡ଼ିବ ଜଙ୍ଘିବ ଏମନ୍ତ ବଗ୍ଗୁର ଯେ ।୩୦। ରଖି ସେ ନ ଦେଲ୍ଲ ଅଡ଼ ଇନ୍ଦ୍ରସୁଙ୍କ ଦ୍ୱନ୍ଦ । ଫେଇ ପତ୍ରିକାକୁ ଗୃହୁଁ ହୋଇଲ୍ଲ ଆନନ୍ଦ ଯେ । ୩୧ । ବରଲ ସମବର୍ତ୍ତୁଳ ତା ଅକ୍ଷର ଧାଡ଼ି । ନାଗେଶ୍ୱର ପୁଷ୍ପକେଶରରେ ଭନୁ ଜଡ଼ି ଯେ । ୩୨ । ଶ୍ରେଣୀ ଶ୍ରେଣୀ ହୋଇ ଶିଶୁମଧୁକର କି ସେ । ଫୁଲ୍ଲ ପୁଣ୍ଡ୍ରୀକେ ବସିଛନ୍ତି ରସବଶେ ଯେ ॥ ରଜତପତ୍ରେ କି ଉତ୍କୁଟିଛି ହେମମଲ୍ଲୀ । ଫୁଲ ପତ୍ରି ପଦ ବର୍ଣ୍ଣାଦିତସ୍ଥାନ ଫୁଲ୍ଲୀ ।୩୪। ଗୃହୁଁ ଉନ୍ମାଦ ଶୁସନ ଦହନ ଶୋଷଣ । ସମ୍ମୋହନ ଯେଣି ପଞ୍ଚ ବାଣ ପଞ୍ଚବାଣ ଯେ ।୩୫। ରୂତ ନବମାଳିକା ଅଶୋକ ନୀଲୋତ୍ପଳ । ପଦ୍ମ ଯେଣି ପାଞ୍ଚ ଜାତି ଫୁଲରେ ମଞ୍ଜୁଳ ଯେ ।୩୬। ମନ୍ତ୍ରବଳେ ସେକାଳେ ଅଲକ୍ଷ୍ୟ ଲକ୍ଷ୍ୟଭେଲ୍ଲ । ଏକଣର ଯାର ମହେଶ୍ୱର ନ ସହିଲ୍ଲ ଯେ ।୩୭। ସହିଲ୍ଲ କେମନ୍ତେ ଏହି ମନୁଷ୍ୟ ଶରୀରେ । ଯେବେନେ ପଡ଼ି ଭସ୍ମ ସେ ଶରହକୃଶାନୁରେ ଯେ ।୩୮। ମନୁ ଜାତି ପାର ମନ୍ତ୍ରେ ମନ ମାରୁ ଛାଡ଼ । ସାତ୍ତ୍ୱିକ ଭୂଲ ସିଦ୍ଧିକି ରଖିଲ୍ଲ ନିସ୍ପୃତ ଯେ ।୩୯। କୁମାର ପଢ଼ିଲ୍ଲ ପତ୍ର ପୁନଃ ପୁନଃ କରି । ପଦ ପଦକେ ଅଶେଷ ରସ ଅଛି ପୂରି । ଯେ ।୪୦। ଏଥୁ ଯେଣିଲ୍ଲ ତାହାର ରସବତୀ ଗୁଣ । ଦୃଷ୍ଟାନ୍ତରୁ ଜାଣିଲ୍ଲ ପଣ୍ଡିତା ଗୁଣ ପୁଣ ଯେ ।୪୧। ସଖୀନାମେ ଲେଖିବାରୁ ଜାଣିଲ୍ଲ ଚତୁରୀ । ସଙ୍କେତରୁ ଜାଣିଲ୍ଲ ସେ ବରଜେ ଅତୁରୀ ଯେ ।୪୨। ଶିରେ ଉରେ ଲଗାଇଲ୍ଲ ପୁନଃ ପୁନଃ ପତ୍ର । କଷ୍ଟି କଷ୍ଟି ସାନ୍ତ୍ୱନା ହୋଇଲ୍ଲ ଚେତେଣେ ଗାତ୍ର ଯେ ।୪୩।

---

୩୨ । ବରଲ—ପରିଷ୍କାର, ସମବର୍ତ୍ତୁଳ—ସମାନ ଗୋଲ ।

୩୩ । ଶିଶୁ ମଧୁକର—ଭଅଁର ଛୁଆ, ଫୁଲ୍ଲ—ଫୁଟିଲ୍ଲ, ପୁଣ୍ଡ୍ରୀକ—ଧଳାପଦ୍ମ ।

୩୪ । ରଜତ ପତ୍ରେ—ରୂପା ପତ୍ରରେ, ହେମମଲ୍ଲୀ—ସୁନାମଲ୍ଲୀ ।

୩୬ । ନବମାଳିକା—ନଆଳି, ନୀଲୋତ୍ପଳ—ନୀଳକଇଁ ।

୩୭ । ମହେଶ୍ୱର—ମହାଦେବ ।

୩୮ । କୃଶାନୁ—ଅଗ୍ନି ।

୩୯ । ସାତ୍ତ୍ୱିକ—ଉତ୍ତମଭାବ, କାମଭାବ ଛାଡ଼ ଦେବା ।

୪୦ । ଦୃଷ୍ଟାନ୍ତରୁ—ଉପମାରୁ, ପଣ୍ଡିତା—ବିଦ୍ୟାମତୀ ।

୪୨ । ଅତୁରୀ—ଅସ୍ଥିରା ।

ସମ୍ଭାବନା କଲା ଗାବକୁହିଁ ଶାନ୍ତିକଲା । ଅଙ୍ଗେଅଙ୍ଗେ ଭାଗ ନେଲେ ଯେତା ଭାଗ ଦେଲା ଯେ ।୪୪। ନେତ୍ର ଦେଖି କର୍ଣ୍ଣ ଶୁଣି ମନ ଯେନି ତୋଷ । କର ଫେଲି ମୁଖ ପିଇ ଯିବ ଭୟ ନାଶ ଯେ ।୪୫। କହେ ମନ୍ତ୍ରୀ ପୁତ୍ରେ ହିତ ସୁତ ମୁଖ ଗୃହିଁ । ଶିବରାତ୍ରୀ କି ଯିବାକୁ ପ୍ରିୟା ଅଛି ଲହ୍ୟେ ।ଁ କି ଉପାୟ କର ଯିବା ପୁଣ ଦେଶ ଦୂର । ଶୁଣି ସେ କହିଲେ ଅଛି ତହିଁକି ବରୁର ଯେ ।୪୭। ଅନ୍ୟେ ସମ୍ମତ କରାଇ ସେନା ଦଣ୍ଡଧାରୀ । ଏ କେଉଁ କଥା ସମ୍ମତ କଲା ଯେବେ ନାରୀ ଯେ ।୪୮। ପୁଚ୍ଛେ ବୀର ଦୂତେ ଅଜ କି କହିଛୁ ଯୋଷା । ବୀର କହେ କି କହିବ ଶୁଣ ତାର ଦଶା ଏହ ।୪୯। ତର ତର ଭ୍ରମ୍ୟ ହେଉେ କି କାତରତର । ପର ପରତରୁ ଦୁଃଖ ସରୁ ଶର ଶର ଯେ । ।୫୦। ଜର ଜର ତନୁ ବାଲି ଫୁଲଶର ଶର । ଥର ଥରହୋଇ ବୋଲେ କଷ୍ଟ ହର ହର ଯେ ।୫୧। ବର ବରନାକୁ ଦହେ ସୁଧାକର କର । ସାର-
-ସାରସପତର ଗନ୍ଧସାର ସାର ଯେ ।୫୨। ମାର ମାରଣରୁ ପୂରିଲିଛି ଗାର ଗାର । ବାର ବାର ପ୍ରଳାପ ଅନାଇଁ ତାର ତାର ଯେ ।୫୩। ବର ବୀରହ ନାଶ ରସନଧିର ଧୀର । ନ ଜୀଇବ ଅକ୍ତ ହେଲେ ଶିଳମ୍ବ ପିଡାର ଯେ ।୫୪। ଏ ବଚନେ ଛଇଲ ହୋଇଲା ଛନଛନ । ଅଶ୍ରୁ ପୂରିଲ ନୟନ କଲାଥନ ଥନ ଯେ । ୫୫ । ପୁଣି ଶୁଣାଇ ପଢ଼ିଲା ସୁନ୍ଦରୀ ସନ୍ଦେଶ । ପଦେ ପଦେ ଅର୍ଥ କର ଜେନିଲା ସୁରସ ଯେ । ୫୬। ସେ ପଦ ହୋଇଲା ଜାଣ ବକ-ଶଉ ପଦ୍ମ । ସେଲମ୍ବ ହୋଇ କୁମାର ମନେ କଲା ସଦ୍ମ ଯେ । ୫୭ । ପ୍ରତ୍ୟକ୍ଷେ ଶୁକ ବୃତ୍ତକୃଷ୍ଣ ରମା କଥା । କହିବାରେ ଅନ୍ତର ଅଧିକାଧିକ ବ୍ୟଥା ଯେ । ୫୮ । ଫାଲ୍ଗୁନ ଫାଲ୍ଗୁନ ପୁନଃପୁନଃ ଜପ କରେ । ଦୁଃଖ-ଗ୍ରୀଷ୍ମ ନାଶ ହୋଇବାର ସେ ବରୁରେ ଯେ । ୫୯ । ସୁତ କରେ

୪୮ । ସମ୍ମତ—ସ୍ୱୀକାର ।

୪୯ । ଯୋଷା—ସ୍ତ୍ରୀ, ଦଶା—ଅବସ୍ଥା ।

୫୦ । କାତରତର—ଅତ୍ୟନ୍ତ ଅସ୍ଥିର, ଶର—ଅତ୍ୟନ୍ତା ଶର—ବିନାଶ ।

୫୧ । ହରହର—ନାଶକର ।

୫୨ । ସୁଧାକର—ଚନ୍ଦ୍ର, କର—କିରଣ, ସାରସାରସ ପତର—ଭଲ ପଦ୍ମ-ପତ୍ର, ଗନ୍ଧସାର—ଚନ୍ଦନ ।

୫୩ । ପ୍ରଳାପ—ଅକ୍ଷେପ, ବାଜେରକମ ଗପିବା ଓ ମୋହଯିବା ପ୍ରଭୃତି ।

୫୭ । ବକଶଉ—ଫୁଟିଲା, ସେଲମ୍ବ—ଭ୍ରମର, ସଦ୍ମ—ଘର,

୫୯ । ଦୁଃଖଗ୍ରୀଷ୍ମନାଶ—ଗ୍ରୀଷ୍ମନାଶ କରିବାକୁ ଶରଶଯ୍ୟା କରିଥିଲେ । ସେତ-ପର ଲାବଣ୍ୟବତୀ ମଦନ ଶରରେ ବ୍ୟଥିତ ।

ଶିବସ୍ୱର୍ଗି ପଦ କଲ ସେବି । ସେହିଠାରେ ଦର୍ଶନ କରାଇ ଭାବନିଧି ଯେ । ୬୦ । କେଉଁ ମାସେ କେଉଁ ଦିନ ଯାଏ ସେ ଲେଖିଲ । ବୁଦ୍ଧି ନୋହୁ-ତାଙ୍କୁ ଚନ୍ଦ୍ରୀକବର ଗୁଣାଇ ଯେ ।୬୧। ବାଳୀପ୍ରିୟ ହୋଇ କର ବାଳ-ବିନାଶନ । ହରପ୍ରିୟ ହୋଇ କର ହର ବିଚ୍ଛେଦନ ଯେ ।୬୨। ସ୍ୱୟଂ ଚକ୍ରଧର ଚକ୍ରଧ୍ୱଜହରଣକାରୀ । ସେ ରାମଚନ୍ଦ୍ର ଚରଣ ଚିତ୍ତରେ ସୁମର ଯେ ।୬୩। କହେ ଉପେନ୍ଦ୍ର ଭଞ୍ଜ ବୀରବର ରସ । ନୃପସୁତ ଉତ୍କଳକାରିଙ୍କ ଛାନ୍ଦ ଶେଷ ଯେ । ୬୪ ।



## ଦ୍ୱାବିଂଶ ଛାନ୍ଦ ।

### ଲାବଣ୍ୟବତୀର ବିରହ ।

### ରାଗ କାମୋଦୀ ।

ଦେଖି ନବକାଳିକା ବକାଳିକାମାଳିକା ଅଳି କାଳିକା କାନ୍ତ ସ୍ମର । ରକ୍ଷା କେମନ୍ତ କର କରିବା ମତ୍ତକରିଗତିକି ଏମନ୍ତ ବିଚାର ସେ । ସହଚରୀ । ହବେ ବଞ୍ଚିଲେ ଏ କାଳକୁ । କଥା ଥିବ କାଳକାଳକୁ । ଏବେ ତ କ୍ଷୀଣ ଦିନ ହେଲା ଦୁର୍ଦ୍ଦିନ ଦିନ ନ ଲଭୁଁ ବଲ୍ଲଭମେଳକୁ ଯେ ।

---

୬୨ । ବାଳୀପ୍ରିୟ—ସ୍ତ୍ରୀ ପ୍ରତି ଆଶକ୍ତ, ବାଳବିନାଶନ—ବାଳବାନରନାଶକ, ହରପ୍ରିୟ—ମାର୍କଣ୍ଡେୟପ୍ରିୟ, ହର—ହରଣକର, ଅସୁର ।

୬୩ । ଚକ୍ରଧ୍ୱଜହରଣକାରୀ—ଚକ୍ରବର୍ତ୍ତୀ ରାବଣ ପୁତ୍ରଙ୍କୁ ମାରିଥିଲେ ।



## ଦ୍ୱାବିଂଶ ଛାନ୍ଦ ।

୧ । ନବ କାଳିକା—କଳାମେଘ, ବକାଳିକା ମାଳିକା—ବଗସମୂହ, ଅଳୀ—ସଖି, କାଳିକାକାନ୍ତ—କାଳିଙ୍କ ସ୍ୱାମୀ ମହାଦେବ, କେମନ୍ତ କର—କେଉଁ ଉପାୟରେ ମତ୍ତକରିଗତି—ହସ୍ତୀଗମନା—ଲାବଣ୍ୟବତୀ, କ୍ଷୀଣ—ଅଳ୍ପ, ବଲ୍ଲଭମେଳ—ସ୍ୱାମୀସଙ୍ଗ, ସଖିମାନେ କଳାମେଘରେ ଧଳାବଗ ମାଳପରି ଉଡ଼ୁଥିବାର ଦେଖି ବିଚାର କଲେ, ଏହା ଦେଖିଲେତ କାମଜାତ ହେବ, ଆମ୍ଭେମାନେ ଗଜଗମନା ଲାବଣ୍ୟବତୀ ବିରହରେ ଅସ୍ଥିର ତାଙ୍କୁ କିପରି ରକ୍ଷା କରିବା ସେ ସ୍ୱାମୀସଙ୍ଗ ନ ପାଇବାରୁ ବଡ଼ ଅସ୍ଥିର, ଏ ସମୟରେ କିଛି ଉପାୟ କଲେ ଏକଥା ସବୁ ଦିନକୁ ଥିବ—ଏବେ ଦିନକ୍ଷେଠ ପୁଣି ବର୍ଷା—

ହତ ଅନସ୍ଥାନଙ୍କୁ ସତ ଢାମିଜନଙ୍କୁ ଅହି ପରି ଅହିତ ଏହ ।
ହତ କୃଶାନୁ ସାନୁମାନରୁ ଭାନୁଭାନୁ-ତାପରୁ ନିସ୍ତରିଲା ମହୀ ରେ ।
ସହଚରି । ବିରହାନଳ ହୃଦସ୍ଥଳେ । ଜଳେ ସେ ହତ ନୋହେ ଜଳେ ।
କରୁଛି ଜାତ ଜାତବେଦଙ୍କୁ ସତ ଶତହ୍ରଦା-ଛଳରେ ଘନକୋଳେ ରେ ।

ଯେଉଁ ସୁନ୍ଦରୀ ଦଶୀଭୂତରୁ ଗଣ୍ଡ ଧରି ଧରଣୀଶୟନ କରିଛି ।
କଣ୍ଠେ ଜୀବନ ବନପୂର୍ଣ୍ଣ ନୟନ ଘନ ଘନ ନିଶ୍ୱାସକୁ ଛାଡ଼ୁଛି ଓରେ ।
ସହଚରି । ପକାଇ ଆପଣା ଅଙ୍କରେ । ଲୋତକଲେ ନ ଲଗାଇ କର ।
ଯେହ୍ନେ ଏଡ଼େ ଦୁର୍ବଳ ଝଞ୍ଜାନିଳ ପ୍ରବଳ ଉଡ଼ଯାଇଚି ଯତ୍ନ କର ରେ ।୩।

---

୨ । କାମିଜନ—କାମୁକଲୋକ, ଅହି—ସାପ,ଅହିତ—ଅମଙ୍ଗଳ, ହତ—ନାଶ କୃଶାନୁ—ଅଗ୍ନି, ସାନୁମାନ—ପର୍ବତ, ଭାନୁ—ସୂର୍ଯ୍ୟ, ଭାନୁ—ଖରା, ତାପ—ତାତ, ବିରହାନଳ—ବିରହଅଗ୍ନି, ଶତହ୍ରଦା—ବିଜୁଳି, ଜାତବେଦ—ଅଗ୍ନି,

ଏବର୍ଷା ସମସ୍ତ ଅନ୍ୟମାନଙ୍କ ହିତ, ମାତ୍ର କାମୁକ ଲୋକଙ୍କ ସର୍ପପରି ଅମଙ୍ଗଳ କରେ, ପର୍ବତରେ ଯେଉଁ ନିଆ ଲାଗିଥାଏ ଓ ସୂର୍ଯ୍ୟଙ୍କ ପ୍ରଖର କିରଣରେ ପୃଥିବୀ ବ୍ୟସ୍ତ ହୋଇଥାଏ ଏବର୍ଷା ଯୋଗୁ ସେ ସବୁ ନିବାରଣ ହୁଏ ମାତ୍ର—ହୃଦୟକୁ ଯେଉଁ ବିରହଅଗ୍ନି ପୋଡ଼େ ସେ ପାଣିରେ ଲିଭ ନାହିଁ, ମେଘରେ ଯେଉଁ ବିଜୁଳି ଜାତ ହୁଏ ସେ ଛଳନା କରି ଲାବଣ୍ୟବତୀ ହୃଦୟରେ ବିଜୁଳିପରି କାମ ଝଟକଝଟକ କରି ବିରହ ଅଗ୍ନି ଉତ୍ପାଦନ କରୁଅଛି ।

୩ । ଦଶୀଭୂତରୁ—ଭୟରୁ; ଗଣ୍ଡଧରି—ଗାଲରେ ହାତଦେଇ, ଧରଣୀଶୟନ— ମାଟିରେ ଶୋଇବା, ଜୀବନ—ପ୍ରାଣ, ବନ—ପାଣି, ଲୋତକ, ଝଞ୍ଜାନିଳ— ଝଞ୍ଜାପବନ—

ଲାବଣ୍ୟବତୀ କାମଭୟରେ ଗାଲରେ ହାତଦେଇ ମାଟିରେ ଶୋଇଛି ତାରପ୍ରାଣ ମଧ କଣ୍ଠାଗତ, ଆଖି ଲୁହରେ ପୂର୍ଣ୍ଣ, ଘନଘନ ନିଶ୍ୱାସ ବାହାରୁଛି ତା ଦେହରେ ହାତ ବୁଲାଇଲେ ଅଛି କି ନାହିଁ ଜଣା ପଡ଼ୁ ନାହିଁ, ସେ ଏଡ଼େ କ୍ଷୀଣ ହୋଇଛି ଝଞ୍ଜାପବନ ବହିଲେ ଅନିଷ୍ଟ ହେବ, ତେଣୁ ଯତ୍ନ କର—

ଘୋଟୁଁ ଘଟକୁ ମାର ଶରେ ଘଟକୁମାର ପିକଡ଼ାକକୁ ଶୁଣି ଯେହୁ ଏ ନାଦ ସହି ସହୁ ହୋଇ ମହାବିରହୀ ରହିବଟି ଜୀବନେ କେହୁ ରେ । ସହଚରି । ସ୍ତନିତବେଳେ କର୍ଣ୍ଣେ କର । ଦେବା ତା ଏ ଉପାୟ କର । ପୟୋଧରକୁ ଧର ବସ୍ତ୍ରର ପୟୋଧର ଗ୍ରାସେଟି ପ୍ରବୋଧରେ ଉର ରେ । ୪ ।

କିର ପିକକୁ ମୂକ ମକମକ ଶାମ୍ବୁକ ଝାମ୍ବୁକ ଚମକକୁ ନିତ୍ୟେ । ଶ୍ୟାମା ହେବାକୁ ଶିବା ଶିବାଗଣ ପୋଷିବା ଶିବାଙ୍କୁ ମନାଇବା ଚିତ୍ତେ ରେ । ସହଚରି । ତୋଷି ଖଣ୍ଡପରଶୁଧର । ନିତ ଲମ୍ବାଅ ସୁଧା ପୂର । ଧନିକୁ ଉପଗୁଣ ଧନିକୁ କି ବସ୍ତ୍ରର ପେଶ ତା ନ ପଡୁର ଗୁଣ ରେ । ୫ ।

ଦେଖ କେକୀକଳାପ ନାଚେ ଚେକ ଉଲାପ ବିପ୍ରଲାପ କରୁଛନ୍ତି କେତେ । ଏହାର କି ଲବଧ କିର ଅବଧ ବଧ ବ୍ୟାଧକୁ ଇଚ୍ଛିବା କି ହିତେ ରେ । ସହଚରି । ପର୍ଣ୍ଣବାଡ଼ ଲଗୁଡ଼ ପାଣି । ଯେନି କରନ୍ତୁ ବେଗେ ନାଶ । ଭରି ଯୁଗ ପତ୍ରଗୋଧ ବ୍ୟଜନ ଆତପତ୍ର ଦେବକୁ ଦେବାକୁ ମନାସ ରେ । ୬ ।

---

୪ । ଘୋଟୁଁ—ଘୋଟିବାରୁ, ଘଟକୁ—ଦେହକୁ, ମାର—କନ୍ଦର୍ପ, ଘଟକୁମାର—ଅଗସ୍ତି, ପିକଡ଼ାକ—କୋଇଲି ଶବ୍ଦ, ସ୍ତନିତ—ମେଘଗର୍ଜ୍ଜନ, ପୟୋଧର—ମେଘ, କୁଚ, ଧର—ପର୍ବତ ପ୍ରବୋଧରେ—ଧର ଉରରେ.
କନ୍ଦର୍ପ ଦେହକୁ ଭେଦିବାରୁ ପିକ ଡ଼ାକକୁ ବଜ୍ର ପରି ମଣୁ ଅଛୁ—ତେଣୁ ବଜ୍ରପଡ଼ିଲେ ଅଗସ୍ତିଙ୍କୁ ଡ଼ାକିଲେ ନିବାରଣ ହୁଏ. ଏ ଶବ୍ଦ ଶୁଣି ଅତ୍ୟନ୍ତ ବିରହୀ ହୋଇଛୁ ପ୍ରାଣରେ ରହିବ କିପରି—ମେଘଶବ୍ଦ ବେଳେ କାନରେ ହାତ ଦିଅ, କୁଚ ପର୍ବତକୁ କାଲେ ଗ୍ରାସିବ ପୁରି ଉଦରକୁ ନେବାଗୁଲ—

୫ । ବର୍ଷା ଦିନରେ କୋଇଲି ଶବ୍ଦ କରେ ନାହିଁ ଏବଂ ଶାମୁକଙ୍କ ଶାମୁକାର ମକ ମକ ଶବ୍ଦରେ କାମଜାତ ହୁଏ, ଶ୍ୟାମା—ସୁନ୍ଦରୀ, ଶିବା—ମଙ୍ଗଳଯୁକ୍ତା, ଶିବାଗଣ—ବିଲୁଅ ସବୁ, ଶିବା—ପାର୍ବତୀ, ଖଣ୍ଡପରଶୁଧର—ମହାଦେବ, ସୁଧା—ଚୂନ, ଧନି—ସଖୀ,

୬ । କେକୀକଳାପ—ମୟୂର ମାନେ, କଳାପ—ପୁଚ୍ଛ, ବିପ୍ରଲାପ—ବିରୋଧ ଉକ୍ତି, ପର୍ଣ୍ଣବାଡ଼—ପତ୍ରର ବାଡ଼—ବାଣୁଆମାନେ ଡ଼ାଳପତ୍ର ବାଡ଼ିକରି ତା ପଛରେ ଲୁଚି ଲୁଚି ଯାନ୍ତି, ଲଗୁଡ—ଠେଙ୍ଗା, ପତ୍ରଗୋଧ କି ପକ୍ଷୀ ଓ ଚନ୍ଦ୍ରିକା ସବୁ, ବ୍ୟଜନ—ବିଚଣା, ଆତପତ୍ର—ଛତା, ମନାସ—ମାନସିକ କର


Digitized by srujanika@gmail.com

ନୁହ ଏଥେଁ ଉଦାସ ଦାସ କରିବା ଦାସ ଅଣୁ ସେ ଧାଡେ ପାଶେ ଧରି । ତାଙ୍କେ କାଲକଣ୍ଠଙ୍କ ବରହିଣୀକଣ୍ଠକ ଯାଇ ତା ଉଡପାଡ ସବରେ । ସହଚରି । ଉପାଡିବା ପୁଷ୍ପଲତାକୁ । ବମନା ନ କରନ୍ତୁ ତାକୁ । ସୁମନାରେ ସୁମନାଲୋଭି ଭୃଙ୍ଗ ସୁମନା ହୋଇ ଚାପିବେ ସୁମନାକୁ ରେ । ୭ ।

ମରାଳ ମାନସକୁ ଯାଉଛି ମାନସକୁ ଏ କଥା କେବେ ନ ଆଣିବ । ଯାର ନାହିଁ ଜୀବେଶ ତାର ଜୀବ ଜୀବେଶଦେଶରେ ପ୍ରବେଶ କରିବ ରେ । ସହଚରି । ପକ୍ଷୀ ପକ୍ଷରୁ ଉଡି ଯାଇ । ଛାଡଦେବା ଉପାଡି ତାହିଁ । ଅମ୍ଭ ନେଇସମ୍ପତ୍ତି ପତି ସଙ୍ଗତି ଗତି ପାଇବାଯାଏ ଥାଉ ରହି ରେ । ୮ ।

ଜାତ ହୋଏ ସ୍ପୋଟକ ଯେ ସ୍ଫୋଟକ ହାଟକତନୁରେ ଲାଗିଲେ ଚନ୍ଦନ । ଏ ମହୋଜ୍ଜ୍ୱଳ ଜଳ ଜ୍ୱଳନ ଜନ୍ମସ୍ଥଳ ଛୁଇଁଲେ କରିବ ଦହନ ରେ । ସହଚରି । ଏହାକୁ ଯତ୍ନ କରିଥିବା । ଭ୍ରମରେ ଚତ୍ୱରେ ନ ନେବା ହତ ଉଶୀର ବାଟି କଲ୍କ ପରାସ୍ତ ବାଟି ଜଳାଳବାଟିକ ନାଶିବା ରେ । ୯।

ଏ ଦୁରନ୍ତ ଦର୍ଦ୍ଦୁର ଚେତନା କରେ ଦୂର ଭଦୁର କାହିଁ ଅନେ ପଡି । କରମକୁ ଏହାର ହରହାର ଅହାର ଗରୁଡ଼ କଲ୍କ କ୍ରିବା ଲୋଡି ରେ । ସହଚରି । ଅରଜିଅଛୁ ଏ ଜ୍ୱରବ । ଗରଜି ଗରଜି ମରିବ । କେ ହେବ ଏ ବରଦ ହୋଇ ସିହି ଶରଦ-ନୀରଦ ଦ୍ୱିରଦ ଭାଞ୍ଜିବ ରେ ।

---

୭ । ଉଦାସ—ଅମନ ଯୋଗୀ, ଦାସ—ଚଢ଼େଇଧରା, ଦାସ କରିବା—ବଶ କରିବା, କାଲକଣ୍ଠଙ୍କ—ଡ଼ାହୁକ, ସୁମନା—ସ୍ତ୍ରୀ, ସଖି, ସୁମନାଲୋଭି—ଫୁଲରେ ଲୋଭ ଯାହାର, ଭୃଙ୍ଗ—ଭଅଁର, ସୁମନା—ଖୁସି, ଚାପିବେ—କଷ୍ଟଦେବେ, ସୁମନା—ଲାବଣ୍ୟବତୀ, ଭ୍ରମର ଶବ୍ଦରେ ମଧ କାମ ଜାତ ହୁଏ ।—

୮ । ମରାଳ—ହଂସ, ମାନସ—ମନ ( ମାନସରୋବର ) ଜୀବେଶ—ଯଶ, ସ୍ୱାମୀ, ହଂସ ମାନସରୋବରକୁଯାଏ ମାତ୍ର ଏଠାରେ ହଂସ ବରହିଣୀଙ୍କ ମନକୁ ନେଇ ଯମପୁର ଯାଉଛି—

୯ । ସ୍ପୋଟକ—ଫୋଟକା, ହାଟକତନୁ—ସୁନାଦେହ, ଜ୍ୱଳନ—ଅଗ୍ନି, ମହୋଜ୍ଜ୍ୱଳ—ଅତ୍ୟନ୍ତ ଉଜ୍ଜ୍ୱଳ, ନଅଁ-ସମୁଦ୍ରରୁ ଜନ୍ମ, ଚେଣୁ ଏ ପାଣି ସମୁଦ୍ରରୁ ଅସୁଥିବାରୁ ଏଥିରେ ଦାହିକା ଗୁଣ ଅଛି, ଚତ୍ୱର—ଅଗଣା ଉଶୀର—ବେଣାଚେର, ବାଟି—ଘୋରି ଓ ବାଟିବା

୧୦ । ଦୁରନ୍ତ—ଦୁଷ୍ଟ. ଦର୍ଦ୍ଦୁର—ବେଙ୍ଗ, ହରହାର—ସର୍ପ, ଭଦୁର—ବଳ, ବରଦ—ବରଦାତା, ସିହିଶରଦ—ଶରତ୍‌କାଳ ସିହିପରି ହୋଇ, ନୀରଦଦ୍ୱିରଦ—ମେଘରୂପ ହାତୀକ ନାଶ କରିବ ।

ଏ କାଳ ଏକା ଏକାନ୍ତରେ ପକାଇ୍ ତୁଙ୍କା ବନ୍ଧୂଏଫଡ଼କା ଅଛି ବନ୍ଧୁଙ୍କ କଲେ ଗିରଧେନକା ଚିତ୍ତ ଚମକ ଚେଟକା କରକା ମାରୁଛି ତୁହାଇ ରେ ସହଚରି । ଏହି କାମନା ପଜ୍ରେଶେଷେ । ଏହା ଭଅଇଅଛି ରେଶେ । ଯଥା ନୀପକାଳକ ତଥା ପରପୁଲକ ପୂରୁ ସୁତନୁ ଛନୁଦେଣେ ରେ ।୧୧।

ଯେମନ୍ତ ନୀରଧାର ତେମନ୍ତ ନିରନ୍ତର ନୀର ନୀରଜନେତ୍ରୁ ବହୁ । ଯଥା ପଙ୍କିଲା ମହୀ ମହୀଳାଗଣ୍ଡ ସେହି ପ୍ରତି ପ୍ରତିଦାନରେ ହେଉ ରେ । ସହଚରି । ପିକ ପ୍ରାୟୁ ବାଣୀ ନ ଫିଟୁ । ଅନ୍ଧାର ପ୍ରାୟୁ ଚିନ୍ତା ଘୋଟୁ । ମାର ମାର୍ଗଣ ଗଣପ୍ରହାରେ ପୁଣ ପୁଣ ମାଳତୀ ସଙ୍ଗେ ହୃଦ ଫୁଟୁ ରେ । ୧୨ ।

ହେଉ କାନ୍ତି ଗୁପତ ସପତହର ବତ ପର୍ବତବତ ହେଉ ଜ୍ଞାନ । ରଖିଛି ସବୁଠାର ଏହି ପ୍ରକାରେ ଠାର ଧୈର୍ଯ୍ୟ କୁଠକୁଠାର ଘନ ରେ । ସହଚରି । ଯେତେ ଉପାୟୁ ଆଳିବଇଁ । ସେ ଚରିତ କିଛି ନୁହଇ । ବୁଦ୍ଧି-ସରିତ ତୁରିତକୁ ଯେନ ବାରିତ ନୃପତି ଅନ କି କରଇ ରେ । ୧୩ ।

କେ ପୂର୍ଣ ବେଗେ ଯିବ ଜୀବଧବେ କହିବ ଜୀବଧବେ ନେଉଛି ଜୀବ । କେଉଁ କାର୍ଯ୍ୟ ଭଜିବ ପଛେ ଯେମନ୍ତ ଯିବ ନ ଦେଖିବ ମୁଖ-ରାଜୀବ ରେ ସହଚରି । ତୁମ୍ଭେ ଚନ୍ଦ୍ର ସେ ଜୀବଞ୍ଜୀବ । ଶୁଣିବା ଉପାୟୁ ସଞ୍ଚିବ । ଉଇରେ ଥିଲେ ଜୀବ ଏ ଶୁଭ ଅରଜିବ ଅସିବା ବଳମ୍ବ ତେଜିବ ରେ । ୧୪ ।

---

୧୧ । ବନ୍ଧୂଏଫଡ଼କା—ବଜୁଳକଣ୍ଟକ, ଗିରଧେକା—ଶ୍ରୀକୃଷ୍ଣ, କରକା—କୁଅ-ପଥର, ତୁହାଇ—ଘନଘନ, ନୀପକାଳକ—କଦମ୍ବଫୁଲସବୁ, ପର-ପୁଲକ—ରୋମଟାଙ୍କୁରିବା, ସୁତନୁ—ସୁନ୍ଦର ।

୧୨ । ନୀର—ପାଣି—ଲୁହ, ନୀରଦ—ପଦ୍ମ, ପଙ୍କିଲା—କାଦୁଅ, ମହିଳା—ଶ୍ରେଷ୍ଠସ୍ତ୍ରୀ, ମାର—କନ୍ଦର୍ପ, ମାର୍ଗଣ—ଶର, ଗଣ—ସମୂହ ।

୧୩ । କାନ୍ତି—ରଙ୍ଗ—ବର୍ଣ୍ଣ, ସପତହର—ସୂର୍ଯ୍ୟ, ପର୍ବତକୁ ମେଘ ଘୋଡ଼ାଏ ଏଠାରେ ସେହିପରି ମନେକର, କୁଠ—ଗଛ, ଘନ—ମେଘ, କୁଠାର—କୁରାଢ଼ୀ, ସରିତ—ନଈ, ନୃପତି—ରାଜା, ସମୁଦ୍ର (ଚନ୍ଦ୍ରଭାନୁ)

୧୪ । ଜୀବଧବ—କାମ, ଜୀବଧବ—ସ୍ୱାମୀ, ମୁଖରାଜୀବ—ମୁଖପଦ୍ମ, ଜୀବଞ୍ଜୀବ—ଚକୋର, ଜୀବ—ବୃହସ୍ପତି ।


Digitized by srujanika@gmail.com

ପୃଗ୍ନ ପୂରନ୍ତ ଏହିକାଳେ ହା ଘଟବ ତହିଁ ନ ସହି ସଖୀ ଗଲେ ଧାଇଁ । ଅଛୁ କି ନାହିଁ ତୁଳାକରଣେ ପ୍ରାଣ ତୁଳା ଜାନୁବର୍ତ୍ତୁଳା ନାସେ ଦେଇ ସେ । ସହଚରି । ଚିନ୍ପିତୁଳା ପ୍ରାପୁ ଗୃହିଁ । ଟେକି ଫୁକିଲେ ଛଣ୍ଡ ଦୁଇ । ଅର୍ଣ୍ଣ ପର୍ଣ୍ଣରେ ସିଞ୍ଚି ଶାର୍ଣ୍ଣିକଟିକି ବାନ୍ଧି ଲଲାଟେ ଚନ୍ଦ୍ରଚୂର୍ଣ୍ଣ ଦେଇ ସେ । ୧୫ ।

ଚଣ୍ଡୀରିଷ୍ଟ ଖଣ୍ଡନେ ଚଣ୍ଡୀ ମନାସି ମନେ ଗ୍ରହଶାନ୍ତିକି ବରିଲେ । ପୀତ-ବସନ କାର୍ତ୍ତସ୍ୱର ବହୁତ ଅର୍ତ୍ତସ୍ୱରେ ଭୂସୁରେ ଜପୁଣିଲେ ସେ । ପ୍ରାଣସହି ଭଲନ୍ତି ପାଇ ଅଜ ଜୀବ । ଅମ୍ଭ ଜରକୁ ଅଜନ୍ତବ । ଚେତେଚେତେବେଳେ ଚେତନ ପାଇ ସମାରତନ ଧୀରେ ବୋଇଲା ଶିବ ଶିବ ସେ । ୧୬ ।

ସଖୀ ଏମନ୍ତ ମତ୍ତକାଶିନୀଶବ୍ଦହିତ ଜନିତ ବଚନ ରଚିତ । ପ୍ରସ୍ଥାନ କାନ୍ତ କାନ୍ତ କଲେ ଉଦନ୍ତ ଦନ୍ତଶୋଭନା କହିଲେ ସାଧୁତ୍ତରେ ସହଚରି । ବହିଛନ୍ତି କେରଳଦେଶେ । ନର୍ମଦାନଦୀ ବୃଦ୍ଧି ବଶେ । ଗୁଣ-ମଣି କି ଗୁଣେ ସନ୍ତାପିତ ଦ୍ୱିଗୁଣେ ଫଗୁଣେ ହେବେ ପରବେଶରେ ।୧୭।

ଏହୁ ପ୍ରମାଣ ମାଣବକମୃଗାକ୍ଷୀ ପ୍ରାଣ ପ୍ରାଣକୁ ଚେତେଦନ ବଳ । ସମ ଅନୁରାଗରେ ନାହିଁ କେଉଁ ନଗରେ ସେହି ନାଗରେ ସାର ଖେଳଣରେ । ସହଚରି । ମହତ ଯେ ଅଟନ୍ତି ସେହି । ତୋ ହିତ ଶୁଣିବାରୁ ସହି । ମରଣକୁ ବରଣ କରିବେ ରଣରଣ-ବାଣଗଣତାପକୁ ବହି । ୧୮ ।

---

୧୫ । ତୁଳା—କଳନା, ତୂଳା—କପାତୂଳା. ଜାନୁବର୍ତ୍ତୁଳା—ଗୋଲଜଙ୍ଘ-ବିଶିଷ୍ଟା, ଅର୍ଣ୍ଣ—ଜଳ, ପର୍ଣ୍ଣ—ପତ୍ର, ଶାର୍ଣ୍ଣିକଟି—ସରୁଅଣ୍ଟା, ଚନ୍ଦ୍ରଚୂର୍ଣ୍ଣ—କର୍ପୂରଗୁଣ୍ଡ ।

୧୬ । ଚଣ୍ଡୀରିଷ୍ଟ—ଅତ୍ୟନ୍ତକଷ୍ଟ, ପୀତବସନ—ହଳଦିଆଲୁଗା, କାର୍ତ୍ତସ୍ୱର—ସୁନା, ଅର୍ତ୍ତସ୍ୱର—ଦୁଃଖଶବ୍ଦ, ଭୂସୁରେ—ବ୍ରାହ୍ମଣମାନେ, ଜର—[illegible], ଶିବ—ଶୁଭ ଓ ମହାଦେବ ।

୧୭ । ମତ୍ତକାଶିନୀ—ସୁନ୍ଦରୀ ସ୍ତ୍ରୀ, ହିତ—ମଙ୍ଗଳ, କାନ୍ତ—ସୁନ୍ଦର, କାନ୍ତ—ପତି, ଉଦନ୍ତ—ବାର୍ତ୍ତା, ଦନ୍ତଶୋଭନା—ସୁଦନ୍ତୀ, ବୃଦ୍ଧି—ବଢି, ସନ୍ତାପିତ—ଦୁଃଖିତ ।

୧୮ । ପ୍ରମାଣ—ଠିକ, ମାଣବକ—ଶ୍ରେଷ୍ଠଶିଶୁ, ମୃଗାକ୍ଷୀ—ମୃଗପରି ଚକ୍ଷୁ, ପ୍ରାଣ—ଶ୍ରେଷ୍ଠ, ପ୍ରାଣ—ଜୀବନ, ରଣରଣ—କନ୍ଦର୍ପ ।

ଏ ବାଣୀ ଉତ୍ତକ୍ଷଣ ପର୍ବଣଙ୍କୁ ଉକ୍ଷଣ କ୍ଷଣକାନ୍ତକାନ୍ତର ହେଲା ।
ବୀଣାକଣୀବଚନା ସୁଲୋଚନା ଶୋଚନା ବଚନା କଲୁ ଶାନ୍ତ କଲା ସେ ।
ସହଚରୀ । ଜାଗ୍ରତ କ୍ଷଣଦା ବାସରେ । ହୋଇଣଛନ୍ତି ତା ପାଶରେ ।
ଫୁଲନାରାଚନାରାଚଙ୍କୁ ହେଲା କବଚ ଦରଶନ ଲୋଭ ଯହିଁରେ ରେ ।୧୯।

ଘନଘୋଷ ଘୋଷଣ ଷଣପୁଷ୍ପଦୂଷଣକାନ୍ତ ଶୁଣି ସେ ଦନ୍ନ ମଣେ ।
ଓଉଜ ମହୀଶସୁନ ପ୍ରକାଶି ବାତାୟନ ନୟନ ନିବେଶେ ଉକ୍ଷଣେ ସେ ।
ସହଚରୀ, ମାନଙ୍କୁ ଭାଷଇ ଏ ଭାଷ । ବାହାରେ ମୃଦୁସୁଲ୍ଲୀ ପେଶ । ହେଲେ
କି ମାନବେଶସୁତ ଆଜ ପ୍ରବେଶ ଏ ଦେଶ ବୁଝାଏ ସନ୍ଦେଶ ରେ । ୨୦ ।

ପୁଂସ ଦୃଶ ସଦୃଶ ଘେନି ସାରସ ରସଭଲା ଚୁମ୍ବନ ଦିଏ ରସି ।
କର ମୃଣାଳନାଳ ମାଳ ତମାଳମାଳମଞ୍ଜୁଳା ବସି ନାସ ଘୋଟି ସେ ।
ସୁକୁମାରୀ । କାନ୍ତିଛୁଟେ ପିଟେ ଅମ୍ବର । ହାସ ଛୁଟେ ଯେବେ କର୍ପୂର ।
ହୋଇ ଉଦ୍ଭାବମୟୁ ନେଲା ଘନସମୟୁ ରଷା ହେଲେ ସଜଣୀବାର ସେ ।୨୧।

ଶରଦକାଳେ ସୁଧାକରକର ବସୁଧାଭୂଷାକୁ ଦେଖାଇ ନ ଦେଲେ ।
ଉଚ୍ଚହୀନ ଚୁହ୍ୱନ ନ ପୁଣି ହେତୁହୀନ କଲେବ ବୋଲି ବଚୁବଲେ ସେ ।
ସହଚରୀ । ପଦ୍ମିନୀ ପଦ୍ମବାସୀ ସଖୀ । ପଦ୍ମନୟନୀ ପଦ୍ମମୁଖୀ । ପଦ୍ମକର
ପୟର ପଦ୍ମପଦ ଉଦର ପଦ୍ମକୋଷ ଉରଜେ ଖୋସି ସେ । ୨୨ ।

---

୧୯ । କ୍ଷଣକାନ୍ତ—ଚକ୍ରବର୍ତ୍ତି, ଶୋଚନା—ଦୁଃଖ, କ୍ଷଣଦା—ରାତ୍ର, ବାସର—ଦିନ, ଫୁଲନାରାଚ—କନ୍ଦର୍ପ, ନାରାଚ—ଶର, ସାଞ୍ଜୁ—କବଚ ।

୨୦ । ଘନଘୋଷ—ମେଘଶବ୍ଦ, ଷଣପୁଷ୍ପ—ଛଣପଠଫୁଲ, ଦୂଷଣ—ମଳିନ, କାନ୍ତ—ବର୍ଣ୍ଣ, ମହୀ—ପୃଥିବୀ ଏଠାରେ ଚଳ, ପ୍ରକାଶି—ଫିଟାଇ, ବାତାୟନ—ଝରକା, ମାନବେଶ—ରାଜା, ସୁତ—ପୁଅ ଏଠାରେ ରାଜସୁତ ଚନ୍ଦ୍ରଭାନୁ ।

୨୧ । ଦୃଶ—ଆଖି, ସାରସ—ପଦ୍ମ, ତମାଳମାଳମଞ୍ଜୁଳା—ସୁନ୍ଦରୀ ସ୍ତ୍ରୀ, ଘନସମୟ—ବର୍ଷାଦିନ, ସଜନୀବାର—ସଖୀସମୂହ ।

୨୨ । ସୁଧାକର କର—ଚନ୍ଦ୍ରକିରଣ, ବସୁଧାଭୂଷା—ପୃଥିବୀର ଅଳଙ୍କାର (ଲାବଣ୍ୟବତୀ) ଚୁହୁନ—କାକର, ଉଦର—ପେଟ, ଉରଜ—କୁଚ ।

ଶୁକପୋତ କପୋତ ରତ ଶୀତମରୁତ କମ୍ପିତ କରୁଥାଇ ପୁନ । ଏ ଚିନ୍ତା ଅଦଭୁତ ଚିତା ହୃଦେ ସଂଭୂତ ସଜୀବେ ସଜନୀ ଦହନ ଓହେ । ସାଧୁଜନେ । ଏ ଛାନ୍ଦ ଏବେ ହେଲା ଶେଷ । ବୁଧବୋଧକ ଏ ରହସ୍ୟ । ସ୍ମର ଉପଇନ୍ଦ୍ର କହଇ ଉପଇନ୍ଦ୍ର ଭଞ୍ଜ ବୀରବର ଏ ରସ ଯେ । ୨୩ ।



## ତ୍ରୟୋବିଂଶ ଛାନ୍ଦ ।

( ଚନ୍ଦ୍ରଭାନୁର ରାମେଶ୍ୱର ଗମନ । )

ରାଗ କଲ୍ୟାଣଅହାରୀ ।

ଦିନେକ ଦିନେଶ ଦଶଦଣ୍ଡ ଭୋଗ ମଣ୍ଡପେ ବସିଛୁ କୁମାର । ସଚିବନନ୍ଦନ ପ୍ରବେଶ ହୋଇଲା ପଡର୍ମାଶାଢ଼ୀ ଅଣ୍ଟୁ ଶିର । କହିଲା । ପୁରୋଧାସୁତ ଜଣାଇଲା । ଶିବଉତ୍ସବ ଦେଖିବାକୁ ତୁମ୍ଭଙ୍କୁ ତାତ ସନମତ ହୋଇଲା । ୧ ।

ଜରତକାମିନୀ ବାଳକ ଜାଲକ କେବଳ ରହିବେ ନଗରେ । ସର୍ବ ଅର୍ବ ଦନ୍ତୀ ପଦାତି ସ୍ୟନ୍ଦନ ପତ୍ତି ଯିବେ ତୁମ୍ଭ ସଙ୍ଗରେ । ଏଥକୁ । ଅଧୀକାରୀଶାଢ଼ୀ ମୋହର । ଏ ବାଣୀ ଚନ୍ଦ୍ର ଉଦତେ ଉଚ୍ଛୁଳିଲା ନାଗର ଆନନ୍ଦସାଗର । ୨ ।

---

୨୩ । ଶୁକ—ଶୁଆ, ପୋତ—ଛୁଆ, ରୁତ—ଶବ୍ଦ, ଶୀତମରୁତ—ଥଣ୍ଡାପବନ, ବୁଧ—ପଣ୍ଡିତ, ଉପଇନ୍ଦ୍ର—ରାମଚନ୍ଦ୍ର ଓ ବିଷ୍ଣୁ ।



## ତ୍ରୟୋବିଂଶ ଛାନ୍ଦ ।

୧ । ଦିନେଶ—ସୂର୍ଯ୍ୟ, କୁମାର—ରାଜପୁତ୍ର, ସଚିବନନ୍ଦନ—ମନ୍ତ୍ରୀପୁଅ, ପୁରୋଧାସୁତ—ପୁରୋହିତପୁଅ, ଶିବଉତ୍ସବ—ମହାଦେବଙ୍କ ଉତ୍ସବ, ସନମତ—ସ୍ୱୀକାର, ଆଜ୍ଞା ।

୨ । ଜରତକାମିନୀ—ବୁଢ଼ୀ, ବାଳକ ଜାଲକ—ପିଲାମାନେ, ଅର୍ବ—ଘୋଡ଼ା, ଦନ୍ତୀ—ହାତୀ, ସ୍ୟନ୍ଦନ—ରଥ, ପତ୍ତି—ଘୋଡ଼ସବାର, ଆନନ୍ଦସାଗର—ସୁଖ ସମୁଦ୍ର ।


Digitized by srujanika@gmail.com

ଏକାଳେ ଉଗ୍ରବ ଦଅଇ ନାଗ୍ରବ ଶୁଣି ନଗ୍ରଜନେ ଉଚ୍ଛନ୍ନ । ଲେଖି ନେଲେ ଅସି ମନ୍ତ୍ରୀ ସନ୍ଧିଧୃକ୍ତୁ ଥିଲା ଯା ବାକୀ ବରତନ । ନୂତନେ । ତୁଳି କର ଶସ୍ତ୍ରମାନଙ୍କୁ । ଢେ ଯନ୍ତ୍ରୀ ଦଅଇ ଢେଳୁ ହିଙ୍ଗୁଳାଇ ଢେ ବନ୍ଧାଇ ଅନ କୋଷକୁ । ୩ ।

ଢେ ଘୃତ ଲଗାଇ ଷଣଢେ ଶୁଖାଇ ଢେ ସିଅଇ ତହିଁ ତୂଣୀର । କବଚ କରାଇ ବ୍ରଗଜର ଟୋପି ବକତର ଏହି ପ୍ରକାର । ଶକଟ । ଭାର-ବାହ ବଳୀବର୍ଦ୍ଦଙ୍କୁ । ଥିଲା ଯାହାର ମଜ କଲା ନ ଥିଲା ମୂଲ୍ୟ କର ଅଣି ତାହାକୁ । ୪ ।

ସୁବର୍ଣ୍ଣ ରୌପ୍ୟ ବର୍ତ୍ତକ ସମ୍ବଳ କମ୍ବଳ ଅଦ ଜତ୍ତେଲ । କଂସାଦ ପାଜ ମଞ୍ଜୁଷ ପେଡ଼ା ପେଡ଼ୀ ଗଣ୍ଡିରମାନ କର ଠୁଳ । କର ଯେ । ଦ୍ୱିଜରୁ ମାତଙ୍ଗ ପର୍ଯ୍ୟନ୍ତେ । ଯେ ଯାହା ବୃତ୍ତିରେ ଅଗମନ ମନଉଚ୍ଛନ୍ନ ହୋଇଲେ ସମସ୍ତେ । ୫ ।

କୋଷ ଅଧିକାରୀ ଅତ ତୋଷ ଭର ଅମାର ମଣାବ ସଜାଡ଼ି । ତୂର୍ଣ୍ଣ କର ପୂର୍ଣ୍ଣ କଲା ସେ ସ୍ୱଭାବେ ସମ୍ଭାରରେ ଗଡ ଶଗଡ଼ି । ଏସନ୍ତେ । ରଜନୀ ହୋଇଲା ପ୍ରବେଶ । କ୍ରମଶଃ କ୍ରମଶଃ ତମସ ବଶରେ ଦୃଶାଦୃଶ୍ୟ ହେଲା ବନାଶ । ୬ ।

କେତେ କାମୀ ଭୂମଣ୍ଡଳେ କେତେ ମୁହିଁ ଭ୍ରମିବ କାମ କ ପାଇଁଲା । କଜ୍ଜ୍ୱଳ ମହୋଜ୍ଜ୍ୱଳ ଜଳେ ପ୍ରଳୟ କ୍ଷୟ କରିବାକୁ ବାଞ୍ଛିଲା । ସ୍ୱଭାନୁ । ଡରେ କ ପଳାଇଲା ଭାନୁ । ତମ-ତନୁରେ ଜଗତ ଲୋଟୁ କ ଭାବ ଅନ ନାହିଁ ଏ ବନ୍ଦୁ । ୭ ।

---

୩ । ବରତନ—ପାଉଣା, ହିଙ୍ଗୁଳାଇ—ରଙ୍ଗକରି, କୋଷ—ଅସ୍ତ୍ର ରହିବା ଯାଗା ।

୪ । ତୂଣୀର—ଶରମୁଣା, କବଚ—ସାଞ୍ଜୁ, ଭାରବାହ—ଯେ ଭାରବୁହେ, ବଳବର୍ଦ୍ଦ—ବଳଦ, ( ଭାରବହ ବଳବର୍ଦ୍ଦ—ଥୋରିଅ ବଳଦ )

୫ । ସୁବର୍ଣ୍ଣ—ସୁନା, ରୌପ୍ୟ—ରୂପା, ବର୍ତ୍ତକ—କଉଡ଼ି, ସମ୍ବଳ—ଧନ, ଚେଲ—ଲୁଗା, ଦ୍ୱିଜ—ବ୍ରାହ୍ମଣ, ମାତଙ୍ଗ—ଚଣ୍ଡାଳ, ବୃତ୍ତିରେ—ବ୍ୟବସାୟରେ ।

୬ । କୋଷ—ଭଣ୍ଡାର, ତୋଷ—ଆନନ୍ଦ, ତୂର୍ଣ୍ଣ—ଶୀଘ୍ର, ତମସ—ଅନ୍ଧାର, ଦୃଶ—ଦେଖାଯିବା ।

୭ । ଭୂମଣ୍ଡଳେ—ପୃଥିବୀରେ, ସ୍ୱଭାନୁ—ରାହୁ, ଭାନୁ—ସୂର୍ଯ୍ୟ, ତମ—ଅନ୍ଧକାର, ତନୁ—ଦେହ ।


Digitized by srujanika@gmail.com

ପାଶେ ଥାଇ ଦେଖା ଦେଖି ନୋହି ଦୁଃଖୀ ଭୃଙ୍ଗ ଭୃଙ୍ଗୀ ଧ୍ୱନି ଘୋଷିଲେ । ସଙ୍କେତ ସ୍ଥାନେ ଯାଇଥିବା କାମିନୀ ଚମକି ହୃଦ ଅର୍ପିଲେ । ଅସିତେ-ଛବିଗଣ ଏହି ଅର୍ତ୍ତିରେ । ଧ୍ୱନି କରିବାର ଶୁଣି ବରନାସ୍ତ୍ରୀ ଅଶାୟୀ ଅନାଇଁ ଦୁଆରେ । ୮ ।

ଅଞ୍ଜନଦଗ-ଗଜ ସଙ୍ଗ ଅଜ କି ଯୁଦ୍ଧ ଇଚ୍ଛି ଅମ୍ଭ ସଙ୍ଗରେ । ଏହା ବଚ୍ଚିର ଯେ ରଡ଼ି କି ପ୍ରବୃତ୍ତ ମତ୍ତ ମାତଙ୍ଗ ଅତଙ୍ଗରେ । ବକୁଳ । ମୂଳେ ଥିବାର ବରହିଣୀ । ଶ୍ରବଣେ ବୋଇଲ୍ଲ କାନ୍ତ ସତ୍ୟବାଦୀ କି ଯେଣି ବୋଲନ୍ତି ମିତଣୀ । ୯ ।

କର୍ଣ୍ଣୋଷ୍ଠପୁରଜନେ ଯିବା ଇଚ୍ଛନେ ଉନ୍ନିଦ୍ରେ ଏମନ୍ତ ଭାବିରେ । କେ କାହା ପୀରତି ଯୁବତୀ କତକ ଯିବାକୁ କହୁଛନ୍ତି ଦୂତୀରେ । ଭେଟାଇ । ଆଣି ପାରିବୁ କି ଧନକୁ । ଫୁଲଧନୁସୁନୁବଲ୍ଲଭୀ-ତାଳକୁ ମୁଁ ଯେ କରିବି ପ୍ରସ୍ଥାନକୁ । ୧୦ ।

କେ ଜାର ଲେଖିଲ୍ଲ କୁଳଟାପାଶକୁ ଆଶା କରି ଦିନ ଯାଉଛୁ । ଯୁଗଳ ନୋହିବାରୁ ଗ୍ରାମକ୍ଷମର ଯୁଗ ସରି ମୋତେ ହେଉଛୁ । ଧନରେ । କରିଥାଅ ଏହି କୃତାର୍ଥ । ଯାଉଛୁ ବିଦେଶ ଯୋଗେ ଦେବଗୁରୁ ଗଲେ ହୋଇବଟି ବ୍ୟର୍ଥ । ୧୧ ।

କେ ଜାର ଭାଷି ସ୍ୱପ୍ନେ ଭାବଗ୍ରାଣିକି ଗ୍ରଣି କଳ୍ପନା ତୋ'ଠେ କରି । ତନ୍ୟା ତୁଳାଅଙ୍ଗୀ ଫ ହୁକ୍ତୀ ମୀନନୟନା କୁମ୍ଭସ୍ତନା ହାର । ଭ୍ରୂଲତା । ଧନୁରେ ଧ୍ୱଣି ମନୋହର । ମକରକେତୁ ଛାପେ ତୋ ପ୍ରେମଜଳେ ମନ-କଙ୍କଡ଼ା ମଗ୍ନ ମୋର । ୧୨ ।

---

୮ । ଅଶୀତ—ଅନ୍ଧାର, ବରନାସ୍ତ୍ରୀ—ଶ୍ରେଷ୍ଠସ୍ତ୍ରୀ ।

୯ । ଅଞ୍ଜନଦଗ—ପଶ୍ଚିମ, ଯୁଦ୍ଧ—ସମର, ରଡ଼ି—ଶବ୍ଦ ।

୧୦ । ଉନ୍ନିଦ୍ରେ—ଅନଦ୍ରାରେ, ଫୁଲଧନୁ—କନ୍ଦର୍ପ, ସୁନୁ—ପୁତ୍ର, ବଲ୍ଲଭୀ—ସ୍ତ୍ରୀ, ଫୁଲଧନୁ ସୁନୁବଲ୍ଲଭ—କନ୍ଦର୍ପ ଯେ ଶାମ ତା ପୁତ୍ର ଅନିରୁଦ୍ଧ ତାର ସ୍ତ୍ରୀ ଉଷା, କି ସକାଳ ।

୧୧ । ଜାର—ଗୀଠପୁରୁଷ, କୁଳଟା—ବାଠପୀ, ଯୁଗଳ—ଯୋଡ଼ା, ଗ୍ରାମକ୍ଷମର—ଲବ, (ଅଳ୍ପ ସମୟ) ଦେବଗୁରୁ—ଜୀବ (ବୃହସ୍ପତି) ।

୧୨ । ଗ୍ରାଣି—ବାରଗ୍ରାଣି, କୁମ୍ଭ—ହାତରକଲସ, ମକରକେତୁ—କନ୍ଦର୍ପ ।

ବୈରହ ବନ୍ଧୁ ସମ ଘାତ କରୁଛନ୍ତି ମେଷ ବୃଷ ଭଳୁଁ ଦର୍ଶନେ । ଏହା ମିଥୁନ ହୋଇଲେ ରେ ନାୟିକା ସବୁ ହେଲା ତୋ ଅବଧାନେ । ଏ ବାଣୀ । ଶୁଣି ସେ ହରଷ ହୋଇଲା । ଆଲିଙ୍ଗନ କରି ଇଚ୍ଛାବତୀ ନାରୀ ବଧାରୂଢ଼ ବନ୍ଧେ ତୋଷିଲା । ୧୩ ।

ପୁଷ୍ପସମୟ ନିକଟ ପରକଟ ରମଣୀ ତୁଲେ ବଟ ରମି । ସଖୀଙ୍କୁ କହେ ବଚନେ ସ୍ନେହାଧୀନା ହୋଇଲେ କମଳା ଚରିଣୀମି । ରତିରୁ । ବଙ୍କ କରେ ସ୍ତନ କଟିନ । ବୋଲି ଜାଣିଲି ନ ଜାଣିଲି ସୁବର୍ଣ୍ଣ ସୁବର୍ଣ୍ଣ କି ଅବା ଅଞ୍ଜନ । ୧୪ ।

କାହା ବଲ୍ଲଭ ବଲ୍ଲଭୀଙ୍କ କହୁଛନ୍ତି କି କଲା ଦାରୁଣ ଦଇବ । ମନେ ତ ନ ଥିଲା ତରୁଣକାଳରେ ତରୁଣୀ ବିଚ୍ଛେଦ ହୋଇବ । ଜୀବନ । ତେଜି ଯେ ଜାତର ବଶରେ । ଯେନା ଯେନା ଅବେ ପଦ୍ମଏ ଦ୍ୱିତୀୟ ଏକ ଅଧିକ ଦିବସରେ । ୧୫ ।

ସୁଦତୀଙ୍କି ବୋଲେ ବସାଇ ଭାଷେ କେ ରସାଇ ପ୍ରକାଶିଣ ପ୍ରେମ । ଦଣ୍ଡଧର ଅନୁଗତ ଭଲ ନୋହେ ସେହୁ ନୋହୁବାର ଉତ୍ତମ । ଗୁଣି ତୁ । ମାଗୁଣି ଏତେକ ମୋହର । ମନେ ପଡୁଥିବ ରଜନୀ ଦିବସେ ଜାଣୁ ତା ଯେମନ୍ତେ ମୁଁ ତୋର । ୧୬ ।

କେ ପ୍ରିୟାଚିବୁକ ଧରଣ ଉନ୍ନତ ଗ୍ଲାଉ ଭାଷିଲା ଏ ବନତ । ଶୀତକୁ ରଙ୍ଗା ଶୀତେ କାମ ଇଷିତ ନାଗରେ ହୋଇଅଛୁ ଭୀତ । କରବ । ଭବତ ପାଇଁ ମୋ ଏସନ । ବରବର୍ଣ୍ଣିନୀ ସଞ୍ଚା ଥିଲା ଚରଣ ଦିଅ ମୋତେ ପିନ୍ଧା ବସନ । ୧୭ ।

କେ ପ୍ରଦୀପ ପ୍ରଦୀପକ ଭର ପୁରେ ପୂରତେ ପ୍ରିୟାକୁ ବସାଇ। ଚିତ୍ରେ ବଚନେ ଲେଖିଲା ସ୍ୱରୂପକୁ ପ୍ରଭାତ ଦରଶନ ପାଇଁ । ସେ ଦେଖି । ଧୀର ଭର ଏହା ବୋଇଲା । ବୈଦେହଜା-ପ୍ରିୟ ସଙ୍ଗେ ନ ନେଲେ କି ମୋତେ ସଙ୍ଗେ ନେଲେ କି ହେଲା । ୧୮ ।

---

୧୩ । ମେଷ—ମେଣ୍ଢା, ଶ୍ରେଷ୍ଠଜୀବ, ବୃଷ—ଷଣ୍ଢ (ବଡ଼) ମିଥୁନ—ଯୁଗଳ ।

୧୪ । କମଳା—ଲକ୍ଷ୍ମୀ, ସୁବର୍ଣ୍ଣ—ଉତ୍ତମରଙ୍ଗ—ସୁନା ।

୧୬ । ଦଣ୍ଡଧର—ଯମ—ରାଜା ।

୧୭ । ପ୍ରିୟାଚିବୁକ—ସ୍ତ୍ରୀ ଓଠ, ବନତ—ବନୟ, ଶୀତକରଜା—ସୁନ୍ଦ ନାଗର—ଶର, ଭୀତ—ଭୟ, ବରବର୍ଣ୍ଣିନୀ—ଚମ୍ପାବରଣୀ ।

୧୮ । ପ୍ରଦୀପକ—ଜାଳ, ବୈଦେହଜା—ସୀତା, ବୈଦେହଜା ପ୍ରିୟ—ରାମ ।

ବାହାର ବାଳୀ ନବୀନା ବପଖିତ ବନା ସକଳ ଭୋଗି ଥିଲା । ମଣି ପୀପିତକ ଦର୍ପଣ ବତାନ ଥିଲା ପୁରେ ରତ ବହିଲା । ସେ ଭୋଗ । ପାଇଲା ଦାଇବ ବଶକୁ । ଭାବେ ଅଧିକ ଦେବାକୁ ରଖିଥିଲା ଯିବାବେଳକୁ ବଦେ-ଶକୁ । ୧୯ ।

ଜେଙ୍ଗ ଦମ୍ପତ ରତସୁଖ ସମ୍ପତ୍ତି ବଶୁଁ ମଣରେ ଏହା ଧାର୍ଯ୍ୟ । ସ୍ମର ଅବତ ହେବ ରାତ ନ ପାହୁଁ ତାହା ରଜନୀ କରୁ ବହ୍ମ । ଯେ ପୁଣ । ବହିଲା ବଚ୍ଛେଦ ବପତ୍ତି । ପୁଂଲିଙ୍ଗ ସ୍ତ୍ରୀଲିଙ୍ଗେ ତାହା ଶବ୍ଦ ରୁପ କେବେ ନୋହୁଥିବ ସମ୍ମତ । ୨୦ ।

କେ ପୁଂସ ସବ୍ଭରେ ଚଲ୍ଭତବ ରୋପିତ କଲା ଅଣି ଜାତଲତାକୁ । ପରିବାରିକାକୁ ଡାକଣ କହିଲା କୋଳେ ବସାଇ ବନିତାକୁ । ଏହା ତୁ । ଯନ୍ତ୍ର କରଥିବୁ ସନ୍ତତେ । ପ୍ରବାସ ପ୍ରୟାଣ ଦୋଷ ନ ଘେନିବ ଯାଉଅଛୁ ଅଣଅସୂତ୍ରେ । ୨୧ ।

କେ ଜାୟାପତ ଯୋଗ ହୋଇ ନ ଥିଲେ ସେ ଜତ୍ରବ କଲେ ସେ ରାତ । ନାନାଗତ ରତ ପ୍ରକାଶିଲା ରତପତ-ଭେଳରେ ରସବତୀ । ରତା-ନ୍ତେ । ରମଣ ମୁଖକୁ ଗୃହିଁଲା । ମଯୂର କଣ୍ଠକ ବୃଷ ପଟେ ଲେଖି କାମ-ବମନକୁ ହବଲା । ୨୨ ।

କେ ଦମ୍ପ ହାବ ମନୋହାରୀକ କହେ ଏ କଥା ଚିନ୍ତ ଲାଗେ ମୋତେ । ଜୀବନ ଚେଜ ପିଣ୍ତକୁ ସଙ୍ଗେ ନେଇ ପୁରୁତେ ଜାଉଁବେ କେ ନ୍ତେ । ଏ ତନୁ । ପୁଲକ ପୁଣି ନ ବହିବ । ସେ ପୁଣି ଗଲ୍ଲଦେ ବୋଇଲା କେ ଜାଣି କ କ ଭଅଇଲା ଦାଇବ । ୨୩ ।

---

୧୯ । ବାଳୀ—ସ୍ତ୍ରୀ, ମଣିପୀପିତକ—ମଣିମାଣିକ୍ୟରେ ଉଜ୍ଜ୍ୱଳ, ଦର୍ପଣବତାନ—ଅରସିଲଗା ଚାନ୍ଦୁଆ, ଦର୍ପଣରେ ଓଲଟା ଦେଖାଯାଏ ।

୨୦ । ଦମ୍ପତ—ସ୍ତ୍ରୀ ପୁରୁଷ, ସ୍ମର—କନ୍ଦର୍ପ, ରଜନୀ—ରାତ, ବହ୍ମ—ବ୍ରହ୍ମା, (ବ୍ରହ୍ମାଙ୍କ ରାତ ୩ କୋଟିବର୍ଷ)

୨୧ । ଜାତଲତା—ଜାଇଫୁଲ ଲଟା, ପରବାରକା—ଦାସୀ, ବନତା—ସ୍ତ୍ରୀ, ସନ୍ତତେ—ସର୍ବଦା ।

୨୨ । ରତପତ—ମଦନ, ରତାନ୍ତେ—ରତଶେଷରେ, ରମଣ—ପୁରୁଷ, କାମ-ବମନ—କାମ ଦୁଃଖ ।

୨୩ । ଚନ୍ତ—ଆଶ୍ଚର୍ଯ୍ୟ, ତନୁ—ଦେହ, ପୁଲକ—ଆନନ୍ଦ ।


Digitized by srujanika@gmail.com

କେଉଁ ସୁନ୍ଦରୀ କେତକୀଦଳୋଦରେ ଦୟିତ ଗ୍ରାମକୁ ଲେଖିଲା । ମୁଁ ଯେ ଜୀବଧନ ତୁମ୍ଭଙ୍କୁ ବୋଲିବା ଏହିଠାରେ ସାର୍ଥ ହୋଇଲା । ତୁମ୍ଭର ଅଛୁ ଲୋହମୟ କବଚ । ତୁମ୍ଭେ ସିନା ମୋର ହୃଦ ହେବ କେହ୍ନେ ସହନ ବଷମନାରାଚ । ୨୪ ।

ଏକେଁ ନାରୀ ଚିନ୍ତାପ୍ରତିମା ପଦରେ ବାନ୍ଧ ନୟନରେ ଭରିଲା । କେହ୍ନେ କ କରିବ ବୋଲି କାନ୍ତଗଳା ଧରି ପ୍ରେମଭରେ ଥରିଲା । କେ କହେ । ଯିବା ପଛେ ଆନ-ଦେଶକୁ । ନ ଗଲେ ଯେବେ ନରପତି ସନ୍ତୋଷ ହୋଇବେ କରମବଶକୁ । ୨୫ ।

କେ କହେ ସଖୀଙ୍କି ଚନ୍ଦ୍ରଶେଖରଙ୍କୁ ପୂଜନ କର ଏଥିପାଇଁ । ପ୍ରିୟ ନ ଯାଉ ଜୀବନ ଯାଉ ମୋର ଦୁଃଖୀ ନୋହିବଟିକ ମୁହିଁ । କେ ଭ୍ରମେ । ବଲଗ୍ନ ହେଲେ କରୁଁ କର । ନିଦ୍ରା ନ ମାଡ଼ଇ ଏ ନିଶିକ କେହ୍ନେ ବଞ୍ଚିବ କ କର୍ମ ମୋହର । ୨୬ ।

କେହ୍ନେ ବଲ୍ଲଭଙ୍କ ନିଦ୍ରାମ କରାଇଲା ଆନ ଯୁବତୀ ନ ଛୁଇଁବ । କେ ବୋଇଲା କାନ୍ତ ଚିତ୍ତେ ମୁଁ ଥିବଟି ମୋ ପାଇଁ ଦର୍ଶନ କରିବ । କେ ହାର । ବାହାର କରି କଣ୍ଠେ ଦେଲା । ଦେଖୁଥିଲେ ମୁହିଁ ମନେ ପଡ଼ୁଥିବ ଏମନ୍ତ ଭାବନା ହୋଇଲା । ୨୭ ।

କେ ଜାଣି ବରହଜ୍ୱର ଜାତଭରେ ଥୋଇ ପଙ୍କେରୁହ-ଦଳକୁ । କନ୍ତୁ ନ କହି ନାୟକ କରେ ଦେଲା ମେଲଣି ମାଗିଲା ବେଳକୁ । କେ ଭାବେ । ଅଳପ ହେଲା ମୋ ସଙ୍ଗତ । ଦରିଦ୍ର ରତନ ପାଇ ହଜାଇଲା ପରାୟେ ହୋଇଲା ବମତ । ୨୮ ।

କେ ଲେଖିଲା ପଟେ ପତିଙ୍କ ବସାଇ ଆପେ ପାଦ ସେବା କରଇ । ଯେତେଦୂରେ ଥିଲେ ଏରୂପେ ଅଗ୍ରତେ ଅଛୁ ମୁଁ ଏ ଅକ୍ଷର ଲହି । ବାନ୍ଧ ତା । ଚିନବସନେ ପେଡ଼ପରେ । ଥୋଇଲା ଚତୁରୀ କ ସ୍ନେହ ଅତୁରୀ ମାନସ ମୋହିବା ବଗ୍ରହେ । ୨୯ ।

---

୨୪ । କେତକୀ ଦଳୋଦରେ—କେତକୀ ପାଖୁଡ଼ା ପେଟରେ ବା ପେଟ ଉପରେ, ଦୟିତ—ପୁରୁଷ, ଜୀବଧନ—ସ୍ୱାମୀ ନାମ ।

୨୫ । ନରପତି—ରାଜା, ସନ୍ତୋଷ—ରାଗ ।

୨୬ । ଚନ୍ଦ୍ରଶେଖର—ଶିବ, ବଲଗ୍ନ—ଲଗ୍ନା ।

୨୮ । ପଙ୍କେରୁହ—ପଦ୍ମ, ଦଳ—ପାଖୁଡ଼ା ।

ଓଢ ବୋଇଲା ମୋହପାଇଁ ନ ଭାଳିବ ସାରିବ ବେଳ ଭାଳେ ମାତ । ତୁମ୍ଭେ ସର୍ବଶୁଭେ ଥିଲେ ସବୁ ଅଛି ନ ମିଳିବେ କେତେ ଯୁବତୀ, ହେ ସଖୀ । ଦ୍ୱାସରେ ଏମନ୍ତ କୁହାଇ, ବାତୁଳ ଅଟେ ଯାହାକୁ ବଶ୍ୟ ହେବ ଏରୂପେ ନୋହିବ ଅପେକ୍ଷା । ୩୦ ।

ହେ ପତି ଯିବାକୁ ତୃପତିମଣ୍ଡଳରେ ଜାତେ ବୋଲଇ ଧନେ ଥାଅ । ଅନେକ କାହିଁ ବାଞ୍ଛିତ କଲ ସୁଖ ମୋତେହେଁ ଦଅ ତୁମ୍ଭେ ପାଅ । ହେ ଶାଶୁ । ନଣନ୍ଦ ଉପରେ ପ୍ରୀତି ଧୃକୁ । କିଛି ନ କହ ଛପିଣେ ଜାତ ଭବ ଲକ୍ଷଣେ ନିବାର ପଦ୍ମକୁ । ୩୧ ।

ତାହା ସହଚରୀ ପ୍ରତ୍ୟେ ପଚାର ଯାଉଛି କେଉଁ ଶିବ ଦେଖି । ବକ୍ଷରେ ସ୍ୱଚ୍ଛରେ ଶମ୍ଭୁଯୁଗଳକୁ ଜନମ କରିଛି ମୋ ସଖି । ଏ ବଧୂ । ତରୁଣ ତରୁଣୀ ଜଡ଼ୁଛନ୍ତି । ବହୁତ ଛନ୍ଦେ କଲେ ତାହା ବର୍ଣ୍ଣନା ତେବେହେଁ ନୋହିବ ସମ୍ପୂର୍ଣ୍ଣ । ୩୨ ।

ଏମନ୍ତ ନିଶି ଶେଷରେ ଦରଘୋଷ ଦର ଲଭିଲେ ଜାର ବ୍ୟୂହ । କୁକ୍କୁଟ ବାଣୀ କୁଠାରେ ହାଣି ଦେଲା ଦମ୍ପତି ସୁଖ ମହୀରୁହ । ପ୍ରତୀଚୀ । ବହିଲା ଅରୁଣ ବର୍ଣ୍ଣକୁ । ଡଗର ନାଗର ଡରାଇଲା ଉଠ ସାଜ ସାଜ ବୋଲି ସୈନ୍ୟକୁ । ୩୩ ।

ବାଜିଲେ ତୂର ସାଜିଲେ ଚତୁରଙ୍ଗ ପ୍ରବେଶ ହେଲେ ସିଂହଦ୍ୱାର । କହେ ଜ୍ୟୋତିଷ ମଙ୍ଗଳବେଳ ହେଲା ଅନୁକୂଳ କର କୁମାର । ସାଜିଲେ ରମ୍ଭା ବୃକ୍ଷ କୁମ୍ଭ ପୁରତେ । ଭୂଷଣେ ଅରମ୍ଭା ରମ୍ଭା ପରି ବେଶ୍ୟା ମୋହିଲେ ସୁମଙ୍ଗଳ ଗୀତେ । ୩୪ ।

ସମାଭିଷେକ (ବୃଷ) ପଟ୍ଟ ଭୃତ୍ୟେ ଦେଖାଇ ଦିଅନ୍ତି ରାମା ହୁଳହୁଳି । ବଧାଇ ବଧାନେ ପୁରୋଧା ନନ୍ଦନେ ମଙ୍ଗଳାରୋପଣେ କୁଶଳୀ । କୀର୍ତ୍ତି । ବନ୍ଦନା ବନ୍ଦିବୃନ୍ଦ କରେ । ବାହାର ହୋଇଲେ ନୃପତିନନ୍ଦନ ବାଳାରୂପ ଚିତ୍ର ଚିତ୍ତରେ । ୩୫ ।

---

୩୧ । ତୃପତି—ଆନନ୍ଦିତ, ପଦ୍ମ—ଲକ୍ଷ୍ମୀ ।

୩୨ । ଶମ୍ଭୁ ଯୁଗଳ—ଦୁଇଟି ମହାଦେବ, ତରୁଣ ତରୁଣୀ—ସ୍ତ୍ରୀ ପୁରୁଷ ।

୩୩ । ଦର—ଶଙ୍ଖ, ଘୋଷ—ଶବ୍ଦ, ଦର—ଭୟ, ମହୀରୁହ—ଗଛ, ପ୍ରତୀଚୀ—ପଶ୍ଚିମଦିଗ ।

୩୪ । ରମ୍ଭାବୃକ୍ଷ—କଦଳୀଗଛ, କୁମ୍ଭ—ମାଠିଆ, ପୁରତେ—ଆଗରେ, ଭୂଷଣେ-ଅରମ୍ଭା—ବେଶହେବାକୁ ଯାଉଥିବା ।

୩୫ । ବନ୍ଦିବୃନ୍ଦ—ଭାଟସବୁ, ବଧାନେ—ନିୟମରେ ।

ପଲ୍ଲବକୋଣ ଅଧର ପୟୋଧର ପୂର୍ଣ୍ଣକୁମ୍ଭ ମୀନ ନୟନ । ଗତି ହଂସ ବତ ପାରାଗତ ଗଳ ମଙ୍ଗଳ ଅଷ୍ଟକ ବଚନ । ଜଘନ । ଭଦ୍ରାସନ ଊରୁ କଦଳୀ । ଶଙ୍ଖ ମୃଦୁହାସ ଚୁଚୁକ କମ୍ବୁକ ସର୍ବ ମଙ୍ଗଳ ପ୍ରଦ ସ୍ଥଳ । ୩୬ ।

ସୁକୁମାରୀ ରାଜ କୁମାରୀଙ୍କ ଭାବ ଭର ଅମାର ପରେ ବଜେ । କ୍ଷିତି-ଠାରୁ ଶୂଦ୍ର ଯାଏ ପ୍ରଣମିତ କଲ୍ୟାଣ ବାଞ୍ଛା କଲେ ଦ୍ୱିଜେ । ଚଳେ ଯେ । ସମ୍ଭାରରେ ସୈନ୍ୟ ଗମନ । ମଣ୍ଡି କମ୍ପନ ପନ୍ନଗ ପତି ଶଙ୍କି ଧୂଳିରେ ଲୁଚିଲେ ତପନ । ୩୭ ।

ସର ସଦ୍ ଚକ୍ରବାକ କଲେ ପଦ ଅବଲୋକି ମଣି ଶର୍ବରୀ । ରଥାଙ୍ଗ ନାଦେ କଳାପୀ ନାଚେ ମୋଦେ କୁଲଟା ହେଲେ ଅଭିସାରୀ । କାକରେ ନିଳୟ ଗତି ଲୀଳା କରେ । କୁଳପାଳିକା ବାଳିକା ଦୀପାଳିକା ପୁରମାନଙ୍କରେ ଜାଳିଲେ । ୩୮ ।

ବାଦ୍ୟଦମକ ଖଡ୍ଗ ଫର ଝମକ ଧନୁଘୋଷ ଗଜ ଝଙ୍କାର । ତୁରଙ୍ଗ ହ୍ରେଷା ଆଶାରେ ପୂର୍ଣ୍ଣ ହେଲା ହେଲେ ଦିଗଦନ୍ତୀ କାତର । ମଣିଲେ । ଗର୍ଜ୍ଜିକି ସେ ମହାକେଶରୀ । ମଇନାକ ଲୁଚେ ଇନ୍ଦ୍ର ଶତକୋଟି କୋଟି କୋଟି ମାରେ ବଗ୍ରହ । ୩୯ ।

---

୩୬ । ପଲ୍ଲବକୋଣ—ପଦ୍ମରାଗମାଣିକ, ଏଠାରେ ଅଧର, ପୟୋଧର—କୁଚ, ପୂର୍ଣ୍ଣକୁମ୍ଭ, ପାରାବତ—କପୋତ, ଭଦ୍ରାସନ—ସିଂହାସନ, ଚୁଚୁକ—କୁଚର ଅଗ, କମ୍ବୁକ—ଗୁଆ ।

୩୭ । ଅମାର—ହାତୀର ହାଉଦା, ପନ୍ନଗପତି—ବାସୁକୀ, ତପନ—ସୂର୍ଯ୍ୟ ।

୩୮ । ସରସଦ୍—ପୋଖରୀଘର, ଶର୍ବରୀ—ରାତି, ରଥାଙ୍ଗ—ଚକ୍ର, କଳାପୀ—ମୟୂର, କାକରେ—କାଉସବୁ, ନିଳୟଗତି—ଘରକୁଯିବା ଏଠାରେ ବସାକୁ ଯିବା, ଦୀପାଳିକା—ଦୀପସବୁ ।

୩୯ । ହ୍ରେଷା—ଘୋଡାର ଶବ୍ଦ, ବାଦ୍ୟଦମକ—ବାଦ୍ୟଶବ୍ଦ, ଦିଗଦନ୍ତୀ—ଦିଗବଳୟ ବା ଦିଗଗଜ, କେଶରୀ—ସିଂହ, ଶତକୋଟି—ବଜ୍ର । ପର୍ବରେ ପର୍ବତ ଉଡ଼ି ପ୍ରାମାଦ ନଷ୍ଟ କରନ୍ତେ ଇନ୍ଦ୍ରବଜ୍ରରେ ତାଙ୍କ ପକ୍ଷ ଛେଦିଲେ । ତହୁଁ ମୈନାକ ଲୁଚିକର ସମୁଦ୍ରରେ ବୁଡିରହିଲା ।

ପଥ ସ୍ୱଜନ ପ୍ରଜାଜନ ସମାନ ପୂଜନ କଲେ ସ୍ଥାନେ ସ୍ଥାନେ । ଜଳ ହୀନ ହେଲେ ସରିତ କାସାର ଅନନ୍ଦେ ଶିବା ଗୃଧ୍ରମାନେ । ଯାବତ । ଯାଦମେଦ ସ୍ୱାଦ ଲଭିଲେ । ବହୁତ ଦିନରେ ଯାଇ ସେ କଣ୍ଟିକ୍ୟାପୁର ପ୍ରଦେଶକୁ ଲଭିଲେ । ୪୦ ।

ବାସବସଦନ ପ୍ରକାରେ ସେ ବନ କଟକ ସମାନ ଶୋଭନ । ନିଶାର୍ଦ୍ଧେ ନିଷାଦେ ଭ୍ରମିଲେ ଦିଷାଦେ ହୀନ ହୋଇ ଜନ ଶୟନ । ମନୁଜ । ରୂପ ମନୋଜ ମନୋହର । ଦନୁଜଦନୁଦାରଣ ସମ ଶନ୍ତ୍ର କହଇ ଭଞ୍ଜ ବୀରବର । ୪୧ ।



## ଚତୁର୍ବିଂଶ ଛାନ୍ଦ ।

( ଲାବଣ୍ୟବତୀ ନିକଟକୁ ଦୂତ ପ୍ରେରଣ, ଚନ୍ଦ୍ରଭାନୁର ଶିକାର । )

ରାଗ ପାହାଡ଼ିଆ କେଦାର ।

ଶୁଣ ସୁମତି ବନାଶ ରତି ପୂର୍ବଦରତ କୁଙ୍କୁମକାନ୍ତି ଚେତ ମାଗଧ ଅବଲମ୍ବେ ସ୍ତୁତ କୀର୍ତ୍ତିକର ଯେ । ଚେକ ମୁକୁଟ ଡାଳେ କୁକ୍କୁଟ ସେ ବାଣୀ ଭାର୍ଯ୍ୟାପତିଙ୍କି କୂଟ ସରମାନଙ୍କେ ସାରସ ସ୍ଫୁଟ ଗର୍ଭେ ଭ୍ରମର ଯେ । ଉଠି କୁମର କାଠିଲଗି ଧୁଅଇ ଯେ । କର ଯୋଡ଼ି ସଚିବସୁତ ଜଣାଇ ଯେ । ବହୁଅଛନ୍ତି ଶିକାରୀଜନ ବହୁ ଜୀବରେ ଏ ବନ ଘନ ହେବ କି ବର୍ଣ୍ଣେ ଶିକାରମାନ ଅଜଳ ରହ ଯେ । ୧ ।

---

୪୦ । ପୂଜନ—ପୂଜା, ସରିତ—ନଦୀ, କାସାର—ପୋଖରୀ, ଶିବା—ବିଲୁଆ, ଗୃଧ୍ର—ଶାଗୁଣା, ଯାଦମେଦ—ମାଛ ପ୍ରଭୃତି ଜଳଚର ।

୪୧ । ବାସବ ସଦନ—ଇନ୍ଦ୍ରପୁର, ନିଶାର୍ଦ୍ଧେ—ରାତିଅଧରେ, ନିଷାଦେ—ଶବରମାନେ, ବିଷାଦେ—ଦୁଃଖରେ, ମନୁଜ—ମନୁଷ୍ୟ, ମନୋଜ—କନ୍ଦର୍ପପରି ସୁନ୍ଦର, ଦନୁଜ—ରାକ୍ଷସ, ତନୁ—ଦେହ, ମାରଣ—ନାଶ ।

ଚନ୍ଦ୍ରଭାନୁ ପିତାଙ୍କ ଆଜ୍ଞାପାଇ ସମସ୍ତ ଦଳବଳ ସୈନ୍ୟ ସାମନ୍ତ ସହ ପଦାତି ପ୍ରଭୃତି ନେଇ ରାମେଶ୍ୱର ଯାଇ ସେଠାରେ ପାରିଧି ଓ ମହୋତ୍ସବ କଲେ ।



## ଚତୁର୍ବିଂଶ ଛାନ୍ଦ ।

୧ । ସୁମତି—ସନ୍ତ୍ରୀ, ପୂର୍ବଦରତ—ପୂର୍ବଦିଗ, କୁଙ୍କୁମକାନ୍ତି—ରକ୍ତବର୍ଣ୍ଣ, ମାଗଧ—ଭାଟ, କୀର୍ତ୍ତିକର—ଯଶସବୁ, ସରମାନଙ୍କେ—ପୋଖରୀ ସବୁରେ ସାରସ—ପଦ୍ମ, କାଠିଲଗି—ଦାନ୍ତଘଷିବା, ଶିକାରୀଜନ—ବାଣୁଆମାନେ,

ଶୁଣ ଏମନ୍ତ ଚରିତ୍ରେ ଶଶୁର ଅଗ ପେଷିଲେ ସେ ବୃଦ୍ଧଗୁପ୍ତ ରାଜ ପୁତ୍ରିକା ପାଶେ ବନସ୍ଥପତିକା ଦେଇ ଯେ । ତଦନନ୍ତର ଶିକାରସଜ ଆଣି ବୋଲନ୍ତି ନୃପଅତ୍ମଜ ଶୁଭିଲ ତାକ ସଇନ ସାଜ ତୁରତେ ତହିଁ ଯେ । ପ୍ରଥମରେ ଏ ବଳ ହେଲେ ବାହାର ଯେ । ଲୋଧାଗୋଧାରେ ଭର ମଣ୍ଡନ କର ଯେ । ଭ୍ରମଦ ପଣ୍ଡସ୍ତୋମରେ ସେହ ସୁଚର୍ମ ବର୍ମ ତୋମର ଶୋହ ବାଜବଇଷ୍ଟ ହସ୍ତେ ବସାଇ ଉତ୍ସୁକଜ୍ଝରି ଯେ । ୨ ।

ଶବରପନ୍ତି କି ଭଦ୍ରଙ୍କର ଯଥା ପରେତଭର୍ତ୍ତୃଙ୍କର ଭୂଷା ବରାଠ ଗୁଞ୍ଜନକର ମଧୁରେ ମତ୍ତ ଯେ । ପନ୍ତ ପଛେ ଧୂଳି ଉଡ଼ାଇ ଗଲେ ସେ ପଶୁପଦ ଗୋଡ଼ାଇ ଧମନ ଗୃପେ କାଣ୍ଡ ଚଢ଼ାଇ ଶାର୍ଙ୍ଗ ଗୃହୀତ ଯେ । ବ୍ୟାଧେ ବହୁଣ ନଲ ତାଳଚାଟୀକି ଯେ । ନଳଅଳରେ ଯେନ ଅଠା- କାଠିକି ଯେ । ବହୁ ବାଗୁରା କେ ତହିଁ ଭ୍ରମ ବହୁତ ମୃଗଦଂଶକ ଧରା ଶାଖାବେଷ୍ଟନେ ବକ୍ଷସ ପରା ଲଭି ତୃଷ୍ଟିକି ଯେ ।୩।

ଲୁମର ବଳେ ହସ୍ତିପିଠିରେ ତାକୁ ସମାନ ନାହିଁ ସୃଷ୍ଟିରେ ଏମନ୍ତ ହୋଏ ଭବ ଦୃଷ୍ଟିରେ ସମ୍ଭାବ୍ୟ ତହିଁ ଯେ । ସୁବର୍ଣ୍ଣକଣ୍ଟକଣ ବାଖର ପଲ୍ଲ ଡେଣାକ ବସ୍ତାରେ ତାର ଡେଇଁ ଯିବାକୁ ସପ୍ତସାଗର ଇଚ୍ଛା କରଇ ଯେ । ବାର ବଳକୁ ଲଙ୍ଘି ନ ପାର ରହୁ ଯେ । ଯେଣୁ ସୁଜାଣ ଅଛୁ ଭରକୁ ସ୍ତୁହିଁ ଯେ । ମେରୁ ମହୀଧର ମିଶିତ ଯେବେ ଖୁରକ ସ୍ଥାନ ନୋହିବ ତେବେ ତା ଚୂର୍ଣ୍ଣ ଭ୍ରବ ରହିବାଠାବେ ଖୁର ମାରଇ ଯେ ।୪।

ସଙ୍ଗେ ଥିବାର ତୁରଙ୍ଗବଣ ପ୍ରଶଂସା ଅଜ୍ଞ କରିବା କାସ ଜବକୁ ପବମାନ ସତ୍ତ୍ୱଣ ପୂର୍ଣ୍ଣ ଲକ୍ଷଣ ଯେ । ହୋଇଲେ ବେଗବନ୍ତ ମାତଙ୍ଗ ନ ଦଣେ ସାଦ ଧୂଳଉପାଙ୍ଗ କ୍ରୁଧୂପଟ୍ଟର ଏଡ଼େ ଜନ୍ତୁଙ୍କ ଅନ୍ତ ଜାଣ ଯେ । ଅତଶୀଦେ ରଜତ ମାହୁନ୍ତଚଯ୍ୟ ଯେ । ବେଢି ବାରକୁ ଚଳେ ଶୋଭା

---

୨ । ରାଜପୁତ୍ରିକା—ରଜାଝିଅ (ଲାବଣ୍ୟବତୀ) ତଦନ୍ତର—ତାହାପରେ, ଅତ୍ମଜ—ପୁତ୍ର, ଲୋଧା ଗୋଧା—ଗୋଧି ଚମର ଢ଼ାଙ୍କୁଣୀ ଯାହାକୁ ଶରମୁନ ବାଜିବ ବୋଲି ହାତରେ ପିନ୍ଧନ୍ତି, ସ୍ତୋକ—ସମୂହ,

୩ । ପରେତଭର୍ତ୍ତୃ—ଯମ, ବରାଠ—କଉଡ଼, ଗୁଞ୍ଜ—କାଇଁଚ, ମଧୂ—ମଦ, ଧମନ—ନଳ, ଶୃଙ୍ଗା, ନଳଅଳୀ—ନଳସରୁ, ବକ୍ଷସ—ଲଟା, ବାଗୁରା—ଜାଲଫାଶ,

ଉଦସ୍ତ ଯେ । ପଦାତିପନ୍ତ ସଙ୍ଗେ ଧାଇଁଲେ ରମ୍ୟବିପିନ ଯାଇ ପାଇଲେ ଅଦ୍ଭୁତ ଶୋଭାମାନ ଗୃହ୍ଣିଲେ ତୋଷ ଉଦସ୍ତ ଯେ ।୫।

ନ ଥିଲା ହୋଇ ପାଦପ ତହିଁ ଅଭ ଗଉଦ ଭୁବନେ ନାହିଁ ଚମର ଅଳାଇଚ ଉତ୍କୋଳ ସଘନ ଯହିଁ ଯେ । ବୈଦ୍ୟ ଭାବନ୍ତି ଔଷଧପନ୍ତ-ପ୍ରଭାବରେ ଅଛି ଥିବେ ଯେ ପ୍ରତିରଜନୀ ଏଥି ଗୃହମାରତି କାନ୍ତିକ ଚହି ଯେ । ଫଳେ ହେଠ ଉମାଳୀ କ୍ରମ୍ଭୀ ଜମ୍ବୀର ଯେ । ଦଶ୍ରୁଛନ୍ତି ପ୍ରଣାମ କଲ୍ପ ପ୍ରକାର ଯେ । ବାରମାସରେ ବିକାଶ ଜାତି ନୀପ କୁଟଜ କୁସୁମବତୀ ହୃଦ ହରଷ ଦେଖାଉଛନ୍ତି କି ନିରନ୍ତର ଯେ ।୬।

ସଫଳ ତହିଁ ଗୁଆ ନାରଙ୍ଗ ଶ୍ରୀଫଳ ତୁଙ୍ଗ ସମାତୁଲଙ୍ଗ ଲାଙ୍ଗଳୀ କରମଙ୍ଗାହିଁ ସଙ୍ଗ ବିପୁଳ ଭାର ଯେ । ଶିଶୁଠାବରୁ ଜରଠ ସର ସ୍ତନ-ଶୋଭନ ଥିବାରୁ ଧବ ଉତ୍ଫୁଲ୍ଲ ସ୍ତମ୍ଭ ଅଛୁ ଅଦର ପୁନ୍ନାଗ ଧବ ଯେ । ଅଙ୍ଗବାସ ମାଧବୀ ସୁପରିମଳ ଯେ । ହୋଇ ପ୍ରସରୁ ଅଛି ମନ୍ଦ ଅନିଳ ଯୋ ବରାହଦାନ୍ତ ନବମାଳିକା ନୂତନ କରବୀରକଳିକା ଯଥା ଟାଳିକା ନକ୍ଷ-ମାଳିକା ପଦ୍ମାଉଜ୍ଜ୍ୱଳ ଯେ ।୭।

କୁଞ୍ଜକୁଟିରମାନ ରୁଚିର ଯୂଥିକା ମୋତିବିତାନ ଚୀର ପତନପୁଷ୍ପ-ଶଯ୍ୟା ପ୍ରକାର ଶେଫାଳିକାର ଯେ । ଭ୍ରମନ୍ତି ଭାଷ ସାରୀ କପୋତ ସୁମଙ୍ଗ ରତିରସରେ ମତ୍ତ ପାନ ଖଦିର ଲବଙ୍ଗଗୁଣ୍ଠିତ କି ମନୋହର ଯେ । ଦୀକ୍ଷା ବିତ୍ତିନେ ଶିକ୍ଷା କନ୍ଦର୍ପ କେଳି ଯେ । ପରି ବସନ୍ତ ପାରିବତହିଁ କେଳି ଯେ

---

୫ । ତୁରଙ୍ଗବଶ—ଘୋଡ଼ାମାନେ, ଜବକୁ—ଚଞ୍ଚଳରେ, ପବମାନ—ପବନ, ସାଦ—ଯୋଦ୍ଧା, ସୁତ୍ତମାଙ୍ଗ—ମୁଣ୍ଡ, ଉହୁଟ—ଅଭିଜିଇ, ସାଦୀ—ଘୋଡ଼ସବାର, ପଦାତିପନ୍ତ—ପାଇକ ସେନାମାନେ, ବିପିନ—ବଣ,

୬ । ପାଦପ—ବୃକ୍ଷ, ଔଷଧ ପନ୍ତପ୍ରଭାବରେ,—ଔଷଧଗଛମାନଙ୍କ ତେଜରେ, ହେଠ—ନଇଁପଡିବା, ଜାତି—ଯାଇଫୁଲ, ନୀପ—କଦମ୍ବ, କୁଟଜ—ପିତାକୋରୁଆ, କୁସୁମବତୀ—ଫୁଲରେ ଭରା, ନିରନ୍ତର—ସର୍ବଦା,

୭ । ଶ୍ରୀଫଳ—ବେଲ, ନଡ଼ିଆ, ତୁଙ୍ଗ—ଉଚ୍ଚ, ସମାତୁଲଙ୍ଗ—ଠେଭା, ଲାଙ୍ଗଳୀ—ନଡିଆ, ଶିଶୁଠାରୁ—ପିଲାଠାରୁ, ଧବ—ପତି, ଧଅକାଠ, ଅନିଲ—ପବନ ବରାହଦାନ୍ତ—ଫୁଲର ନାମ, ନବମାଳିକା—ନଆଳୀ, କରବୀର—କନିଅର, କଳିକା—କଢ଼ି,

୮ । ଯୂଥିକା—ଯୁଇ, ବିତାନ—ଚାନ୍ଦୁଆ, ଶେଫାଳିକା—ଗଙ୍ଗଶିଉଳି,

ପକ୍ୱଣବାସ ଅଶୋକଡ଼ାଳ ସ୍ତବକ ରବଦ୍ୟୋତରେ ଫୁଲ ଭ୍ରମ କରଣ ଶଣା ହରଣ ସମ୍ଭବ ପିଳ ଯେ ।୮।

ଚନ୍ଦ୍ରକ ଟେକି ନାଚନ୍ତି କେକୀ ଊର୍ଦ୍ଧ୍ୱରୁ ଖସୁଛନ୍ତି ଗୃତକୀ ଯହିଁ ତମାଳ ତରୁକୁ ତର୍କି ଜଳଦ କରି ଯେ । ଅମ୍ଳାନ ଗୁଳ୍ମ ବଲ୍ମୀକମତ କୁସୁମ ପୀତ ରଙ୍ଗ ଅଶିତ ଶ୍ରେଣୀଭୂତରେ ସେ ପୁରୁହୂତକୋଦଣ୍ଡ ପରି ଯେ । ମତ୍ତଦ୍ୱିରଦ ନାଦ ଜଡ଼ରେ ଶୁଭେ ଯେ । ଚମ୍ପା ସମ୍ପାତ ଶମ୍ପାକୁ ସମ ଲଭେ ଯେ । ବକୁଳ ମକରନ୍ଦ ବରଷେ ଡ଼ାହୁକ କେକା ବାଣୀକି ଦୋ:ଷେ ବକାଳୀ ଗତ ଅଗତବଣେ ସ୍ୱଭାବେ ଶୋଭେ ଯେ ।୯।

ପ୍ରଫୁଲ୍ଲ ମଲ୍ଲୀବଲ୍ଲିକମାନ ତାରା ସଦୃଶେ ନୀଳଗଗନ ଭ୍ରମିତପଣ୍ଡିତ ଧରା ଶୋଭନ ପରାଏ ତର୍କ ଯେ । ଅନାଇଁ ତାହା ଅଶିତ ନୀଳ ଦାସୀ ପ୍ରକାଶ ରଥାଙ୍ଗକୁଳ ପ୍ରବେଶ ହୋଇ ମହା ବ୍ୟାକୁଳ ପକ୍ଷ ଝଟେକ ଯେ । ଗୃହିଁ ଚକୋରପକ୍ଷୀ ଚଞ୍ଚୁ ପୁଟକୁ ଯେ । ରଖେ ଚତୁରପଣେ କାନ୍ତା ଯୋଗକୁ ଯେ । ବାରୁଣୀ ପୁଷ୍ପବନ୍ତ ମନ୍ଦାର ଦେଖି ଅନନ୍ଦ ଦବାନ୍ଧକର ତରୁ ଦୋଳକା ଅଦ ବଗୁର କରେ ରଙ୍ଗକୁ ଯେ ।୧୦।

କିଂଶୁକ ଶୁକ ଯେ ବୃକ୍ଷେ ଥାଇ ଭ୍ରମରେ ସେହୁ ଭ୍ରମ କରାଇ ଚୂତ-ପଲ୍ଲବଗ ସେ ଅନ୍ଧ ହୋଇ ହେଉଁ ପତନ ଯେ । ଜମ୍ବୁ ବଗୁରେ ଡଉଣ ସେ ଯେ ବମ୍ବ ପାଶକୁ ବାହୁଡ ଲାଗେ ଗନ୍ଧ ରେ ବୋଲି ଜମ୍ବୁକ ଗର୍ଜେ ଭର ଲୋକନ ଯେ । ଗୃହିଁ କସ୍ତୁରୀପଙ୍କେ ପଙ୍କିଳ ମହୀ ଯେ । ସତ ପଡ ଏମନ୍ତ ଚୋବାଇ ଧାଇଁ ଯେ । ଅଷାଢ଼େ କର ଏ ରସ ପାନ କରଇ ମୁଁ ଯେ ପଞ୍ଚମଗାନ ଏହା ଯା ଜାଣୁ ନାହାନ୍ତି ଅନ ମୋ ଭାଗ୍ୟ ଏହୁ ଯେ ।୧୧।

---

ଖଦର—ଖଇର, ଦୀକ୍ଷା—ଉପଦେଶ, ପକ୍ୱଣ—ଶବରଘର, ପଣକୁଡିଆ, ସ୍ତବକ—ଫୁଲପେଣ୍ଡା, ରବଜ୍ୟୋତରେ—ଖରାରେ,

୯ । କେକୀ—ମୟୂରୀ, ଜଳଦ—ମେଘ, ଗୁଳ୍ମ—ଛୋଟବୁଦା, ବଲ୍ମୀକ—ଉଇହୁଙ୍କା, ଅଶିତ—ଧଳା, ପୁରୁହୂତ—ଇନ୍ଦ୍ର; କୋଦଣ୍ଡ—ଧନୁ ଦ୍ୱିରଦ—ହାତୀ, ଶ୍ରେଣୀଭୂତ—ଧାଡ଼ି ଧାଡ଼ି, ଶମ୍ପା—ବିଜୁଳି,

୧୦ । ପ୍ରଫୁଲ୍ଲ—ଫୁଟିଲା, ମଲ୍ଲୀ ବଲ୍ଲିକା—ମଲ୍ଲୀଲତା, ଧରା—ପୃଥିବୀ, ଅଶୀତ—କଳା, ଦାସୀ—କେରଣ୍ଡା ଫୁଲ, ରଥାଙ୍ଗକୁଳ—ଚକ୍ରବାକମାନେ; ବାରୁଣୀ—ଅଗସ୍ତି ଗଛ; ତରୁ—ବୃକ୍ଷ;

୧୧ । କିଂଶୁକ—ପଳାଶଗଛ; ଚୂତପଲ୍ଲବେ—ଆମ୍ବ ବଉଳରେ; ଜମ୍ବୁ—ଜାମୁକୋଳି; ବମ୍ବ—କଇଁଚକାଲୁଡ଼ି; ଜମ୍ବୁକ—ବିଲୁଆ, ଲୋକନ—ଚାହିଁବା;

ତାଳମ୍ବ ବୀଜେ ତଳେ ଅବନୀ ବୃଣିଲ ପ୍ରାୟ ପାଣିକଚ୍ନୀ ଖଞ୍ଜନ ମିଳୁଛନ୍ତି ଏ ବେନି କରଣେ ସ୍ଥାନ ଯେ । ପଞ୍ଚ ଗ୍ରସ୍ତନ ଶାଳନିର୍ଯ୍ୟାସେ ବଂଶଅନଳେ ଧୂପ ପ୍ରକାଶେ ପୁଳିନ୍ଦ ଅଗ୍ନିଦେବାର ହ୍ରାସେ ସରଘାମାନ ଯେ ଉଡୁଅଛନ୍ତି ଛାଡି ମଧୁକୋଷକୁ ଯେ । କରମଣ୍ଡଳୀ କରୁଛନ୍ତି ଘୋଷକୁ ଯେ । ଯେଣେ ଗୁହ୍ମିଲେ ନବ ପାଟଳୀ ଜୟନ୍ତୀ କୁରୁବକ ଶାଲ୍ମଳୀ ସ୍ପର୍ଷିତ ବେନ୍ଦୁ ପଲ୍ଲବେ ଫଳ ସେହ୍ନ ତ୍ରାସକୁ ଯେ ।୧୨।

କୃଷ୍ଣମଞ୍ଜରୀଗଣ ଚରମେ ହଂସ ସର୍ବଳୀ ଭାଲିନ୍ଦୀ ଭ୍ରମେ ବିହାର କରୁଛନ୍ତି ଅଗମ୍ୟ ସୁମନୋରମେ ଯେ । ବ୍ୟାଳେ ମୃଣାଳ ବୁଦ୍ଧି କରନ୍ତି କଙ୍କ ନକୁଳ ଯେ ନ ଧରନ୍ତି ପକ୍ଷୀ ଗ୍ଲୁସ୍ତାକୁ ଡାଳେ ଧାମନ୍ତି ବଡ଼ାଳେ ଶ୍ରମେ ଯେ । ଅର୍କପାଷାଣମାନେ ସେ ବନଷିତ ଯେ । ବଡ ବଡ଼ ହୋଇଣି ପଡିଅଛନ୍ତି ଯେ । ମତ୍ତଗର୍ବିତ ସଂହସନ୍ଦୋହ ତହିଁ ଅନାଇ ଜାତ ସନ୍ଦେହ ଅରମ୍ଭି ଆସୁଛନ୍ତି କଳହ ସ୍ୱନାଦେ ଅତି ଯେ । ୧୩ ।

ପତନ ଜାତୀଫଳ ଅମୃତା ପକ୍ୱବଦରୀ ଗଜମୁକ୍ତା ବଟେକ ନ କରଣି ମାଡ ତା ଗମିଲେ ସୈନ୍ୟ ଯେ । ଏଲାଦି ଭରଦ୍ୱାଜପତ୍ରେ ଚିହ୍ନିତ ପଥ କ ବଚିତ୍ରରେ ସର୍ବେ ପ୍ରଶଂସା କଲେ ଉତ୍ତରେ ଏ ବନ ଧନ୍ୟ ଯେ । ଅତି ମୃଗଚହଲ ନିଶାଣବାଜେ ଯେ । ହେଲେ ଚକିତ ପଶୁ ପତଙ୍ଗ ଯେତେ ଯେ । ଛାଡ଼ି ସେ ବନ ସେ ବନଧର ମାଡି ଅସିଲ୍ଲ ମଣି ସାଗର ଅତ୍ୟନ୍ତ ଲୋଳ ପରାକା ଚୀର କଲ୍ଲୋଳ ପତେ ଯେ । ୧୪ ।

---

୧୨ । ଶାଲନିର୍ଯ୍ୟାସ—ଝୁଣା, ବଂଶଅନଳ—ବାଉଁଶନିଆଁ, ପୁଳିନ୍ଦ—ଶବର, ସରଘା—ମହୁମାଛି, କୁରୁବକ—କୁରୁମ; ଶାଲ୍ମଳୀ—ଶିମିଳି, ତ୍ରାସ—ଭୟ,

୧୩ । କୃଷ୍ଣମଞ୍ଜରୀ,—ଫୁଲବିଶେଷ,ଚରମେ—ପିଠିରେ,ସର୍ବଳ—ଚଢ଼େଇବିଶେଷ, ବ୍ୟାଳ—ସାପସବୁ, କଙ୍କ—ଚଢ଼େଇ ବିଶେଷ; ନକୁଳ—ନେଉଳ, ବଡ଼ାଳ—ବିଲେଇ, ଅର୍କପାଷାଣ—ସୂର୍ଯ୍ୟକାନ୍ତମଣି, ବନଷିତ—ବଣଭୂଇଁ; ସନ୍ଦୋହ—ସମସ୍ତେ.

୧୪ । ଅମୃତା—ହରଡ଼ା, ପକ୍ୱ—ପାଚିଲା, ବଦରୀ—ବରକୋଳି ଏଲା—ଅଲାଇଚ ଭରଦ୍ୱାଜପତ୍ର—ଭଦଭଦଲିଆପର , ପତଙ୍ଗ—ଚଢ଼େଇ ବନଧର—ସୈନ୍ୟ ଲୋଳ—ଶୀଘ୍ର ଚୀର—କନା, କଲ୍ଲୋଳ—ଲହରୀ

କରୀ ମଣିଲେ ମକରୀ କର ତୁରଙ୍ଗ ତହିଁ ଶଫର ପର କୂର୍ମ ସୁଚର୍ମ ସୁଷମ ଫରୀ ଉଷ୍ଣୀଷ ଫେନ ଯେ । କୃପାଣ ଝଟ ଝଟ ଝଟକ ବଢ଼ଇ ଯନ୍ତୁ ବନ୍ତୁ ଝଙ୍କ ଭ୍ରମପଦାତ ଭଙ୍ଗୀ ଠିକ ବାଦ୍ୟ ଗର୍ଜ୍ଜନ ଯେ । ପୂବ ଏସନ ସୈନ୍ୟ ସେ ମହାରଣ୍ୟ ଯେ । ପଞ୍ଚକୋଶ ମଧ୍ୟରେ ରକ୍ଷିଣ ସ୍ଥାନ ଯେ । ଘଞ୍ଚରେ ଯାଇଁ ବାଡ଼ ବେଢ଼ାଇ ଜଙ୍ଗରେ ବୃକ୍ଷେ ମଞ୍ଚା ବନ୍ଧାଇ ଯନ୍ତ୍ରା ବସାଇ ଟୋପ ଖୋଲାଇ ଜଗିଲେ ଜନ ଯେ । ୧୫ ।

ପଳାଇ ଜୀବେ ଯହିଁରେ ସ୍ଥିତ ବହୁ ସେ ଦନ୍ତିଦନ୍ତ ଅକୃତ ତହିଁ ପର୍ବତଶିଳାର ଜ୍ୟୋତି ଯାଉଛି ନଭେ ଯେ । ଟେକି ଅଛି କି ଏଥିକି କର ପିଇବ ଅଣି ସ୍ୱର୍ନଦୀ ନୀର କରଟଦନ୍ତ କଟକେ ତାର ପେଟକ ଶୋଭେ ଯେ । ଧାତୁ ଧର୍ବ ଶବଳା ମାଳା ସଶୃଙ୍ଗୀ ଯେ । ଜଳପ୍ରବାହ ଦାନଜଳ ବରଷି ଯେ । ପିପ୍ପଳ ଅଶନକୁ ସୃଷ୍ଟିତ କର ସିନ୍ଦୂରେ ତଳକେ ପୂଷ୍ପ ଦବସ-ବନ୍ଧୁ ଯହିଁ ମାହୁନ୍ତ ପର୍ବତ୍ତୁ ଦଣି ଯେ । ୧୬ ।

ସେ ଗ୍ରାବୁଁ ଜୀବ ସଙ୍ଘରେ କାଳୀ ଦେଇ କୁହାଟ ଟମକ ଢ଼ାଳି ଫିଙ୍ଗିଲେ ସାଦ କୁନ୍ତ ଶାବଳୀ ବନ୍ଧଲେ ତୀର ଯେ । ପ୍ରତି ନଳରୁ ଗୁଳି ବାହାର ଧାଉଦେବାର ବାଜ ବଇସି ମାଡବସିଲେ ପକ୍ଷିକି ଧର କି ମନୋହର ଯେ । ଜାଲେ ପଡଲେ ଅଟେ ପଶୁନିକର ଯେ । ଗର୍ତ୍ତେ ପଡଲେ ଦେଡେ ଦେଡେ କୁଞ୍ଜର ଯେ । ମାରରେ ମାର ଏ ବୀର ଗିର ପୂରତ ହେଲା ଅମରପୁର ସାଜିଲା ଅବା ଦେଉଁ ଅସୁର ଭାବଲେ ସୁର ଯେ । ୧୭ ।

ଭଲ୍ଲରେ ଭଲ ଭଲ୍ଲ ଭୂଷିଲେ ମଲ୍ଲ ଯୁଝିଲେ ଶାର୍ଦ୍ଦୂଳ ତୁଲେ ଖଡ୍ଗ ରେଟ ଧଗାଷ କଟଲେ ଖଡ୍ଗ ଘଟେ ଯେ । ଶରଭ ଶରଭଟନ ବ[illegible]ଣି

---

୧୫ । କରୀ—ହାତୀ, ମକରୀ—ମଗର, ତୁରଙ୍ଗ—ଘୋଡ଼ା, ଶଫରୀ—ଦଣ୍ଡିକରୀ ମାଛ, କୂର୍ମ—କଇଁଛ, ସୁଚର୍ମ—ଉତ୍ତମ ଚମଡ଼ା, ଉଷ୍ଣୀଷ—ପଗଡ଼ି, କୃପାଣ—ଖଣ୍ଡା, ଭ୍ରମପଦାତ—ବୁଲୁଥିବା ପାଇକ, ଟୋପ—ଗାତ

୧୬ । ଦନ୍ତିଦନ୍ତ—ହାତିଦାନ୍ତ, ନଭେ—ଆକାଶରେ, ସ୍ୱର୍ନଦୀ—ଗଙ୍ଗା, କରଟ—କୁଅ, ଦାନଜଳ—ମଦଜଳ, ପିପ୍ପଳ—ଅଶ୍ୱତ୍ଥ, ଦବସବନ୍ଧୁ—ସୂର୍ଯ୍ୟ

୧୭ । ଗ୍ରାବୁଁ—ଶବରୁ—ଘେରବାରୁ, କୁଞ୍ଜର—ହାତୀ, ଅମରପୁର—ସ୍ୱର୍ଗପୁର ସୁର—ଦେବତା

୧୮ । ଭଲ୍ଲ—ଭାଲୁ ଓ ବର୍ଚ୍ଛା, ଶାର୍ଦ୍ଦୂଳ—ବାଘ, ଖଡ୍ଗ—ଖଣ୍ଡା ଓ ଗଣ୍ଡା ଶରଭ—ଆଠଗୋଡ଼ ଯୁକ୍ତ ମୃଗ, ଶରଭ—ଶର, ଭୂଦାର—ବରାହ

ବାରଣ ବଳେ ଭୂଦାର ଜିଣି ସୁଗାତ୍ର ଯମଦାଢ଼ ପ୍ରକାଶି ଅତି କୋପରେ ଓଯେ । ଛିଣ୍ଡ ଶଲଙ୍କିପଲ ଶ୍ୱାନହିଁ ହିଂସେ ଯେ । ମସ୍ତି କି ଲାଲ ଦଶେ କଲ୍ଲାଳ ବଣେ ଯେ । ସର୍ବାଙ୍ଗ ରଙ୍ଗ ହେଲେ ଜନାଳି ଗଜ ବରଷ୍ଟ କୁରଙ୍ଗ ନଳ ଯୋଗରେ ଫଗୁପିଚକା ଚଳା ଅତି ହସେ ଯେ । ୧୮ ।

କୁମର କରୁଁ ମୃଗୟା ତ୍ରାସ ଲଭିଣ ବାସ ପୁଚ୍ଛେ ମହିଷ ଅଛି କି ନାହିଁ ମୋର ଅଯୂଷ କୃତଂ କୀବେଣ ହେ । ଶଙ୍କର ଶଶାଙ୍କକର ହରି ବାତ ଅଶନ ଦୁର୍ଗାପଦ୍ମର ରହିଲା ସେହି ଦଣ୍ଡକ ଥର ବର୍ଣ୍ଣିବା କିସ ଯେ । ସ୍ୱାମୀ ହରଇ ଚାର ସଙ୍ଗୀକି ସ୍ଥିର ଯେ । ଖଣ୍ଡ ଶବଦ ଅଛି ଛୋର ନ ଡ଼ର ଯେ ସର୍ବଜ୍ଞ ପଣେ ବଧି ଶିଖାଇ କର କୁମର ଉଦନ୍ତ ଶୁଣି ଲାବଣ୍ୟବତୀ ଛାମୁକୁ ଯାଇ ମରାଳବର ଯେ । ୧୯ ।

ମୃଗୟା ଶେଷେ ଯୁବନରେଶ ବାହୁଡ଼ି ହେଲେ ବସା ପ୍ରବେଶ ମେଦ ବଣ୍ଟାଇ ମୋଦ ଅଶେଷ ସଚିବସୁତ ଯେ । ଭୋଗେ ରହିଲା ଗନ୍ଧମାର୍ଜ୍ଜାରି ବରାଙ୍ଗ ଗଜ ମୋତି ଗୁମର ଖଡ଼୍‌ଗପାତ୍ର ଦତ୍ତ ଭୂସୁରଗଣେ ସନ୍ତୁଷ୍ଟ ଯେ । ଦୋଷି ବୈଷ୍ଣବ ଦ୍ୱୀପିଅଜିନ ଦେଇ ଯେ । ଶିଶୁଲାଳସୀ ଲୋକେ କରଜ ନେଇ ଯେ । ବଜ୍ରକବଚ ଗଣ୍ଡକ ଜାତି ଲଭେ ବହୁତ ସଜ୍ଜିତପତ୍ତି ପାଦଗ ପକ୍ଷଦାନେ ତୃପତି ବିଶେଷେ ହୋଇ ଯେ । ୨୦ ।

କରି-ଦଶନ ଲଭି ଡଯଟକ ଶୃଙ୍ଗ ପ୍ରଦାନ ଶୃଙ୍ଗକାରକେ ଚର୍ମକା-ରକୁ ଚର୍ମ ଜନ୍ତୁକେ ନିଅ ବୋଇଲେ ଯେ । ବସ୍ତ୍ରଲୋମ ପାଠସ୍ୱଲ୍ପେ ମୃଗନାଭିକ ପାଇ ବଣିକେ ମନ୍ଦିନନ୍ଦନଗୁଣ ଅଧିକ ପ୍ରଶଂସା କଲେ ଯେ ।

---

ଶଲଙ୍କୀ—ଝିଙ୍କ, ଶ୍ୱାନ—କୁକୁର, ଲାଲ—ରକ୍ତ ଜନାଳି—ଲୋକମାନେ, ଗଜ—ହାତୀ ।

୧୯ । ତ୍ରାସ—ଭୟ, କୀବେଣ—ଯମ, ପୁଚ୍ଛେ—ପଚାରେ, ମହିଷ—ଯମ ବାହନ ଶଙ୍କର—ମହାଦେବ, ଶଶାଙ୍କ—ଚନ୍ଦ୍ର, କର—କିରଣ, ବାତଅଶନ—ମୃଗ ଆହାରସିଂହ ଦୁର୍ଗାଙ୍କ ପଦ୍ମର କି ପଦତଳେ ରହିଲା, ଉଦନ୍ତ—ସମ୍ବାଦ, ମରାଳବର—ହଂସଶ୍ରେଷ୍ଠ ।

୨୦ । ମେଦ—ମାଂସ, ମୋଦ—ଆନନ୍ଦ, ବରାଙ୍ଗ—ମୁଣ୍ଡ, ଭୂସୁରଗଣେ—ବ୍ରାହ୍ମଣମାନଙ୍କୁ ; ଖଡ଼୍‌ଗ ପାତ୍ର—ଗଣ୍ଡାପାତ୍ର, ଦ୍ୱୀପିଅଜିନ—ବାଘଛାଲ ଶିଶୁ ଲାଲସୀ—ପିଲା ସୁଆଗୀ, କରଜ—ବାଘନଖ, ଗଣ୍ଡକ—ଗଣ୍ଡା ପାଦଗ—ପାଇକ, ପଦାତିକ, ପକ୍ଷ—ପର ।

୨୦ । କରିଦଶନ—ହାତୀରଦାନ୍ତ, ଡଯକ—ଚଢେଇ, ଶୃଙ୍ଗ—ଶିଙ୍ଗ ।

ପାଦ ଏକ ଶଙ୍କର କରଣ ସିଦ୍ଧି ଯେ । ତୋଷି ଉଦର ଜଳେ ଶୟନ ବାଧି ଯେ । ପ୍ରଭାତେ ସୈନ୍ୟ ସାଜ ଗମନ ଶୁଭଲ ଭଛେ ନାଗସମ୍ଭନ ଶ୍ରୀରାମ-ନାମ ଉପେନ୍ଦ୍ର ଭଞ୍ଜ ବ୍ୟାଧି ଔଷଧି ଯେ । ୨୧ ।

——o——

## ପଞ୍ଚବିଂଶ ଛାନ୍ଦ ।

( ଲାବଣ୍ୟବତୀର ଶିଷ୍ଟାଜ ପାଠ ପ୍ରବୃତ୍ତ ବ ଦାନ । )

ରାଗ ଗଣ୍ଡାରବ ।

ଫାଲ୍ଗୁନ ଶୋଭା ପ୍ରକାଶି । ଶିଶିରେ ବସନ୍ତ ମିଶି । ବାଲବାମାତନୁ ସୀମାକୁ ଅଶ୍ଳେଷ ଯୌବନ କଲା କି ଅସି । ୧ । କୁଜ୍ଝଟି ରେଣୁ ବହାର । କ୍ରମେକ୍ରମେ ହେଲା ଦୂର । ନୂତନ ସ୍ତବକ ସ୍ତନ ଅଙ୍କୁରିଲା ପିକବାଣୀ କି ମଧୁର । ୨ ।

କାନ୍ତି କେତକୀ ମାଧୁରୀ । ଶଆଳୀ କରଜ ପରି । ଡୋଳା ଚଞ୍ଚରୀକେ ଚଞ୍ଚଳ ଗୃଦ୍ଧରୀ ଅଣିଲା ବଶେଷ କରି । ୩ । କାମେ ଉପୁ ଉପୁଜାଇ । ପୁନ୍ନାଗେ ଦର୍ଫୁଲ୍ଲେ ଦେଇ । ଦର ବିକଶିତ ମଲ୍ଲୀ ମୃଦୁହାସ ପଲ୍ଲବ ଓଷ୍ଠ

---

ଚନ୍ଦ୍ରଭାନୁ ରାମେଶ୍ୱର ଯାଇ ସେଠାରେ ଥିବା ବନକୁ ପାରଧି କରିବାକୁ ଯାଇ ଗଣ୍ଡା, ବାଘ, ମୃଗ ସମ୍ବର ଇତ୍ୟାଦ ବହୁଜୀବ ମାରି ସମସ୍ତଙ୍କୁ ମାଂସ ବାଣ୍ଟିଦେଇ, ବ୍ୟାଘ୍ରଚର୍ମ ବୈଷ୍ଣବଙ୍କୁ ଗଣ୍ଡାଚର୍ମ ବ୍ରାହ୍ମଣଙ୍କୁ ପକ୍ଷୀ ପର ପାଇକଙ୍କୁ, ବାଘନଖ ପିଲାବାଲାଙ୍କୁ ମୃଗନାଭି ବଣିଆଙ୍କୁ ଇତ୍ୟାଦି ପ୍ରକାରେ ବାଣ୍ଟିଦେଇ ଶୋଇଲେ, ଲାବଣ୍ୟବତୀ ପାଖକୁ ମଧ୍ୟ ଅଗରୁ ପଣ ଦେଇଥିଲେ ।

——✳——

## ପଞ୍ଚବିଂଶ ଛାନ୍ଦ ।

୧ । ବାଲବାମା ତନୁ—ସ୍ତ୍ରୀ ପିଲାଙ୍କ ଦେହ, ଅଶ୍ଳେଷ—ଆକ୍ରମଣ ।

୨ । କୁଜ୍ଝଟି—କୁହୁଡ଼ି, ରେଣୁ—ଧୂଳି, ବହ, ସ୍ତବକ—ଫୁଲ ବଉଳପେଣ୍ଡା, ଅଙ୍କୁରିଲା—ଜାତହେଲା ।

୩ । କାନ୍ତି—ବର୍ଣ୍ଣ, ମାଧୁରୀ—ମନୋହର, କରଜ—ନଖ, ଚଞ୍ଚରୀକ—ଭଅଁର ।

୪ । ଦର—ଅଳ୍ପ, ବିକଶିତ—ଫୁଟିଲା ।

ଦେଖାଇ । ୪ । ଏକାଳେ ସିଂହଳଇଣ । ମତ ଭଣ ଅତ ତୋଷ । ବୋହିତେ ଗୃହଳଦେଲେ ଅନ୍ତଃପୁରସ୍ଥ ସ୍ୱମେଶ୍ୱରଦେବ ପାଣ । ୫ । ସେ ମହୀପତିକୁମାରୀ । ପାରବାର ହେଜିଁ ପାରି । କି କରିବ ମୁଁ ନ ଗଲ୍ପ ଏଡ଼ି ଚିନ୍ତା ସଙ୍ଗସଖୀଙ୍କି ପଗୃହ । ୬ । ଏକେତ ନଗର ଦୂର । ଦୁଜେ ସେ ନାଗରବର । ଯୁବାମଣି ଅବା ବଜେ ନ ଭରିବେ ସରଳ ସମ୍ବାଦ ମୋର ।୭। ମୁଁ ଯେ ରାଜସୁତା ହୋଇ । ଦୁର୍ଲ୍ଲଭେ ମନ ବଳାଇ । ଆକାଶପ୍ରକାଶ ଚନ୍ଦ୍ର ଧରିବାକୁ ନିଃଶ୍ରେଣୀ କାହିଁ ଖୋଜାଇ । ୮ । ଏମନ୍ତ ବସ୍ତୁର ବେଳେ । କାମକଳା ଅସି ମିଳେ । ବୋଲେ ଦୀର୍ଘନେତ୍ରା ଏ ଯାତ୍ରା ଭୂଅଣ ମୋର ବାର୍ତ୍ତା ହେବାଛଳେ । ୯ । ପୂର୍ବଲ କାମନା ତୋର । ବରିବୁ ମନକୁ ବର । ଚନ୍ଦ୍ର ଅନନ୍ତ ଜନନୀ ଡାକି ମୋତେ କହୁଥିଲ ଏ ବସ୍ତୁର । ୧୦ । ଗଲ୍ପ ପ୍ରତିବନ୍ଧ ସବୁ । ଆଜ୍ଞ କି ଚିନ୍ତାର୍ଥୀ ହେବୁ । ବାଳା ଗୁପ୍ତେମାଳା ଦେଲ ପୁଂସ-ବାହୁ ଗଳାକୁ ମାଳା କରିବୁ ।୧୧। ଏକାଳେ ବୋହିବ ବେଳା । ଲଭିଲ ଅବ୍ରୋହ ଡୋଲା । ଯିବା କାଳେ ବ୍ରହ୍ମଗୃହ ସହଚରୀହସ୍ତରେ ପତ୍ରିକା ଦେଲା ।। ଦର୍ବ୍ୟମନ୍ଦରେ ଉତ୍ତର । ପଲ୍ୟଙ୍କେ ବସୁଚତୁରୀ । ଦ୍ୱିଦନ୍ତଗମନା ଭରେ ସେ ଉଦନ୍ତ ଦେଲ ଯେ ହେମମଞ୍ଜୁଷ । ୧୩ । ଦେଖିଲ ପଦ୍ମମଧ୍ୟର । ଲେଖିଲ କାଳୀଅକ୍ଷର । ପାରିନ୍ଦ୍ରମଧ୍ୟା ପଗୃହ ନ ପାରିଲ ନ ଅସିବା ଅସିବାର । ୧୪ । ଏ ପାଞ୍ଚ ଦେଲ ପକାଇ । କାତର ଅନ୍ତର ହୋଇ । ବହୁତ ଦିନ ନଳିନ ହୋଇଥିଲେ ମଳିନତା ଥାନ୍ତା ପାଇ । ୧୫ । ଅବନୀ ଶି ଗ୍ର ସୁଦଗ୍ର ଈଶ୍ୱରୀ ନବକିଶୋରୀ । ଲୀଳାବଳାସୀଭୃତ୍ୟଚିତ୍ତ-ଭଲ୍ଲାସୀନାଗରୀନବସାଗରୀ ।୧୬। ଆନନ୍ଦଦାୟିନୀ କାମେ । ଜ୍ଞାନବାହିଣୀ

---

୫ । ସିଂହଳେଶ—ସିଂହଳ ଦେଶ ରାଜା, ଅନ୍ତଃପୁରସ୍ଥ—ଅନ୍ତଃପୁରର ସିଲ୍ଲ-ମାନଙ୍କୁ ।

୬ । ମହୀପତି କୁମାରୀ—ରାଜାଝିଅ, ପାରାବାର—ସମୁଦ୍ର ।

୭ । ଯୁବାମଣି—ପୁରୁଷମଣି ।

୮ । ନିଃଶ୍ରେଣୀ—ନିଶୁଣୀ—ସିଡ଼ୀ ।

୯ । ଦୀର୍ଘନେତ୍ରା—ସୁନ୍ଦରୀ ।

୧୧ । ପ୍ରତିବନ୍ଧ—ବାଧା ।

୧୨ । ଅବ୍ରୋହ—ଚଢ଼ି, ଦୋଳା—ଯାନ ।

୧୩ । ଦ୍ୱିଦନ୍ତ—ହାତୀ, ଉଦନ୍ତ—ବାର୍ତ୍ତା ।

୧୪ । ପାରିନ୍ଦ୍ରମଧ୍ୟା—ସିଂହକଟି ବା ଅଣ୍ଟା, ନଳିନ—ପଦ୍ମ ।

୧୫ । ଅବନୀ ଶିରୀ ସୁଦରୀ ଈଶ୍ୱରୀ—ପୃଥିବୀ ଶୋଭା ସୁନ୍ଦରୀମାନଙ୍କ ରାଣୀ ।

ତା ବାମେ । କୁନ୍ଦସୁନ୍ଦରରଦନାକୁ ଚଉଦବ୍ରହ୍ମାଣ୍ଡରେ ନାହିଁ ସମେ । ୧୭।
ତୋଷ ରାଜହଂସ ଚିତ୍ତ । ରହିଥିଲେ ଯହିଁ ସତ । ଜାଣୁ ଜାଣୁ ପଣି
ମାନସରୋବରରେ ବରଷାରେ ଉପଗତ । ୧୮ । ହାଟକଙ୍ଖଟକ ଦେହା ।
ଇନ୍ଦୂହାସୀ ଗୁଚ୍ଛସ୍ନେହା । ଗ୍ଳଉବ ଗୁମାନ ମାନସୁଁ ମଦନ ତୁ ହୋଇଲାଷଣି
ସାହା । ୧୯ । ତାରକାଶୋଭି ବାଲାକୁ । ହାର ଲହରି ଗଲାକୁ । କରନ୍ତି
ମନେ ଗୁଣବନ୍ତମାଳିକା ରତନ ରସକଳାକୁ । ୨୦ । ରଘୁନାଥଙ୍କୁ ଜଣାଇ ।
ଏତେ ପଢ଼ି ଦେଲେ ଗୁହିଁ । ଅନ୍ତରଲିପିରେ କି ମନ୍ତ୍ରର ଏଥି ରସିକ ଅଛି
କି ଲହି । ୨୧ । "ଅଇଲ ଅଙ୍ଗାକୁ ଚୋର । ଯାହା ଇଚ୍ଛା ତାହା କର ।
ପାଦୁ ପାଦୁଁ ବର୍ଣ୍ଣେ ୨ ଘେନି ହେଲା ଘନଜଘନା ଜର୍ଜ୍ଜର । ୨୨ । ସଖୀଙ୍କି
ଜଣାଇ ଦେଲେ । ଚିଠାଉ ରଚନା କଲେ । ଚତୁର ଗୁରୁଚେଟିକା ଜଣେ
ଘେନି ଶିବଦେଉଳକୁ ଗଲେ । ୨୩ । ଏଣେ ଲେ କୁମରବର । ପ୍ରବେଶ
ପ୍ରାସାଦଦ୍ୱାର । ଗୃହି ବର୍ଣ୍ଣିବର ମେରୁ ଏ ଉରଜ ପରି ଧରାବନିତାର ।୨୪।
ମନ୍ଦାକିନୀଧାର ହାର । ଶୋଭା କରନ୍ତି ଅମ୍ବର । ବଚିବ ଚନ୍ଦ୍ରଚନ୍ଦ୍ରାଲେପଉଜ୍ଜ୍ୱଳ
ଦରଶନେ ମନୋହର ।୨୫। ତହିଁ ଭିତରକୁ ଗଲେ । ହାରଦରଶନକଲା ଚମ୍ପା-
ଗୋରୀ ଅନୁକମ୍ପା କରିବାକୁ କେତେ ଚମ୍ପା ଚଢ଼ାଇଲା ।୨୬। କୁମର ତହିଁ
ବାହାର । ଥରେ ଅଛି ବ୍ରହ୍ମଗୃହ । ଉମାଦରଶନେ ବାଲବାମା ଦେଲା କେତକୀ
ପ୍ରସାଦ କର । ୨୭ । ଘେନିଲେ ହୃଦେ ଲଗାଇ । ମୃଦେ ଅକ୍ଷରକୁ ଗୁହିଁ ।
ଜକ୍ଷସି ହୋଇ ଉଠିଲା ଲୋମ ତାର ଏତକ ହୋଇଲେ କହି । ୨୮ । ଶ୍ରୀକଣ୍ଠ

---

୧୮ । ବର୍ଷାଦିନରେ ହଂସମାନେ ମାନ ସରୋବରକୁ ଉଡ଼ିଯାନ୍ତି ।

୧୯ । ହାଟକ ଝଟକ—ସୁନାପରି ଚକଚକ, ଇନ୍ଦୁହାସୀ—ଚନ୍ଦ୍ରହାସୀ ।

୨୦ । ପାଦୁ ପାଦୁ—ପ୍ରତିପଦରୁ, ବର୍ଣ୍ଣେ ବର୍ଣ୍ଣେ—ଅକ୍ଷରେ ଅକ୍ଷରେ, ୧୫, ୧୬, ୧୭, ୧୮, ୧୯, ୨୦, ୨୧ "ଅଇଲ ଅଙ୍ଗାକୁ ଚୋର, ଯାହା ଇଚ୍ଛା ତାହା କର" ଏହା ପ୍ରଥମ ଅକ୍ଷରରେ ବାହାରିବ ।

୨୩ । ଚେଟିକା—ଦାସୀ, ଗୃହକର୍ତ୍ତ୍ରୀ, ଚିଠାଉ—ପତ୍ର ।

୨୪ । ପ୍ରାସାଦ—ମନ୍ଦିର, ଧରା ବନିତା—ପୃଥିବୀ ସ୍ତ୍ରୀ ।

୨୫ । ମନ୍ଦାକିନୀ—ଗଙ୍ଗା, ଅମ୍ବର—ଅକାଶ, ଚନ୍ଦ୍ର—ଚୂନ ।

୨୬ । ଅନୁକମ୍ପା—ଦୟା ।

୨୭ । ଉମା—ପାର୍ବତୀ, ବାଲବାମା—ଦାସୀ ।

ଅନ୍ଧକଘାତୀ । ଗଙ୍ଗାଧର ମୁକ୍ତାକାନ୍ତ । ଶଙ୍କର ଶାମ୍ଭାଙ୍ଗ ଲୁବ୍ଧ ଉମାରସେ ଛତ୍ରେଶସ୍ତୃଭୂଷାପ୍ରୀତ ।୨୯ । ଅଛୁ ପତ୍ର କରେ ଧର । ମଣ୍ଡିଲା କର ଅପାଙ୍ଗୀ। ଶିଶୁ ଅଙ୍ଗନା ସେହିଠାରୁ ବାହୁଡ଼ ପରବେଶ ଅନ୍ତଃପୁରୀ ।୩୦। ଲେଖ ଦଧି ଦେବା ଛନ୍ଦି । ସମସ୍ତ ସଖୀଙ୍କି କହି । ପତ୍ର ପାଇବାରୁ ଯେମନ୍ତ ବୋଇଲା ପୁଲକାଇଦେଇ ଦେହି । ୩୧ । କେ ବୋଲେ ସୁବର୍ଣ୍ଣ ଗୃହିଁ । ମାର ଥିବ ଛନ୍ତୁ ଦହି । ସେ ତାପ ହରଣେ ହରନାମମାନ ବଶେଷରେ ହେଲା କହି । ୩୨ । କେ ବୋଇଲା ଏଥେ ଅଛୁ । ଶ୍ରୀଅଙ୍ଗ ମୁଁ ଫଖୋଳୁଛୁ । ସମସ୍ତେ ଘେନିଲେ ଏହି ଭାଷା ତାର ରସାନୁଭବୀ ହୋଇଛୁ । ୩୩ । ଭାଗ୍ୟେ ଅମ୍ଭ ଚକୋମଲାଙ୍ଗୀ ହୋଇଛୁ ତା ପ୍ରାଣ ସଙ୍ଗୀ । କୋପ କଲା ବେଳେ କୋପନା ନାମରେ କହୁଥିବ ଦେଇ ଭଙ୍ଗୀ । ୩୪ । ଏମନ୍ତେ ନପନନ୍ଦନ । ପ୍ରବେଶ କେଶରବନ । ମଣ୍ଡନ କରି ମଣ୍ଡପ ଘେନେ ବାଳା-ପତ୍ର ପଢ଼ି ପୁନଃ ପୁନଃ। ୩୫ । ହେ ପ୍ରଭେ ଅମ୍ଭ ଏଜନୀ । ସୁନ୍ଦର ରାକା-ରଜନୀ । ଏ ପୁର ଆକାଶ ପ୍ରକାଶ ଲଭିଲା ତୁମ୍ଭେ ଚନ୍ଦ୍ର ହେବା ଘେନି ।୩୬। ହୃଦକୁମୁଦ ଏହାର । ଅଗୁଁତ ଉତ୍‌ଫୁଲ୍ଲକର । ଏ ନିଶା ଲୋଚନ ଚକୋର ତୃଷାକୁ ବିଳମ୍ବ ନ କରି ହର । ୩୭ । ବଧାତା ବଧାନ ଏହି । ଶ୍ୟାମା ଭାବନା କରାଇ । ସଙ୍ଗେ ରଙ୍ଗେ ତୁମ୍ଭେ ନଗରଚରମ ନଗକୁ ମଣ୍ଡିବ ଯାଇ ॥ ପଢ଼ି କର ୨ ହୋଇ । ବୋଇଲା ମିତ୍ରଙ୍କୁ ଗୃହିଁ । କେମନ୍ତ ସନ୍ଦର୍ଭ ଚସ-ଗର୍ଭିଭୂଷ ବାଳାମଣିଠାରେ ଥାଇ । ୩୯ । ଚତୁରୀ ଗୁଣରେ ଦେଖ । ସଖୀଏ ସୁନ୍ଦରୀ ଯୋଖ । ଏଥିଭୁଙ୍ଗ ସଙ୍ଗ ଦୁର୍ଲ୍ଲଭ ବୋଲିଛି ଲେଖିଲେ କେତକୀ ଲେଖ । ୪୦ । ସଖା କହେ ଶଙ୍କା ଏତେ । କରନ୍ତି ଛାତ ସମ୍ମତେ । ଶୁଭ ପଗୃହୁ ସାକ୍ଷାତ ହୋଇବାକୁ କେଉଁ ସ୍ଥାନରେ କେମନ୍ତେ । ୪୧ । ତାପେ

---

୨୯ । ଶ୍ରୀକଣ୍ଠ—ମହାଦେବ, ଅନ୍ଧକଘାତୀ—ମହାଦେବ, ଗଙ୍ଗାଧର—ମହା-ଦେବ, ମୁକ୍ତାକାନ୍ତ—ମହାଦେବ, ଶଶାଙ୍କ—ମହାଦେବ, ଲୁବ୍ଧ—ଲୋଭି ଉମାରସେ—ପାର୍ବତୀ ରସରେ, ଛତ୍ରେଶସ୍ତୃ ଭୂଷା ପ୍ରୀତ—ମହାଦେବ ।

୩୦ । ଅପାଙ୍ଗୀ—ହାତୀ ହାଉଡ଼ା, ଶିଶୁ ଅଙ୍ଗନା—ଦାସୀ ।

୩୨ । ରସାନୁଭବୀ—ରସଭୋଗୀ ।

୩୪ । କୋପନା—ସ୍ତ୍ରୀ, କୋପ—ରାଗ ।

୩୬ । ରାକା—ପୂର୍ଣ୍ଣିମୀ, ରଜନୀ—ରାତ୍ର ।

୩୭ । ଉତ୍‌ଫୁଲକର—ଆନନ୍ଦକର ।

ବାମାବର ସ୍ଥିତ । ଦକ୍ଷିଣେ ଲକ୍ଷ୍ମଣ ଯତ । ମଧ୍ୟେ ବଜେ ଯେଉଁ ଶ୍ୟାମଳ ସୁନ୍ଦର ତାଙ୍କୁ ଉପରନ୍ତ୍ର ଚନ୍ଦ୍ର । ୪୨ ।



## ଷଡ଼୍‌ବିଂଶ ଛାନ୍ଦ ।

( ଚନ୍ଦ୍ରଭାନୁଙ୍କର ସ୍ତ୍ରୀ ବେଶରେ ସାକ୍ଷାତ ଓ ସିଂହଳ ମନ୍ତ୍ରୀ ସହ ଉତ୍ସବ ସ୍ଥାନକୁ ଯିବା । )

ରାଗ ଚିନ୍ତାଦେଶାକ୍ଷ ।

ମେଧାବତୀ ଶୁଣି ଗତ ଅନ୍ତଃପ୍ରସ୍ତାବ । ଭେଟିଲା ରାଜକୁମାରୀ ସୁକୁମାରୀକ । ୧ । ପଗ୍ଭରଲା ପ୍ରିୟ ସହଚରୀକ ତହୁଁ । ସାକ୍ଷାତ ଦର୍ଶନ ହେବ କେମନ୍ତ ହୋଇ । ୨ । ବଗ୍ଭର ମନ୍ତ୍ରୀନନ୍ଦନା କଲା ଉତ୍ତର । ନାରୀ ବେଶ ଧରବେ ମଦନସୁନ୍ଦର । ୩ । ନାରୀବେଶ ବୋଲି ଏତେମାତ୍ର କରବେ । ଚଳକୁ ସେ କୋମଳ ବାଳକୁ ବାନ୍ଧବେ । ୪ । ନୀଳନଚୋଳ ଓଢିଣଥିବେ ସର୍ବାଙ୍ଗେ । ଗୃଳବେ ବାମଚରଣ ଗୃଳିରେ ଅଗେ । ୫ । ମଞ୍ଜୁ ମଞ୍ଜିରେ ଖଞ୍ଜିବେ ସୁରଙ୍ଗ ପାଦେ । ଦ୍ୱାଃସ୍ଥେ ହେବ ନାରୀଭ୍ରମ ଏତେକ ଉଦେ । ୬। ଚତୁରବନ୍ଧୁ କାମିନୀବୃନ୍ଦରେ ମିଶି । ହେଇଥିବେ ଦ୍ୱାରେ ଯିବାବେଳକୁ ପଶି । ୭ । ଜେମା ଦରଶନବେଳେ ସମା ମାତର । ପୂରଥିବେ ମିନା ସେ

---

୪୮ । ଶ୍ୟମା—ସୁନ୍ଦରୀ, ଭାବନା—ଚିନ୍ତା, ନଗର ଚରମ—ନଗର ଶେଷ, ନଗ—ପର୍ବତ ବା ବାଡ ।

ଚନ୍ଦ୍ରଭାନର ପତ୍ର ପାଇ ଲାବଣ୍ୟବତୀ ପିତାଙ୍କୁ କହ ବୋଇତରେ ରାମେଶ୍ୱର ଅସି ପତ୍ର ଦେଲେ । ଚନ୍ଦ୍ରଭାନୁ ସେ ପତ୍ର ନେଇ ପଢି ସଙ୍ଗୀମାନଙ୍କୁ କହିଲା ।



## ଷଡ଼ବିଂଶ ଛାନ୍ଦ ।

୧ । ମେଧାବତୀ—ବୁଦ୍ଧିମତୀ ।

୪ । ନାରୀବେଶ—ସ୍ତ୍ରୀ ବେଶ ।

୫ । ନୀଳନଚୋଳ—ନେଳଅ ଲୁଗା, ସର୍ବାଙ୍ଗେ—ଦେହଯାକ, ଗୃଳବେ—ବଢାଇବେ ।

୬ । ଦ୍ୱାଃସ୍ଥେ—ଦ୍ୱାରୀ ।

ପ୍ରାସାଦ ଭିତର । ୮ । ସ୍ୱରୂପେ ଆମ୍ଭଙ୍କୁ ଦେଖା ଦେଇତାବବେ । ଅସିତା-
ବେଳକୁ ଏହି ବଧି କରିବେ । ୯ । କୀର ରୂପେ ଯାହା ବୋଲେ ଜୀବନ
ଦେବ । ନାରୀବେଶେ କୃଷ୍ଣ ଅଙ୍ଗୀକାର ନୋହିବ । ୧୦ । ତରୁଣୀମଣି
ତ ରଣୀ ନୋହିବ କେବେ । ପୁରୁଷ ହୋଇ ଶୁଣିବ ସ୍ୱଭାବେ ସ୍ୱଭାବେ ।୧୧।
ବୀଣାଭାଷୀ ଜଣା ସିନା ତରୁଣବର । ତାହା ଓଣା ଅଧିକ କରୁଣା ଏହାର ।
ରାମା ନାମ କବଚରେ କବଚି ଦେହି । ଫୁଲବାଣ ବାଣଗଣ ସେ ପୁଣି
ସହି । ୧୩ । ବାତ୍ସ୍ୟାୟନ ଋଷି ଅନୁଷ୍ଟୁପ ଛନ୍ଦରେ । ରତି ବୀଜ ମହାଦେବ
ଦେବତା କରେ । ୧୪ । ବୋଲେ ମୃଗ ରଖ ଚନ୍ଦ୍ରକାନ୍ତବଦନା । ତରଙ୍ଗ
ନେତ୍ରୀ ମୋ ନେତ୍ରସମ୍ପତ୍ତି ସିନା । ୧୫ । କୋକିଳବଚନ ପଦେ ଶ୍ରବଣ
ତୁହିଁ । ଅଧର ଧର ଅରୁଣାଧରୀ ବୋଲଇ । ୧୬ । କମ୍ବୁକଣ୍ଠୀ ମୋର
କଣ୍ଠମାଳାର ବତ । ବୋଲ କଣ୍ଠ ତୁହିଁ ଦେଇ ଲାଭ କେମନ୍ତ । ୧୭ ।
ନାସିକାକୁ ବୋଲେ ଅତ ତୋଷିବା ତୋର । ରସଖଜ ପୁରବାସୀ
ରସିକାବର । ୧୮ । ହୃଦସ୍ଥରେ କର ଭୂଷା ଉଦସ୍ଥ କର । ନୀରଜକଳି
ଉରଜ ରଷା ତୋହର । ୧୯ । ମଧ୍ୟେ ସିଂହମଧ୍ୟମା ରମ୍ଭୋରୁ ଉରୁରେ ।
ଭୁଜେ ବିଷଭୁଜ ଧନୁର୍ଭୁରୁ ଭୁରୁରେ । ୨୦ । ଉଦରେ କୃଶଉଦରୀ ପଦ
କହିଲ । ପକ୍ଷିଜଙ୍ଘୁ ସିନା କେତେ କହିବ ମୁହିଁ । ୨୧ । ମନ୍ଦ ଗା ରୋଇଲ୍ଲ
ସେ ପୁରୁଷ ଭ୍ରମର । ଅଧିକ ହେଲ୍ଲ ଏମନ୍ତ ହେବା ତାଙ୍କର । ୨୨ । ମାଳତୀ
ବିକାଶ ଏକା ଭ୍ରମର ପାଇଁ । ଆମ୍ଭ ସଖୀ ବେଦନା କି ହୋଇବ କହି ॥
ପଲ୍ଲବ ଶେଯରେ ଶୁଆଇବା ବେଳରେ । ସନାଳ କମଳ ଧୋଇଁ ହୃଦ-
ସ୍ଥଳରେ । ୨୪ । ବୋଲଇ ନୁହଇ ଆନ ବହୁଛୁ ବହି । ମଙ୍ଗଳଗ୍ରହ ସର୍ବଦା
ଶୁଭଦ ନୋହି । ୨୫ । ତପସ୍ୟା କି କେବେ ହୋଇଅଛୁ ବିଫଳ । ଉଦ-
ଗ୍ରର ସୁବାହୁ ସନାଳ କମଳ । ୨୬ । ସବୁ ଉପଗ୍ରର ଏହି ପ୍ରକାରେ ବ୍ୟର୍ଥ ।
ଏ ତାପନାଶନେ ଏକା ବୀର ସମର୍ଥ । ୨୭ । ଆଜ ରଜନୀରେ କରାଇବୁ
ସାକ୍ଷାତ । ଏତେବେଳଯାଏ ଥିଲ୍ଲ ଆମ୍ଭ ଅସୁସ୍ଥ । ୨୮ । ଏଣିକି ଏଣୀ-

---

୧୦ । କୀର—ଶୁଆ, ଅଙ୍ଗୀକାର—ସ୍ୱୀକାର ।
୧୨ । ତରୁଣବର—ପୁରୁଷ ଶ୍ରେଷ୍ଠ ।
୧୩ । ରାମା—ସ୍ତ୍ରୀ, ଫୁଲବାଣ—କନ୍ଦର୍ପ ।
୧୪ । ବାତ୍ସ୍ୟାୟନ ଋଷି—କାମଶାସ୍ତ୍ର ପ୍ରଣେତା ମୁନି ।
୧୯ । ନୀରଜକଳୀ—ପଦ୍ମକଢ଼ ।
୨୦ । ବିଷଭୁଜ—ପଦ୍ମନାଡ଼, ଧନୁର୍ଭୁରୁ—ଧନୁପରି ବଙ୍କାପଡାଭ୍ରୂପରି ।


Digitized by srujanika@gmail.com

ନୟନା ଭରମେ ଯାହା । ଧାତା ଲେଖିଥିବ ଭୋଗ କରିବ ତାହା ।୨୯।
ଶୁଣି ବୋଇଲା ସୁକର୍ମବନ୍ତ ଏ ବେଳ । ଦେଖ ରାତ୍ର ସନମତ ହେବ ଏ
ବେଳ । ୩୦ । ଏତେ କହି ଫଳାଶନ ମେଲାଣି ହେଲା । କୁମାର ସ୍ୱମ୍ବରେ
ଯାଇଁ ସତ୍ତ୍ୱ କହିଲା । ୩୧ । ସିଂହଳେଶ୍ୱର ମନ୍ତ୍ରୀଙ୍କି ପ୍ରେରିତ କଲେ । ସେ
ଅପି ଯୁବା ନରେଶ ବେନିଶ ଘଲେ । ୩୨ । ରାଜାସଙ୍ଗେ ସଙ୍ଗ ହୋଇ
ସୁନ୍ଦରବର୍ଣ୍ଣ । ପ୍ରସାଦେ ଜ୍ଞ.'ବସ୍ଥାନେ ହେଲେ ପ୍ରବେଶ । ୩୩ । ନୃପତି
ସମୂହ ରୁଣ୍ଡୀଭୂତ ସେଠାର । ଚୈଳ କୁନ୍ତଳ କେରଳ ମଦ ପହ୍ଲାବ ।୩୪।
ମତ୍ସ୍ୟ କଚ୍ଛ ଡ଼ାହାଳ କୁଶଳ ଚୈଡ଼ଙ୍ଗ । ବିଦେହ ବିଦର୍ଭ ଅଙ୍ଗ ବଙ୍ଗ
କଳିଙ୍ଗ । ୩୫ । ମଗଧ ନିଷେଧ ମହାରାଷ୍ଟ୍ର ଶ୍ରୀହଟ୍ଟ । ଗୁଜୁରାଟ ନିହୁତ
ମାଳବ ସୌରାଷ୍ଟ୍ର । ୩୬ । କାମ୍ବୋଜ ଲହୁର ଚେଦ ଭୋଟ ଦ୍ରାବଡ଼ ।
ମଲ୍ଲ ନେପାଳ ଉତ୍କଳ ଲୋମଶ ଗୌଡ । ୩୭ । ରାଜାଏ ବୀରଙ୍କୁ ଦେଖି
କଲେ ପ୍ରଶଂସା । ଛାଡିଲେ ଲାବଣ୍ୟବତୀ ଲଭିବା ଆଶା । ୩୮ । ଯେମନ୍ତ
ଜସ୍ତ୍ରବ ହୋଇଅଛି ସେ ସ୍ଥାନ । ନାହିଁ ନଥିବ ନୋହିବ ଏ ଅନୁମାନ ।୩୯।
ତମୋନୁଦ ପ୍ରଦୀପର ଗଣନା ନାହିଁ । ଚନ୍ଦ୍ରଉଦଅ ପ୍ରକାଶ ନିଶେଷ ତହିଁ ।୪୦।
ସେହି ଅଲୋକରେ ଅବା ତାମସୀ ନଶେ । ଗୃନ୍ଦନୀରତଙ୍କ ସବୁ ପ୍ରକାରେ
ହସି ।୪୧। ବାଂଶଗଣ କରଣେରେ ଶୋଭିତ ତାରା । ବଧୂକୁ ଖୋଜନ୍ତି
ଯୁଦ୍ଧ କରିବେ ପରା ।୪୨। ମୁଖର ମୁଖରବରେ ଗ୍ରେଷେ ସାଗର । ଭେଙ୍କିସିନ୍ଧୁ
କଲ୍ଲ କି ପ୍ରଳୟ ସଂସାର ।୪୩। ତୁରନାଦେ ଲଙ୍କା ପୁରବାସୀ ଆତୁର ।
ଚିତ୍ତେ କଲ ହନୁମନ୍ତ ରଣ ପ୍ରକାର ।୪୪। ରାଜସୂୟ ଯାଗ ସଭା ପରି
ସେଠାର । ଜନଗହଳରେ ହୋଇଅଛି ସୁନ୍ଦର ।୪୫। ନାଟଙ୍କାରେ ନାଟ
ନଟ ହଟ କରିଇ । ରାଟ ତାରୁ ପାଟଣା ଟୀ ବରାଟ ପାଇ ।୪୬। ଭାଟ କବନ୍ଧି
-ପଟଲେ ଭଣନ୍ତି କୀର୍ତ୍ତି । ସାଧୁ ବିଧୁଶେଖରଙ୍କ କରନ୍ତି ସ୍ତୁତି ।୪୭।

---

୩୧ । ଫଳାଶନ—ଶୁକ ।
୩୪ । ରୁଣ୍ଡୀଭୂତ—ଏକତ୍ରିତ ।
୪୦ । ତମୋନୁଦ—ଅନ୍ଧାର ନାଶକ ।
୪୧ । ତାମସୀ—ଅନ୍ଧାର, ଗୃନ୍ଦନୀ ରାତ୍ର—ଜହ୍ନ ରାତ୍ର ।
୪୨ । ବିଧୂ—ଚନ୍ଦ୍ର ।
୪୩ । ମୁଖର ମୁଖରବରେ—ପାଟି ଗୋଳମାଳରେ ।
୪୬ । ରାଟ—ରାଜା, କରଟ—କଉଡ଼ି ।
୪୭ । ବିଧୁଶେଖର—ମହାଦେବ ।

ଅୋଟେ ଖଣ୍ଟ ପରକଟ ନିକଟ ହୋଇ । କଳକଣ୍ଠି କଣ୍ଠ କରେ ନାଦ ଛିଣ୍ଡାଇ ।୦୮। ନଟ ବଟପିଙ୍କି ନେହାଳୁରେ ଠାରନ୍ତି । ଗଣିକାକୁ ଧନଏ ସୁବର୍ଣ୍ଣ ଦେଖାଇ ।୪୯। ଦୁଷ୍ଟନଷ୍ଟବ୍ୟୂହ କଳହରେ ଉନ୍ମତ୍ତ । କୁଲଟା ହଟ ବିଷାଦ କରେ ଉଦତ ।୫୦। ପାଠଗ୍ର ପଟଳ ନାନା ବଚ ଭ୍ରମନ୍ତି । ପାଠ-କୁଞ୍ଚାଟରେ ନପୁ ବଟେ ଭରନ୍ତି ।୫୧। କାନ୍ତକଟୀବାସଧଟୀ ଦୃଢ଼ରେ ଧର । ଖର୍ବଟକ ନାସ୍ରିଚୟ ବିହାର କର ।୫୨। କଟକନାସ୍ରି ଛଟକ କହୁ ନୁହଇ ହାସଟ୍ଟକେ ନିଅନ୍ତି ମନକୁ ମୋହି ।୫୩। ଯଜମାନ ଦ୍ଵିଜପାନେ ଘେନି ଗମନ୍ତି । ହରଦରଶନରେ ଉଲ୍ଲାସ ହୁଅନ୍ତି ।୫୪। ସୁଚାରୁଲକ୍ଷ ସୁନ୍ଦରୀସୁବର୍ତ୍ତୀ ଗୃହ । ଟେକ୍ନେ ଗୋଡ଼ାଇ ମଦନେ ହୁଅନ୍ତି ମୋହ ।୫୫। କେ କାହାକୁ ନିରୋଧ ସେ ନୋହେ ବହିତ । ହରଦରଶନେ ଆସି କର ଦୂରତ ।୫୬। ଯେ ଯାହାକୁ କାଳନ୍ତରେ ଦେଖି ନ ଥିଲେ । ସେହି ସମୟରେ ଚକ୍ଷୁ-ରାଗ ହୋଇଲେ ।୫୭। ବସନ ଭୂଷଣ ଯେ ଯାହାର ସଞ୍ଚିତ । ସେ ଦିନ ହୋଇ ଅଛନ୍ତି ସର୍ବ ଭୂଷିତ ।୫୮। ହାଟର ଝଟକ କହିବାର ନୁହଇ । ଜନନୀ ଜନକ ଛାଡ଼ି ସବୁ ମିଳଇ ।୫୯। ଉରଜ କୁମ୍ଭକାର ତରୁଣୀ ବଟେକ୍ଷି । ଲଗ୍ନୁଇ ଉରଜ କୁମ୍ଭ ଫପୁଟ ବଙ୍କ ।୬୦। ଚନ୍ଦ୍ର ଗୃମସି ସିନ୍ଦୂର ବଳନ୍ତି ଯହିଁ । ନାଗର ପୁରୁଷେ ତାକୁ ଭଙ୍ଗିରେ କହି ।୬୧। ହାସ କେଶ ଅଧରେ ଦେଖାଇ ଅଙ୍ଗୁଳି । ଏହା ଛାଡ଼ି ଏହା ବଳ କପାଳି ବାଲି ।୬୨।

---

୪୮ । ଅଟୋ—ଗୁପ୍ତରେ, ଖଣ୍ଟ—ଢକାଏତ, ପରକଟ—ପ୍ରକାଶ ।

୪୯ । ନଟ—ନାଚବାଲା, ବଟପୀ—ଅସତୀ, ଗଣିକା—ବେଶ୍ୟା ।

୫୦ । ଦୁଷ୍ଟନଷ୍ଟ ବ୍ୟୂହ—ଦୁଷ୍ଟ ଲୋକମାନେ, କୁଲଟା—ଅସତୀ, ବିଷାଦ-ଦୁଃଖ ।

୫୧ । ପାଠଗ୍ର ପଟଳ—ପାଠରା ସବୁ ।

୫୨ । କାନ୍ତକଟି ବାସଧଟୀ—ପୁରୁଷର କଟି ଲୁଗା ଧଡ଼ିକୁ, ଖର୍ବଟକ—ଗ୍ରାମ୍ୟ, ନାସ୍ରିଚୟ—ସ୍ତ୍ରୀ ସବୁ ।

୫୩ । କଟକ ନାସ୍ରି—ସହର ସ୍ତ୍ରୀ, ଛଟକ—ଛଟା ।

୫୪ । ହର ଦରଶନେ—ଶିବ ଦେଖିବାରେ ।

୫୭ । କାଳାନ୍ତରେ—ଅନ୍ୟ ସମୟରେ, ଚକ୍ଷୁରାଗ—ଦେଖା ।

୫୯ । ଜନନୀ ଜନକ—ବାପ ମା ।

୬୦ । ଉରଜ—କୁଚ, କୁମ୍ଭକାର—କୁମ୍ଭାର, ଫପୁଟ—ଫରୁଆ ।

୬୧ । ଚନ୍ଦ୍ର—କର୍ପୂର, ଗୃମସି—ଚର୍ମସି ।

୬୨ । ହାସ—କେଶ, ଅଧର, ଏମାନେ କ୍ରମେ ।

ଗୁଡ଼କାର ବାଳୀଙ୍କ ପସରା ସନ୍ନିଧେ । ଶିଢାରୁ ସ୍ୱାଦୁ ଅଛି କି ପୁଚ୍ଛନ୍ତି ବୁଧେ ।୬୩। ସେ ବୋଲନ୍ତି ଅଛି ହେ ପ୍ରବାଳ ମଧ୍ୟରେ । ଯେମନ୍ତ ସ୍ୱାଦୁ ପଦାର୍ଥ ନାହିଁ ବିଧୁରେ ।୬୪। ବର୍ଣ୍ଣିଲେ ତ ସରବାର ପ୍ରସଙ୍ଗ ନୋହି । ତରୁଣମାନଙ୍କ ଚିତ୍ତ ଦେଲାଟି କହି ।୬୫। କୁମାରୀ ଦର୍ଶନକୁ ଉତ୍କଣ୍ଠ କୁମର ମନକୁ ମଣୁନ ତାର କରଇ ମାର ।୬୬। କେଶରବନକୁ ସେ ଗମନ କରିବ । ସିଂହଳେଶ ପାଶେ ମନ୍ତ୍ରୀସୁତ ପ୍ରେଷିତ ।୬୭। ସେ ଯାଇଁ କହିଲା ରାଜ୍ୟ କର୍ଣ୍ଣାଟପୁରେ । ଅନ୍ତଃପୁରନାରୀ ଛନ୍ତି ବୀର ସଙ୍ଗରେ ।୬୮। ସେ ବଚନେ କରବେ ଶୁଣି ନୃପତି । ପରୀକ୍ଷା ନିକାଶି ଆଜ୍ଞା ଦେଲେ ତଡ଼ିତ ।୬୯। ଯେତେବେଳେ ଅବରୋଧ ଦର୍ଶନ ହେବ । ଏହାଙ୍କ ଅନ୍ତଃପୁରସ୍ଥା-ଗଣ ଛଡ଼ିବ ।୭୦। ବୀରପାଶେ ଆଗମନ ସଚିବସୁତ । କହିଲା ନୃପତି ସ୍ୱୀକାର ଉଦନ୍ତ ।୭୧। ମାଳିକ କାମିନୀଗଣ ସଙ୍ଗ ବସ୍ତ୍ର । ତନୁମନ୍ତୁ ହାଦୋଲା ଅରୋହଣ କରି ।୭୨। ପ୍ରବେଶ ହେଲେ ଦେଉଳପଶ୍ଚିମଦ୍ୱାରେ ବେନିଙ୍କ ନିଷେଧ କରିଦେଲେ ସତ୍ୱରେ ।୭୩। ସେ ଗୃହ ମିଶ୍ର ପ୍ରାକାର ଅନ୍ତରେ ରହି । ରାଜତନୟା ବଜାପଥକୁ ଅନାଇଁ ।୭୪। ଏକାଳେ ନୃପ ଅଙ୍କରେ କୁମାରୀ ବସେ । ପୁରଦ୍ୱାରେ ନାନାବିଧ ବାଦ୍ୟହିଁ ବାଜେ ।୭୫। ସୁଖାସନ ବେଢି ପରିଚାରିନୀକର । ଚଳନ୍ତି ମୟୂରପୁଚ୍ଛ ଖଦଗୃମର ।୭୬। ଚନ୍ଦ୍ର ସୂର୍ଯ୍ୟ ତାରାଯୁତ ଉହାଡ଼ କଲା । ନୀଳ ଗିରିଦରୀରୁ କି ବିଜେ କମଳା ।୭୭। ଯେତେ ନିକଟେ ବାଜଇ ବାଦ୍ୟ ନିଃସ୍ୱନ । ତେତେ ସଜାଡ଼ ବାନ୍ଧୁଛି ଶର ମଦନ ।୭୮। ତେତିକି ମନ ଆନନ୍ଦ ବୃଦ୍ଧି ହେଉଛି । ଉତ୍କଣ୍ଠ ସରିତ ଉତ୍କଣ୍ଠକୁ ପାଉଛି ।୭୯। ପଟ୍ଟୋକାର ମୁଦୁଲୀ କଞ୍ଚୁକି ନିକର । ଅତି

---

୬୩ । ଗୁଡ଼କାରବାଳୀ—ଗୁଡଅଣୀ, ଶିଢା—କନ୍ଦ, ବୁଧେ—ପଣ୍ଡିତମାନେ ।
୬୪ । ପ୍ରବାଳ—ପୋହଳା, ( ଅଧର ) ବିଧୁ—ଚନ୍ଦ୍ର ।
୬୭ । କେଶର ବନ—ନାଗେଶ୍ୱର ବନ, ପ୍ରେଷିତ—ପଠାଇବା ।
୬୮ । ଦରଶନ—ଦେଖା, ପରୀକ୍ଷା—ପରଖ ।
୭୦ । ଅବରୋଧ—ଅନ୍ତଃପୁର. ଅନ୍ତଃପୁରସ୍ଥାଗଣ—ଅନ୍ତଃପୁରବାସୀ ସ୍ତ୍ରୀମାନେ ।
୭୨ । ହାଦୋଲା—ସବାର, ଅରୋହଣ—ଚଢିବା ।
୭୩ । ନିଷେଧ—ମନା ।
୭୪ । ପ୍ରାକାର—ପାଚେରି, ଅନ୍ତରେ—ବାହାରେ ।
୭୫ । ନୀଳଗିରିରୁ—ନୀଳସୁନ୍ଦର ପର୍ବତ ଉପରୁ, କମଳା—ଲକ୍ଷ୍ମୀ ।

ହୋ ଅଛ ହୋ ଡ଼ାକେ କର କାତର ।୮୦। ମଣିମା ଡ଼ାକ ଅଣିମାସୁଖଦାୟିନ । ପ୍ରବେଶ ଦଣ୍ଡେ ମଦ୍ଵାରେ ହାହୋଳାମାନ ।୮୧। ଘଣ୍ଟି ନାଦେ କର୍ଣ୍ଣେ ଥିଲେ ଯେମନ୍ତ ମୃଗ । ତପ୍ଠୁ ବୁଦ୍ଧି ନୃପତିସୁତଉଦ୍ବେଗ ।୮୨। ମନରେ ଭାବନା କର ଧନ୍ୟ ଏ ନାରୀ । ଯେଣୁ ଏ କଳାପ୍ରବୀଣା ମୋ ମନ ଚୋରି ।୮୩। ଚନ୍ଦ୍ରବଦଣୀର ନାରୀ ହୋଇ ତରୁଣୀ । ଦୂତୀହୋଇ ଭେଟାଉଛି ନବ ତରୁଣୀ ।୮୪। ଭରଷ୍ଣୀବତ୍ସଳା ସବୁକାଳେ ଦାରଣ । ତାଙ୍କୁ ଚନ୍ଦ୍ର ତାପେ ଦେଲ ଭଲେ ବନାଶ ।୮୫। ପୂର୍ଣ୍ଣ ପକ୍ଷ ଦିନ ବୋଲି ଏ ପୂର୍ଣ୍ଣପକ୍ଷ । ମୋତେ କଲା ଦେଖି ଅତି ଦୀନ ଅଦକ୍ଷ ।୮୬। ରାମ ଜାଣେ ଯେତେ ସୁଖ ଜାତ ଏ କାଳେ । ସୀତା ମାଳ ଯେନି ବର ଅସିବାବେଳେ ।୮୭। ଉପଚନ୍ଦ୍ର ବୀରବର ତାଙ୍କ କୋପ୍ସର । ଏଣୁ ହେଲା ଚର୍ଣ୍ଣିବାକୁ କଷ୍ଟ ଗୋଚର ॥



୮୦ । ପଯ୍ୟେକାର—ପାଇକ, ନକର—ସମୂହ ।

୮୧ । ଅଣିମା ସୁଖ—ସ୍ଵର୍ଗ ସୁଖ ।

୮୩ । କଳା ପ୍ରବୀଣା—ପଣ୍ଡିତା ।

୮୪ । ଭରଷ୍ଣୀ ବତ୍ସଲ—ଭରଦ୍ୱରେ ଉତ୍ପନ୍ନ ।

୮୬ । ପୂର୍ଣ୍ଣିପକ୍ଷ ଦିନେ—ପନ୍ଦର ଦିନରେ, ଦୀନ—ଦୁଃଖୀ ।

୮୮ । କୋପ୍ସର—ଶଙ୍କର ।

ଲାବଣ୍ୟବତୀ କପଟ ରାଜପୁତ୍ର ସଙ୍ଗେ ଭେଟ ହେବ ସଖୀ ସଙ୍ଗେ ପରାମର୍ଶ କରିବାରୁ ଜଣେ ସଖୀ କହିଲା, ସେ ସ୍ତ୍ରୀ ବେଶରେ ଦେଉଳକୁ ଆସିଲେ ଦେବ ଦର୍ଶନବେଳେ ସାକ୍ଷାତ ହେବ । ଏହା ସ୍ଥିର କରି ଚନ୍ଦ୍ରଭାନୁ ପାଖକୁ ସନ୍ଦେଶ ଦେଲେ । ଚନ୍ଦ୍ରଭାନୁ ଉତ୍ସବରେ ରଜାଙ୍କ ମଧରେ ଯୋଗ ଦେଇ ସିଂହଳ ରଜାଙ୍କୁ ସମ୍ବାଦ ଦେଲା । ଅନ୍ତଃପୁର ନାରୀମାନେ ଦର୍ଶନକୁ ଯିବେ । ଏହା ସିଂହଳ ପତି ଶୁଣି ଅନୁମତି ଦିଅନ୍ତେ ରାଜପୁତ୍ର ହାଦୋଳାରେ ଚଢ଼ି ଦେବଦ୍ଵାରେ ଉପସ୍ଥିତ ହୋଇ ଲାବଣ୍ୟବତୀଙ୍କ ସମ୍ବାଦ ଦିଅନ୍ତେ ଲାବଣ୍ୟବତୀ ମଧ ସଖୀ ଗହଣରେ ଆସିଲା ।




Digitized by srujanika@gmail.com

# ସପ୍ତବିଂଶ ଛାନ୍ଦ ।

( ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର ଦେବାଳୟରେ ସାକ୍ଷାତ । )

ରାଗ ବସନ୍ତବରାଡ଼ି ।

ବରଜ୍ଞି ରଚନ୍ତି ଏ ସଂସାର ସାର ସୁନ୍ଦରୀମାନଙ୍କ ଏକ କର । ଶ୍ରୀଧାମ ମୁଖ ଶ୍ରୀରେ ରାଗଲତା ସୁକାନ୍ତିରେ କର ଗଉରୀ । ସଦା । ସୁଭଦ୍ରା ସେ ଯେ ମନ୍ଦୋଦରୀ । ରମ୍ଭୋରୁ ସୀତାମଧୁରବଚନା ତାରା ତନୁ କରେ ମାଧୁରୀ । ୧ । ପଲ୍ୟଙ୍କ ଅଙ୍କରୁ ଉତ୍ତର ଫଳକ ଏମନ୍ତ ଚତୁରୀ ଚତନ । ଋଷି ବସିବେ ସଂସାର କରିବାକୁ ଯୋଗେ ହେଲେ ହୋଇବ ପତନ । ଭାଳବେ । ଏ ଚତୁରୀ କାମଚତୁରୀ । ନାଗରୀ ନାଗରପୁମଧ୍ୟା ମଞ୍ଜୁଳ ନାଗରୀ ସୁରସ ସାଗରୀ । ୨ । ଅବନୀବନିତା ମଘବାପଦକୁ ପଦକୁ ତୁଳିବାରେ ଦେଇ । କଙ୍କିଣ କିଣକିଣି କି ଅଣିମାଦ ସୁଖ ଶ୍ରୁତିକି ଦେବାପାଇଁ । ଡାକିଲେ । ହଂସକେ ହଂସ ଭେକ ସମାନ । ଗତ ଏ ଗତିକି ସମରଦ୍ୱିରଦ ମଦ ଭରଇ ଯେ ମର୍ଦ୍ଦନ । ୩ । ଅତନୁସ୍ୟନ୍ଦନ ବନ୍ଦନ ଚନ୍ଦନ ଶୀତଳ ତନୁକୁ ଲଙ୍ଘାଇ । ପଦଣ୍ଡ ମଣାଇ ସଙ୍ଗୀତପ୍ରବୀଣା ସଙ୍ଗୀମାଏ ବୀଣା ବଜାଇ । କୁମାରୀ । ଥିବା ସ୍ଥାନକୁ ଅନୁସରି । ଶୋଭଙ୍ଗୀଙ୍କ ପାନ ଭଙ୍ଗ ଦେଇ ମନ ତୋଷୁ ଅଛୁ ପନ୍ନୀକୁମରୀ । ୦ । ଅମରମୋହିନୀ ଭ୍ରମରକେଶିନୀ ମେଘମାଳା

---

## ସପ୍ତବିଂଶ ଛାନ୍ଦ ।

୧ । ବରଜ୍ଞି—ବ୍ରହ୍ମା, ରଚନ୍ତି—ତିଆର କରନ୍ତି, ସାର—ଶ୍ରେଷ୍ଠ, ଶ୍ରୀଧାମ—ଲକ୍ଷ୍ମୀ ନାରାୟଣଙ୍କ ରହିବା ସ୍ଥାନ, ରାଗ—ସ୍ନେହ, ଗଉରୀ—( ଗୋରୀ ) ସୁଭଦ୍ରା ଶାନ୍ତା, ମନ୍ଦୋଦରୀ—ପାତଳା, ରମ୍ଭୋରୁ—କଦଳୀ ଗଛପରି ଜଙ୍ଘ ଯାହାର କ୍ରମେ ସରୁ ଓ ଗୋଲାକାର, ( ରମ୍ଭା—ଉର୍ବଶୀ, ଅପ୍ସରା ) ସୀତା—କନ୍ଦ, ମଧୁର—ମିଠା, ତାରା—( ଇନ୍ଦ୍ରଙ୍କ ସ୍ତ୍ରୀ ଓ ବାଳୀ ସ୍ତ୍ରୀ )

୨ । ନାଗରପୁମଧ୍ୟା—( ନାଗ—ହାତି, ରପୁ—ଶତ୍ରୁ ) ହାତୀଶତ୍ରୁ ସିଂହ—ସିଂହକଟୀ, ମଞ୍ଜୁଳ—ସୁନ୍ଦର ।

୩ । ଅବନୀ ବନିତା—ପୃଥିବୀ ରୂପକ ସ୍ତ୍ରୀ, ମଘବା ପଦ—ଇନ୍ଦ୍ରପଦ, ହଂସକ—ନୂପୁର, ଦ୍ୱିରଦ—ହାତୀ ।

୪ । ଅତନୁ ସ୍ୟନ୍ଦନ—କନ୍ଦର୍ପ ରଥ ।

ଗୃଳେ ଗୃମର । ବମୃବଡ଼ମ୍ବ ଡ଼ାଳମ୍ବପୁଷ୍ପାଧସ୍ଥ ଧରବନ୍ତ ଧାଜୀପୃଜୀଙ୍କର । ଅଗରେ । ପତ୍ରବାର୍ଦ୍ଧକାଏ ମଞ୍ଜୁଳ । ଦନ୍ତୁଜ୍ୟୋତିରେ ଗଞ୍ଜନ୍ତି ନେଇ ସେ ଅନନ୍ତ ଅନ୍ଧାରପଟଳ । ୫ । ସୁରସିକ ରମଣୀଧର ସନ୍ଧି ଏ ବଧିରେ ହେବ ପ୍ରବେଶ । ମହା ଅନୁଭୂତ ଶୋଭା ସେ ଦେଖିଲା ସମୂହ ଜପମା ଅଶେଷ । ମଧୁର । ହାସ ବରଜିତ ଅଧରେ । କି ଦେଖିତ କୀରତ କଦେ ବାଳା କରୁଛନ୍ତି ଅରୁଣ ମଧ୍ୟରେ । ୬ । ତାଙ୍କ ଗ୍ରୀବ ସ୍ପଷ୍ଟ ଦୀପ ପଶ୍ଚ ଲପନ ଶୋଭାକୁ ଦେଖାଇ । ଦର୍ପକଦର୍ପଣ ଦର୍ପହର ବୋଲି ଅଳକା ଅକ୍ଷରେ ଲେଖାଇ । ବନ୍ଧିଲା । ସେହି ଭବ କି ମୋହ ହୋଇ । ଅନନ ବନାରେ ଅନ ନକ୍ଷାନାରେ ଦୃଷ୍ଟି ପାତ ନୋହୁ ଧୁଅଇ । ୭ । ରତିଲା- ମଣ୍ଡଳ ସେ ନାସିକାଫୁଲେ ତିଳଫୁଲେ କରେ ଧିକ୍କାର । ବରହ ଅନଳ ପ୍ରଜ୍ଵଳ ହେବାକୁ ଯନ୍ତ୍ର ତାଇଦେଲା ପ୍ରକାର । କୁଟିଳ । କୁନ୍ତଳ କି ଶୋଭା ଦିଶୁଛି । ବାଳିକା ମଲ୍ଲିକା ମାଳିକା କବରୀ ଘନ ଶବରୀକି ହସୁଛି । ୮ । ଦରକଣ୍ଠି ନୀର ଦରକମ୍ପିଣୀ ଝଲକା ଝଲକ ଥରଇ । କାନ୍ତବର୍ତ୍ତୁଳା ଭୂଲ ହୋଇ ଅଚଳା କାହିଁ ନାହିଁ ନାହିଁ କରଇ । ଯୁବଜନ-ସୃଷ୍ଟିରେ ବାଳା ଚକ୍ରବର୍ତ୍ତୀ । ହୋଇଛି ବୋଲି କି କଣ୍ଠ ଧରିଅଛି ସୁଜ୍ୟୋତି ମୋତି ଫୁଲ- ଛତ୍ର । ୯ । ତାମରସବାସୀ ପ୍ରେମରସରାସୀ ପୃଥ୍ୱୀରେ ପଣ୍ଡିତେ ଏ ଦେବୀ । ଅମୂଲ୍ୟ ଗୁଣରେ ସଂଯୁକ୍ତ ଯୌବନ ସୁମନ ସୁମନ ମୋହିନୀ । ଲଲାଟେ । ଶିରିକି କର୍ପୂରେ କସ୍ତୁରୀ । ମାଣିକ୍ୟ ମରକତ ସିନା ଫୁଙ୍କିଲା ସୁନାପଟାରେ କି ସୁନାସ୍ତି । ୧୦ । କମଳଦଳେ ଭଳଭନ କାଳନ୍ଦୀଜଳ ପରି ଡ଼ୋଲା ଚଳୁଛି । କଜ୍ଜଳ ସୂତ୍ରରେ ଲାଗି ନୀଳ ଶିଣାରଣୀ କି ଅବା ଚଳୁଛି । ଭ୍ରୂଲତା ଗୃପେ ଭବ ଶର ସନ୍ଧାନ । ଧୈର୍ଯ୍ୟ-କୁରଙ୍ଗକୁ ମୃଗୟା ରଙ୍ଗରେ ବନ୍ଧ ଅଧୁଛି କି ମଦନ । ୧୧ । ସେକାଳେ ବଦନ ମଦନରଞ୍ଜନ ନାଟସଦନ

---

୫ । ଅମର—ଦେବତା, ମେଘମାଳା—ସଖୀ, ବମ୍ଭ—କଣ୍ଟିତ କାଳୁଡ଼, ପଟଳ—ସମୂହ ।

୬ । ଲପନ—ମୁଖ, ଦର୍ପକ—କନ୍ଦର୍ପ,

୮ । କୁଟିଳ—କୁଞ୍ଚକୁଞ୍ଚିଆ, କୁନ୍ତଳ—ବାଳ, କବରୀ—କୁଡ଼ା, ଶବରୀ—ରାତ୍ରି,

୯ । ଦର—ଶଙ୍ଖ, ନୀରଦ—ମେଘ, ଚକ୍ରବର୍ତ୍ତୀ—ରାଜାଧିରାଜ ।

୧୦ । ତାମରସ—ପଦ୍ମ, ସୁମନା—ଉତ୍ତମ ମନା, ସୁମନ—ଦେବତା ।

୧୧ । ସଦନ—ଘର, ସୁରଞ୍ଜନ—ଅତ୍ୟନ୍ତ ସୁନ୍ଦର, ଯୋଷା—ନାରୀ, ଉତ୍ତଂସ—କୁଣ୍ଡଳ, ଅନଳ—ଅଗ୍ନି,

ସୁରଞ୍ଜନ । ନୂପୁରବାଦ୍ୟନାଦେ ବାଦେ ନାଚନ୍ତି ଯୋଷାଯୋଷା ବେଣୀ-ଖଞ୍ଜନ । କାହିଁକି । ନବଘେନ ଦେଖିଣଗଲେ ପାଡ଼ନ୍ତି । ଗୃହିଁ କି ଉଡ଼ନ୍ତଂସ ଅନଳ ସ୍ୱରଗେ ସେହିବାସରେ ମାନ ଧାଇଁଛନ୍ତି । ୧୨ । ଏ ଯେଉଁ ଚରଣ ଭ୍ରମର ଭ୍ରମର ଦୁଇବାଦକୁ ସେ ଯାଉଛନ୍ତି । ଶୃଙ୍ଗରେ ପାଶ ଅଣଙ୍କାକୁ ଭରଣ ନବଣ ଚଞ୍ଚଳ ହେଉଛନ୍ତି । କି ଅବା । ଅମୃତକୁଣ୍ଡରେ ମଜ୍ଜାଇ । କଳାବତୀ ଭଳାକମଳବୃଷ୍ଟିକି ଦୃଷ୍ଟି ଯୋଗରେ କର ଯାଇ । ୧୩ । ଅଛନ୍ତି ବସ୍ତାରତ ଲୋଳ ଲୋଚନବତୀ ମୁଖଶୋଭା ଗ୍ରାସିବ । ବଗୁରଲା ଗୁରମୁଖ ମାର ମାର ସଂସାର ରଚନା ନାଶିବ । ଏଣୁ କି । ସୀମା; ବାରଣ କର ଗାର ଅଂନେ ଦେଇଛନ୍ତି ଅଭି ନ ବଢ଼ିବୁ ତେବେ କର୍ଣ୍ଣଗତ ସଗୁର ।୧୪। ବାଧି ବଚନ ନ ମାନିଲା ଲୋଚନ ସହଜେ ସ୍ୱଇଚ୍ଛାବିହାରୀ । ରଖୁ ନ ରଖୁ ତରୁଣ ଦୃଷ୍ଟିଯାକ ଜାଣନ୍ତୁ ଅପୂର୍ବ ତାହାର । ଏଥିକି । ହୋଇଛନ୍ତି କି ନୀଳ-ଲୋହିତ । ନୀଳଲୋହିତଅଗରେ ପଡ଼ିଗଲେ ସମ୍ପାଦବାଁ କାମ ମହତ । ୧୫ । ଝିନବସନ ପୁଟି ଦିଶେ ପ୍ରସଳ ରୋମାଳୀ ପୟୋଧର ଦୁଇ । ଶୃଙ୍ଗାର ରସଲତା ଉଦ୍ଧ୍ୱେଁ ବିଧାତା ପ୍ରେମାମୃତଫଳ ଫଳାଇ । ପଦ୍ମିନୀ । ଯେଣୁ କୋରକ ବେନି ବହି । ସେ ଯେବେ ଫୁଟିବେ ଏ ତେବେ ଚୁମ୍ବିବେ ଭୃଙ୍ଗ-ପନ୍ତି ଏହି ଆଶାଯୁ । ୧୬ । ସ୍ୱୟମ୍ଭୁ ଶମ୍ଭୁ କମ୍ବୁଧରସୁତକୁ ଦପ୍ୟାରୁ ସଞ୍ଜୀ-ବନୀମନ୍ତ୍ର । ସେହିସ୍ଥାନେ ଦେଇ ମନୋଭବ କଲେ ଏମନ୍ତ ଯେନୁଅଛନ୍ତି ଚିତ୍ର । କିକଟେ । ରହିଛନ୍ତି ଅହି ହୋଇ ସ୍ୱଚ୍ଛ । ଯୁବାବଇକୁଣ୍ଠ ବଡ଼ଭିକ-ଭବା ଇନ୍ଦ୍ରନୀଳମଣି ପାବଚ୍ଛ ।୧୭। ଲାବଣ୍ୟନୀରେ ଯୌବନ କରି ଧୀରେ ମଜ୍ଜନ ହୋଇ କି ରହିଛନ୍ତି । କନ ଅଦମ୍ଭକର କୁମ୍ଭ କରକୁ କେବଳମାତ୍ର ଦେଖାଇଛନ୍ତି । ଏଣୁଟି । ଗଇରିକରେ ସେ ଚିହ୍ନିତ । ଯେ ହେବ ମାହୁନ୍ତ ନଖାଙ୍କୁଶ ଘାତ କରିବ ବେକେତେ ତା ସୂଚିତ । ୧୮ । ପୁଣି ଶ୍ରୀ କଣ୍ଠୀରବମଧ୍ୟା

---

୧୪ । ସ୍ଥାବରତ—ପ୍ରସାରିତ—(ଯାର୍ଡ଼) ଲୋଲ—ଚଳଚଳ, ଗୁରମୁଖ—ବ୍ରହ୍ମା

୧୫ । ତରୁଣ—ଯୁବା ପୁରୁଷ, ଲୋହିତ—ଲାଲବର୍ଣ୍ଣ, ନୀଳଲୋହିତ—ନେଳଓଲାଲ ଏଠାରେ ମହାଦେବ, ସମ୍ପାଦବ—ରଖିବ, ମହତ—ଇଜତ,

୧୬ । ପୟୋଧର—କୁଚ, ରୋମାଳ—ଲୋମସରୁ, ଶୃଙ୍ଗାର—କାମରସ, କୋରକ—କଢ଼, ଭୃଙ୍ଗପନ୍ତି—ଭଅଁର ସମୂହ,

୧୭ । ଶମ୍ଭୁ—ମହାଦେବ, କମ୍ବୁଧର ସୁତ—ବିଷ୍ଣୁଙ୍କ ପୁଅ କନ୍ଦର୍ପ. ଅହି—ସାପ, ବଡ଼ଭ—ଘୋଡ଼ା, ପାବଚ୍ଛ—ପାହାଚ,

୧୮ । ଲାବଣ୍ୟ—ସୌନ୍ଦର୍ଯ୍ୟ, ଗଇରିକ—ଗେରୁ, ନଖାଙ୍କୁଶ—ନଖରୂପ ଅଙ୍କୁଶ

ହୃଦରେ ରସରତନଗଣ୍ଠି ଥୋଇ । ଲଗିଛୁ କି ଅବା କାମ ଅଧିକାରୀ ମର୍କଟଦଣ୍ଡ ତେଜିଦେଇ । ଚତୁର । ମନ ପଶି ଏଣୁ ନ ପାରୁ । ନିଶି ଦିବସରେ ରସିଅଛୁ କେଉଁ ପ୍ରକାରେ କହବଟି ଗୋରୀ ।୧୯। ଏତେ ମନକୁ ଅଗମ୍ୟ ହେଲା ଦୁକେ ଲଟିନ ସଙ୍ଗେ କର ପ୍ରୀତି । କବପଣଙ୍କୁ ଅତ୍ୟନ୍ତ ଛାଣ ହେଲା ଏଣୁ ବର୍ତ୍ତିବାରୁ ନିବର୍ତ୍ତି । କୁମର । ଗୃହୁଁ ତେଲୁଁ ବେଲ ଲୋଲୁପ । ନୟନଅସୁନେ ପଥିକ କଲା ଯେ ଏକା ରସିକାକରରୂପ ।୨୦। ଯାବନ୍ତ ବ୍ରତଫଳ ହେଲା ସଫଳ ତୀର୍ଥଫଳଙ୍କି ଯେ ଦିଶିଲା । ଦେବ-ଦରଶନ ଦାନ ପୁଣ୍ୟମାନ ସେହୁ ସେହୁଠାକୁ ଅସିଲା । ଶ୍ରେଣୀ ଯେ । ହୋଇଥିଲେ ପୁଂସରନୁରେ । କୋଟିଗୁଣ କରି ଲେଖିଦେଇ ଗଲେ ଅଷ୍ଟି-ଠାରେ ଅତି ଯତ୍ନରେ ।୨୧। ସର୍ବାଙ୍ଗ ଉଲ୍ଲସି ଉଠି ସ୍ୱେଦଜଳେ ଦ୍ରବଗନ୍ଧ ନିର୍ଣ୍ଣେ ତାହାର । ନିଶାକରକର ବହାର ଗୃହୁଁ କଇରବ ଚଦ୍ରପଣ ପ୍ରକାର । ହୋଇଲେ । ଲାଗ ବିଷମବିଶିଖଙ୍କୁ । ଦୁଃଖଙ୍କୁ ପଛକୁ ପକାଇ ଦେଇ ସେ ଲଭିଲେ ଅଲେଖସୁଖକୁ ।୨୨। ପ୍ରିୟସହଚରୀ ବିଜ୍ଞା ଅନୁସରି ତରୁଣକେଶରୀ ଥିବାକୁ । ଧର ପାନ ବୋଲି ଡ଼ ହାତେ ଯାଚିଲା ପାର୍ଥିଲା ନେଇ ପଢିବାକୁ । ସେ ଲାଗେ । ଶୁକ ପଢିଦେଲା ଏ ଭାଷା । ସୁମନା ରସାତୁର ହୋଇ ଭ୍ରମର ଏ ଦରେ କରିଅଛୁ ଆଶା ।୨୩। ବକ୍ର କରି ଗ୍ରୀବା ଗୃହୁଁ ଦେଲା ଯୁବା ରମଣୀ ରମା ସୁଲକ୍ଷଣୀ । ଅର୍ଦ୍ଧାଙ୍କହୀନ ଚନ୍ଦ୍ରମା ଦକ୍ଷିଣାବର୍ତ୍ତିକ ହେଲା କି ସେ କ୍ଷଣି । କି ଶୋଭା । ଦଶିଲା ସିହାଣୀ ଗୃହାଣି । ନେତ୍ରପାତରେ ହରଷରସ ଅନୁରାଗକୁ ଢାଳିଦେଲା ଅଣି ।୨୪। ଅତୁଲ୍ୟ ରତ୍ନରୀ ଜାଣିବାପାଇଁ କି ସୁରସିକ ଏତେ ଗୁଣିକ । ଏକା ବେଳକେ କି ମୂଲ୍ୟ ବୋଲି ଦେଖାଇଲା ହୀରା ନୀଳା ମାଣିକ୍ୟ । ଅଞ୍ଜନ । ସୂତ୍ରେ ଗୁନ୍ଥି ତନୀ କମଳ । ବରଣମାଳା କରିଦେଲା ବାରଣଗମନୀ

---

୧୯ । କଣ୍ଠୀରବମଧ୍ୟା—ସିଂହକଟୀ, ଚତୁର—ଚୋର,

୨୦ । ଦୁକେ—ଦ୍ୱିଖଣ୍ଡରେ, ଲୋଲୁପ—ଲୋଭୀ, ଅସୁନ—ବାଟ, ନିବର୍ତ୍ତି—ବନ୍ଦହୋଇ,

୨୨ । ସ୍ୱେଦଛଳେ—ଝାଳ ରୂପରେ, ଦ୍ରବଗନ୍ଧ—ତରଳଗନ୍ଧ, ନିଶାକର—ଚନ୍ଦ୍ର, କଇରବ—କଇଁ, ବିଷମ ବିଶିଖ—କନ୍ଦର୍ପ,

୨୩ । ବିଜ୍ଞା—ପଣ୍ଡିତା, ତରୁଣ କେଶରୀ—ପୁରୁଷସିଂହ, ସୁମନା—ସୁନ୍ଦରୀ

୨୪ । ବକ୍ର—ବଙ୍କା, ଗ୍ରୀବା—ବେକ, ରମା—ଲକ୍ଷ୍ମୀ, ଅର୍ଦ୍ଧାଙ୍କ—କଲଙ୍କ,

୨୫ । ଅଞ୍ଜନସୂତ୍ରେ—କଳାସୂତାରେ, ବରଣମାଳା—ବରମାଲ୍ୟ, ବାରଣଗମନୀ—ଗଜଗମନା,

ହୋଇ କି ଚଞ୍ଚଳ ।୨୫। ଗୃହ୍ଣ ନ ଗୃହ୍ଣ ହୋଇ ଲଜ୍ଜରୁ ମୁଖକୁ ଥୋଇଲା ଭୂତଳେ । ସେ ପତି ପ୍ରାପ୍ତି ଇଚ୍ଛା କରି ନାରୀ ଶମ୍ଭୁ ପୂଜିଲା କି ନୀରଜେ । ଲବଣୀ । ପିତ୍ରୁକା ପ୍ରେମଣୀଳା ସତ । ଗାର ଏହୁ ନାମ ଶପଣ୍ୱ ହୋଇ ତରଳାନ୍ତ କଲା କୁବର ।୨୬। ବଧୂ ଝିଅକ ଲାନ ହେବା ପରସ୍ତେ ଦଞ୍ଜୁ ଗୃହିଣୀ ଫହାରଲା । ଝିଅକେ ଛୁଟକେ ସଙ୍ଗରେ ମନାଇ ମନ ନେଦକୁ ଦେନିଗଲା । ପୋଷିଲା । ସୁଧାରୁ ସୁସ୍ୱାଦୁ ଅଶନେ । ପ୍ରେମ-ପଞ୍ଜର ସ୍ତନ ବେନି ପଞ୍ଜରମଧ୍ୟ ରଖି ପକ୍ଷୀ ବଧାନେ ।୨୭। ବାଳା ପନ ନେଦକୁ ଅଙ୍ଗ ପୁରଙ୍ଗ କରୁଥିଲେ ତନୁବନବେ । ମାଦନାଦତ କୁମର ଶୋଭାକାଳେ ଚଢିଲେ ଅତି ଉଚ୍ଛୁନ୍ଦରେ । ପିତାଙ୍କ । ଫିଟି ନ ଦଣିଲା ଉପାୟ । ଯେ ଯାହା ଅର୍ଜ୍ଜିଲେ ସେ ତାହା ଭୁଞ୍ଜିବ ଏଥି ଅଟୁ କେଉଁ ଫଣୟ ।୨୮। ସେ ରମଣୀ ହେଲା ଚକ୍ରବାଡ଼ଗିର ଚରଣ ଅରୁଣ ଅମ୍ବୁଜେ । ଲଭ ନ ପାରଇ ମନ୍ଥରଗମନା ଗୃହ୍ଣ ନ ଗୃହ୍ଣଭାବ ଲାଜେ । ଦୁହିଙ୍କ । ମୃଦୁହାସ ହେଲା ଜାହ୍ନବୀ । ଚତୁରନୟନେ ମଜ୍ଜନ ଅଳିଶେ ମହାଚାରୁଣୀ ଯୋଗ ଲଭ ।୨୯। ହୋଇଲେ ସେ ବେନି ଶୋଭା ରତ୍ନାକର ଦରଶନ ଲୋଭୀ ନୟନେ । ପ୍ରେମରତନ ପତନ କରି ଖୋଜୁଅଛନ୍ତି ସେ ଅନବଚ୍ଛିନେ । ମଦନ । ମହାକୃପଣ ଜନ ପରି । ସେ ବେନି କାମଧେନୁ କଳ୍ପପାଦପ ଯେଣୁ ବାଞ୍ଛିତକୁ ସିଦ୍ଧି କରି ।୩୦। ପ୍ରବେଶ ସେଠାରେ ହୋଇଲା କୁଠାର ପ୍ରାପ୍ତ ଜଗତୀ ମୂଦୁଘ୍ନୀ । ଅଲେଖ ସୁଖ ମହୀରୁହ ଛେଦନେ ବଦନେ ଏମନ୍ତ ଉଚାରି । ଶୁଣ ଗୋ । ମନ୍ଦିନନ୍ଦନା ଗୃହ୍ଣୁ ହାରୁ ଜନନୀ ଅଙ୍କ ପରସନ୍ନ ଅନନା ହର୍ଷର ଦରଶନ ସାରୁ ।୩୧। ପିତା ପୁତ୍ର

୨୬ । ତରଳେ—ଲୁଚରେ, ନୀରଜେ—ପଦ୍ମରେ, ଗାର ଶପଣ୍ୱତ ରବି ପର୍ଯ୍ୟ ଜନ୍ମପରେ ଲାବଣ୍ୟବତୀ ତରଳଲା ପରି ପୁରୁଷକୁ ଦେଖି ଲାବଣ୍ୟବତୀ ଦ୍ରବିଗଲା—

୨୭ । ଫହାରଲା—ବନ୍ଦକଲା, ସୁଧା—ଅମୃତ, ଅଶନେ—ଭକ୍ଷିବାକୁ

୨୯ । ଚକ୍ରବାଡ଼ଗିର—ଅସ୍ତ ପର୍ବତ, ଚରଣ—ଗୋଡ଼, ଅରୁଣ—ଲାଲ, ଅମ୍ବୁଜ—ପଦ୍ମ, ଜାହ୍ନବୀ—ଗଙ୍ଗା

୩୦ । ରତ୍ନାକର—ସମୁଦ୍ର, ଅନବଚ୍ଛିନେ—ସର୍ବଦା, କଳ୍ପପାଦପ—କଳ୍ପବୃକ୍ଷ,

୩୧ । କୁଠାର—କୁରାଢ଼ୀ, ଅଲେଖ—ଅସୀମ, ମହୀରୁହ—ଗଛ, ପରସନ୍ନ-ଅନନା—ହର୍ଷମୁଖ,

ପର ପାଷା ବୃନ୍ଦଙ୍କର ଏକ ସଙ୍ଗେ ଶିବଦର୍ଶନ । ଦୋଷ ଦୋଷଅଛି ଅଶେଷ ପୁସ୍ତକେ ଏ ବଚନ ସତ୍ୟ ଯେସନ । ଚିଲ୍ଲା । ହରମସ୍ତକ-ଭୂଷଣଙ୍କୁ । ବାହୁଡ଼ିଲ ବେଗେ ଶିବ ଦେଖି ସ୍ୱମା କମ୍ପିତ ହୃଦକଷଣଙ୍କୁ ।୩୨। ମଦନେ ଅବେଶ କୁମାର ପ୍ରବେଶ ହୋଇଲା ଛେଣଦୋଚନ । ଯେତେଣେ ଅନାଇଁଲେ ତେଣେ ଦଶୁଅଛି ଝଳଝଳ ମୂଦଗ ଆନନ । ବହଇ । ଉପଇନ୍ଦ୍ର ଉଞ୍ଜ ଏ ରସ । ଶ୍ରୀରାମ ମାଳା ଜାନକୀ ଦେବାବାଳ-ଭଗ୍ନବଳୁ ଦେବିନି ମାନସ ।୩୩।

---✷---

# ଅଷ୍ଟାବିଂଶ ଛାନ୍ଦ ।

( ସିଂହଳଦେଶର ପୁରୋହିତ ମହନ୍ତ ଚନ୍ଦ୍ରଭାନୁର କଥୋପକଥନ )

ରାଗ ମଙ୍ଗଳ ।

ଏଥି ଅନନ୍ତରେ ଯେ ଯାମିନୀ ହେଲା ଶେଷ । ବଚ୍ଛେଦୀ ଚ■ କାମିନୀ ପାଶେ ପରବେଶ ଯେ । ଶଶି ମନୋହାରୀ ନିଶି ସଙ୍ଗ ଭଲା ପାପ; ବଶେ ଦଶେ ମଳିନ ହେଲା ଜ୍ୟୋତିଦୀପ ଯେ । । ଅରୁଣମଣ୍ଡଳେ ଉଦେ ତୃଟି ନାହିଁ କିଛି । ବାଳ ବାରୁଣୀ ଦେବିବା ରଙ୍ଗ ଅଙ୍ଗ ଅଛି ଯେ କକୁଭ ପ୍ରାଙ୍ଗଣେ ଜିଙ୍ଗପତ୍ର-ବଳେ ଗୃହି । ପଦ୍ମିନୀ ହସିଲା ଦରମୁକୁଳିତ ହୋଇ ଯେ । ୨ । ଗଳି ରଙ୍ଗରଜ କ୍ରମନ୍ଦନୀ ଚାରି ଗତଲ । କୁଳଟା

---

୩୨ । ହର ମସ୍ତକଭୂଷଣ—ଶିବଙ୍କ ମୁଣ୍ଡଭୂଷା ଚନ୍ଦ୍ର, ହୃଦକଷଣ—ନଦୁଃଖ,
୩୩ । ଆନନ—ମୁହଁ

ଚନ୍ଦ୍ରଭାନ୍ ଓ ଲବଣ୍ୟବତୀର ଦେବ ଭବନରେ ଦୁହିଙ୍କ ଭେଟହୋଇ ନେତ୍ରରେ ଠାରୁଠାରୁ ଅଙ୍ଗଳରେ ସନ୍ତକ ଦିଆ ଦେଇ ହେଲେ—୨ ମାଳା ମଧ୍ୟ ଦେଲେ, ଏହାପରେ ମାଙ୍କ ଡ଼ାକରା ହେବାରୁ ଦୁଃଖରେ ଫେରଗଲେ

---○---

# ଅଷ୍ଟାବିଂଶ ଛାନ୍ଦ ।

୧ । ଯାମିନୀ—ରାତ୍ରୀ, ଚକ୍ର—ଚକ୍ରବାକ, ( ରାତିରେ ଚକୁଆ ଚକୋଇର ବଚ୍ଛେଦ ହୁଏ ) ଶଶୀ—ଚନ୍ଦ୍ର, ମନୋହାରୀ—ସ୍ତ୍ରୀ
୨ । ଅରୁଣମଣ୍ଡଳ—ସୂର୍ଯ୍ୟମଣ୍ଡଳ, ବାରୁଣୀ—ପଶ୍ଚିମ ଦିଗ, କକୁଭ—ଦିଗ, ପ୍ରାଙ୍ଗଣ—ଅଗଣା, ଦରମୁକୁଳିତ—ଅଧାଫୁଟିଲା,

ହାଟକୁ ଭାର ପରକାଶ କଲେ ଯେ । କଟପ କି ଗୁଣଅଛି କାର୍ଣ୍ଣିକସ୍ୱଭାବ ।
ପରେ ପ୍ରକଟ କଲେ ଆପଣା କଳା ଭାବ ଯେ । ୩ । ଏ ସମୟେ ସିଂହଳ-
ଭୂପାଳ ନିଦ୍ରାହତ । ନିତ୍ୟକର୍ମ ସାରି ଡାକି ନିଜ ପୁରୋହିତ ଯେ । କହିଲେ
କର୍ଣ୍ଣାଟଦ୍ୱୀପରାଜ ପାଶେ ଯିବ । ପାଠ ଶୁଣାଇ ତା ମନ ସନ୍ତୋଷ କରିବ
ହେ । ୪ । ଅମ୍ଭ କନ୍ୟା ଯାଚିବା ନୋହିବ, ସନମତ । କରିବ ଯେମନ୍ତ
କରି ଉପାୟ ତେମନ୍ତ ଯେ । ଶୁଣି ସେ କାର୍ଯ୍ୟକୁଶଳାଗ୍ରର୍ଯ୍ୟ ଅଗମନ ।
ତେଣେ ନୃପସୁତ କ[illegible] ପଲ୍ଲବେ ଶୟନ ଯେ । ୫ । ବାଳାଶୋଭାଦରଶନେ
ତନୁ ଧ୍ୟାନ କରି । ଏସନ ପ୍ରସଙ୍ଗମାନ ମାନସେ ବିଚୁରି ନେ । ଦେବଙ୍କୁ
ଦୁର୍ଲ୍ଲଭ ଯେଉଁ ରମଣୀରତନ । କେହି ହେବ ମୁହିଁ ତାହା ସଙ୍ଗକୁ ଭାଜନ
ଯେ । ୬ । ଦର୍ଶନପାଇଲି ସୀତ୍କାର କରାଇଲି । ଯୁବାମୂର୍ତ୍ତିରେ ମୁଁ ରାଜ-
ଛତ୍ର ଧରାଇଲି ଯେ । ରସିକ-ସଂସାରେ ତ ଥୋଇଲି ପ୍ରଶଂସାକୁ । ବଶ
କଲି ବୋଲି ଅତିକ୍ରମ ଯୋଷାକୁ ଯେ । ୭ । ଜନ୍ମାନ୍ତେ ତ୍ରିଶୂଳୀ କରି
ଶୂଳୀଙ୍କି ମନାଇଁ । ଗଙ୍ଗାସାଗର ସଙ୍ଗମେ ଅଙ୍ଗ ଥିଲି ଦାହି ଯେ । ସେ
ସୁକୃତ ବାଳାରୂପ ଶିରେ ଲେଖାଇଲ । ବିଧାତା କି ରତ୍ନୀ ହୋଇଥିଲ
ଦେଖାଇଲ ଯେ । ୮ । ଅସମ୍ଭାବିତ ସାହସ କରିଅଛି ମୁହିଁ । ମନକୁ ନ
ଆସେ ଏ ସଫଳ ହେବ କେହି ଯେ । ଅସିବ ମୁକୁରବିମ୍ବ କେହି ଅଲିଙ୍ଗ-
ନେ । ପାରଦ ରହିବ ମୁଠାଭିତରେ କେସନେ ଯେ । ୯ । କେତକୀ
କୁସୁମେ କେହି ବନ୍ଧରିବ ଅଳି । ପାତକୀ କି ହେବ ପୁରନ୍ଦରପଦ ଭଳି
ଯେ । ଲେଖେଁ ନଷ୍ଟ କରି ଯେବେ ଟହଳାଇବ ଗିରିକି । ସାଧିବ ଜୀବନେ
ଥାଉଁ ହରବଇରିକି ଯେ । ୧୦ । ବିନାଶ ହୋଇବ ଯେବେ କସ୍ତୁରରୁ

---

୩ । ଭୃଙ୍ଗରାଜ—ଭଅଁରସ୍ରୁ, କୁମୁଦନୀ—କଇଁ, କୁଳଟା—ବିଟପୀ, ପ୍ରକଟ—ବିଖ୍ୟାତ,

୪ । ନିଦ୍ରାହତ—ନିଦଶେଷ, କାର୍ଯ୍ୟକୁଶଳାଗ୍ରର୍ଯ୍ୟ—କାମ କରିବାରେ ପାରଗ, ପଲ୍ଲବେ—କଅଁଳ ପତ୍ରରେ

୫ । ତନୁ—ଦେହ, ଧ୍ୟାନ କରି—ଚିନ୍ତାକରି, ଅଗମନ ଯିବ ।

୮ । ଜନ୍ମାନ୍ତେ—ଅନ୍ୟ ଜନ୍ମରେ, ତ୍ରିଶୂଳୀ—ଶିବ, ଶୂଳୀ—ମହାଦେବ,

୯ । ଅସମ୍ଭାବିତ—ଅତିଶୟ, ସଫଳ—ସିଦ୍ଧି, ମୁକୁରବିମ୍ବ—ଆରସି ପ୍ରତିମା,

୧୦ । ଲେଖ୍ରୁ—ଢେଙ୍କା, ହର ବଇରି—କନ୍ଦର୍ପ,

କଳା । ଯେବେ ବିନାଶ ହୋଇବ ପୋ ବିରହକାଳ ଯେ । ଯେଉଁ ପକ୍ଷ ବିନା ଏକ ନିଶ୍ୱାସେ ସାଗର । ତେବେ ଲଭିବ ଅବା ଶୋକ- ସିନ୍ଧୁ ପାର ଯେ ।୧୧। ପଶ୍ଚିମେ ଉଦୟ ଯେବେ ହୋଇବ ମିହିର । ତେବେ ବା ହୋଇବ କନ୍ୟାତାତ ସୀକାର ଯେ । ସୁମାଂଣି ସୀକାର ହୋଇଲାଣି ଯଦି । ତାତ ସୀକାରେ ବିମା ଏତେ ପ୍ରତିବାଦୀ ଯେ ।୧୨। ଯେଉଁ କର୍ମେ କର୍ପୂରୁଁ ହୋଇଛି ଅଗ୍ନି ଜାତ । ସୁମନସ କରିଛି ଅଶନି ସନ୍ନିପାତ ଯେ । ସେହି କର୍ମେ ସ୍ୱପ୍ନ-ଧନେ କରିବ ବାଣିଜ୍ୟ । ସଫଳ ହୋଇବ ତେବେ କାମନାସମ୍ବାଦ ଯେ ।୧୩। ଇଚ୍ଛା କରୁଅଛି ଅରୁଣରୁ ସୁଧାପାନ । ସ୍ଥିର କରି ବିଜୁଳି କରିବି ଆଲିଙ୍ଗନ ଯେ । କରେ ଧରି ଚୁମ୍ବିବା ଇଚ୍ଛୁଇଁ ସୁଧାକର । ହେମଫୁଲ୍ଲ ଗନ୍ଧ ଲଭିବାକୁ ମନ ମୋର ଯେ ।୧୪। ପିକଠାରୁ କଥା ଶୁଣିବାକୁ ସ୍ନେହ ଅତି । ମନ୍ଦରକୁ କମଳେ ଯୋଡ଼ାଇ ନେଉଁ ନିତି ଯେ । ଚମ୍ପକ ଭ୍ରମର ମେଳ କରିବାକୁ ମନ । ନକ୍ଷତ୍ରମାଳା କରିବ ମହା ଉଦ୍ଦୀପନ ହେ ।୧୫। ବିନା ମେଘେ ଘନରସ ବରଷା ହୋଇବ । ଭସ୍ମ ହୋଇଥିବା ତନ୍ତୁ ପାଇବ ଯେ । ଏମନ୍ତ ବିଶୃଙ୍ଖ- ବେଳେ ଜଣାଇଲା ଦ୍ୱାଃସ୍ଥ । ଭେଟିବେ ବୋଲିଣ ଦ୍ୱିଜୋତ୍ତମେ ଉପଗତ ଯେ ।୧୬। ତାହାଙ୍କର ସେ ବୋଲି ମନ୍ତ୍ରପୂତ ପଶୁବିଲା । ବେଦକର ଏହି ଦେଶ ପୁରୋଧା ବୋଇଲା ଯେ । ଆସନ୍ତୁ ଯେ ବୋଲି ଆଜ୍ଞା ଦେଲେ ମିଜ ଦେନ । ରଜା ସୀକାର ହେଲା ପରି ଚିତ୍ତେ ଘେନ ଯେ ।୧୭। ବିପ୍ରେ ଅଣି ପରବେଶ ଦ୍ୱାରପାଳ କଲେ । କଲ୍ୟାଣ ବାଞ୍ଛିଲେ ସେ ନୃପଙ୍କ ନମ- ସ୍କାରେ ଯେ । ଆସନ ପାଇ ବସୁଧାଦେବ ଅତି ତୋଷି । ସ୍ୱସ୍ତ୍ୟୟନ କରିବୁଁ ପାଠ ଶାଠ ବୋଲି ଭାଷି ଯେ ।୧୮। ନୃପଙ୍କ ପ୍ରଶଂସା ଶ୍ଳୋକ ପ୍ରଥମେ

୧୧ । କଳା—ଅଂଶ,
୧୨ । ମିହିର—ସୂର୍ଯ୍ୟ, କନ୍ୟା ତାତ—କନ୍ୟା ବାପ, ପ୍ରତିବାଦୀ—ବିପକ୍ଷ,
୧୩ । ସୁମନସ—ଫୁଲ, ଅଶନି—ବଜ୍ର, କାମନାସମ୍ବାଦ—ଇଷ୍ଟସମୃଦ୍ଧ,
୧୪ । ଅରୁଣ—ସୂର୍ଯ୍ୟ, ସୁଧା—ଅମୃତ, ସୁଧାକର—ଚନ୍ଦ୍ର,
୧୫ । ପିକ—କୋଇଲି, କମଳ—ପଦ୍ମ, ମନ୍ଦର—ପର୍ବତ ବିଶେଷ ନକ୍ଷତ୍ରମାଳା—ତାରାସମୂହ, ଉଦ୍ଦୀପନ—ପ୍ରକାଶ, ଆଲୁଅ,
୧୬ । ଘନରସ—ପାଣି, ଦ୍ୱାଃସ୍ଥ—ଦ୍ୱାରୀ,
୧୭ । ବେଦକର—ପଣ୍ଡିତ, ପୁରୋଧା—ପୁରୋହିତ,
୧୮ । ବସୁଧାଦେବ—ବ୍ରାହ୍ମଣ,

ପଠନ । କୁମାର ବୋଲିବା ଖ୍ୟାତ ହେଲା ଏହେ ଯେନ ଯେ । ବିଧୁସମ
ଯଶ ପରଚକ୍ର ଦରକର । ତାକୁ ସେ ଶବଧ ଶ୍ଳେଷ ଦେଲା ଅଙ୍ଗୀକାର ଯେ
। ୧୯ । ତଦୁତ୍ତରେ କାମଶାସ୍ତ୍ର ରସ ପକାଇଲା । କାମିନୀବର୍ଣ୍ଣନା ଅତିଶସ୍ତ୍ର
ଭବ କଲା ଯେ । ସ୍ତ୍ରୀ ନ ମୋହିଲା ହୋଇ ତଜ୍ଜଦଭୁବନ ।
ଅନ ନାହିଁ ଥିଲେ ଥିବେ ନପୁଂସକ ଜନ ଯେ । ୨୦ । ବିକଳ୍ପ
ନ ଥିଲେ ବ୍ୟାକୁଲତା ତାଙ୍କ ଅଛି । ଭଜୁଛନ୍ତି ଅମୃତ ଜୀବନ ନୋହେ
କଛି ଯେ । ସ୍ୱର୍ଗ ଅପବର୍ଗରୁ ଅଧିକ ସୁଖ ନାହିଁ । ରତିସୁଖସଙ୍ଗେ ସେ
ସମାନ ହେବ କେହି ଯେ । ୨୧ । ସ୍ୱର୍ଗ ଧ୍ୱଜ ଇନ୍ଦ୍ର ବଡ ଯାହା ଭୁଞ୍ଜମାନ
ସେ ରତିଲୋଭୁ ଶାନ୍ତି ସହସ୍ରଲୋଚନ ଯେ । ଅପବର୍ଗ ବ୍ରହ୍ମରଅଭ୍ୟାସ
ବୋଲି କହି । ରତିରସେ ବ୍ରହ୍ମ ଲୀନ ପୁଣ ଅଛି କହି ଯେ ।୨୨। କେଉଁଠା
ରେ ଶୋଭିବ ବା ଶୁକ୍ଲା ଦୃଷ୍ଟାନ୍ତର । ଯୋଗମାୟା ଅଶ୍ରୟ ପ୍ରତ୍ୟକ୍ଷ ଗଦାଧର
ଯେ । ଗୋପାଙ୍ଗନାଲକ୍ଷ୍ମୀ ନିଷେଧି ଅଚରଣେ । ଶିବ-ଅର୍ଦ୍ଧଅଙ୍ଗ ରିପୁତା
ପ୍ରତ୍ୟକ୍ଷଣେ ଯେ । ୨୩ । ପତିପଦେ ଶୃଙ୍ଗାର ରତିପଦରେ ସ୍ନେହ । ହେଲା
ରତିରୁ ପୃଥୁଳ ନିତମ୍ବିନୀଦେହ ଯେ । ନାରୀ ପଦ୍ମିନୀ ଚିତ୍ରିଣୀ ଶଙ୍ଖିନୀ ହସ୍ତିନୀ
ଗୁରୁତାଧ ପ୍ରଧାନ ଅକ୍ରଶଂକରୀ ହେଲା ଯେ ।୨୪। ଦେବ ଗନ୍ଧର୍ବ ଯକ୍ଷ ପ୍ରେତ
ସମ୍ବାଦ କମେ । ଯେ ପୁଂସକ ଯେତେ ଭାଗ୍ୟ ସେ ଲଭି ତା ରମେଣେ ।
ହୀରା ନୀଳ ମାଣିକ୍ୟ ମୁକ୍ତା ବଦ୍ରୁମ ମର । ମୂଲ୍ୟ ଅଛି ମୂଲ୍ୟ ନାହିଁ ସ୍ତ୍ରୀ
ରତନର ଯେ ।୨୫। ସ୍ଥୂଳ ନାସା ତୋଳକୁ ଖେଳାଇ ନେବାର ଯେ ।
ମୁଖ ହଲାଇ ଶେଳ୍ପାଇ ଭ୍ରମା ଇହାବାକ ଯେ । ଶିଶୁକେ ତର୍ଜ୍ଜନୀ ଦେଇ
ହୋଇବାର ଭଙ୍ଗୀ । ନେତ୍ର ଦେଖିଥିବ କି ଏପରି ଅନ ଶୋଭି ଯେ ।୨୬।

---

୧୯ । ନୃପଜ—ରାଜସୁତ,
୧୯ । ବିଧୁ—ଚନ୍ଦ୍ର—ବିଷ୍ଣୁ, ପରଚକ୍ର—ଶତ୍ରୁସୈନ୍ୟ, ସୁଦର୍ଶନ ଚକ୍ର, ଦର—ଭୟ, ଶଙ୍ଖ, ଅଙ୍ଗୀକାର—ସ୍ୱୀକାର,
୨୦ । କାମିନୀ—ସ୍ତ୍ରୀ, ଅତିଶୟ—ବେଶୀ, ନପୁଂସକ—ଅଣପୁରୁଷ,
୨୧ । ବିକଳ୍ପ—କଳ୍ପନା, ବା ଭାବନା, ଅପବର୍ଗ—ସୁଖ, ମୋକ୍ଷ ।
୨୨ । ଅପବର୍ଗ—ମୋକ୍ଷ, ଅଭ୍ୟାସ—ଇଚ୍ଛା, ବ୍ରହ୍ମ—ଶୁକ୍ର ।
୨୩ । ଗୋପାଙ୍ଗନା—ଗୋପୀ, ଗଦାଧର—ବିଷ୍ଣୁ ।
୨୪ । ରମେ—ଭୋଗକରେ, ବଦ୍ରୁମ—ପୋହଳା ।
୨୬ । ପୃଥୁଳ—ମୋଟା ।


Digitized by srujanika@gmail.com

ନୀବୀ ଫେଡ଼ାବେଳେ କରବାର ନାହିଁ ନାହିଁ । ବଚନ ସମ ସ୍ୱସ୍ୱର ବୀଣା
ପିକେ ବାଢ଼ିଁ ଯେ । କପଟାଚ ମାଗୁଁ ବେ ଜାଣଇ ବୋଲବାର । ସଞ୍ଜୀବନୀ
ମନ୍ତ୍ର ସମ ନିକ ତା ତୁଲର ଯେ । ୨୭ । ଶମ୍ଭୁନରେ ଅଣିକବ ବୋଟଳ
ଅଣିବାର । ଅଣିମାଦ ସୁଖ ନିକ ସମ ତା ସଙ୍ଗର ଯେ । ରତିକାଳେ ମୁଦ
ଫେଡିବାର ନେତ୍ର ଦୁଇ । ଜଳ ନୀଳୋତ୍ପଳକୁ ଧିକ୍କାର କରୁଥାଇ ଯେ ।୨୮।
ଏତିକ ହେଉ ବେଳଣ ଭଙ୍ଗିବାର ଷଣ୍ଣ । ସେ ସୁଖ ପାଇବ ଯୁବା କେଉଁ
ଖଗପତେ ଯେ । ଯାହା ଠାରେ ଅଭିଳାଷ କରେ ଯାହା ମନ । ସେହି
ତାର ସକଳ ସ୍ୱଗତ ବୋଲି ଘେନ ଯେ । ୨୯ । ମୁଗ୍ଧା ରୁ ମଧ୍ୟା ପ୍ରଗଳ୍ଭା
ଯାଏ ସୀମନ୍ତିନୀ । ପୁରୁଷର ହୁଅଇ ଅଶେଷ ସୁଖଦାୟୀ ଯେ । ଉଦୟରୁ
ଅସ୍ତଯାଏ ଚନ୍ଦ୍ରିକାମଣ୍ଡଳ । ଯଥା କରଇ ଚକୋର ସୁଖକୁ ସଫଳ ଯେ ।୩୦।
ଯୁବତିରୁ ଜାତ ଲୋଭ ଲୋଭୁଁ ପ୍ରୀତି ଲେଖ । ପ୍ରୀତିରୁ ସୁରତ ଜାତ
ସୁରତରୁ ସୁଖ ହେ । ପ୍ରାଣ ଯାଉ ହୋଏ ସ୍ତ୍ରୀ ଗାଉ ନୋହେ କେବେ ।
ରବଣାଦଠାରୁ ଶୁଣିଥିବ ତ ପ୍ରସ୍ତାବେ ଯେ । ୩୧ । ଧୃଣି ନେତ୍ର ବୁଜ କର
ରସ ଅସ୍ୱାଦନ । ହୃଦେ ଦେଖି କହେ ଧ୍ୱଂସ ହେବ ଏ ବିଧାନ ଯେ ।
ସୁଖୀ ହୋଇଥିବ ନୃପ-ଉପଜୀବୀ ନୋହି । ବିଦ୍ୟା ଥିବ ଦିବ୍ୟସ୍ତ୍ରୀ
ମିଳିଥିବ ତହିଁ ଯେ । ୩୨ । କି ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପଦରେ ।
ସ୍ତ୍ରୀହୀନ ଠାରୁ ପାପୀ ନାହିଁ ଏ ସଂସାରେ ଯେ । ରସିକ ବୋଲଣ
ବୋଲ ଏଥି ପୁରୁଷକୁ । ଯେ ଦେଖିଣ ଥାଇ ଏତେ ଲକ୍ଷଣ ବଶକୁ ଯେ ।
ଦୋଷ କଲେ ରମା ରୋଷ ନ ଦେଖଇ ମନେ । ଦାସ ପ୍ରାୟୁ ଗୃହକୁ
ବରଚଇ ପ୍ରିୟା ମନେ ଯେ । ପଛ ନ କରଇ ତାକୁ ଶୟନେ ଗମନେ ।
ଜାଣିଥାଇ କାମଶାସ୍ତ୍ର ବହୁତ ବିଧାନେ ଯେ । ୩୩ । ଭଲ ନାହିଁ ଯେ
ଦର୍ଶନ ବାଳା ବିବସନ । ଅନ୍ଧ ସେହୁ ଜନ ଥାଇ ନିର୍ମଳ ନୟନ ଯେ ।
ଯୋଷା ପରିହାସ ଭାଷା ଯେହୁ ନ ଶୁଣିଛି । କର୍ଣ୍ଣ ନୋହେ କୁହରଯୁଗଳ
ସେ ବହିଛି ଯେ । ୩୪ । ଯେ କର ନାହିଁ ସୁନ୍ଦରୀ ବିମ୍ବାଧର ପାନ । କି

---

୨୭ । ନୀବୀ—କଷ୍ଟା, ବା ଖୋସଣୀ, ସଞ୍ଜୀବନୀ ମନ୍ତ୍ର—ଜୀବଦାନ ମନ୍ତ୍ର ।
୨୮ । ଅଣିମାଦ—ଅଷ୍ଟ ଐଶ୍ୱର୍ଯ୍ୟ, ନୀଳୋତ୍ପଳ—ନୀଳ କଇଁ ।
୨୯ । ସୀମନ୍ତିନୀ—ସ୍ତ୍ରୀ, ମୁଗ୍ଧା—ମଧ୍ୟା, ପ୍ରଗଳ୍ଭା—ପ୍ରଧାନ ସ୍ତ୍ରୀ ।
୩୪ । ବାଳା—ସ୍ତ୍ରୀ, ବିବସନ—ଉଲଗ୍ନ, ନିର୍ମଳ ନୟନ—ପରିଷ୍କାରଚକ୍ଷୁ
ପରିହାସ—ଥଟ୍ଟା, କୁହର—ଗାତ ।

ସ୍ୱାଦୁ ଜାଣିଛୁ ଧିକ ତାହାର ଜୀବନ ଯେ । ମହା ମହା ଦାନ ଦେଇ ନାହିଁ ଯେହୁ କରେ । ସେ କାହିଁ ପଇବ ଉପବତୀ ଚିବୁକରେ ଯେ ।୩୬। ସ୍ୱୟମ୍ଭୁ ଶମ୍ଭୁ ସେବାରେ ଯାହା ତନ ମନ । ସେ ସ୍ମରଣ କରଇ ସାରସ-ତୋଷ-ସ୍ତନ ହେ । କହୁଥିଲେ ସର୍ବାର୍ ନୋହେ ଏ ଚରିତ । ସୃଗଶାସ୍ତ୍ର ଅଳଂକାରେ ଯେ ପ୍ରତିପାଦିତ ହେ । ୩୭ । ତୁମ୍ଭେ ରାଜପୁତ୍ର ଯୁବା·ସୁନ୍ଦର-ରସିକ । ତୁମ୍ଭଙ୍କୁ କି ଅଗୋଚର କାବ୍ୟରୀତି ଯାକ ହେ । ଏତା କାବ୍ୟରୀତି କ୍ଷମା ଅନୁଭବୀ ପୁଣ । ଯାହା ସେବା ନିପୁଣ ନୃପତିସୁତାଗଣ ଯେ ।୩୮। ତହିଁକି ପ୍ରତି ଉତ୍ତର କଲା ଚିତ୍ରଧ୍ୱଜ । ବନ୍ଧ୍ୟ ହୋଇ ନାହାନ୍ତି ଅମ୍ଭର ଯୁବରାଜ ଯେ । ସମେ କନ୍ୟା ନ ମିଳିଲା ପୃଥିବୀ ମଣ୍ଡଳେ । ଉଣା ଅଧିକ ଦ୍ରବ୍ୟ କି ପାନେ ରହେ ତୁଲେ ଯେ । ୩୯ । ପାରିଲେ ଲଗାଅ ତୁମ୍ଭ ରାଜପୁତ୍ରୀ ଅଛି । ସୁନ୍ଦରୀ ବୋଲି ଶବଦ ଲୋକେ ପ୍ରକଟିଛି ହେ । ଦେଖିଲ ଯେତେକ ସୁନ୍ଦର ଅମ୍ଭ ନୃପାତ୍ମଜ । ଯେ ହେଜ ସେ ହେଜ କରନ୍ତାଇଁ ବଭ୍ର-ଚାର୍ଯ୍ୟ ହେ । ୪୦ । ଦ୍ୱିଜେ କହେ କି କହୁଛ ମରଇଁ ସରଇଁ । ଏତେ ସ୍ଥୂଳୁପାରଦେହ ମାର ପ୍ରହାରଇ ହେ । ହେଲେ ହେଲା କି ହେଲା କି ଦୁହେଁ ବଡ଼ ରାଜା । ରାଜପୁତେ ବଶ୍ର ସିନା ରାଜାର ତନୁଜା ହେ । ୪୧ । ତଥାପି ଲାବଣ୍ୟବତୀ ନିପୁରାଲଙ୍କାର । ସୁନ୍ଦରପଣେ ତାହାର ନାହିଁ ସମ ଗାର ହେ । ଉପୁରୁ କି ସମସ୍ତେହେଁ କହିବାକୁ ତପ । ବନେ ପଶିଛନ୍ତି ଯାଇଁ କମଳକଳାପ ହେ । ୪୨ । ଏମନ୍ତ ମୁଖ ନୟନ ରୁଚିର ତାହାର । ବୁଧେ ବୋଲନ୍ତି ମଦନମନୋହରସର ଯେ । କବି ଗଣେଶ ବର୍ଣ୍ଣିନା ନ ପାରନ୍ତି କବି । ଗୁଣ ଦୂଷଣ କରନ୍ତୁ ଜପାମାଳ ଧରି ହେ । ୪୩ । ଅଧିକ-

---

୩୭ । ସ୍ୱୟମ୍ଭୁ—ବିଷ୍ଣୁ, ଶମ୍ଭୁ—ମହାଦେବ, ସାରସ—ପଦ୍ମ ।

୩୮ । ଅଗୋଚର—ଅଜଣା, ନୃପତି ସୁତା—ରାଜଜେମା ।

୩୯ । ପୃଥିବୀ ମଣ୍ଡଳେ—ସାରା ପୃଥିବୀରେ ।

୪୦ । ତନୁଜା—ଝିଅ ।

୪୨ । କମଳ କଳାପ—ମୃଗ ସବୁ ।

୪୩ । ବୁଧ—ପଣ୍ଡିତ, ମଦନ ମନୋହର ସର—କନ୍ଦର୍ପର ସୁନ୍ଦର ପୋଖରୀ, କବି—ଶୁକ୍ର, ବୃଷା—ଇନ୍ଦ୍ର, ବୃଷାସନ—ମହାଦେବ, ବିଧି—ବିଧାତା, ଅନନ୍ତ—ଶେଷଦେବ, କୁମାର—କାର୍ତ୍ତିକେଶ୍ୱର ।

ତେନବ ବନ୍ଧିଲେ ବୃଷା ବୃଷାସନ । ଜବବାଳୁ ଶୋଭାବତୀ ଶୋଭା ଦରଶନ ହେ । ଦଧି କୁମାର ଅନନ୍ତ ମୁଖାଧିକ ହୋଇ । ବସ୍ତୁବନ୍ତ ତାହା ଶୋଭା ବର୍ଣ୍ଣିବାର ପାଇଁ । ୪୪ । ଏସନ ଯେଜି ସୁନ୍ଦରୀ ଇତର ଉପରେ । ପଶୁପତି ହୁଅଇ କି ଶରୀରିଜନରେ ଯେ । ସୁନ୍ଦରମାଗୋଳ ଯେବେ ଜବବେ ଭୂପତି । ବଞ୍ଚ ଭାଗ ନ ପାରିବେ ମନୋହରବତୀ ଯେ । ୪୫ । ନାକ ନାଗେ ସମ ନାହିଁ ଥାଇ ଅଇ ଧରା । ବର ଖୋଜି ମନ୍ତ୍ରିକ ହୋଇଲୁ ମହାଭାର ହେ । ଅଦଗୃରେ କୁଳନଗଣେ ମିଳଲେ ପ୍ରଂସ । ନୃପେ ପ୍ରଚର୍ଯ୍ୟ ବଞ୍ଚ କରିବା ଅବଶ୍ୟ ହେ । ୪୬ । ତୃଷାର୍ତ୍ତି ଯିନା ସଲିଳପାଶେ ଉପଗତ । ପାଣି ତୃଷାର୍ତ୍ତିପାଣଙ୍କୁ ଆସେ କି ଖେନ ତ ହେ । ନଦୀସର୍କ୍ଷି ଧିକୁ ଜଳପାନ କରି ଗଲେ । ତାହା ଅସନମତ ହୋଇଛୁ କେଉଁ କାଳେ ହେ । ୪୭ । ଅପଣେ ଆମ୍ଭ ସଙ୍ଗତେ ହୁଅ ଅସିବାକୁ । ନୃପେ ବନ୍ଧୁ ନିର୍ବାହ କରିବା ଏ କାର୍ଯ୍ୟକୁ ଯେ । ଏ ଉତ୍ତରେ ରତ୍ନଧ୍ୱଜ ଦ୍ୱିଜସଙ୍ଗେ ଯାଇ । ସଚିବଙ୍କୁ ବେନି ନୃପ ଗ୍ରାମରେ ପଢାଇ ଯେ । ୪୮ । ସେ ବୋଇଲେ ସତ୍ତ୍ୱରୂପେ ଅମ୍ଭର ସମ୍ମତ । ଜାତକ ବରୁଛ୍ଛେ ନାହିଁ କେବଣ ଅଯୁକ୍ତ ଯେ । ପାଠଯୋଷୀ ଡ଼ାକ ଭଲ ବେଳକୁ ଜାଣିଲେ । ଉତ୍ତମ ଶୁଝିଲ୍ଲ ବେନିଜାତକ ବୁଝିଲେ ଯେ । ୪୯ । ନୃପ ଆଜ୍ଞା ଦେଲେ ପୁରେ ଯିବା ହୁଅ ସଜ । ମନ୍ତ୍ରୀକ ଯେନି କୁମାରପାଶେ ଗଲେ ଦ୍ୱିଜ ହେ । ନୃପତି ସମ୍ମତ ଶୁଣି ହୋଇଲେ ହରଷ । ଶିରକ୍ଷୁଧାର୍ତ୍ତି ପାଇଲ୍ଲ କି ପୀୟୂଷରସ ହେ । ୫୦ । ତେଣେ ଅରୁଣଅଧରୀ ପୀନ-ପୟୋଧରୀ । ଏକାନ୍ତେ ବସି କୁମାରଦର୍ଶନ ସ୍ମରଇ ଯେ । କେତେ ଅଦଭୁତ ଶୋଭା ଦେଖିଲ୍ଲ ନୟନ । ଉପମାକୁ ସମ ହୋଇ ନାହିଁ ମୋ ବଚନ ଯେ । ୫୧ । ଏ ସମୟେ ପରବେଶ ହେଲ୍ଲ ଚନ୍ଦ୍ରାବଳୀ । ତାପ ଧ୍ୱଂସି

---

୪୫ । ଶରୀରୀ—ମନୁଷ୍ୟ, ଭୂପତି—ରାଜା ।

୪୬ । ନାକ—ସ୍ୱର୍ଗ, ନାଗ—ପାତାଳ, ଧରା—ପୃଥିବୀ, କୁଳୀନ—ଉତ୍ତମ ବଂଶ ।

୪୭ । ସଲିଳ—ପାଣି, ଅସନମତ—ଅସ୍ୱଚ୍ଛ ।

୪୮ । ନିର୍ବାହ—ସ୍ଥିର ।

୪୯ । ଜାତକ—ଜନ୍ମକୋଷ୍ଠି, ବରୁଛ୍ଛେ—ଅମଳରେ, ପାଠଯୋଷୀ—ଉତ୍କୃଷ୍ଟ ଜ୍ୟୋତିଷ ।

୫୦ । ଚିର କ୍ଷୁଧାର୍ତ୍ତ—ସର୍ବଦା ଭୋକିଲା, ପିୟୂଷ ରସ—ଅମୃତ ରସ ।

ଦେଲା ଏ ବଚନାମୃତ ତାଳ ଯେ । କର୍ଣ୍ଣ ଛମ୍ବବସଙ୍କୁ ତୋତେ ଦେବା-ପାଇଁ । କଥା ହୋଇ ସ୍ଵଜା ମନ୍ତ୍ରୀ ଦେଲେ ପଠେଇ ଯେ । ୫୨ । ସତେ କି ବୋଲି କେତକୀଚରମ । ପଗୃବ । ଅନ ଅଛି ବୋଇଲା ସୁନ୍ଦରୀ ସହଚରୀ ଯେ । ସିନ୍ଧୁରଗତି ଅନନ୍ଦରସିଙ୍କୁ ଉଚ୍ଛୁଳିଲା । କେତେ ଦେବତାଙ୍କୁ କେତେ ଭୋଗ ମନାସିଲା ଯେ । ୫୩ । ଦଉଣନ ଭାବନା ହୋଇଲା ଅନ ଠାର । ବରହକ୍ଲଣ୍ଠିତା ହୋଇଲା ସମାବର ଯେ । ଅନୁସ୍ଵଗରେ ଦେଇ ମନ ନୋହେ ତୋଷ । ପୁନଃ ପୁନଃ କଲା ପ୍ରିୟସଖୀଙ୍କି ଅଶ୍ଳେଷ ଯେ । ୫୪ । ଅହେ ସ୍ଵମ କରୁଣାସାଗର ଗୃପଧର । ଖଳ-ପ୍ରଚର-ଦୂଷଣ-ନିଶିତ-ପ୍ରହାର ହେ । ମୁନିଜନ ତୋଷ ଜନପଦ ସ୍ଥିତ କର । ଉପେନ୍ଦ୍ର ଭଞ୍ଜ ସ୍ଵରବର ତାପ ହର ହେ । ୫୫ ।

———✱———

# ଊନତ୍ରିଂଶ ଛାନ୍ଦ ।

( ପକ୍ଷିମାନଙ୍କର ରହସ୍ୟ କଥୋପକଥନ । )

ସ୍ଵଗ ନଳିଣୀଗୌଡ଼ା ।

ସିଂହଳେଶ ତୋଷଭର । ଗୃଳଦେଲା ଅନ୍ତଃପୁର । ନାସ୍ତି ବୋହୁବେ ବସାଇ । ସୁନ୍ଦରୀ ଚିତ୍ତେ ଭାଳଇ । ୧ । କୁମାର ବାହୁଡ଼ି ଯିବ । ତାହାଙ୍କ ଥିବ ଏ ଜୀବ । ପଡ଼ିବି ସିନ୍ଧୁ ମଝର । ଏ ବିଚ୍ଛେଦ ସହୁ ସାର । ୨ । ମନାସି

୫୨ । ବଚନାମୃତ—କଥାମୃତ ।
୫୩ । ଅନ—ସ୍ତ୍ରୀଣ, ସିନ୍ଧୁରଗତି—ଗଜଗମନା ।
୫୪ । ବରହ ଉତ୍କଣ୍ଠିତା—ମଦନରେ ଉଚ୍ଛନ୍ନ ।
୫୫ । ଗୃପ—ଧନୁ, ପ୍ରହାର—ବିନାଶ, ଜନପଦ—ଗ୍ରାମ, ଏଠାରେ ଦଣ୍ଡକାରଣ୍ୟ, ସିଂହଳ ଦେଶ ପୁରୋହିତ ଚନ୍ଦ୍ରଭାନୁ ପାଖକୁ ଯାଇ ନାନାଦି ବିଦ୍ୟା ପରେ କାମଶାସ୍ତ୍ର ପ୍ରସଙ୍ଗ କହି ବିବାହ କଥା ପଗୃରନ୍ତେ, ମନ୍ତ୍ରୀସୁତ ବିଭା ନୋହି ଥିବାର କହିଲେ ଏବଂ ତୁମ୍ଭ ସ୍ଵଜକେମା ସଙ୍ଗେ ସ୍ଥିର କର ବୋଲି କହନ୍ତେ, ସ୍ଵଜାଙ୍କ ନିକଟ ପୁରୋହିତ ଓ କାଷ୍ଠ ସ୍ଵଜପୁତ୍ର ସହତରେ ଆସି କଥା ଠିକ କଲେ, ଜାତକ ମଧ୍ୟ ମିଳିଲା, ବିଭାର ବନ୍ଦୋବସ୍ତ ହେବ ବୋଲି ଠିକ ହେଲା । ମନ୍ତ୍ରୀଙ୍କ ନେଇ ବ୍ରାହ୍ମଣ ସ୍ଵଜପୁତ୍ର ପାଖକୁ ଗଲେ ।

---

# ଊନତ୍ରିଂଶ ଛାନ୍ଦ ।

୨ । ଜୀବ—ପ୍ରାଣ, ବାହୁଡ଼ି—ଫେରି, ସିନ୍ଧୁ—ସମୁଦ୍ର ।

ମୁଁ ଥାପିଥିବ । ଜନ୍ମାନ୍ତରେ ପାଇବ । ଆନ ବଧିରେ ମରଣ । ହେଲେ ହେବ ଅକାରଣ । ୩ । ଏ ବଚନର ମୂଳ କର । ବଜେ ବୋଧନେ ସୁନ୍ଦରୀ । ନିଜ ତାହା ତାହା ରୂପ । ଅନାଇଁ ଲଭିଲେ ତାପ । ୪ । କହିଲେ ସଖୀଙ୍କି ଛଳ । କି ଦିଶୁଛି ନବବାଳ । ତାତ କର୍ଣ୍ଣାଟେଶସୁତ । ବର କଲେ ଭାଳି ସତ । ୫ । ଆସିବେ ରହିଲେ ପଛେ । ବୋଧନେ ବସାଇ ସ୍ୱଚ୍ଛେ । ଏବେ ନା କଲେ ଯତନ । ପାଇବଟି ନିନ୍ଦାମାନ । ୬ । ଏ ବାଣୀ ଶ୍ରୁତ ତକ୍ଷଣ । ଜେମାର ଜୀବ ରକ୍ଷଣ । ସମୁଦ୍ର ହୋଇଲେ ପାର । ଚଳିଲେ ସନ୍ତୋଷେ ଘର । ୭ । କୁମାର ଯେନି ନୃପତି । ପାରି ହୋଇ ପୁରେ ସ୍ଥିତି । ଦିବ୍ୟପୁରେ ବସା ଦେଇ । ରଖିଲେ ହରଷ ହୋଇ । ୮ । ସର୍ବନୃପତି ନିର୍ବଣ । ବାହୁଡ଼ି ଗଲେ ସ୍ୱଦେଶ । ନିର୍ବଣ ଅମୃତ ପାନେ । ଯେମନ୍ତ ଅସୁରମାନେ । ୯ । ସିଂହଳ ଦ୍ୱୀପକୁ ଦେଖି । ଯୁବରାଜ ଅତି ସୁଖୀ । ଭଜିଲା ଲାବଣ୍ୟବତୀ । ଜନ୍ମସ୍ଥାନ ଯେଉଁ କ୍ଷିତି । ୧୦ । ତାକୁ ସ୍ୱର୍ଗ ସମ କାହିଁ । ବୋଲିବା ଆଶ୍ଚର୍ଯ୍ୟ ନୋହି । ଏଣୁକରି ଅନୁପମା । ସଂସାରେ ନାହିଁ ଉପମା । ୧୧ । ଶୁଭିଲା କଳସି ଗୀତ । ଏଥି ବୀଣାଧ୍ୱନି ମତ । ହୋଇଥିବ ବାଳାମଣି । ଏମନ୍ତ ମନକୁ ଆଣି । ୧୨ । ଲେଖିଲା ସେ ମତେ ମନ । ଅଛୁ ଅଜ କେତେଦିନ । ମୋ ଅଙ୍କ ପଲ୍ୟଙ୍କ କରି । ବସିବ ଅବନୀଶିରୀ । ୧୩ । ରସିବ ଗୂଢ଼କୁ ଶୁଣି । ହସିବ ଅଳପ ପୁଣି । ଦଶିବ ମୁଖ ଯେସନ । ସେହି କାଳରେ ପ୍ରସନ୍ନ । ୧୪ । ସେ ଶୋଭା ସନ୍ଦର୍ଭ ତଳେ । ନଂଥିବ ଚନ୍ଦ୍ରମଣ୍ଡଳେ । ହୋଇବ ପଦ୍ମ ମୁକୁର । କାହିଁକି ତୁଳନା ତାର । ୧୫ । ମୋତେ ଗୃହିଁବ ଶ୍ରଦ୍ଧାରେ । ନେଇଥିବ ନେତ୍ରାନ୍ତରେ । ଡୋଳା ଖେଳାଇ ଖେଳାଇ । ସେ ଯେ ଲାଜ ଲାଜ ହୋଇ । ୧୬ । ଅନଙ୍ଗ ତୁରଙ୍ଗ ଲୀଳା । ହେବ ଅବା କେତେ ତୁଲା । ମୂର୍ତ୍ତି ଖଞ୍ଜନ କୁରଙ୍ଗୀ । କାହିଁ ପାଇଲେ ସେ ଭଙ୍ଗୀ । ୧୭ । ଯେଉଁ ଭଙ୍ଗୀ ଅନୁସରି ।

---

୩ । ଜନମାନ୍ତରେ—ଆର ଜନ୍ମରେ ।
୯ । ସ୍ୱଦେଶ—ଆପଣା ଦେଶ ।
୧୧ । ଅନୁପମା—ଅତୁଳନୀୟା ।
୧୩ । ଅବନୀ—ପୃଥିବୀ, ଶିରୀ—ଶୋଭା, ଅବନୀଶିରୀ—ଲାବଣ୍ୟବତୀ ।
୧୫ । ସନ୍ଦର୍ଭ—ଶୋଭା, ମୁକୁର—ଆରସି ।
୧୬ । ଅନଙ୍ଗ—କନ୍ଦର୍ପ, ତୁରଙ୍ଗ—ଘୋଡ଼ା, କୁରଙ୍ଗ—ମୃଗ ।




Digitized by srujanika@gmail.com

ଭୁଙ୍ଗ କପଟେ ବନ୍ଧନ । ଶୀତୋତ୍ପଳ ବାତେ ଚଳେ । ଇଚ୍ଛାରେ ଭୁଜଙ୍ଗ ଖେଳେ । ୧୮ । ଗୃହଁ କ ସନ୍ତୋଷ ହେବ । ସବୁ ଚୁମ୍ବନ ମୁଁ ଦେବ । ନେତ୍ର ମୃଗଅଙ୍ଗେ କର । ତନୁରେ ପୁଲକ ଭର । ୧୯ । ସୁବର୍ଣ୍ଣ ପନସ ସମ । ଦଶୁଥିବ ମନୋରମ । ଘଲବ ପକାଇ ହୃଦେ । କି କାର୍ଯ୍ୟ ଇନ୍ଦ୍ର ପଦେ । ୨୦ । ଏମନ୍ତ ଭାବନାବେଳେ । ମାଳାକାର ନାରୀ ମିଳେ । ଚନ୍ଦ୍ରଛି ଫୁଲ ଚନ୍ଦନ । ପ୍ରୀତିଯୁକ୍ତ ବାଣୀମାନ । ୨୧ । ଶୁକ ଯେ ଦେଲା ଚନ୍ଦାଇଁ । ଅନନ୍ଦ ଧ୍ୱଂସ ଅନାଇଁ । ଶୋଭା ସେ ଚନ୍ଦନ ଫୁଲେ । ଅଙ୍ଗକୁ କଲା ଚପଳେ ।୨୨। ବୋଇଲା ଏ ଦ୍ରବ୍ୟ କର । ଜୀବନ ପ୍ରଭୁର ମୋର । ଲାଗି ଥିବାକୁ ଶୀତଳ । କଲେବ ବଡ଼ବାନଳ । ୨୩ । ନୋହିଲେ ଏ ଦ୍ରବ୍ୟମାନେ । ଦହୁଥିଲେ କିଣି ଦନେ । ଚତୁରୀ ହସିଲା ହୋଇ । ମଧୁରେ ଭାଷିଲା ତହିଁ । ୨୪ । ଏହି ବଚନରେ କିଣି । ପକାଇଲ ସମାପଣି । ନୃତଣରେ ଭେଦେ ମାର । ଗୁଣବନ୍ତ ମାଲାକର । ୨୫ । ଏ ବଧିରେ ନିତ ନିତ । ବୃଦ୍ଧି ହେଲା ବେନି ପ୍ରୀତ । ଶୁଣିମା ଏଥି ଉତ୍ତରୁ । ମହା-ଦେବୀଙ୍କ ଅଜ୍ଞାରୁ । ୨୬ । ମାତାମହୀ ପୁରୁଁ ଆସି । ଥିଲା ଯେ ଜରତୀ ଦାସୀ । ଭଗବତୀ ନାମ ତାର । ପରହାସ ସ୍ୱଭାବର ।୨୭। ବଶୀକରଣାଦ ବଧି । ଜାଣଇ ନାନା ଔଷଧି । କେଳାପୁରକୁ ଗମନ । କହଇ ଯନ୍ତ୍ର ବଧାନ । ୨୮ । ସଖୀମାନଙ୍କୁ ବସାଇ । ହେଲା କଥା ଏ ନୁହଇ । କେମା କ୍ଷୀଣ କଳେବର । ଅତି ବଳଅର ବର । ୨୯ । ସଙ୍ଗେ କେହି ବନ୍ଧରବ । ଏମନ୍ତ ତୁମ୍ଭେ କରବ । ଦେବ ଶିତା ସେଥି କ୍ଷୀରେ । ନିତ ପ୍ରଭାତ

---

୧୮ । ବାତେ—ପବନରେ, ଭୁଜଙ୍ଗ—ସାପ ।
୧୯ । ପୁଲକ—ଆନନ୍ଦ ।
୨୨ । ଚପଳେ—ଶୀଘ୍ରରେ ।
୨୩ । ବଡ଼ବାନଳ—କନ୍ଦର୍ପ ଅଗ୍ନି ।
୨୪ । ଦହୁଥିଲେ—ପୋଡୁଥିଲେ ।
୨୫ । ନୃତଣରେ—ଚୂର୍ଣ୍ଣିପର ଶରରେ, ମାର—କନ୍ଦର୍ପ ।
୨୬ । ବୃଦ୍ଧି—ବଢ଼ିବା, ପ୍ରୀତ—ସ୍ନେହ ।
୨୭ । ମାତାମହୀ—ବୁଢ଼ୀମା, ଜରତୀ—ବୁଢ଼ୀ ।
୨୯ । କ୍ଷୀଣ—ସରୁ, କଳେବର—ଦେହ, ବଳଅର—ବଳୁଆ, ବର—ସ୍ୱାମୀ ।
୩୦ । ଶିତା—କନ୍ଦ, କ୍ଷୀରେ—ଦୁଧରେ ।

କାଳରେ ।୩୦। ବଦର୍ଯ୍ୟା ଚୂର୍ଣ୍ଣ ଦବସେ । ରବକରେ ଥୋଇ ଛୋଟେ ।
ମଧୁ ନବନୀତ ଯୁକ୍ତେ । ଅଶନାକୁ ଦଅ ସ୍ନେହେ ।୩୧। ମଲ୍ଲିକା ବୋଇଲା
ଶୁଣି । ଶାନ୍ତେ କ୍ଷୀଣ ହେଲେ ମଣି । ଶୋଭା କି ତୁଟଇ ତାବ । ମନରେ
ଭର ବିଚାର ।୩୨। ଗଜ ବଳବନ୍ତ ହୋଇ । ଅଙ୍କୁଶ କି ନ ମାନଇ ।
ଶଶୀ କ୍ଷୀଣ ଯେ ହୁଅଇ । କଳା ତା ବୃଦ୍ଧି କରଇ ।୩୩। ପ୍ରଥମା
ବୋଇଲା ତେବେ । ଏମନ୍ତ କର ଗୋ ଏବେ । ଖଡ୍ଗ ସାଧନ ବଶର ।
କର୍କଶ ବଲ୍ଲଭ କର ।୩୪। ତିଳତୈଳ ତାଳମ୍ବର । ରସଯୁକ୍ତ ତହିଁ କର ।
କାର୍ପାସ ତୁଳାରେ ତେବ । ଜରଜ କଠିନ ହେବ ।୩୫। ଦ୍ୱିତୀୟା
ବୋଇଲା ଶୁଣ । ଯେଉଁ ଜରଜ କଠିନ । କମଠ ପୃଷ୍ଠ ସ୍ୱଭାବ । ଯେତୁ ଗର୍ବ
କରେ ଖର୍ବ ।୩୬। କାହିଁକି ଏହା କରିବା, ନାୟକ କର ପୀଡ଼ିବା ।
ପ୍ରଥମା ବୋଇଲା ଶୁଣି । ଏମନ୍ତ କର ଗୋ ପୁଣି ।୩୭। ଗନ୍ଧ ଉତ୍ପଳ
ବଡ଼ଙ୍ଗ । କଟୁ ତୈଳ କର ସଙ୍ଗ । ଲେପନ କେଶେ କରିବ । ଅତ୍ୟନ୍ତ
କୁଟିଳ ହେବ ।୩୮। ସେହିପରି ପିଙ୍ଗୁଳୀ ନେଲୀ । ଚୂର ବାସେ ଗୁଣି ଦଳି ।
ଲେପନ କେଶେ କରିବ । ଅତ୍ୟନ୍ତ ପ୍ରଲମ୍ବ ହେବ ।୩୯। ଦ୍ୱିତୀୟା
ବୋଇଲା ଭଲ । କୁଟିଳ ପ୍ରଲମ୍ବ ବାଳ । ନଦୀ ଲହରୀ ଗ୍ରାମରେ ।
ଶବଦ କାଳେ ଧୀକ୍କାରେ ।୪୦। ବନ୍ଧନେ ଜଗଜ୍ଜନ । ମନ କରଇ
ବନ୍ଧନ । କି ହୋଇବ ଅଧିକରେ । ବିଚାର କର ମନରେ ।୪୧।
ପ୍ରଥମା କଲା ଉତ୍ତର । ମୁଖବାସକୁ ବିଚାର । ଜାତିଫଳ ନାଗେଶ୍ୱର ।
ଗୁଡ଼ତ୍ୱକ ଘନସାର ।୪୨। ଅଳାଇଚ ଲବଙ୍ଗ ଭର । ପାନେ ଦିଅ ବନ୍ଧି
କର । ଦ୍ୱିତୀୟା ବୋଲେ କି କାର୍ଯ୍ୟ । ଯେଉଁ ଲପନ ଅମ୍ବୁଜ ।୪୩।

---

୩୧ । ବଦର୍ଯ୍ୟା ଚୂର୍ଣ୍ଣ—ଅଳେଇଚ ଗୁଣ୍ଡ, ମଧୁ—ମହୁ, ନବନୀତ—ଲହୁଣୀ, ଅଶନକୁ—ଖାଇବାକୁ ।

୩୪ । ଖଡ୍ଗ ସାଧନ—ଖଣ୍ଡା ଖେଳିବା, କର୍କଶ—ଟାଣୁଆ, ବଲ୍ଲଭ କର—ସ୍ୱାମୀ ହାତ ।

୩୫ । କାର୍ପାସ—କପା, ଜରଜ—କୁଚ ।

୩୬ । କମଠ—କଇଁଛ, ଖର୍ବ—ନାଶ ।

୩୮ । ଗନ୍ଧୋତ୍ପଳ—ସୁଗନ୍ଧ କଇଁ, କେଶେ—ବାଳରେ ।

୩୯ । ପ୍ରଲମ୍ବ—ଲମ୍ବା, ଶବଦ—ଫିଟାଇବା ।

୪୧ । ମୁଖବାସ—ମୁହଁ ବାସିବାକୁ, ଘନସାର—କର୍ପୂର ।

୪୩ । ଲପନ—ମୁହଁ, ଅମ୍ବୁଜ—ପଦ୍ମ ।

ଶ୍ରୀକୃଷ୍ଣ ପଦ ତୁଳସୀ । ପଲ୍ଲବ ପରାୟେ ବାସି । ଅଘ୍ରାଣେ ପରମାନନ୍ଦ । ଲଭିବ ପୁଂସ ମିଳନ୍ଦ । ୦୪ । ପୁଣି ଯେ ପ୍ରଥମା ଭାଷେ । ଶ୍ରମ ସ୍ୱେଦ ଗନ୍ଧନାଶେ । କର ଏହୁ ଉପଗୃର । ଚନ୍ଦନ ନାଗକେଶର । ୪୫ । ଅଭସ୍ରା ହରଦ୍ରା ସଙ୍ଗେ । ଲେପନ କର ଗୋ ଅଙ୍ଗେ । ଦ୍ୱିତୀୟା ବୋଲେ କି ଛନ୍ଦ । ଯେଉଁ ତନୁ ମନ୍ଦ ମନ୍ଦ । ୪୬ । ପଦ୍ମପ୍ରାୟେ ବାସୁଥାଇ । ତହୁଁ ଦୁର୍ବାସନା କାହିଁ । କସ୍ତୁରୀଗନ୍ଧା ବନିତା । ସ୍ୱଭାବେ ଗନ୍ଧର୍ବସତ୍ତ୍ୱା । ୦୭ । ଯା ଅଙ୍ଗ ଗଜର ତୁଲ । ନ ପାଇଅଛି ବକୁଳୀ । ଏଣୁ ଲକ୍ଷଣେ ବଗୃହ । କହୁ ଗଇରବ ଗୋଷ୍ଠୀ । ୪୮ । କଥାରେ ନ ପାର ଜିଣି । ପ୍ରଥମା ଏମନ୍ତ ଭଣି । ନବୀନ ଯୁବତୀ ଏହୁ ରତିଭାବ ଜାଣି ନାହିଁ । ୪୯ । କାମଶାସ୍ତ୍ର ପୋଥି ହସ୍ତେ । ଦିଅ ବୁଝୁଥାଉ ନିତ୍ୟେ । ବନ୍ଧଚିତ୍ରଭିତ୍ତି ଯହିଁ । ବସିବା ଶୋଇବା ତହିଁ । ୫୦ । ପ୍ରତିକ୍ଷଣେ କରୁଥାଉ । କୁସୁମସମୟୁ ନେଉ । ଶୁଣି ଅପସ୍ମ ହସିଲା । ସଧୀରେ ବାଣୀ ଭାଷିଲା । ୫୧ । ଶିଖୀ ଚିତ୍ର ହଂସ ଶ୍ୱେତ । କେ କରନ୍ତି ଦେଖାଚିତ୍ର । ଯାହା ପଢ଼ାଇଲ୍ଲ ସାସ୍ତ୍ର । ସ୍ମରଶାସ୍ତ୍ର ଅର୍ଥ କର । ୫୨ । ତା ହାତେ ପୋଥି ଦେବାଙ୍କୁ । ଶୁଣିଲଇଁ ଅଭାଗ୍ୟଙ୍କୁ । ଶୁଣି ସେ ହୋଇ ମଉନ । ଚଳିଲା ରାଣୀସଦନ । ୫୩ । ଶ୍ୟାମ କମଳ ଶ୍ୟାମଳ । କପଟ କମଳ ବାଳ । ଉପଇନ୍ଦ୍ର ବାରବର । ଚିନ୍ତେ ଚିତ୍ରେ ନିରନ୍ତର । ୫୪ ।



୪୪ । ଅଘ୍ରାଣେ—ସୁଙ୍ଘିବାରେ, ପରମାନନ୍ଦ—ଅତ୍ୟନ୍ତ ଖୁସି, ମଳିନ୍ଦ—ଭଅଁର

୪୫ । ସ୍ୱେଦ—ଝାଳ, ନାଗକେଶର—ନାଗେଶ୍ୱର, ଉପଗୃର—ଚକ୍ଷୁରା ।

୪୭ । ଦୁର୍ବାସନା—ଗନ୍ଧ, ଗନ୍ଧର୍ବ ସତ୍ତ୍ୱା—ଗନ୍ଧର୍ବ ଜାତୀୟା ।

୫୦ । ବନ୍ଧଚିତ୍ର ଭିତ୍ତି—ଯେଉଁ କାନ୍ଥରେ ବନ୍ଧ ସବୁ ଚିତ୍ରିତ ହୋଇଛି ।

୫୨ । ଶିଖୀ—ମୟୂର, ସ୍ମରଶାସ୍ତ୍ର—କାମଶାସ୍ତ୍ର ।

୫୪ । ଶ୍ୟାମ—ନୀଳ, କପଟ; କମଳ ବାଳ—ମୃଗ ଚଅଁର ପର କେଶ ।



# ତ୍ରିଂଶ ଛାନ୍ଦ ।

( ଲାବଣ୍ୟବତୀର ବବାହ । )

ରାଗ କଳସା ।

ଏଥୁ ଅନ୍ତରେ ଶୁଣ ସୁବୁଦ୍ଧିକଲାପ । ଭୃତ୍ୟେ ନିର୍ମିଲେ ଛାୟାମଣ୍ଡପ ମଣ୍ଡପ ହେ । ୧ । ଛାୟାମଣ୍ଡପ ବେଢିଲା ପର ପରବାସୀ । ମଣ୍ଡପ ଯେମନ୍ତ ତହିଁ ପ୍ରଧାନସୁନ୍ଦରୀ ଯେ ।୨। ସେ ତମାଳଶାଖାକେଶୀ ଏ ଭ୍ରମରକେଶୀ । ସେ ସ୍ତନଗୁଚ୍ଛେ ଏ ମୁକୁତାଗୁଚ୍ଛେ ବସି ଯେ । ୩ । ସେ ନାରିକେଳ-

---

## ତ୍ରିଂଶ ଛାନ୍ଦ ।

୧ । ସୁବୁଦ୍ଧି—ପଣ୍ଡିତ, କଲାପ—ସମୂହ, ଭୃତ୍ୟେ—ଚାକରମାନେ ।

୨ । ପରବାସୀ—ଦାସୀ, ଏଠାରେ ମଣ୍ଡପ ହେଲା—ସୁବେଶ ଛାୟା ମଣ୍ଡପ, ଦାସୀପର ତାଙ୍କୁ ବେଢ଼ି ରହିଲେ ।

୩ । ସେ ମଣ୍ଡପରେ ତମାଲ ଡାଳର ଛାମୁଣ୍ଡିଆ ହୋଇଛି, ଏଣେ ତମାଲ ଶାଖା କେଶୀ—ତମାଲ ଡାଳପରି ଯାହାର କେଶ କଳା, ଭ୍ରମର କେଶୀ—ନଡ଼ିଆ ଭ୍ରମର ଅଛି, ନଡ଼ିଆ ଚୌଁରପରି କେଶ ଯାହାର, ନଡ଼ିଆ ରଚନ—ନଡ଼ିଆକୁ ମଝିରେ ଥୋଇଛନ୍ତି, ଏଣେ ନଡ଼ିଆ ହେଲା କୁଚ, କଳଶ ମଧ୍ୟ ଥୁଆ ହୋଇଛି,କୁଚ କଳଶ ପରି ଅଛି । ଗ୍ରୀବା ମଧ୍ୟ ସେଠାରେ ଖଞ୍ଜା ହୋଇଛି ଏହାର ଗ୍ରୀବାପରି ଦନ୍ତ । ପଲ୍ଲବ—କଅଁଳିଆ ପତ୍ର ସବୁ ଦିଆଯାଇଛି, ପଲ୍ଲବ କଅଁଳିଆ ପତ୍ରପରି ଏହାର ଓଷ୍ଠ, ବଡ଼ଗଛ ଖୁବ ଲମ୍ବା ଅଛି—ଉଚ୍ଚ କଥାକୁ, ବନ୍ଧୁଜୀବ—ପୋହଳା ମଧ୍ୟ ଠିଆ ହୋଇଛି, ଅଧର ପୋହଳା ପରି, ସେଠାରେ ପଟନୀ—ପାଟ ଖଣ୍ଡୁଆ ଦିଆଯାଇଛି । ଏ ପାଟଶାଢ଼ୀ ପିନ୍ଧିଛି, କସ୍ତୁରୀ ଚନ୍ଦ୍ର ପେଡ଼ିରେ ସେଠାରେ ଅଛି, ଏହାର ଗାଲରେ କସ୍ତୁରୀ ଅଛି । ମିଛା—ପାଣିପାତ୍ର ଥୁଆ ହୋଇଛି, ଏହାର ଅଲଙ୍କାରେ ମିଛା କାମ ହୋଇଛି । ବ୍ୟଜନେ—ସେଠାରେ ଚରଣାରେ ବାନ୍ଧା ହୋଇଛି, ଏହାକୁ ମଧ୍ୟ ଚରଣାରେ ବାନ୍ଧୁଛନ୍ତି, ଦର୍ପଣ ମଧ୍ୟ ସେଠାରେ ଅଛି, ଏହାର ମୁହଁ ଦର୍ପଣପରି ସ୍ୱଚ୍ଛ, ତେବେ ଲାବଣ୍ୟବତୀ ଗୋଟିଏ ମଣ୍ଡପ ହେଲା ।

ଜରକ ଏ କଲଶସ୍ତନୀ । ସେ ଦନ୍ତକପନୀସ୍ମା ଏ ସ୍ମାରକରଦନୀ ଯେ । ୪ ।
ସେ ପଲ୍ଲବଅଧରୀ ଏ ବନ୍ଧୁପଅଧରୀ । ସେ ପତନୀ ବାସେ ଶୋଭା ଏହା
ଚାସ କର ଯେ । ୫ । ସେ କସ୍ତୁରୀ ଶବଦେ ଏ ସିନ୍ଧୂରିବେ ଶୋହ୍ନି ।
ସେ ବ୍ୟଞ୍ଜନେ ରଞ୍ଜନ ଦର୍ପଣମୃଖୀ ଏହି ଯେ । ୬ । ଏମନ୍ତ ଦେଖି
ଫିଦ୍ଧଳପତ ତୋଷଭର । କଥନୀୟ ନୃଦ୍ଧଇ ତ ଭଅଣି ସମ୍ଭାର ଯେ । ୭ ।
ଦେଖେଦିନେ ପରବେଶ ଶ୍ରୀଦରବାସର । ଜ୍ୟବେ ଅତି ଉତ୍ସୁକ ହେଲେ
ନରେଶ୍ବର ଯେ । ୮ । ପ୍ରତିଦ୍ୱାରେ ରମ୍ଭା ତରୁ ଦବ୍ୟ ଦ୍ରୋଣ ମାନ ।
ରମ୍ଭାପରି ବରନାରୀ ମଙ୍ଗଳଗାୟନ ଯେ । ୯ । ପ୍ରଦୋଷନାଶରେ କଲେ
ଗନ୍ଧଷଣବଧି । ଭୂଦେବନନ୍ଦନୀ ସାତ ପାଠବସ୍ତ୍ର ପିନ୍ଧି ହେ । ୧୦ । ନାପିତୀ
ନୂତନସୂର୍ପ ରୋପି ନାରିକେଳ । ନବତେଲ ପ୍ରଦୀପ ବଦରୀ ଦୁର୍ବାଦଳ
ଯେ । ୧୧ । ଧେନ ବାହାବଲେ କଲେ ହୁଳହୁଳି ଦେଇ । ଗୀତ ଇଚ୍ଛା-
ସୁଖେ ବୀଣା କି ଅବା ବାଜଇ ଯେ । ୧୨ । ବଜାଇ ବବଧ ବାଦ୍ୟ
ଦେବୀ ଗନ୍ଧଷିଲେ । ସପତଗୃହ ବୁଲଣି ସଲିଲ ଢୋଳିଲେ ଯେ । ୧୩ ।
ବର-ନବରଙ୍କୁ ଯାଇଁ କଲେ ଗନ୍ଧଷଣ । ସେହି ସଙ୍ଗେ ବରଦାସୀ ବଜାଇ
ଘୋଷଣ ଯେ । ୧୪ । ଆସି କନ୍ୟା ମନ୍ଦରେ ହୋଇଲେ ପରବେଶ ।
ଗନ୍ଧଷିଲେ ଦେଇ ଭୂଷା ଗନ୍ଧଷଣ ବାସ ଯେ । ୧୫ । ଚାହୁଁଣ ଯାଇ ସେ
ଧୂରେ କଥା ପରସ୍ପରେ । ଏମନ୍ତ ସୁନ୍ଦରୀ ଥିଲା ଜନପି ସଂସାରେ ଯେ ।୧୬।

---

୪ । ଶ୍ରୀଦର ବାସର—ଜନ୍ମାଷ୍ଟମୀ, ଏକାଦଶୀ ଓ ପୂର୍ଣ୍ଣିମା, ଓ ରବିବାର, ଉତ୍ସୁକ—ଆନନ୍ଦ ।

୯ । ରମ୍ଭା—କଦଳୀ, ତରୁ—ଗଛ, ଦ୍ରୋଣ—ଖମ୍ବ, ରମ୍ଭା—ସ୍ୱର୍ଗ ବେଶ୍ୟା, ବରନାରୀ—ଶ୍ରେଷ୍ଠ ସ୍ତ୍ରୀ ।

୧୦ । ପ୍ରଦୋଷ—ସନ୍ଧ୍ୟା, ଗନ୍ଧଷଣ ବଧି—ଗନ୍ଧାଦ ବବାହ ନୟମ, ଭୂଦେବ—ବ୍ରାହ୍ମଣ, ନନ୍ଦନୀ—ଝିଅ ।

୧୧ । ନାପିତୀ—ଭଣ୍ଡାରୁଣୀ, ନୂତନସୂର୍ପ—ନୂଆକୁଲା, ନାରିକେଳ—ନଡ଼ିଆ, ନବତନ—ନୂଆ, ପ୍ରଦୀପ—ଦୀପ, ବଦରୀ—ବରକୋଳି ପତ୍ର, ଦୁର୍ବାଦଳ—ଦୁବ ।

୧୩ । ଦେବୀ—ଠାକୁରାଣୀ, ଗନ୍ଧଷିଲେ—ଗନ୍ଧାଦ ଧେନ ଘଷି ଗାଧୋଇ ଦେଲେ, ସପତଗୃହ—ସାତୋଟି ଘର, ସଲିଲ—ପାଣି ।

୧୪ । ଗନ୍ଧଷଣ—ବବାହବଧି ବଶେଷ, ଘୋଷଣ—ବାଦ୍ୟ ।

୧୫ । ଭୂଷା—ଅଳଙ୍କାର ।

ଚନ୍ଦ୍ରମୁଖେ ନୟନଯୁଗଳ ଦେଲେ ଗୃହ୍ଣି । ଶିଶୁକୁରଙ୍ଗ ଯେମନ୍ତ ପବଟେ ଭୁଅଇ ଯେ ।୧୭। ଡୋଳଭୃଙ୍ଗ ଗୃଳ ଅନାଇଁଲେ ବସ ବଦନ । ବକାଶ ସାରସ ପବ ଦଶେ ଶୋଭାବନ ହେ ।୧୮। ଦୁହିଙ୍କି ଏକା-ବେଳକେ ଗୃହିଁଲେ ଏସନ । ମୋହନ ପାଶରେ ପଡ଼ି ଚଞ୍ଚଳ ଖଞ୍ଜନ ଯେ ।୧୯। ଲାବଣ୍ୟସରରେ ମୀନ ଖେଳାଗର ପରି । ପ୍ରଧାନ ଲାବଣ୍ୟ-ବତୀ ବିଭୁବନଶିରୀ ଗୋ ।୨୦। ଦାସୀ କଥା ହେବାକୁ କୁମର ସାବ-ଧାନ । ତାକୁ ମୁଁ ପାଉଛି ବୋଲି ଉଲ୍ଲାସ ମନ ଯେ ।୨୧। କନ୍ୟା-ପୁରେ ଦ୍ୱିଜନାରୀ କଥା ପରସ୍ପରେ । ନ ଥିଲା ତ ଫୁଲଶର କନ୍ଦର୍ପହସ୍ତରେ ଗୋ ।୨୨। କାହାକୁ ପ୍ରହାରୁଛ କ ଭେବେ ଥାଆନ୍ତା ଗୃପ । ନୋହିଲେ ଦହିତ କି କରନ୍ତା ହର କୋପ ଗୋ ।୨୩। ଜଣେ ବୋଇଲା ସେ ଅଛୁ ନ ପାରିଲୁ ଦେଖି । ଧନୁଶର ନାମଟି ହୋଇଛୁ ଭୁରୁ ଅଷି ଗୋ ।୨୪। ଉପାକାର୍ଯ୍ୟେ ଯାଇ ପାଇଥିଲା ଅପଯଶ । ଏଣୁ ଗୃପ ନାଶରେ କ ଅଛୁ ପଉରୁଷ ଗୋ ।୨୫। ନୃପଘୃତା ଚତୁରୀ ଉତ୍ତର ଯୁକତେ । ମଲାଇଁଟି ଯେତେ ନବବୟସୀ ଜଗତେ ଗୋ ।୨୬। ଏମନ୍ତ କଥା ଶ୍ରବଣେ ସୁନ୍ଦରୀ ଅନିଦ୍ର । ସେ ମୋ ପ୍ରଭୁ ଭାବ ବଢ଼େ ଆନନ୍ଦ ସମୁଦ୍ର ଯେ ।୨୭। ଏମନ୍ତେ ରଜନୀ ଶେଷ ସମୟରେ ଉହୁଁ । କୋକିଳସ୍ୱନ ସେ ବର କନ୍ୟାକୁ କରାଇ ଯେ ।୨୮। ଦଧିଗୁଡ଼ ଭକ୍ତ ଭୁକ୍ତ ଅନୁରକ୍ତ ବଣେ । କନ୍ୟା ଲବଣତରଙ୍ଗ ପୂଜିଲା ହରଷେ ଯେ ।୨୯। ତରଙ୍ଗୀ ନୋହେ କରୁଛ ଗଉରୀଙ୍କ ସେବା । ସୁପୁରୁଷଈଶ୍ୱର ସଙ୍ଗମ ମୋତେ ଦେବା ଗୋ ।୩୦। ଦଣ୍ଡେ ଏ ବଳମ୍ବ ନୋହୁ ବେଗେ ହେଉ ଇଚ୍ଛା । ବୈଦ୍ୟ ଯଥା ପନାସିଲା ବ୍ୟାଧିମନ୍ତ ବାଞ୍ଛା ଗୋ ।୩୧। ଏ ସମୟେ ପରବେଶ ନୃପତିନନ୍ଦନ । ବବଧ ବାଦ୍ୟନାଦରେ ଦୁଆରେ ସଘନ ଯେ ।୩୨। ସିଂହଳେଶ ଜ୍ୟୋତିଷ କହିଲା ଏହି କାଳ । ପ୍ରବେଶ ହେଲାଟି ବର ଅନୁକୂଳବେଳ ହେ ।୩୩। ମୀନକେତୁ ନାମ କୁମରଙ୍କୁ ପଠିଆଇ । ଅଣାଇଲେ ସରଣୀବରଣୀ କର ଉହୁଁ ଯେ ।୩୪। ଜ୍ୟୋତିଷ

---

୧୮ । ବକାଶ ସାରସ—ଫୁଟିଲା ପଦ୍ମ ।

୨୦ । ଲାବଣ୍ୟସର—ସୁନ୍ଦର ପୋଖରୀ ।

୨୫ । ଅପଯଶ—ନିନ୍ଦା, ପଉରୁଷ—ପ୍ରଶଂସା ।

୩୦ । ଗଉରୀ—ପାର୍ବତୀ, ସୁପୁରୁଷ ଈଶ୍ୱର—ଉତ୍ତମପୁରୁଷ ଶ୍ରେଷ୍ଠ ।

୩୪ । ମୀନକେତୁ—ସିଂହଳ ରଜାପୁଅ, ସରଣୀ ବରଣୀ—ବାଟବରଣ ।

ଶୁକ୍ଳ ଦ୍ୱାଦଶୀ ସୋମବାର ହୋଏ । ସଂକ୍ରାନ୍ତି କାଳାକୁ ଭୋଗ ଦିବସ ଛୋଡ଼ଇ ଯେ । ୩୫ । ସ୍ୱାତୀ ତାର ତୁଳଚନ୍ଦ୍ର ଶୁଭ ନାମେ ଯୋଗ । ସେଦିନ ବେଳର ଷଡ଼ଘଣ୍ଟ ହୋଏ ଭୋଗ ଯେ । ୩୬ । ରବି ବୁଧ ଶୁକ୍ର ମିଥୁନରେ ହୋଏ ସ୍ଥିତ । କଙ୍କଡ଼ାଲଗ୍ନରେ ମଗ୍ନ ଉଦେ ବୃହସ୍ପତି ଯେ । ୩୭ । ଚନ୍ଦ୍ର କେନ୍ଦ୍ରବର୍ତ୍ତୀ ତୁଳେ ଶନୈଶ୍ଚର ମୀନେ । ମଙ୍ଗଳ ମଙ୍ଗଳ ତାର ତୃତୀୟରେ କନ୍ୟେ ଯେ । ୩୮ । ସ୍ୱର୍ଭାନୁ ମକରେ କରେ ବିଳାସକୁ ତୋଷେ । ଏହି କାଳେ ବର ବିଭାମଣ୍ଡପରେ ବସେ ଯେ । ୩୯ । ସ୍ୱରଶଙ୍ଖ ଶଙ୍ଖ ବାଜେ ଅସଂଖ୍ୟ ମାଧୁର୍ଯ୍ୟ । ଘଣ୍ଟି ପଟହ କଂସାଳ ତାଳ ତୂରୀ ଭେରୀ ଯେ । ୪୦ । କର୍ତ୍ତାଳ କାହାଳ ଶଙ୍ଖଘୋଷ ବେଣୁ ଚର୍ମା । ମୁରୁଜ ଡିଣ୍ଡିମ ଦୁନ୍ଦୁଭିରେ ସମ୍ମା କର୍ମା ଯେ । ୪୧ । ବୀଣା ରବା ତାଳ ତାଳ ମୃଦଙ୍ଗ ମର୍ଦ୍ଦଳ । ସ୍ୱରମଣ୍ଡଳ ଅମୃତ ବାଏ ଗୁଣିକୁଳ ଯେ । ଗଣକଗଣ ମଙ୍ଗଳାଷ୍ଟକ ପଢ଼ୁଛନ୍ତି । ମଙ୍ଗଳଗୀତ ଗାବନ୍ତି ଗଣିକାଯୁବତି ଯେ । ୪୩ । ବନ୍ଦିବୃନ୍ଦ ବନ୍ଦନା କରନ୍ତି ଅତି ଉଚ୍ଚେ । ବେଦକୁଳ ପୁରୋହିତ ବସି କର୍ମ ରଚେ ଯେ । ୪୪ । ଏକାଳେ ମୁଖଡିଣ୍ଡିମ ଶୁଭେ ଅନ୍ତଃପୁରେ । କୁମାର ବଗୃରେ ମାର କି ସୋ ମରଣରେ ଯେ । ୪୫ । ଧନୁର୍ଗୁଣ ଟଙ୍କାର ସରେସେ ଅସୁଅଛି । ବାଜା ସାହା ହେବାର କି ଜାଣିନାହିଁ କିଛି ଯେ । ୪୬ । ଏ ସମୟେ ପରଗୃହ ବାରିଜଗନ୍ଧାକୁ । ଲବଣଚର୍ଜ୍ୟ ଅର୍ଘ ଅଣିଲେ ସେଠାକୁ ଯେ । ୪୭ । ଅନ୍ତରପାଟ ଅନ୍ତରେ ତରଳାକ୍ଷୀ ରହି । ତରଳ-ନୟନ ଅନ୍ତେ ବଲ୍ଲଭକୁ ଚାହିଁ ଯେ । ୪୮ । ଲବଣ ତଣ୍ଡୁଳ ସହ ପୁଷ୍ପକୁ ମାରି । ବନ୍ଧୂ୍ୟପ୍ରାପ୍ତ ବାହୁଡ଼ିଲ ଚଞ୍ଚଳ ଚତୁରୀ ଯେ । ୪୯ । ଉଚାଟ ମନ୍ଧୂଳିକି ପକାଇ ସେ ଯୁବା-ଚିତ୍ତ ଧରି ପଣନ୍ତରେ ବାନ୍ଧି ନେଲା କିବା ଯେ । ୫୦ । କୁଣକଟିକି ପାଞ୍ଚେଟି ଯାଅ ବୋଲି ମନ । ପଠିଆଇଦେଲା

---

୩୬ । ଷଡ଼ଘଣ୍ଟ—ଛଅଘଡ଼ି ।

୩୯ । ବିଭାମଣ୍ଡପ—ବାହାବେଦୀ ।

୪୦ । ସ୍ୱରଶଙ୍ଖ—ହୁଳ ହୁଳ ।

୪୩ । ମଙ୍ଗଳାଷ୍ଟକ—ଶୁଭାଷ୍ଟକ, ଗଣିକା ଯୁବତି—ବେଶ୍ୟାନାରୀ ।

୪୪ । ବନ୍ଦିବୃନ୍ଦ—ଭାଟମାନେ ।

୪୬ । ସରେସେ—ରାଗରେ ।

୪୭ । ବାରିଜଗନ୍ଧା—ପଦ୍ମଗନ୍ଧା ।

୪୯ । ବନ୍ଧୂ୍ୟ—ବନ୍ଧୁଳ, ବାହୁଡ଼ିଲ—ଫେରିଲା ।


Digitized by srujanika@gmail.com

କଟା ରସିକରଞ୍ଜନ ଯେ । ୫୧ । ବହୁତ ବନସ୍ତୁ ହୋଇ ବହୁଛୁ ସେ ତାଙ୍କୁ । ବଲମ୍ବ ନ କର ଯେଣ ଅସ ବନିତାଙ୍କୁ ଯେ । ୫୨ । ବରବର ଯଜ୍ଞୋପବୀତଙ୍କୁ ଏହିକାଳେ । କନ୍ୟାପାଶେ ନିବେଷଣ ଦ୍ୱିଜପାନେ କଲେ ଯେ । ୫୩ । ଚତୁର୍ଗ୍ର ସେ ବଶୃଦ୍ଧିଙ୍କ ଅସିଛନ୍ତି ନେଇ । ଅପଣା ବ୍ୟାଜରେ ଯଜ୍ଞୋପବୀତଙ୍କୁ ଦେଇ ଯେ । ୫୪ । ସେହିକ୍ଷଣି ରଙ୍ଗେ ଯେ କୁରଙ୍ଗେକ୍ଷଣୀ ବଳେ । ବେଢିଛନ୍ତି ଚନ୍ଦ୍ରପାଶେ ସଜନୀସମାଜେ ଯେ । ୫୫ । ସୁବେଣିତ ବେଣବଧି ନୋହିଲାଇଁ କହି । ଅଲଙ୍କାର ଅଲଙ୍କାର ଯେଣୁ ଚନ୍ଦ୍ରମୁହିଁ ଯେ । ୫୬ । ଧୀରେ ବଭ୍ରପଣ୍ଡପେ ପ୍ରବେଶ ଅସି ହେଲ୍ଲା । ବାମ ଦକ୍ଷିଣ ବଗୃବ ନ ବସଇ ବାଳା ଯେ । ୫୭ । ବାମଦେବବାମ ବାମ ଅଗ୍ରେ ଅଳ୍ପ ହୋଇ । ସତ ନ ବଳଇ କେହି ବାମ ହେବ ମୁହିଁ ଯେ । ୫୮ । ଏ ବଗୃର କଲ୍ପ ଭାବ ପୂର୍ବେହିତ ସୁତ । ବଧାତା ବଧାନ ଶ୍ଳୋକ ପଢିଲ୍ଲ ଭ୍ରବତ ସେ । ୫୯ । ଶ୍ରବଣେ ବସିଲ୍ଲ ବରସମୀପେ ବନିତା । ପୁରୁଷ ସେନାଲ୍ଲ ଏ ତ ପରମପଣ୍ଡିତା ଯେ । ୬୦ । ବେଦୋକ୍ତ ମନ୍ତ୍ରବଧିରେ ଅରମ୍ଭିଣ କର୍ମ । କ୍ରମରେ କ୍ରଦତ କଲେ କାନ୍ତା କାନ୍ତ ନାମ ଯେ । ୬୧ । ବଶିଷ୍ଟ ଅରୁନ୍ଧତୀ ଶ୍ରୀରାମ ସୀତା ପର । ଶିବ ପାର୍ବତୀ ଏ ଲକ୍ଷ୍ମୀ ସମାନଙ୍କୁ କର ଯେ । ୬୨ । ଦ୍ୱିଜେ ବଣ୍ଟଙ୍କ ନାଗ୍ରେଳ ବାଦ୍ୟ ଯେଣ ସ୍ତନେ । ବଗୃବଣ ନିବେଶିଲେ ତାହାଙ୍କୁ ଦହନେ ଯେ । ୬୩ । ମଧୁଶଯ୍ୟା କାଳରେ ଯେ ତେଜ୍ୟା କରବାକୁ । ଲାଜାହୋମ ନ କଲେଟି ଦହିଲେ ଲଜ୍ଜାକୁ ଯେ । ୬୪ । କାନ୍ତା କାନ୍ତ କରପଦ୍ମ କୋକନଦଶିଶ୍ର । ଗ୍ରେସ୍ରୀ କରଥିଲେ ବୋଲି କୁଶବନ୍ଧ କର ଯେ । ୬୫ । ପର୍ବଭବ ଅନ୍ତେ ଦ୍ୱିଜସୁତ ଫେଡି ଦେଲ୍ଲ ।

---

୫୨ । ବଲମ୍ବ—ଡ଼େର, ବନିତା—ସ୍ତ୍ରୀ ।

୫୩ । ଯଜ୍ଞୋପବୀତ—ପଇତା ।

୫୪ । ବ୍ୟାଜ—ଛଳନା ।

୫୫ । କୁରଙ୍ଗେକ୍ଷଣୀ—ମୃଗନେତ୍ରୀ ।

୫୬ । ଅଲଙ୍କାର—ଗହଣା, ଅଲଙ୍କାର—ଶ୍ରେଷ୍ଠ ।

୫୭ । ବାମଦେବବାମ—କନ୍ଦର୍ପ, କାମ, ବାମ—ମନ୍ଦ, ଶତ୍ରୁ ।

୬୧ । କାନ୍ତାକାନ୍ତ—ସ୍ତ୍ରୀ ପୁରୁଷ ।

୬୪ । ଲାଜାହୋମ—ମିଳନ ଅଗରୁ ଯେଉଁ ହୋମହୁଏ ସେ ହୋମରେ ଖଇ ପକାନ୍ତି ।

୬୫ । କୋକନଦ—ରକ୍ତପଦ୍ମ, କୁଶବନ୍ଧ—କୁଶରେ ବାନ୍ଧିବା ।

ମନୋଭବ-ପରାଭବ ଯାହା ହେଉଥିଲା ଯେ । ୬୬ । ଛୁଅଇଁଲେ କୁମାରକୁ କୁମାରୀଚରଣ । ମନ୍ମଥଭୟରୁ ନଷ୍ଟେଁ ପଶିଲା ଶରଣ ଯେ । ୬୭ । କମ୍ବୁରେ ଅମ୍ବୁ ଢାଳିଣ ଦେଲା କନ୍ୟାତାତ । କଣ୍ଠକୁ ସମାନ ନୋହୁ କି ଅବା ବେଦତ ଯେ । ୬୮ । ବାଗ୍ରବଧି ଶେଷ ଯହୁଁ ହେଲା ଏ ବଧିରେ । ବର କନ୍ୟା ଘେନି ଗଲେ ଅବରୋଧପୁରେ ଯେ । ୬୯ । ଅଜ ଯୁତ ହେବେ ବେନି ଏ ବ୍ୟାଜରେ ତହିଁ । ଯୂତ ଖେଳାଇଲେ ସ୍ୱର୍ଣ୍ଣ-ବରାଟିକା ଦେଇ ଯେ । ୭୦ । ଅନ୍ତଃପୁରସ୍ଥାଙ୍କୁ କଲା ବ୍ୟାକୁଳ ମଦନ । ଜଗତମୋହନ ରୂପ କର ଦରଶନ ଯେ । ୭୧ । ଜ୍ଞାତି ଭଗ୍ନୀ ଲେଖା ଓଜମା ସାନ-ଭଗ୍ନୀ ଯେତେ ଦାସୀ କରଦେବେ କି ବଗୁର କଲେ ଚିତ୍ତେ ଯେ । ୭୨ । ସେବାବେଳେ କରପଦ୍ମ ଲାଗିଲେ ଉରଜେ । ପରମ ଗତିକି ଅମ୍ଭେ ପାଇବା ସହଜେ ଯେ । ୭୩ । ଜରତୀ ଭାଳିଲେ ଚିତ୍ତେ ଗଳାଣି ବୟସ । ନ ହେଲେ ଲୁଚି ପଳାଇ ଯାଆନ୍ତୁ ଅବଶ୍ୟ ଯେ । ୭୪ । ତରୁଣୀଏ ମନାସନ୍ତ ଭୋଗ ଦେବୁଁ ଦେବେ । ହେ ପ୍ରଭୁ ଅମ୍ଭଙ୍କୁ କେମା ସଙ୍ଗତରେ ଦେବେ ଯେ । ୭୫ । ଭୋଗ ନୋହିଲେ ତ ହେଉଥିବ ଦରଶନ । ଚନ୍ଦ୍ରମା ଉଲ୍ଲାସେ ଯଥା କୁମୁଦଣୀବନ ଯେ । ୭୬ । ଏମନ୍ତ ଭୋଜନ ସ୍ଥାନେ ହେଲେ କନ୍ୟା ବର । ଜରତୀ ଦ୍ୱିଜବନିତା କହିଲା ସେଠାର ଯେ । ୭୭ । ପଞ୍ଚବାଣ-ବାସରୁ ତବଲ ପଞ୍ଚଗ୍ରାସି । କର ଏବେ ହରଷରେ ଜାୟାପତି ବସି ଯେ । ୭୮ । ସେ ବଧି ଶେଷେ ବିଜୟ ବାହାରେ କୁମର । ବନ୍ଧାଇଲା ବନ୍ଧୁ ଦେଲେ ମନ୍ଦିପୁତା କର ଯେ । ୭୯ । ତେତିକିବେଳରୁ ସେ କେମାର ସହଚରୀ । ଅରମ୍ଭିଲେ ସୁବେଶକୁ ବଗୁର ବଗୁର ଯେ । ୮୦ । କେତେ ସଖୀ ମଣ୍ଡି-ଗଲେ ମଧୁଶଯ୍ୟାପୁର । ଏହିକାଳ ଉତ୍ସବକୁ ଧାଇଁ ଶ୍ରୀରମର ଯେ । ୮୧ । କହେ କବି ଭଞ୍ଜବୀରବର ଦିବ୍ୟ ରସ । ଅହେ ରାମ ଅବଦ୍ଧେ ଏ ଗୀତ

---

୬୬ । ଦ୍ୱିଜସୁତ—ବ୍ରାହ୍ମଣ ପୁଅ, ମନ୍ମଥ—କନ୍ଦର୍ପ ।

୬୮ । କମ୍ବୁ—ଶଙ୍ଖ, ଅମ୍ବୁ—ଜଳ, କନ୍ୟାତାତ—କନ୍ୟାବାପ ।

୭୦ । ଯୁତ—ଏକତ୍ରିତ, ବ୍ୟାଜ—ଛଳନା, ସ୍ୱର୍ଣ୍ଣବରାଟକ—ସୁନାକଉଡ଼ି ।

୭୮ । ପଞ୍ଚବାଣବାସରୁ—କନ୍ଦର୍ପ ଶରଭୟରୁ ।

୮୨ । ଅବଦ୍ଧେ—ସହଜରେ ।

ଭର ଶେଷ ହେ । ୮୨ । ସୀତା ସହିତ ମୋ ଶତ୍ରୁ ନୋହିବ ଅନ୍ତର ।
ଏହି ଅଭୀଷ୍ଟକୁ କରିଅଛି ନିରନ୍ତର ହେ । ୮୩ ।



## ଏକତ୍ରିଂଶଚ୍ଛାନ୍ଦ ।

( ନବଦମ୍ପତିଙ୍କର ଚିନ୍ତା ଓ କେଳିପୁର ସଜାଇବା )

ରାଗ ଧନାଶ୍ରୀ ।

ଶୁଣ ସୁଜନେ କୁମାର ମାର ବଣେ ଦିବସ ନାଶକୁ ଭାବି । ଚତ୍ୱରେ ଯାଇ ହସ୍ତରେ ଗୃହେଁ ଯାଇ ଅସ୍ତ ହୋଇବାକୁ ରବି । ସେ ଖାବ । ମନେ ସ୍ତୁତି କରଇ ଅପାର ସେ । କେଉଁ ପ୍ରକାରେ ନୁହଇ ସ୍ଥିର ସେ । ତନୁ ପୁଲକ ଉଠଇ ତାର ଯେ । ୧ ।

ବୋଲଇ ହେ ମିତ୍ର ପଦକର ସାର୍ଥ ମୋଠାରେ ସୁଦୟା ବହି । ଯେନ ତୁମ୍ଭେ ମୁଁ ଦୀନମଣି ସ୍ୱଭାବେ ପୁଣି ତ ପଦ୍ମାସ୍ନେହୀ । ହେ ଦେବ । ସବୁକାଳେ ମିତ୍ରପଣ ଥିବ । ମୋତେ ଦିବସ୍ପତିପଦ ଦେବ । ଯେତେ-ବେଳେ ବନ୍ଧୁଭେଟ ହେବ । ୨ ।

---

୮୩ । ଅଭୀଷ୍ଟ—କଷ୍ଟ ।

ମିଥିଲେଶ ପୁରରେ ଚନ୍ଦ୍ରଭାନୁ ଅନ୍ୟ ଜାଗାରେ ରହିଲେ ବେଦ ନିୟ-ମରେ ବିବାହବିଧି ଆରମ୍ଭ ହେଲା । ପ୍ରତ୍ୟେକ ବିଧି ବିଧାନରେ ବିବାହ କାର୍ଯ୍ୟ ବଢିଲା ।



### ଏକତ୍ରିଂଶ ଛାନ୍ଦ ।

୧ । କୁମାର—ରାଜପୁତ୍ର, ମାର—କନ୍ଦର୍ପ, ଦିବସ—ଦିନ, ଚତ୍ୱର—ଅଗଣା, ରବି—ସୂର୍ଯ୍ୟ, ତନୁ—ଦେହ ।

୨ । କୁମାର କହିଲା—ମୋ ନା ଭାନୁ, ହେ ସୂର୍ଯ୍ୟ ତୁମ୍ଭ ନା ଭାନୁ ତୁହେଁ ମିତ୍ର—ସୁଦୟା କ ଦୟାବିହି, ତୁମ୍ଭେ ଦିନମଣି, ମୁଁ ଦୀନମଣି—କ ଦୁଃଖୀ ଶ୍ରେଷ୍ଠ, ତୁମକୁ ଦେଖିଲେ ପଦ୍ମଫୁଟେ ତୁମ୍ଭେ ପଦ୍ମଫୁଲ ସ୍ନେହୀ, ମୁଁ ମଧ ପଦ୍ମା କାଶିୟା ସ୍ତ୍ରୀ ଲାବଣ୍ୟବତୀରେ ସ୍ନେହୀ, ତୁମ୍ଭେ ଦିବସ୍ପତି କ ଦିନପତି, କ ଦୀନପତି—ମୋର ସ୍ତ୍ରୀ ମୋ ସଙ୍ଗେ ଭେଟ ହେଲେ ଦିବସ୍ପତି ଯେ ଇନ୍ଦ୍ର, ମୁଁ ଇନ୍ଦ୍ର ଭୋଗ କରିବି ।

ପୁଣି ବସୁରଇ ମୋର ଦୂତ ହୋଇ କେ ଅସନ୍ତି ଶୀତ ବେଳା । ଭାନୁ ଦିନସଙ୍ଗେ କ୍ଷୀଣକୁ ଭଜନ୍ତି ହୁଅନ୍ତି ଦୀର୍ଘ ରଜନୀ । ସେ ଏବେ । କମ୍ପ ଦିଅନ୍ତି ଚନ୍ଦ୍ର ମରୁତେ । ପଶି ଗବାକ୍ଷେ ବାଳାପଣନ୍ତେ ସେ । ଅଙ୍ଗ ଯୁବାଙ୍କ ତୋଷ ରତାନ୍ତେ ସେ । ୩ ।

ଧାତା ଦେଖାରେ ସୁରସଭାମଧ୍ୟରେ ହସିଲା ବାରରମଣୀ । ଯଥା ଦୁଷ୍ଟ-ଲୋକ ବୃଦ୍ଧ ହେଲେ କହେ ବାଳକେ ତାଅର ବାଣୀ । ସେ ତଥା । ଦିନେ ନିକ୍ଷେପିଲ ରତି କଥା ସେ । ପାସୋରିଲ କି ମଦନ ବ୍ୟଥା ସେ । ମାର ଶଖି ବୋଲାଇବା ବୃଥା ସେ । ୪ ।

ନବତରୁଣୀ କାମସିନ୍ଧୁ-ତରୁଣୀ ତରଣୀକି ଗୃହ୍ଣି ଭାବେ । ଫୁଲ କୋଦଣ୍ଡ ଦଣ୍ଡ ତ ନ ତୁଟିଲ କେତେ ଦଣ୍ଡ ପୂର୍ଣ୍ଣ ଥିବେ । ଏ ଭାନୁ । କେତେ ବେଦନା ସହିବ ତନୁ । ନ ତୁଟିବ ସନ୍ତାପକୃଶାନୁ । ପ୍ରେମରସ ସେଚନ ବହ୍ନିନୁ ସେ । ୫ ।

ଯେତେ ଫସାରୀ ଅଭିସାରୀ ତାହାଙ୍କ ନିଶ୍ୱାସ ବତାସ ହୋଇ । ଜଳଧି କୃତାଶେ ଜଳାଇ ତପନ ପକାଇଦିଅନ୍ତି ନେଇ । ସେ ତେବେ । ମନ ସନ୍ତୋଷ ହୁଅନ୍ତି ଭାବେ । ନିଶି ହୋଇଥାନ୍ତି ରାତ୍ରି ଦିବେ । ହୁଅନ୍ତି ଯେ ତନୁ ଭିନ୍ନ ଲବେ ସେ । ୬ ।

---

୩ । ଭାନୁ—ସୂର୍ଯ୍ୟ, ଦୀର୍ଘରଜନୀ—ବଡ଼ରାତି, ଚନ୍ଦ୍ରମରୁତ—ଶୀତଳପବନ, ଗବାକ୍ଷେ—ଝରକାରେ, ବାଳା—ସ୍ତ୍ରୀ, ପଣନ୍ତେ—କାନରେ, ରତାନ୍ତେ—ରତିଶେଷରେ ।

୪ । ସୁରସଭା—ଦେବସଭା, ବାରରମଣୀ—ବେଶ୍ୟା, ବ୍ରହ୍ମା ଦେବସଭା ଭିତରେ ଉର୍ବଶୀକି ହସିଥିଲେ, ଦିନେ—ଦିନରେ, ପାଶୋରିଲ—ଭୁଲିଗଲ, ବୃଥା—ଅକାରଣ ।

୫ । କାମସିନ୍ଧୁ—କାମସମୁଦ୍ର, ତରଣୀ—ନୌକା, ତରଣି—ସୂର୍ଯ୍ୟ, କୃଶାନୁ—ଅଗ୍ନି ।

୬ । ଅଭିସାରୀ—ଯେ ସ୍ତ୍ରୀ ପୁରୁଷ ସଙ୍କେତ ଦେଇଥିବା ସ୍ଥଳକୁ ଯାଏ, ବତାସ—ପ୍ରଳୟ ପବନ, ଜଳଧି—ସମୁଦ୍ର, କୃତାଶେ—ତେଜରେ, ଲବେ—କ୍ଷଣେ ।

ଅରତ ନିନାଦ ଛଳେ ତୋକନଦ ମଧ୍ୟେ ଏ ସମୟେ ରବ । ଅକାଶ ସର କୋକନଦ ପତ୍ନୀଙ୍କ ଧର ଜୋକନଦ ଛବ । ସେ ଖରେ । ଶୋଭା ହେଲେ ଚରମଭୂଧରେ । କାମ ଜଗତଜୟକାମରେ । ଜବା ଦେଲାକ ବାରୁଣୀଶିରେ ସେ । ୭ ।

ସ୍ତ୍ରିଗ୍ଧ ମୂରୁଷ ଅନୁରାଗୁଁ ଅଧିକ କେ ହେବ ମନରେ ଭାଳି । ଦ୍ୟୁମଣି ବଶାରେ କି ନଗ ଗୁଣିକ ଅଗ ପୁଂସରାଗ ଢ଼ଳି । ସେ ଢ଼ାଳି । ଦେଲା ତେଣୁ ଠାଇଁ ଦୀପାବଳୀ । ପୁଣ ବାଳୀଅନୁରାଗ ଢ଼ଳି । ସେ ତ ମଞ୍ଜିଷ୍ଠା-ରାଗରୁ ଝଳି ସେ । ୮ ।

ବାରୁଣୀ ତରୁଣୀ ସଙ୍ଗେ ଫଗୁ ଖେଳି ସିନ୍ଧୁମଜ୍ଜନକୁ ଗଲା । ସେହି ରାଗରଙ୍ଗ ଯୁଗଳେ ଜଗତେ ହୃଦରେ ପ୍ରକାଶ କଲା । ତା ଗୃହି । ନୃପନନ୍ଦନ ଅନନ୍ଦ ହୋଇ । ଗଣ୍ଡଦେଶ ଲୋମ ତୁଲ୍ୟାଇ । ଏହି ଭାବନାମାନ ଭରଇ ସେ । ୯ ।

ସଖୀ ବେଢ଼ି ଚନ୍ଦ୍ରମୁଖୀକି ମୋହନ ବେଶ କରୁଥିବେ ପର । ରସି-କାକୁ ବସେ ଅସିବାକୁ ପାଶେ କରିବନି ଚିତ୍ତ ଭୂର । ମୁଁ ଧନ୍ୟ । ଅଛି ଛୁଇଁବ ତା ଅପଘନ । ପୁଣି କହିବ ଗୃଢ଼ୁବଚନ । ଭଣେଷତ ଦେବ ଅଲିଙ୍ଗନ ସେ । ୧୦ ।

ତୁଚ୍ଛ ଜୀବ ରହିବାକୁ କେତେ ଦାନ କରିବ ପରାଣସଖୀ । ଚୁମ୍ବ ଅଲିଙ୍ଗନ ଓଷ୍ଠପାନଦାନ ବାସ ନ ପାରିବ ରଖି । ତା ଦେଖି । ମୁଁ ଯେ ହୋଇବି ପରମସୁଖୀ । ସେ ଯେ ଉତ୍ତରେ ଉତ୍ତର ଦେବ ଯୋଖି । ମନ ମନକୁ ହୋଇବ ସାକ୍ଷୀ । ୧୧ ।

---

୭ । ଅରତନନାଦ—ଦୁଃଖଶବ୍ଦ, କୋକ—ଚକୁଆ, କନଦମଧ୍ୟେ—କନ-ଉଦରେ, ଖରେ—ଆକାଶରେ, ତୀକ୍ଷ୍ଣରେ, ଚରମଭୂଧର—ଶେଷଗିରି ବା ଅସ୍ତଗିରି, ଜବା—ମନ୍ଦାରଫୁଲ, ବାରୁଣୀ—ପଶ୍ଚିମଦିଗ ।

୮ । ଦ୍ୟୁମଣି—ସୂର୍ଯ୍ୟ, ଏବଶା ପର ହେଲେ, ନଗ—ଆକାଶ, ଏଦେଲା ବଣିଆ, ପୁଂସରାଗ—ପୁରୁଷ ସ୍ନେହ, ମଞ୍ଜିଷ୍ଠା—ମଞ୍ଜୁଆତ, ରାଗ—ରକ୍ତବର୍ଣ୍ଣ ।

୯ । ଫଗୁ—ଅବିର, ସିନ୍ଧୁମଜ୍ଜନ—ସମୁଦ୍ରଗାଧୁଆ ।

୧୦ । ଅପଘନ—ଦେହ, ଶରୀର ।

ବାଳା ବଗ୍ରୁହର ପର୍ବାଣପତ୍ତିଙ୍କି କ କର ଦେବଛି ରତ୍ତ । ଦେଖିବେ ପଶ୍ର ମୋ ସ୍ତନ ଜଘନକୁ କ ହେଉଛୁ ଅଜସ୍ରତ । ସେ ଭାବ । ଦେବୀ-ମାନଙ୍କୁ ଭ୍ରପନ ଦେବ । ଜୀବ ଥିବାଯାକ ଥିବ ଯେବ । ଦୀପ ସେକାଳେ ଠିବଛି ଲବ ସେ । ୧୨ ।

ବଲଆଗଁ ବାସ ରଖି ନ ପାରବ ସ୍ୱଗ୍ରବେ ଅବଲା ମୃହିଁ । ଉଦ୍ଧତ କଥା ଏ ନବୀନସଙ୍ଗମେ କରବାର ନାହିଁ ନାହିଁ । ହେ ବଧୂ । କାନ୍ତେ ନ ହେବ ବଦାସ ବୁଦ୍ଧି; ସବୁ ରଚନା ତୁମ୍ଭର ସିଦ୍ଧି । ରସତନମନ ରସନିଧି । ୧୩ ।

ଯାମିନୀ ଘେନି ଅନ୍ତର ହେବା ଦୋଷ ଚନ୍ଦ୍ର ଛଡ଼ାଇବା ପାଇଁ । ତାଙ୍କୁ ମୂଦନୀ ପାଶକୁ ପ୍ରଦୋଷ-ଦୂତୀ ଅଗ ପଠିଆଇ । ସେ କାଳେ । ତାର ବଚନ ମନ୍ତ୍ରର ବଳେ । କେହୁ ହସିଲ୍ଲ ଫୁଲକ ଛଳେ । କେହୁ ହସିଲ୍ଲ ଦରମୁକୁଳେ । ୧୪ ।

ସେ ସମୟେ ଗୃହ ପାଞ୍ଚ ସହଚରୀ ବଗୃହ ମଣ୍ଡନ୍ତି ପୁର । ରସିକ-ବଧୂ ବଧୂ ମଧୁଶଯ୍ୟାକୁ ଯେ ହୋଇବ ମନୋହର । ସେ ଗୃହୁ । କର୍ମେ ବଶ୍ୱକର୍ମା ମଯ୍ୟୁ ଗୁହୁ । ଧନ୍ୟ ପୁଣ୍ୟଜନପତ୍ତ ପୁହୁଁ । ଦେଖି ନେବ ବଶ କବେ ଦୂହୁଁ । ୧୫ ।

ବାସ ବ ସବ ଦେଖିଲେ ଗଉତମ ଉତ୍ତମ ଭଲେ ଭାଷିବେ । ଲଙ୍କା ଲୋକମାନେ ପାତନ ହନୂମାନେ ମାନସରେ ପ୍ରଶଂସିବେ । ସେ ହର । ଚିତ୍ତୁଁ

---

୧୨ । ଭ୍ରପନ — ଭୋଗ, ସେବ — ପକ୍ଷ ।

୧୩ ନବୀନସଙ୍ଗମ — ନୂତନ ମିଳନ ।

୧୪ । ଯାମନୀ — ରାତ୍ର, ପ୍ରଦୋଷ — ସନ୍ଧ୍ୟା, ମୁକୁଳ — ଫୁଲକଢ଼ୀ ।

୧୫ । ରସିକବଧୂ — ରସିକଚନ୍ଦ୍ର ବା ରସିକ ଶ୍ରେଷ୍ଠ, ବଧୂ — ବୋହୂ ଲାବଣ୍ୟବତୀ, ବଶ୍ୱକର୍ମା — ଦେବଶିଳ୍ପୀ, ମଯ୍ୟୁ — ଅସୁରଶିଳ୍ପୀ, ଏମାନେ ମୂହୂର୍ତ୍ତକେ ଅତ୍ୟନ୍ତ ସୁନ୍ଦର ନଗର୍ବାଦ କରନ୍ତି ପୁଣ୍ୟଜନ ପତ୍ତ — କୁବେର, ପୁରୁ — ନଗରୁ, କୁବେରପୁର ଯେ ଅଳକା ।

୧୬ । ବାସବ — ଇନ୍ଦ୍ର, ଗଉତମ — ଗୌତମଋଷି, ଗୌତମଋଷିଙ୍କ ଶାପରେ ଇନ୍ଦ୍ରଙ୍କର ଦେହରେ ସହସ୍ର କ୍ଷତ ହୋଇଥିଲା — ତାହା ଆଖିପର ଦଶେ, ତେଣୁ ଇନ୍ଦ୍ର ଏ ବାସ କ ଘରକୁ ଦେଖିଲେ — ଗୌତମ କଳ୍ପପର ମନେ ମନେ କରବେ, ଲଙ୍କାଲୋକେ ଓ ହନୁ ଏ ପୁରକୁ ଦେଖି ଲଙ୍କାଠାରୁ

ନ ଗଲ୍ପ ଏ ମନୋହର । ଭ୍ରମେ ଶ୍ମଶାନେ ନ କର ଘର । ଗୃହିଁ ବଶ ନୋହିବ କେ ନର । ୧୬ ।

ସୁଧାଂଶୁ ପର ମୋତିସୁଧା ବସୁଧା ବିଶୁଦ୍ଧ ରଜତ ବାଡ଼ । ପ୍ରତି କୋଠିରେ କଳା ଚଉଷଠୀରେ ପ୍ରତିମାମାନ ନିବାଡ଼ । ସେ ସ୍ଥଳ । ଚନ୍ଦ୍ର-ଚୂଡ଼ ହୋଇବାକୁ ଭଲ । ଦିନାଲଭାରେ କରନ୍ତି ସ୍ଥଳ । ପ୍ରେତେ ବନେ କି କରନ୍ତି କେଳି । ୧୭ ।

ଶ୍ରମଧର୍ମ ଷୀଣେ ଦକ୍ଷିଣେ ଗବାକ୍ଷ ଅଗମ ପ୍ରାଣେ ରଞ୍ଜନ । ସ୍ତମ୍ଭ ଅରମ୍ଭ ରମ୍ଭୋରୁ ଉଭା ଶୋଭା କରେ ଗୃଳତ ବ୍ୟଜନ । ସେ ଗୃହ । ମହା ରମଣୀୟ ମଣିଜାଳ । ହୋଇଛନ୍ତି ଅତି ଜ୍ୟୋତିଶୀଳ । ପରେ ମନୋହର ହେମଡ଼ାଳ । ୧୮ ।

ଯହିଁ କାଚବାଡ଼ ଚତ୍ୱର ଲୋକେ ସତ୍ୱର ସଲିଲ ଭ୍ରମ । ବଇ-ଡୁର୍ଯ୍ୟ ଉଜ ପଙ୍କଜ ସ୍ଫଟିକ କୁମୁଦସ୍ଫୁଟରେ ରମ୍ୟ । ସେ ସେନ । ତହିଁ ହଂସ କରେ ବ୍ୟର୍ଥସ୍ନାନ । ମଧୁପାଳି ମିଳି କରେ ସ୍ୱନ । ବଶ ନ କରିବ କାହା ମନ । ୧୯ ।

---

ବେଶି ପସନ୍ଦ କରନ୍ତେ, ହର—ମହାଦେବ, କୃତ, ହର, ଏପୁର ଦେଖି ଶ୍ମଶାନ ଛାଡି ଏଠାରେ ବାସ କରିବାକୁ ବହିଲେ—

୧୭ । ସୁଧାଂଶୁ—ଚନ୍ଦ୍ର, ମୋତିସୁଧା—ମୋତିପୋଡ଼ା ଚୂନ, ବସୁଧା—ପୃଥିବୀ, ରଜତବାଡ଼—ରୂପାକାନ୍ଥ, କୋଠି—ଘର, ଚଉଷଠୀ ପ୍ରତିମା—ଚଉଷଠୀ ବନ୍ଧର ଛବି, ସେଥିରେ ମିଶାଇ ତା ଦିଆଯାଇ ଥିବାରୁ ଠିକ ବଣରେ ଲତାପର ଜଣା ଯାଉଛି,

୧୮ । ଶ୍ରମଧର୍ମ—ଶ୍ରମଝାଳ, ଷୀଣେ—ମରିବାକୁ, ଗବାକ୍ଷ—ଝରକା ପବନ ଆସିବାରୁ ଦକ୍ଷିଣ ପାଖରେ ଝରକା ଅଛି, ସ୍ତମ୍ଭ—ଖମ୍ବ, ରମ୍ଭୋରୁ—ସୁନ୍ଦରୀ ସ୍ତ୍ରୀ, ଖମ୍ବପର ସୁନ୍ଦରୀ ସ୍ତ୍ରୀ ମାନେ ଠିଆ ହୋଇ ବିଚଣା ପକାଉଛନ୍ତି, ରମଣୀୟ—ସୁନ୍ଦର, ମଣିଜାଲ—ରତ୍ନସବୁ; ଜ୍ୟୋତିଶୀଳ—ଉଜ୍ଜ୍ୱଳ ହେମଡାଳ—ସୁନା କଳଶ, ଗୃହରେ ସୁନା କଳଶ ଥୁଆ ହୋଇଛି—

୧୯ । କାଚବାଡ଼ଚତ୍ୱର—କାଚଢିଆର ଅଗଣା, ସଲିଲ—ଜଳ, ଉଜ—ପ୍ରସ୍ଫୁଟିତ, କୁମୁଦ—କଇଁ, ମଧୁପାଳି—ଭ୍ରମର, ଅଗଣା କାଚରେ ହୋଇଥିବାରୁ ତାକୁ ଜଳ ବୋଲି ମନେ ହେଉଛି, ବଇଡୁର୍ଯ୍ୟାଦିରତ୍ନ ତା ଉପରେ ପଦ୍ମ ଓ କଇଁ ପରି ସୁନ୍ଦର ଦେଖା ଯାଉଛନ୍ତି—ହଂସମାନେ ଭୁଲରେ ଗାଧୋଇବାକୁ ଆସିଲା ପରି ଜଣାଯାଏ—ସେଠାରେ ହଂସ ବୁଲୁଛନ୍ତି, ଲାବଣ୍ୟବତୀ ପଦ୍ମିନୀ ଥିବାରୁ ଭଅଁରମାନେ ପାଖେ ପାଖେ ଉଡୁଛନ୍ତି—ଏ ଶୋଭା ଦେଖିଲେ କାହାମନ ବଶ ନ ହେବ—


Digitized by srujanika@gmail.com

ଯହିଁ ନୀଳମଣି ସୋପାନର ମଣି ଗତ ସୁଖ ମଣି କେକୀ । ମଧୁର-ନାଦ ଆଳାପରେ ନାଚନ୍ତି କଳାପି-କଳାପ ଟେକି । ସେ ପୁରୀ । ମଣ୍ଡିମଣ୍ଡନାର ସହଚରୀ । କଲେ ମଣ୍ଡନ ଯେମନ୍ତ କର । କିଛି କହିବା ତହିଁ ମାଧୁରୀ । ୨୦ ।

ନନ୍ଦନନ୍ଦନସୁନ୍ଦର ଭାନୁଜାକୁ ଭାନୁଜାତଟରେ ଗୃହି । ଜନକଳା-ଙ୍ଗୀ ଜନକସୁତାକୁ ରାମଚନ୍ଦ୍ର ଗୃହିଅଛି । ସେ ସ୍ୱଚ୍ଛ । ଶିବ ଗୋଡ଼ାଇ ମୋହିନୀପଛ । ଇନ୍ଦ୍ର ସୂର୍ଯ୍ୟ ଧୈର୍ଯ୍ୟ କରେ ତୁଚ୍ଛ । ମାୟୂନାରୀ ରୂପରେ ଶ୍ରୀବତ୍ସ । ୨୧ ।

କଳତ୍ର ସଙ୍ଗରେ କୁବେର ବିହାର ବାନରୀ ସଙ୍ଗରେ ବାତ । ଶୋଭାଧନ୍ୟା ମେନା ମୀନାକ୍ଷୀକ ଗୃହି ବଶ୍ୱାମିତ୍ର ତପ ହତ । ଏ ବିଧି । ଶବ୍ଦମାନ ଦେଖାଇଅଛି ସିଦ୍ଧି । ଅଣ୍ଡି ଛିଟ ଯବନିକା ବାନ୍ଧି । କଲେ ପ୍ରାଙ୍ଗଣ-ଶୋଭାକୁ ବୃଦ୍ଧି । ୨୨ ।

---

୨୦ । ସୋପାନ—ପାହାଚ, କେକୀ—ମୟୂର, କଲପସମୂହ—ପୁଚ୍ଛସବୁ, ଆଳାପ—ଖେଳ, ମଣ୍ଡିମଣ୍ଡନା—ଅତିସୁନ୍ଦରୀ, ସେଠାରେ ନୀଳ ମଣିର ପାହାଚ ମେଘପରି ଦେଖା ଯିବାରୁ ମୟୂରମାନେ ପୁଚ୍ଛଟେକି ନାଚୁଛନ୍ତି—

୨୧ । ନନ୍ଦନନ୍ଦନ—ଶ୍ରୀକୃଷ୍ଣ, ଭାନୁଜା ତଟରେ—ଯମୁନା କୂଳରେ, ଭାନୁଜା—ରାଧା, ଜନକଳାଙ୍ଗୀ—କୋମଳାଙ୍ଗୀ, ଜନକସୁତା—ସୀତା, ସ୍ୱଚ୍ଛ—ପରିଷ୍କାର, ଶିବ—ମହାଦେବ, ମାୟୂନାରୀ—କପଟ ସ୍ତ୍ରୀ—

ସେ ଘର କାନ୍ଥରେ ଏହିସବୁ ଚିତ୍ର ଲେଖା ଯାଇଛି ଶ୍ରୀକୃଷ୍ଣ ଯମୁନା କୂଳରେ ରାଧା ଗୋଡ଼ ଧରୁଛନ୍ତି—ରାମଚନ୍ଦ୍ର ସୀତାଙ୍କୁ ଗୃହି କରୁଛନ୍ତି ଶିବ ସୁଧା ବଣ୍ଟନ ବେଳେ ବିଷ୍ଣୁଙ୍କ ମୋହିନୀ ରୂପରେ ଭୋଳ ହୋଇ ଗୋଡାଉଛନ୍ତି—

୨୨ । ଶୋଭାଧନ୍ୟା—ଅତିସୁନ୍ଦରୀ, ଛିଟ ଯବନିକା—ଛିଟ ପରଦା, ପ୍ରାଙ୍ଗଣ—ଦୁଆର—

ପୁଣି, କୁବେର ପର୍ବତରେ ବିନାଶୀ ସଙ୍ଗେ ରମଣ କରିବା, ହନୁମାନ ମାତା ଅଞ୍ଜନା ବାନରୀ ସଙ୍ଗେ ପବନ ମାତିବା, ବିଶ୍ୱାମିତ୍ର ମେନକାକୁ ଦେଖି ତପସ୍ତପ ତା ସହିତ ମାତିବା, ଇତ୍ୟାଦି ଚିତ୍ର ହୋଇଛି—ସେଠାରେ ଛିଟ ପରଦା ମଧ ଟଣା ଯାଇଛି—

ଚିତ୍ର ମୋହିତ ଲୋହିତ ପୀତ ଶୀତ ବାସେ ଚେଲଙ୍ଗୀପଣ୍ଡାଣୀ । ଉତ୍ତମ ଢକ ଗୁମର ଖଦିଫୁଲ ମାଳିକା ଖଞ୍ଜିଲେ ପୁଣ । ସେ ଗୁଣି । ଯାହା ପାଶକୁ ଯେ ଶୋଭା ଜାଣି । ଗୁନ୍ଦ ଦର୍ପଣ ଖଞ୍ଜିଲେ ଅଣି । ଯଥା ଅର୍ଦ୍ଧେନ୍ଦୁ ତାରକା ଶ୍ରେଣୀ । ୨୩ ।

ହରିବାରଣୀଖ୍ୟାତଲେ ସେ ହୀର ହୀରବାରଣକୁ ଥୋଇ । ଯତନ ରତନପଲ୍ୟଙ୍କ ଅଙ୍କରେ କୋମଳ ଶେଯ ଶେଯାଇ । ସେ ଅଳୀ । ବିଶେଷିତ ଶଙ୍କା ଏହା ଭାଳି । ନାଗେଶ୍ୱରକେଶରେ ମୃଚୁଳୀ । ଦେଇ ସିଞ୍ଚିଲେ କର୍ପୂରଧୂଳି । ୨୪ ।

ମୁକ୍ତାଝାଲର ମଣ୍ଡିତ ମୁକୁରବିତାନ ବାନ୍ଧୁ କେ ଛଳ । ବାଳୀ ଭାଳିଲେ ଅଳୀ ପର ପୁରୁଷ ଥାଇଛି ମନରେ ଭାଳି । ସେ କହୁ । ସାଙ୍ଗ-ପଲ୍ୟଙ୍କ ଚୁମ୍ବରେ ଶୋହୁ । ଶିଖୀଚନ୍ଦ୍ରକ ବିଅଣା ନାହୁଁ । ତାହା ପକାଇ-ଥିବା ଗୋ ତହିଁ । ୨୫ ।

ସେବତୀଦଳ ବିଞ୍ଚି ସିଞ୍ଚି ଅତରେ ଶେଯାଇଲେ ହିନବାସ । ଏହି ବିଧାନରେ ଅବନିଶଯ୍ୟାକୁ ବିରଚନ କଲେ ବେଶ । ସେ ନାରୀ । ବାରିପୂର୍ଣ୍ଣ କରି ଭାଟଙ୍ଗୀ । ନାନାଜାତି କୁସୁମକୁ ଭରି । ଥୋଇଗଲେ ସନ୍ନିକଟ କରି । ୨୬ ।

କୁନ୍ଦନପାତ୍ରରେ ଚନ୍ଦନ କର୍ପୂର ଅତର ପନିର ଚୁଆ । ଲବଙ୍ଗ ଖଦିର ପୂଗଚୂର୍ଣ୍ଣ ପୂର୍ଣ୍ଣ ଭଙ୍ଗାପାନ ପାଶେ ଥୁଆ । ସେ ଦୀପ । ଜାଲିପଞ୍ଜରି ମଧ୍ୟରେ ଗୋପ୍ୟ । ରଖି ଗଲେ ସେ ଭିତ୍ତିସମୀପ । ବାଳା ହରଷକୁ ଅନୁରୂପ । ୨୭ ।

---

୨୩ । ଲୋହିତ—ଲାଲ, ଶୀତ—ଧଳା, ପୀତ—ହଳଦିଆ, ଅର୍ଦ୍ଧେନ୍ଦୁ—ଅଧା-ଚନ୍ଦ୍ର, ତାରକାଶ୍ରେଣୀ—ତାରାସବୁ—

୨୪ । ହରି—ସିଂହ, ବାରଣ—ହାତୀ, ହୀର—ହୀରକ, ହୀର—ଓଠ, ଶଙ୍କା—ଭୟ, ନାଗେଶ୍ୱର କେଶର—ନାଗେଶ୍ୱର ଫୁଲକେଶର, ମୃଚଳା—ଚକଥ,

୨୫ । ମୁକୁର ବିତାନ—ଦର୍ପଣ ଚାନ୍ଦୁଆ, ଶିଖୀଚନ୍ଦ୍ରକ—ମୟୂର ପଖା,

୨୬ । ଅବନିଶଯ୍ୟା—ତଳ, ବାରି—ଜଳ,

୨୭ । କୁନ୍ଦନପାତ୍ର—ସୁନାପାତ୍ର, ଖଦିର—ଖଇର, ପୂଗ—ଗୁଆ, ଭିତ୍ତିସମୀପ—କାନ୍ଥ ପାଖରେ,

ସ୍ତୁହ୍ୱ କପୋତ ପଢ଼ା ସାସ୍ୱଙ୍ଗତ ଭର ପଞ୍ଜରାକ ନେଲେ । ରଜନୀ ଥିବା ଯିବାର ଜାଣିବାକୁ ପୂରପାଶେ ଲମ୍ବାଇଲେ । ସେ ପ୍ରତି । ସୀତାପତ ରଘୁବଂଶମଣି । ଦବ୍ୟ କାର୍ମୁକସାୟୁକପାଣି । ଉପଇନ୍ଦ୍ର ବୀର-ବର ଭର୍ତି । ୨୮ ।



## ଦ୍ୱାବିଂଶଛାନ୍ଦ ।

( ସଖୀମାନଙ୍କର ଲାବଣ୍ୟବତୀକୁ ବେଶ କରିବା ଓ

କାନ୍ତ ନିକଟକୁ ନେବା )

ରାଗ ମାଳବ ।

ରସିକ ଚାତକ ସୁଖ ଘନରସଦାୟୀ । ଏ ଛାନ୍ଦକୁ ଶୁଣିମା ସୁଜନେ ମନ ଦେଇ ଯେ । ୧ । କାନ୍ତା କାନ୍ତ ପ୍ରମୋଦ ସଜନୀରୂପେ ଅସି । ଜଗତକୁ ଅଚ୍ଛାଦ ରଜନୀ ପରକାଶି ଯେ । ୨ । ପିକ ନାଦେ କହୁଲ୍ଲ କନ୍ଦର୍ପ ଅନୁକୂଳ । କଲ୍ଲ ତରୁଣ ଦମ୍ପତ ବେଗେ ହୁଅ ମେଳ ଯେ । ୩ ।

---

୨୮ । ସ୍ତୁହ୍ୱକପୋତ—ପାରା, ପଢ଼ାସାସ୍ୱ ସଙ୍ଗତ—ପଢିଲ୍ଲ ସାସ୍ୱ ମାନଙ୍କୁ, କାର୍ମୁକ—ଧନୁ, ଶାୟୁକ—ଶର, ପାଣି—ହାତ,

କୁମାର—ଉପର ରାତ ହେବ ଭାବିବାକୁ ଲାଗିଲ୍ଲ ସଖିମାନେ ହୀରାଲୀଲା ପାନଆ ଅତର ଫୁଲ ଚନ୍ଦନ ପାନ ଦ୍ୱୀପ ଜର ବଛଣା ବଏ ବଠଏ ସ୍ତୁହରେ ଖଟ ଉପରେ ସଜାଇ ରଖିଲେ ଯାହାକ ଇନ୍ଦ୍ର ଭୁବନ ବା ଅଲକା ପୁର ଠାରୁ ସୁନ୍ଦର ଦେଖାଗଲ୍ଲ ।



## ଦ୍ୱାତ୍ରିଂଶ ଛାନ୍ଦ ।

। ଘନରସ—ବର୍ଷା, ଚାତକ ପକ୍ଷୀକ ଯେପର ବର୍ଷାଜଳ ସୁଖଲାଗେ । ରସିକ ମାନଙ୍କୁ ଏ ଛନ୍ଦ ସେହିପର ସୁଖଦେବ ।

୨ । ଜଗତ—ସଂସାର, ଅଚ୍ଛଦ—ଢ଼ାଙ୍କି, ରାତ ହେବାରୁ ସ୍ତ୍ରୀ ପୁରୁଷର ଆମୋଦ ଯେ ସଜନୀ ରୂପରେ ଅସିଲ୍ଲ ।

୩ । ପିକ—କୋଇଲି, ନାଦ—ଶବ୍ଦ ।

ଏ ସମୟେ ଉଦୟ ହୋଇଲେ ସୁଧାକର । କରଣରେ ପ୍ରତିଦଣ ଦଶିଲ ସୁନ୍ଦର ଯେ । ୪ । ତ୍ରିଯାମା ଅଲିଙ୍ଗନରୁ ଏହି ଅନୁମାନ । କଲାଦେହେଁ ଯେମନ୍ତ ଚନ୍ଦନ ବିଲେପନ ଯେ । ୫ । କାଚଭିତ୍ତି ସ୍ଫଟିକସୋପାନ ବସ୍ଥା-ଧରେ । କ୍ଷୀରାର୍ଣ୍ଣବ ମିଶିଲା କି ଭାନୁସୁତାନୀରେ ଯେ । ୬ । ରବି ତାପ ଶାନ୍ତି ଅର୍ଥେ କବା ପରମେଷ୍ଠୀ । ଘନସାର ଚୂର୍ଣ୍ଣରେ ପୂରିତ କଲା ସୃଷ୍ଟି ଯେ । ୭ । ଖଣ୍ଡପରଶୁ ଭୂଷଣ ଖଣ୍ଡପର୍ଶୁଧର । ସୁଧାରେ ଧବଳଦେଲା କି ବସୁଧାପୁର ଯେ । ୮ । ପ୍ରଦୋଷସଙ୍ଗ ଯେ କ୍ଷଣଦାର ହୋଇଥିଲା । ଏଣୁ କି ତ୍ରିପଥା ଗଙ୍ଗାଜଳେ ସ୍ନାନ କଲା ଯେ । ୯ । ଗ୍ରାବରଥପଦ କି ବିଶ୍ୱ-ଜୟ ପାଇଁ । ଚନ୍ଦ୍ରବ୍ୟାଜେ ମନସିଜ ଫିଙ୍ଗିଛି ବୁଲାଇ ଯେ । ୧୦ । ପୂର୍ବରୁ ତ ପାରାବାରୁ ଦେଇଅଛି ପାଣି । ଅନାଇଁ ବିଯୋଗୀ କଲେ ମଲାଇଁ ଭାଲେଣି ଯେ । ୧୧ । ଦେଖି ପ୍ରାଚୀ-ନିଷାଦ ଉଦ୍ବିଗ୍ନ ବ୍ୟଭିଚାର । ଛଡ଼ାଇ ନେଇଛି ଏକ ତାଟଙ୍କ କି ତାର ଯେ । ୧୨ । ମୋତିନିର୍ମିତ ମର୍କତନାୟକ ବରାଜ । କଲଙ୍କ ବୋଲେ ଯେ ଏହା ନ ପାରଇ ହେଜ

୪ । ସୁଧାକର—ଚନ୍ଦ୍ର, ପ୍ରତିଦଣ୍ଡ—ପ୍ରତ୍ୟେକ ଦଣ୍ଡ,

୫ । ତ୍ରିଯାମା—ରାତ୍ରି,

୬ । କାଚଭିତ୍ତି—କାଚକାନ୍ଥ, ସୋପାନ—ପାହାଚ, କ୍ଷୀରାର୍ଣ୍ଣବ—କ୍ଷୀରସମୁଦ୍ର, ଭାନୁସୁତା—ଯମୁନା, କାଚବାଡ଼ ପାଖରେ ସ୍ଫଟିକର ପାହାଚ ଥିଲା ତାହା କ୍ଷୀର ସମୁଦ୍ର ଯମୁନା ସଙ୍ଗେ ମିଳିଲା ପରି ଜଣାଗଲା ।

୭ । ରବିତାପ—ସୂର୍ଯ୍ୟତେଜ ଖରା, ପରମେଷ୍ଠୀ—ବିଧାତା ଘନସାର—କର୍ପୂର,

୮ । ଖଣ୍ଡ ପରଶୁ ଭୂଷଣ—ମହାଦେବ, ଖଣ୍ଡ ପରଶୁଧର—ରାଜମିସ୍ତ୍ରୀ, ବସୁଧା-ପୁର—ପୃଥିବୀ ରୂପକ ଘର, ସୁଧାରେ—ଚୂନରେ, ଅମୃତରେ ।

୯ । ପ୍ରଦୋଷ—ସନ୍ଧ୍ୟା, କ୍ଷଣଦା—ରାତି, ତ୍ରିପଥା—ତିନ ବାଟରେ ଯାଇଥିବା ସ୍ୱର୍ଗମର୍ତ୍ତ୍ୟ ପାତାଳ ।

୧୦ । ରଥପଦ—ଚକ୍ର, ବିଶ୍ୱଜୟ—ପୃଥିବୀକୁ ଜୟ କରିବା, ଚନ୍ଦ୍ରବ୍ୟାଜେ—ଚନ୍ଦ୍ରଛଳରେ, ମନସିଜ—କନ୍ଦର୍ପ,

୧୧ । ପାରାବାର—ସମୁଦ୍ର, ଚନ୍ଦ୍ରତ ସମୁଦ୍ରରୁ ଜନ୍ମ ।

୧୨ । ନିଷାଦ—ଶବର, ଡ଼ଗର, ତାଟଙ୍କ—କାନଫୁଲ,ପଦ୍ମରେ ସୂର୍ଯ୍ୟ ଓ ଭ୍ରମର ଦୃଷ୍ଟିର ପ୍ରୀତି, ତେଣୁ ପଦ୍ମ ଭୁଲଟା ।

୧୩ । ସେ ତାଟଙ୍କ—ମୋତି ନିର୍ମିତ ବ ମୋ ତିଅର ମର୍କତ ନାୟକ—ତା ମଧ୍ୟରେ ଶ୍ରେଷ୍ଠ ମର୍କତ ଦିଆଯାଇଛି, ଏହା ନବୁଝି ଚନ୍ଦ୍ର କେଲଙ୍କ ଏହା ଭୁଲରେ କହନ୍ତି ।

ସେ । ୧୩ । ଗଗନ କାନନେ ଅଙ୍କୁରଇଅଛି ଧାତା । ରଜତଆଲବାଲରେ କି ତମାଲଲତା ଯେ । ୧୪ । ପୁଣି ନିର୍ମଳ ତାରକା ଯେନି ସେ ଗଗନ । ପ୍ରଫୁଲ୍ଲି ମଲ୍ଲିବାଟୀ ପରାୟେ ରଞ୍ଜନ ଯେ । ୧୫ । ଯାମିନୀ-ନବକାମିନୀ ମୁଖ କଳାକର । ଗୃଢ଼ ଲୋଚନରେ ଚାହିଁଅଛି ମନୋହର ଯେ । ୧୬ । ଲୋକେ ପାରଦ ଗର୍ଭକୁ ଉଜ୍ଜ୍ୱଳ ଧଇଲା । ନଭେ ବଢ଼ି ହୋଇ କି ତାରକା ବୋଲାଇଲା ଯେ । ୧୭ । ନିଶ୍ଚେ ଜାଣିଲି ପୁଷ୍କର ଆକାଶମଣ୍ଡଳ । କି ଜଳପୃଷତନ୍ତ୍ରୀମାନ ପଡ଼ି ଢଳଢଳ ଯେ । ୧୮ । ବିଶଦ କେଶରେ ପୁଣି ବିଭ୍ରାଜମାନ ସେ । ମତ୍ତମଧୁବ୍ରତ ଉହିଁ ଚୁମ୍ବେ ଲୋଭବଶେ ଯେ । ୧୯ । ନିଶାରେ ପ୍ରକଟ ବୋଲି ପ୍ରସାର ହୋଇଛି । ରାତ୍ରିକାଳ ବୋଲି କି ହୃଦରେ ଦେଖାଉଛି ଯେ । ୨୦ । ତାରାକୁଳ ଛଳେ ଯୁବାଜନ ଯୂଥ ବଢ଼ି । ଜାଣିଲି ମାର ଚନ୍ଦ୍ରର ସୁମିତ୍ରତା ଅଛି ଯେ । ୨୧ । ଉଦ୍ଦୀପନ କାରକ ଗୃନ୍ଦମାନି ଦେଖି । କଲେ ବେଶ ଜେମାକୁ ଚତୁରୀ ପ୍ରାଣସଖୀ ଯେ । ୨୨ । କେଶ

---

୧୪ । ଗଗନ କାନନେ—ଆକାଶ ବଣରେ, ଅଙ୍କୁରଇଛି—ଲଗାଇଛି, ରଜତ ଆଲବାଲ—ରୂପା ମନ୍ଦାରରେ ତମାଲ ଲତା ଲଗାଇଛି ।

୧୫ । ନିର୍ମଳତାରକା—ପରିଷ୍କାର ତାରାସବୁ, ପ୍ରଫୁଲ୍ଲିତ ମଲ୍ଲୀ ବାଟୀ—ଫୁଟିଲା ମଲ୍ଲୀଫୁଲ ବଗିଚା ଆକାଶରେ ତାରା ପଡ଼ି ଥିବାରୁ ଯେପରି ଫୁଲ ବଗିଚା ପରି ଦେଖାଯାଉଛି ।

୧୬ । ଯାମିନୀ ନବକାମିନୀ—ରାତି ରୂପକ ନୂଆସ୍ତ୍ରୀ, କଳାକର—ଚନ୍ଦ୍ର,

୧୭ । ପାରଦ – ପାରା, ପାରାଖଣିରେ ଥାଏ ତାହା ସ୍ତ୍ରୀ ମୁହଁ ଦେଖି ଉଜ୍ଜ୍ୱଳ ଅସେ ସେ ପାରା ଆକାଶରେ ବୁଣିହୋଇ କଣ ତାରା ବୋଲାଇଛି ।

୧୮ । ବୁଝିଛି ଆକାଶ ମଣ୍ଡଳ ହେଲାପଦ୍ମ—ତା ପାଖରେ ଜଳବିନ୍ଦୁ ଢଳଢଳ ହେଉଅଛି ।

୧୯ । ବିଶଦ କେଶରେ—ବିଶେଷ ରୂପେ କେଶରଖି, ବିରାଜମାନ—ବିଦ୍ୟମାନ ମତ୍ତମଧୁବ୍ରତ—କାମାନ୍ଧ ଭ୍ରମର ।

୨୦ । ପଦ୍ମ ବନରେ ପଟେ—ମାତ୍ର ଏହା ରାତିରେ ଫୁଟିକରି ପ୍ରକାଶ ହୋଇଛି ବୋଲି ରାତି ସମୟ ବୋଲି ମନରେ ଜାଗ୍ରତ କରୁଛି ।

୨୧ । ମାର—କନ୍ଦର୍ପ ଓ ଚନ୍ଦ୍ରର ମିତ୍ରତା ଅଛି, ତେଣୁ ତାରାମାନେ ରାତିରେ ଉଜ୍ଜ୍ୱଳ ଭାବରେ ପଡ଼ି ଯୁବାଦମ୍ପ କରିବାକୁ କ୍ଷୋଭବିସ୍ତାର କରୁଛନ୍ତି ।

୨୨ । ଗୃନ୍ଦମାନି—ଉତ୍ସବ, ଉଦ୍ଦୀପନ କାରକ—କାମଭାବ ଜାଗ୍ରତ କାରକ ଜାଣି ଚତୁରୀ ସଖୀମାନେ ଜେମାକୁ ବେଶକଲେ ।

ବାଳ୍କୁ ପଗୁରଲେ ରମଣୀମଣିକ । ସଜାଡବା ଜୁଡ଼ା କବା ତାହବା ବେଣୀକ ଯେ । ୨୩ । ନାସିକାରେ ମୋଡ ଦେଇ ଚେତାଇଲ୍ସ ତାଙ୍କୁ । ଏ ନାଚ ଅରମ୍ଭ କରେ କଙ୍କିଣୀ ବାଦ୍ୟକୁ ଯେ । ୨୪ । ଭଙ୍ଗି କଲେ ସଙ୍ଗିଣୀ ମଣ୍ଡିବାବେଳେ ହାର । ଅଛୁ କ ନାହିଁ ଗୋ ଏଥି ସ୍ନେହ ପୂର୍ବ ପର ଗୋ । କସ୍ତୁରୀଗୋଳୁଁ ସଜଣୀ ଅବମ୍ବିଲେ ଛଳ । ତରଳ-ଚନ୍ଦ୍ରକୁ ପର ନ ସହିବ କାଳ ଯେ । ୨୬ । ଅଞ୍ଜନରଞ୍ଜୁ ନୟନେ ବୋଇଲ୍ସ ଏ କେତେ । ଏ ଶର ବଣାଇବାକୁ ଯୁବା ଧୈର୍ଯ୍ୟ କେତେ ଯେ । ୨୭ । ଅତୁଲ୍ୟ ଦନ୍ତକ ମଣ୍ଡି ବୋଲନ୍ତି ବଗୁର । ଭେଟୁଁ କର ଗ୍ରହଣ ଯେ କରବ କୁମର ଗୋ । ୨୮ । ସ୍ୱବେଶ ସମ୍ପୂର୍ଣ୍ଣ ହେବାଯାଏ ଠାବେ ଠାବେ । ଯେତେ ଚହୁବା ଚହୁଲେ ଯେତେ ହାସଲ୍ଭବେ ଯେ । ୨୯ । ଦର୍ପଣ ଦେଖାଇ ସଖୀଗଣେ ପ୍ରଶଂସଇ । ଏ ବେଶକୁ ସୁନ୍ଦରୀ ଉତ୍ତମଙ୍କାନ୍ତ ପାଇ ଯେ । ୩୦ । ମଣ୍ଡିଲ୍ସ ପରସ୍ପେ କାମ କନକପରଶ୍ୱ । ରାସ ପିନ୍ଧାଇବାକୁ ତାହାଙ୍କୁ କଲେ ତଶ୍ୱ

---

୨୩ । କେଶ – ବାଳ ବାନ୍ଧିବା ବେଳେ ଲାବଣ୍ୟବତୀକ ପଗୁରଲେ ଜୁଡ଼ା କରବା କ ବେଣୀ ପାରବା ।

୨୪ । ନାସିକା—ନାକ, ନାକରେ ମୋଡ ଦେବାରୁ ସେ ଭାବଲ୍ସ, ମନେହେଲ୍ସ ପାଦର କଙ୍କିଣୀ ନାଦରେ ତାହାର ଏପର ନୃତ୍ୟହେଲ୍ସ ନାକ ଫୁଲାଇ ବାରୁ ତା ନାଚଲ୍ସ ପର ଜଣାଗଲ୍ସ ।

୨୫ । ହାର—ହାର, ସଖିମାନେ ହାର ପିନ୍ଧାଇଲ୍ସ ବେଳେ ଛଳନା କର କହଲେ ଆଉ ଏ ହାରରେ ଶ୍ରଦ୍ଧା ଅଛୁଚ ତୁମ୍ଭେତ ବଡ଼ ସୁନାହାର ପାଇଛ ।

୨୬ । ସଖିମାନେ କସ୍ତୁରୀକ ଗୋଳ କର ବୋଳଦେବା ସମୟରେ କହଲେ— ସୁନ୍ଦର ବକ୍ଷକୁ ଚନ୍ଦ କଲେ କାଳ ସହବଟିକ ?

୨୭ । କୌଣସି ସଖି ଅଖିରେ କଳା ଦେବାବେଳେ କହଲ୍ସ, କେଉଁ ଯୁବା ପୁରୁଷ ଏ ଶର ଘାତକୁ ସହ ପାରବ ?

୨୮ । ହାତରେ ଖଡ଼ୁ ଓ ମୁଦ ପିନ୍ଧାଇ ଦେଲ୍ସବେଳେ କହଲେ, ତୋତେ ଦେଖିଲ୍ସକ୍ଷଣି ତୋର ସ୍ୱାମୀ ଏ ହାତକୁ ଧରବେ ।

୨୯ । ଏହିପର ବେଶ କରବା ସମୟରେ ସଖିମାନେ ଯେତେ ଛଳନା ପୂର୍ଣ୍ଣ କଥା କହଲେ ତାହା ବା କ'ଣ ବର୍ଣ୍ଣନା କରବ ?

୩୦ । ଅରସି ଦେଖାଇ ସଖିମାନେ ପ୍ରଶଂସା କଲେ ଏ ବେଶକୁ ଉପଯୁକ୍ତ ସ୍ୱାମୀ ହେଲେ ହେଲ ।

୩୧ । କନ୍ଦର୍ପ ରୂପକ ସୁନାର ପ୍ରଭା ମଣ୍ଡିଲ୍ସପର ସଖିମାନେ ଲାବଣ୍ୟବତୀଙ୍କ ଲୁଗା ପିନ୍ଧାଇବାକୁ ଠିଆକଲେ ।

ଯେ । ୩୧ । ନବଢ଼େ ନାବୀ ନବାଙ୍କୁ ଉଜ ରଦନଙ୍କୁ । ଅଳୀ ପୃଚ୍ଛେ ଏଢ଼େ
ଚୋପ ପରି ମଦନଙ୍କୁ ଗୋ । ୩୨ । ଯେଡ଼େ ଦୃଢ ଚୀର କଲେ ପାରଇ
କି ରକ୍ଷି । ବୃଦ୍ଧିସବଢଙ୍କୁ ବାଲ୍ୟବନ୍ଧ ନିଜ ସଖି ଗୋ ।୩୩। ତେଢେଢେବେଳେ
ଛଅର କହୁଛୁ କେଉଁସଖୀ । ଦେହଳି ବଳି ଚଳିବା ସମୟରେ ତହିଁ
ଗୋ । ୩୪ । ନାଥ ହାତ ଧରି ଗୃହକୁ ନେବେ ତୋତେ । ମଥା ଟେକି
କଥା ନ କହିବୁ ବଦାଣତେ ଗୋ । ୩୫ । କୋଳେ ଧରୁଁ ଶେଯେ ଖସି
ବସୁଥିବୁ ବାଳା । ସ୍ୱୀକାର କରିବୁ ଖେଳାଇ କୋଣେ ଡ଼ୋଳା ଗୋ ।୩୬।
କେ ବୋଲଇ ଅବଳା କୋମଳା ବୋଲି ତୁହି । ନୋହିବୁ କାତର କାନ୍ତ-
ବଳବନ୍ତ ଗୃହିଁ ଗୋ । ୩୭ । ପ୍ରଚଣ୍ଡ କିରଣେ ରବି ତୋଷଇ ନଳିନ ।
ଅଳି କେଳିରେ ନୁହଇ ଶିରୀଷ ମଳିନ ଯେ । ୩୮ । ଏଢାଲେ କେଳି-
ମନ୍ଦିରେ ବିଜୟ ନାଗର । ଦେଖିଲେ ସେ ଶୋଭା ମହାଉଦ୍ଦୀପନକର ଯେ ।୩୯
ବସୁରଇ ଏକ୍ଷଣି ଅଣିବ ସୁଲକ୍ଷଣୀ । ନାହିଁ ତାର ଗୃହକୁ ଗୃରୁଷା ହୋଇ

---

୩୨ । ନବଢ଼େ—ଗାଢ଼ରେ, ନବାଙ୍କୁ—ପିକ୍ୱ, ରଦନ—ଦାନ୍ତ, ଦାନ୍ତଙ୍କୁ ଉଡ଼
ଭଲ କରି ନବ ଉଡ଼ନ୍ତେ ସଖିମାନେ କହିଲେ, ମଦନ ଏଢ଼େ ଗ୍ରାହ-ପରି ।

୩୩ । ଯେତେ ଟାଣଲୁଗା ପିନ୍ଧିଲେ ସେ କି ରହିବ । ବୃଦ୍ଧିର ଖାତ ନଇବଟିରେ
ବାଲବନ୍ଧ କି ସମ୍ଭାଳ ହେବ ।

୩୪ । ୩୫ । ଦେହଳି—ଦୁଆର ବନ୍ଧ, ବଳି—ଡେଁପି ଯିବା ସମୟରେ କେଉଁ
ସଖି କହେ, ସ୍ୱାମୀ ତୋର ହାତ ଧରି ଗୃହକୁ ନେଇ ମିଠା କଥା କହି
ତୋତେ ନେବେ, ତୁ ମୁଣ୍ଡ ଟେକି ତାଙ୍କୁ କଥା କହିବୁ ନାହିଁ ।

୩୬ । କୋଳରେ ଧରିଲାବେଳେ ଖସି ପଡୁଥିବୁ, ଆଖିଡୋଳା ଖେଳାଇ ସ୍ୱୀକାର
ବା ଅସ୍ୱୀକାର ଜଣାଇବୁ ।

୩୭ । ତୁ ସରଳା ଓ କୋମଳାଙ୍ଗୀ ସ୍ତ୍ରୀ ବୋଲି ସ୍ୱାମୀର ବଳୁଆ ପଣକୁ ଦେଖି
ଡରିବୁ ନାହିଁ ।

୩୮ । ସୂର୍ଯ୍ୟର କିରଣ ପ୍ରଖର ହେଲେ ମଧ୍ୟ ପଦ୍ମକୁ ତୋଷ କରେ । ଭ୍ରମର
ଶିରୀଷ ଫୁଲରେ ବସିଲେ ସେ ମଧ୍ୟ ମଳିନ ହୁଏ ନାହିଁ, ତୁ ସେହିପରି ।

୩୯ । ଏ ସମୟରେ ନାଗର କେଳି ମନ୍ଦିରକୁ ଗଲା, ଦେଖିଲା କେଳିଘର ଅତ୍ୟନ୍ତ
ଜାକଜମକ ହୋଇଅଛି ।

୪୦ । ଭବେ—ଏକ୍ଷଣି, ଲାବଣ୍ୟବତୀ ଆସିବ ତାକୁ ବିନୟ କଥା କହିବାକୁ
କଥା ତ ଅଉ ନାହିଁ ।


Digitized by srujanika@gmail.com

ବାଣୀ ଯେ । ୪୦ । ବୋଲନ୍ତୁ ଅବା ମୁଁ ପିଣ୍ଡ ତୁ ମୋର ଜୀବନ । ପଣ୍ଡୁକୁ
ପରଶ ଛାଡ଼େ ଦେଖିବ ବିମନ ଯେ । ୪୧ । ନୟନପ୍ରତିମା ବୋଲି କହିଲେ
ହସିବ । ଯାହାକୁ ଗୃହିଁ ସେ ଦିଶେ ତହିଁ ପ୍ରତିବିମ୍ବ ଯେ । ୪୨ । ରଙ୍ଗଚରଣେ
ଶରଣଜନ ମୁଁ ତୋହର । ବୋଇଲେ ସେ ସ୍ନେହାଧୀନା ହୋଇବ
କାତର ଯେ । ୪୩ । ତାକୁ କାତର କରାଇ କେଉଁ ବଡ଼ପଣ । ଏହୁପର
ସିନା ଯେତେ ବିନୟ ଭିଆଣ ଯେ ।୪୪। ଏ ରୂପେ ଭାବ ଭାବନା କରୁଁ
ନୃପସୁତ । ସଖୀଏ ଭେଟିଲା ମିଳି ସୁନ୍ଦରୀପୁରତ ଯେ । ୪୫ । ଜୟ ଜୟ ନ
କର ମଦନମଦାଳସି । ନାଥ ପଥ ଗୃହିଁ ଥିବେ ପଲଙ୍କରେ ବସି ଯେ ।୪୬
ବିଳମ୍ବର କାରଣ କି ପ୍ରଳମ୍ବକୁନ୍ତଳା । ପାହିଯିବ ରଜନୀ ନ ସରୁଁ ରତିଲୀଳା
ଯେ । ୪୭ । ଦରହାସି ହେବୁ ଦରକ୍ଷୁଧାତୁର ପର । ଏହା ଶୁଣି ବଦନ
ନୁଆଇଁ କୃଶୋଦରୀ ଯେ । ୪୮ । ଛଳଳ ଅଳୀଏ ରମ୍ଭାସଦୃଶୀ ସଙ୍ଗୀତ ।
କାମନା ସଫଳେ ମୁଖ ପୋତିବା ଉଚିତ ଯେ । ୪୯ । କେ ବୋଇଲା
ଦଇବ ନେଇ ତା ସନ୍ନିଧାନେ । ଯାହା ଲପନକୁ ଦେଖି ନାହିଁ ଏ ସ୍ୱପନେ

---

୪୧ । କହନ୍ତୁ ମୁଁ ପିଣ୍ଡ, ତୁ ଜୀବନ, ମାତ୍ର ଏହା କହି ହେବ ନାହିଁ କାରଣ ପିଣ୍ଡ ଜୀବନ ତ ଅଲଗା ହୁଏ, ଏଣୁ ସେ ଦୁଃଖିତ ହେବ ।

୪୨ । ମୁଁ ତାକୁ ଆଖିର ପ୍ରତିମା କହିଲେ ସେ ହସିବ, ଯାହାକୁ ଗୃହୁଁଛୁ ସେଠାରେ ସେ ଦେଖା ଯାଉଛି ।

୪୩ । ମୁଁ ତାକୁ କହିବି, ତୋର ଲାଲ ପାଦରେ ମୁଁ ଆଶ୍ରିତ ଜନ, ଏକଥା ଶୁଣି ସେ ସ୍ନେହବଶ ହୋଇ କାତର ହେବ ।

୪୪ । ତାକୁ କାତର କରିବାଟା ମୋର କେଉଁ ଠେକ ପଣ ହେବ, ଏହୁପର ସବୁ ବିନୟ କରନ୍ତୁ ।

୪୬ । ବିଳମ୍—ଡେରିର କାରଣ କ'ଣ ହେବ, ପ୍ରଳମ୍ବ କୁନ୍ତଳା—ଲମ୍ବାଳ-ଯୁକ୍ତା, ରତିଲୀଳା ନ ସରୁଣୁ ରାତି ଯେ ପାହିଯିବ ।

୪୮ । ଦର କ୍ଷୁଧାତୁର—ଅଧାଭୋକିଲା, ହେ ଦରହାସୀ ତୁ ଅଧାଭୋକିଲା ପରି ହେଲୁ, ଏକଥା ଶୁଣି ସେ ଲାବଣ୍ୟବତୀ ମୁଣ୍ଡ ନୁଆଇଁ ଦେଲା ।

୪୯ । ରମ୍ଭାପରି ଜଣେ ସଖୀ ଗୀତ ଛଳରେ କହିଲା, କାମନା ଫଳବତୀ ହେବାରେ ମୁହଁ ପୋତିବା ଠିକ ।

୫୦ । କିଏ କହିଲା, ଯାହାର ମୁହଁକୁ ଦିନେ ଦେଖୁ ନାହିଁ ଯେ ଅଚଞ୍ଚା, ତା ପାଖକୁ ବିଧାତା ନେଉଛି ।

ଯେ । ୫୦ । କ କରିବ କ ବୋଲିବ ବଳମ୍ଭ ଏଥିକି । ଏ ବିପ୍ରର ଛୁନାଇ ବାହାର ହେବା ଠିକ ଯେ । ୫୧ । କେ ଭାଷଇ ନ ଆସଇ ଏ କଥା ମନକୁ । ଯାହା ବୋଲେ ଘଉ ଦେବ ପିଛାବସନକୁ ଯେ । ୫୨ । ତାହା ପାଶେ ଯିବାକୁ କରୁଛି କର୍ମ ଲାଜ । ନ ଜାଣେ କ ସେ ନାଶ ହୋଇବ ବୋଲି ଅଜ ଯେ । ୫୩ । ବହିଥିଲେ କହି ହେଉଥିବେ ଏହି ବାଣୀ । ଗମନ ମନ୍ତ୍ରର ଏହା ଶୁଣି ଗୁଣମଣି ଯେ । ୫୪ । କେଳପ୍ରିୟ ଧଶୁଁ ଅତି ମନ୍ଦ କଲ୍ପ ଗୁଲି । ହସିଲ ହସିଲ ହୋଇ ସକଳୀଏ ବୋଲି ଯେ । ୫୫ । ଅମ୍ଭେ ସଙ୍ଗେ ଥିଲାକୁ କ ହେଉ ରହ ରହ । ତୁ ଘଉଲୁ ବୋଲି ଅମ୍ଭେ ଘଉଙ୍କୁ କ ସେହ ଗୋ । ୫୬ । ତୋତେ କାନ୍ତକୁ ସମର୍ପି ଦେବାଯାଏ ଥିବୁଁ । ରହ ସ୍ଥାନ ନିକଟନ୍ତୁ ସହଜେ ରହିବୁଁ ଗୋ । ୫୭ । ଜଣେ ବୋଇଲାରେ ଏମାନଙ୍କ କଥା ସ୍ମର । ଭାବ ଦାନେ କୃପଣ ନୋହିବୁ କୃଶୋଦର ଗୋ । ଶିଖାଇ ଦେବାର ବୁଦ୍ଧି କେତେବେଳ ଥାଇ । ହଂସ ଶ୍ୱେତ ଶିଖୀ ଚିତ୍ର ଲେ କରନ୍ତି ସହି ଗୋ । ୫୯ । କଥା କଥାକେ ଏଣିକି ଭିଆଇବ ଛନ୍ଦ । ଯେତେ ମନ ଯେଣିଲେ ପାଇବା ନିକ ହୃଦ ଗୋ । ୬୦ । ଏତେ ବୋଲି ଗୁଲ ବୋଲେ କେ ରସନିଧିକି । ଶୁଭିଲ ନୂପୁର ନାଦ କାନ୍ତସନ୍ନିଧିକି ଯେ । ୬୧ । ପ୍ରଥମେ ପାଞ୍ଚିଲ କାମ ଜୟତୂର ବାଜି । ମୋହ ଉପରକୁ କ ଅଛୁନ୍ତି ଦଣ୍ଡ ସାଜି ଯେ । ୬୨ । ଘଣ୍ଟିନାଦେ ମୃଗ ପ୍ରାୟ ଠେକିଲ ଶ୍ରୁତିକି । ଜାଣିଲ ଆସଇ ରସବତୀ ମୋ ଛତିକି ଯେ । ୬୩ । ଦ୍ୱାରପାଶେ ଅସି କାନ୍ତ ଦେଖିଲ ସ୍ନେହା । ରତ କ ଆସଇ ଭଜ ନାଗ୍ରିରଥଯାହା ।

---

୫୧ । କ'ଣ କରିବ, କ'ଣ କହିବ, ଡେରିର କାରଣ ।

୫୩ । ନାଶ—ବିନାଶ ।

୫୭ । ରହ ସ୍ଥାନ—ରହିବା ଯାଗା ।

୫୮ । ଜଣେ ସଖି ଏମାନଙ୍କ କଥା ସ୍ମର—ମନେ କର କହିଲା, ଭାବଦାନେ—ପ୍ରେମଦାନେ, କୃପଣ—ଲୋଭୀ ହେବୁ ନାହିଁ ।

୫୯ । ହଂସକୁ ଶ୍ୱେତ କ ଧଳା, ଶିଖୀ—ମୟୂରକୁ ଚିତ୍ରିତ କଏ କରନ୍ତି, ତାର ଏ ସବୁ କୃତ୍ୟ ଶିଖାଇ ଦେବା ବୁଦ୍ଧି କେତେବେଳ ଯାଏ ଥିବ ।

୬୦ । ଛନ୍ଦ—କପଟ ।

୬୨ । ଜୟତୂର—ବିଜୟ ତୂରୀ, ଦଣ୍ଡ—ବଳ ।

୬୩ । ଶ୍ରୁତିକୁ—କାନକୁ ।

ଯେ । ୬୦ । ଲୀଳା କରୁଅଛି କଚା ହେମପୁଷ୍ପଲତା । ଏ ଜଡପାତ୍ର ଝଉବ ଗ୍ରେଲେ ଚଞ୍ଚଳତା ଯେ । ୬୫ । କାଞ୍ଚି ଅଞ୍ଚିର କୁନ୍ତଳ ଅକର୍ଷଣ ହେବ । ମାଳବରେ ଛିନ୍ନଭିନ୍ନ ଦଶା ଟଉପିର ଯେ । ୬୬ । ଅଙ୍ଗଦେଶରେ ହୋଇବ ଅଶେଷ ସଙ୍ଗର । ପୁଣି କାମପ୍ରଭୁ ଖେଳାଇଲ୍ଗ ପରକାର ଯେ । ୬୭ । ଶ୍ରେଷ୍ଠ କରଅଛୁ ବାଳା ସର୍ବ ଶୋଭିଶିଖ । ଏଣୁ ଅଣୁଛନ୍ତି କ ମଦନପାଶେ ଧରି ଯେ । ୬୮ । ଦନ୍ତ ନଖ ବାହୁପାଶେ ଦଣ୍ଡକୁ ପାଇବ । ବିଶେଷତଃ ପ୍ରେମ ଧନ ଦେଇ ମୁକୁଳିବ ଯେ । ୬୯ । ହୋଇଲ୍ଗ ମଦନନେବା ମନ୍ଦର ସମୀପ । ଗଲ୍ଗ ତ ମୋ ବଡପଣ ବସୁର କନ୍ଦର୍ପ ଯେ । ୭୦ । ବେନି ହୃଦସ୍ଥ ଲଖିକୁ କଲ୍ଗ ସେ ପ୍ରକାର । ରୋମାଞ୍ଚ ବ୍ୟାଜେ କ ପୂର୍ଣ୍ଣ ଅପଘନେ ଶର ଯେ । ୭୧ ରୁଧିର ଛଳେ କ ସ୍ୱେଦଜଳ ପରକାଶ । ନୋହିଲେଟି ସ୍ତମ୍ଭବଶେ ସେ ବେନି ଅବଶ ଯେ । ୭୨ । ଏଠାରୁ ଏ ମନୋରମ ଛାନ୍ଦ ହେଲ୍ଗ ଶେଷ । ସୀତା ମଧୁଶଯ୍ୟା ଅର୍ଥେ ଯେ ରାମ ଉଲ୍ଲାସ ଯେ । ୭୩ ।

---

୬୫ । ଲୀଳା—ଖେଳା, ହେମ ପୁଷ୍ପଲତା—ସ୍ୱର୍ଣ୍ଣଫୁଲ ଲଟା, ଜଡପାତ୍ର—କାରଣରୁ ।

୬୬ । କାଞ୍ଚି—କାଞ୍ଚିଦେଶ, କାଞ୍ଚି—କଟିଭୂଷଣ, କୁନ୍ତଳ—କୁନ୍ତଳ ଦେଶ, କୁନ୍ତଳ—ବାଳ, ମାଳବ—ମାଳବ ଦେଶ, ମାଳବରେ—ମାଳ ସବୁରେ ।

୬୭ । ଅଙ୍ଗଦେଶ—ଅଙ୍ଗଦେଶ ବିଶେଷ, ଅଙ୍ଗଦେଶ—ଦେହ, କାମପ୍ରଭୁ—କାମଦେବ ।

୬୮ । ବାଳା ଯେ ସ୍ତ୍ରୀ ସମସ୍ତ ସୌନ୍ଦର୍ଯ୍ୟର ଶିରୋଭୂଷଣ କରି ଥିବାରୁ ମଦନ କ କନ୍ଦର୍ପ ଫାଶରେ ତାଙ୍କୁ ଧରି ଅଣୁଛନ୍ତି ।

୬୯ । ଦନ୍ତ—ନଖ ଓ ବାହୁଦଣ୍ଡାରେ ଏ ଦଣ୍ଡ ପାଇବ ମାତ୍ର ପ୍ରୀତିଦେଇ ଏଥିରୁ ଉଦ୍ଧାର ହେବ ।

୭୦ । ମକର ନେବା—ସୁନ୍ଦର ନେତ୍ରୀ, ମନ୍ଦର—କେଳିପୁର, କନ୍ଦର୍ପ—ମାର ।

୭୧ । କାମାତୁରଙ୍କ ହୃଦସ୍ଥକୁ ଲକ୍ଷ କରଲ୍ଗ, ତେଣୁ ଦୁହିଁଙ୍କ ଶରୀର ସ୍ଥଳରେ ରୋମାଞ୍ଚାଙ୍କୁର ଉଠିଲ୍ଗ ।

୭୨ । ରୁଧିର—ରକ୍ତ ଛଳନାରେ, ସ୍ୱେଦଜଳ—ଝାଳ ବାହାରୁଛି, ସମ୍ଭବ କ୍ଳାନ୍ତ ବଶରେ ଦୁହେଁ ଅବଶ ହୋଇଛନ୍ତି କ ?


Digitized by srujanika@gmail.com

ତାଙ୍କ ଚରଣ ପଙ୍କଜେ ମନ ଅବିରତ । ଉପେନ୍ଦ୍ର ଭଞ୍ଜ ବୀରବର ଚତେ-
ଗୀତ ଯେ । ୨୪ ।

—o—

## ତ୍ରୟସ୍ତ୍ରିଂଶ ଛାନ୍ଦ ।

( କେଳପୁର ରହସ୍ୟ ବର୍ଣ୍ଣନ )

ରାଗ ପଞ୍ଚମବରାଡି ।

ତର୍ଣ୍ଣ ମନ ମହୋତ୍ସବ ରସ ସାବଧାନ । ହୋଇ ଶୁଣ ପୁରପକ ତରୁଣ ସୁଜନ ହେ । ଚକ୍ରବାଡ଼ ପର ଦେହଲୀକି ବାଳା ତହିଁ । ଅମ୍ବୁଜ ଅରୁଣ ପଦ ନ ପାରେ ବଳାଇ ଯେ । ୧ । ନଦୀ ଯାଇ ଯଥା ସିନ୍ଧୁ ସଙ୍ଗମରେ ଲଭି । ସେତୁ ଲଙ୍ଘି ନ ପାରିବା ଲକ୍ଷଣ ବଲ୍ଲଭୀ ଯେ । ଏ କସ ଗୋ ଭଙ୍ଗି ସଜନୀଏ ଦେଖି ଦେଲେ । ବଲ୍ଲଭଙ୍କୁ ଶୁଣାଇ ଏମନ୍ତ ବାଣୀ

---

୨୪ । ଅବିରତ—ସର୍ବଦା ।

ଲାବଣ୍ୟବତୀଙ୍କ ସଖୀମାନେ ବେଶ କରି ଅନେକ ଥଟ୍ଟା କଥା ଓ ଶିଖାଇବା କଥା କହି, କେଳପୁର ସ୍ୱାମୀପାଖକୁ ଆଣିଲେ, ଲାବଣ୍ୟବତୀ କେଳ ପୁରରେ ଆସି ପହଞ୍ଚିଲା ।



## ତ୍ରୟୋତ୍ରିଂଶ ଛାନ୍ଦ ।

୧ । ମହୋତ୍ସବ—ଅତ୍ୟନ୍ତ ଉତ୍ସବ, ତରୁଣ—ଯୁବକ, ଚକ୍ରବାଡ଼—ଦଗ୍ଧଶେଷ ଦେହଲୀ—ଦ୍ୱାରବନ୍ଧ, ଅମ୍ବୁଜ—ପଦ୍ମ, ଅରୁଣ—ରକ୍ତିମ, ଚନ୍ଦ୍ରସୂର୍ଯ୍ୟ ଦଗ୍ଧ ଶେଷକୁ ଟପିଯାଇ ନ ପାରିଲା ଭଳି ଲାବଣ୍ୟବତୀ ତାର ଲାଲପଦ୍ମ ପାଦକୁ ଦ୍ୱାର ବନ୍ଧଟପି ପକାଇବାକୁ ସାହସ କଲା ନାହିଁ ।

୨ । ସିନ୍ଧୁ—ସମୁଦ୍ର, ସେତୁ—ପୋଲ, ବଲ୍ଲଭୀ—ସ୍ତ୍ରୀ, ନଦୀ ସମୁଦ୍ରରେ ପଡିବାକୁ ଗଲାବେଳେ ବାଟରେ ବାଧାପାଇ ଅଛି, ଆଗକୁ ଯାଇପାରେ ନାହିଁ କି ପଛକୁ ମଧ୍ୟ ଆସିପାରେ ନାହିଁ, ସେହିପରି—ଲାବଣ୍ୟବତୀ ଦ୍ୱାରବନ୍ଧ ଟପି ଯାଇ ନାହିଁ କି ଫେରି ଆସି ପାରୁନାହିଁ ଜାଣି—ସଖୀଏ ପେଲିଦେଇ ବାଲ୍ଲଭକ ସ୍ୱାମୀକୁ ଶୁଣାଇ କରି ଏହା କହିଲେ ।



କେଳିପୁରେ ଲାବଣ୍ୟବତୀ ଓ ଚନ୍ଦ୍ରଭାନୁ

ବୋଲ ଯେ । ୨ । ଅମରେ ଭୋଗ କରନ୍ତି ରଶ୍ମି ଶଶୀଶେଷ । ଲତାରୁ କଳିକା ଗଣ୍ଡ ତୋଳି ସୁମନସ ଯେ । ଦାରୁଭେଦକ ଭ୍ରମର ପଦ୍ମଫୁଲେ ଶୋଇ । ପୁନଃ ପୁନଃ ରସଭୋଗ ଉପଯୋଗ ପାଇ ଯେ । ୩ । ତୁମ୍ଭେ ତ ରସିକଙ୍କ ହରଣୀ ସୁକେଶୀ । ବଳବନ୍ତର କି ଯଶ ଅବଳା ଧରସି ଯେ । କେ ଛଳିଲ ହେଲାକୁ କେମାର ପ୍ରାଣସଖୀ । ତାହା ଦୁଃଖେ ଦୁଃଖୀ ଅମ୍ଭେ ତାହା ସୁଖେ ସୁଖୀ ଯେ । ୪ । ଅମ୍ଭେ ଜଣାଇବାର ଅଧିକ କଥା ସିନା । ଯେ ଯାହାର ତାକୁ କାନ ଲାଗେ ତା ବେଦନା ଯେ । ଏତେ କହି କପାଟ ଫିଟାଇ ଅଣି କଳି । ପୁର ପରସରରୁ ଅନ୍ତର ହେଲେ ଆଳୀ ଯେ । ୫ । ମୋହିନୀ ପୀୟୂଷକୁମ୍ଭ ବସନେ ଘୋଡ଼ାଇ । ଇନ୍ଦ୍ର ଅଗେ ଉଭା ହେଲା ପ୍ରାୟ ଶୋଭା ପାଇ ଯେ । କାନ୍ତ ଦେଖି ଏମନ୍ତ କରକୁ ଧର କରେ । ମନ୍ଦପବନରେ ଯଥା ପଦ୍ମଲତା ଥରେ ଯେ ।୬। ମାଳୀ ଚମ୍ପକ ମାଳିକା ଦେନାଲାର ପର । ସେନେହବଶରେ ତାକୁ ଦେ ଭୋଳରେ ଧର ଯେ । ଲାଜବଶେ ସେ ଯେ ଶେଯେ ଖସି ବସେ ତହିଁ । ବଲ୍ଲଭ ଗୃହ୍ଣୁ ଅରମ୍ଭେ ଅଧୋମୁଖ ହୋଇ ଯେ । ୭ । ହେଠ କଲେ ବଦନ ଚନ୍ଦ୍ରକୁ କୃଶକଟି ।

---

୩ । ଅମରେ—ଦେବତାମାନେ, ଶଶୀ—ଚନ୍ଦ୍ର, କଳିକା—କଢ଼ ସୁମନସ—ଫୁଲ. ଦାରୁ—କାଠ, ଭେଦକ—ଭେଦବା, ଚନ୍ଦ୍ରଠାରେ ଅମୃତ ଥାଏ—ଦେବତାମାନେ ତାହା ଏକାବେଳକେ ପିଇଦେଲେ ଚନ୍ଦ୍ରତ ଆଉ ରହନ୍ତା ନାହିଁ ତେଣୁ ଚନ୍ଦ୍ର ରହିବ, ୯ ଅମୃତ ପିଇବେ, ଏହିକ୍ରମରେ କଳାଏକଳାଏ ଭୋଗ କରନ୍ତି, ଲତାରୁ ମଧ ସତର ସବୁ ଛାଡ଼ିଦେଇ ଫୁଲତକ ତୋଳନ୍ତି, ତୁମ୍ଭେ ସେହି ଅମ୍ଭ ଲାବଣ୍ୟବତୀଙ୍କ ଭୋଗ କରବ । ଭଅଁର କାଠକୁ ଫୁଟାଏ ସତ ମାତ୍ର ପଦ୍ମଫୁଲରେତ ଶୁଏ କଛ କରିପାର ନାହିଁ ସେହିପର ଭୋଗ କରବ ।

୪ । ସୁକେଶୀ—ସୁନ୍ଦରୀ, ଅବଳା—ସ୍ତ୍ରୀ, ଧରସି—କଷ୍ଟଦେଇ ।

୫ । ପୁରପରସରରୁ—କେଳଘର ନିକଟରୁ, ଆଳୀ—ସଖି ।

୬ । ଦେବତା ଅସୁର ମଧ୍ୟରେ ଅମୃତ ବାଣ୍ଟିବା ନେଇ କଜିଆ ହୁଅନ୍ତେ ବିଷ୍ଣୁ ମୋହିନୀ ରୂପରେ ଅମୃତ କୁମ୍ଭନେଇ ଇନ୍ଦ୍ର ଅଗରେ ଠିଆହେଲା ପର ଲାବଣ୍ୟବତୀ ସୁଧା କୁମ୍ଭ (କୁଚ) .ନେଇ ସ୍ୱାମୀ ଅଗରେ ଠିଆହେଲା । ବ କାନ୍ତ ବ ସ୍ୱାମୀ ଏହା ଦେଖି କର ବ ହାତକୁ ଧରିଲେ, ଧୀର ପବନରେ ପଦ୍ମଲତା ଥରିଲାପର ଲାବଣ୍ୟବତୀ ଥରୁଥାଏ ।

୭ । ଚମ୍ପକ ମାଳିକା—ଚମ୍ପାମାଳ, ଯେଶେ—ଶଯ୍ୟାରେ, ଗୃହ୍ଣୁ—ବଳାତ୍ ।


Digitized by srujanika@gmail.com

ଅଙ୍ଗ କେଉଁ ଯିବ ମୋର କାମ-ତମ ଛୁଟି ଗୋ । ତା ଶରକୁ ନ କଲେ ନୟନ ପ୍ରଭଞ୍ଜନ । ନିରନ୍ତର ହେଉଥିବ ସିନା ଜରଜର ଗୋ । ୮ । ବାରଣଗତି ଚରଣ-ଶରଣଜନରେ । ଉଚିତ ପ୍ରଭୁ କପଟ ରଖିବା ମନରେ ଯେ । ତୋ ବାହାରେ ନାହିଁ ଅନ୍ୟ କହିବାକୁ ସାହା । ଯାହା ଇଚ୍ଛା ତାହା କର ଜଣାଇବି କାହା ଗୋ । ୯ । ଏ ବଚନ୍ତ ବାଣୀକି ଦ୍ୱିତୀୟା ତିଥି ତାର । କଳୁ ଉଦେ କଉକଳା ହାସପ୍ରଧାକର ଯେ । ଗୃତୁ ଚକୋର ଈକ୍ଷଣେ ବଳାସ ଉଲ୍ଲାସ । କ୍ଷଣକେ ଭିତରେ କରିଗଲା ପରକାଶ ଯେ । ୧୦ । ମୃଦୁଅଙ୍ଗୀ ଅଙ୍ଗୀକାର ଏ ଭଙ୍ଗୀରୁ ଜାଣି । ନେଇ ଚିବୁକେ ପୁରୁଷ ନିବେଶିଲା ପାଣିଯେ । ଚଞ୍ଚଳ ହୋଇ କୋଳ କରି ଶ୍ରୀମୁଖ ଚୁମ୍ବିଲା । ଯୋଗଭଙ୍ଗୀ ଭଙ୍ଗୀସ୍ଥାନ ଥୟ ନ ରଖିଲା ଯେ । ୧୧ । ଭ୍ରମରେ ଏହୁ ବଦନ ଭ୍ରମରେ ସାରସ । ଚୁମ୍ବନ୍ତି ଭାବି ଚୁମ୍ବନ ଦେଇ ସେ ହରଷ ଯେ । ଅଙ୍ଗହାର କରି ହାର କରି ଆଲିଙ୍ଗନ । ଧୃତ କଲା ଘନସାର ଚନ୍ଦନ ଲେପନ ସେ । ୧୨ । ମନ ତାର ଅଧରପାନରେ ମତ୍ତ ଲଭେ । ରସନାରେ ରସ ଆସ୍ୱାଦନ କରି ଲଭେ ଯେ । ଏ ଥାଉଁ ଅମୃତ ପିଇ କି ଲଭନ୍ତି ଦେବେ । ମଧୁମଦେ ମଦମତ୍ତ ପିଶୁନ ଦାନବେ

---

୮ । କାମତମ—କାମଅନ୍ଧାର, ନିରନ୍ତର—ସର୍ବଦା ।

୯ । ବାରଣଗତି—ଗଜଗମନା ।

୧୦ । ଦ୍ୱିତୀୟା ତିଥି—ଦ୍ୱିତୀୟା ତିଥିରେ ଚନ୍ଦ୍ର ଯେପରି ବଙ୍କାହୋଇ ଉଦୟ ହୁଅନ୍ତି, ସେହିପରି ବଚନ୍ତ ବାଣୀରେ ଲାବଣ୍ୟବତୀ ବଙ୍କେଇ କରି ହସିଲା, ଗୃତୁ—ସୁନ୍ଦର, ଚକୋରଈକ୍ଷଣ—ଚକୋର ଆଖି ଆନନ୍ଦରେ ଫିଟିଲା, ବା ଲାବଣ୍ୟବତୀର ଆନନ୍ଦ ଚିହ୍ନ ଦେଖାଗଲା ।

୧୧ । ମୃଦୁଅଙ୍ଗୀ—କୋମଳଅଙ୍ଗୀ, ଅଙ୍ଗୀକାର—ସ୍ୱୀକାର, ଭଙ୍ଗୀରୁ—ଭାବରୁ ଚିବୁକ—ଓଷ୍ଠ, ପାଣି—ହାତ, ଯୋଗଭଙ୍ଗୀ—ଯୋଗଭଗ୍ନ କାରଣୀ, ଭଙ୍ଗୀସ୍ଥାନ—ମୁଖ ।

୧୨ । ଭ୍ରମରେ—ଭଅଁରମାନେ, ବଦନ—ମୁଖ, ଭ୍ରମରେ—ଭୁଲରେ, ସାରସ—ପଦ୍ମ, ଅଙ୍ଗହାସ—ଅଙ୍ଗଗ୍ଳାନି ।

୧୩ । ଅଧରପାନ—ଓଷ୍ଠ ଚୁମ୍ବିବା, ରସନା—ଜିଭ, ଆସ୍ୱାଦନ—ଚାଖିବା, ମଧୁମଦେ—ମଦରେ, ପିଶୁନ—ମୂର୍ଖ, ଦାନବ—ଅସୁର ।

ଯେ । ୧୩ । ଭାବନ୍ତି ଏ ପେରୁ ଉରଜକୁ ଧବ କରେ । ବାଞ୍ଛା କରି ଅଜ୍ଞ କେଉଁ ସ୍ୱର୍ଗ ପ୍ରାପତରେ ଯେ । କରଜ ଚଳାଇ ତନୁ ଶୋଭାକୁ ଗୃହିଁଲା । ଭାଲେ ଏତେକାଳେ ନୀପଫୁଲେ ନିସ୍ତାରିଲା ଯେ । ୧୪ । ଗତବଣେ ଦେଖି ତା ଚଞ୍ଚଳ ଚୁଟକଙ୍କୁ । ମନେ ମନେ ନିନ୍ଦା କଲା ବଧୂ-ନୂଟକଙ୍କୁ ଯେ । କେଉଁକେଳ ମଦନେ ଆତୁର ସେ ଚତୁର । ନିବଡ ନୀବୀ-ବନ୍ଧରେ ପକାଇଲା କର ଯେ । ୧୫ । ନିଷେଧିଲା କରଭୋରୁ କର କଟର କର । କଣ୍ଠ ଧରି ହୋଏ ନିକି ମୃଣାଳସୂତ୍ରର ଯେ । ପୁଂସ କକ୍ଷମୂଳେ ଚିପି ଦେଇ ନଖ ମୁନ । କୁଚାଗ୍ରେ ଅମରେ କଲା ରସନା ଚୁଲନ ଯେ । ୧୬ । ଦଶନେ ଦଂଶନ କରି ଗଣ୍ଡମଣ୍ଡଳକୁ । ଚୁଳଦେଲେ ଚନ୍ଦ୍ର ଥିଲା ଶଶୀର ସ୍ଥଳକୁ ଯେ । ଶୀତ୍କାର ଭଜି ରସିକା ହୋଇଲା ଅଜ୍ଞାନ । ବିଶେଷତଃ ମାଦକ ପାନରେ ଯଥା ଜନ ଯେ । ୧୭ । ଖୋଷିଦେଲା ଲଲାଟପଟରେ ନେତ୍ର ଦୁଇ । ବିବସନ କଲା କାନ୍ତ ଏ ସମସ୍ତ ଗୃହିଁ ଯେ । ତନୁ ତନୁଭିନ୍ନ ହେବ କରି ଏ ବିଗୁର । ଆପଣା ପିନ୍ଧିଲା ବସନହିଁ କଲା ଦୂର ଯେ । ୧୮ । ସେ କୋଭରେ ଲୋଭୀ ହୋଇ ମନେ କଲା ଘୃଣା । ସୁବର୍ଣ୍ଣ ବର୍ଣ୍ଣକୁ ନିଶ୍ଚେଁ ଏକାଳେ ରଣାଣ ଯେ । ବନ୍ଧଯୋଗେ ଧରି ଉରେ ଉର ଲଗାଇଲା । ଜିହ୍ୱା ଚୁଳ କଣ୍ଠ ଧୀର କରି ଫୁଙ୍କି ଦେଲା ଯେ ।୧୯। ଉରଜ ମଧ୍ୟେ କରଜ ଅଣିଲା ଚଳାଇ । ନାଭିରେ ଦେଲେ କନିଷ୍ଠାଙ୍ଗୁଳିକି ବୁଲାଇ ଯେ । ନିତମ୍ବେ ହାଣ୍ଡୋଳି ଠୁଙ୍କୁ ଚେତନା ବସିଲା । ଭିଡ଼ି ମହାମତ୍ତେ ରମା ସୁରତେ ରସିଲା

---

୧୪ । କରଜ—ନଖ, ତନୁ—ଦେହ, ନୀପଫୁଲ—କଦମ୍ବଫୁଲ, ନଖରେ କୁଚକୁ ପୀଡ଼ା ଦଥିବାରୁ ସ୍ତନ ଠାଙ୍କୁରଙ୍କରୁ କଦମ୍ବଫୁଲର ଲକ୍ଷଣ ଜଣାଗଲା ।

୧୬ । ନିଷେଧିଲା—ମନାକଲା, କରଭୋରୁ—ସୁନ୍ଦରୀ, କଣ୍ଠ—ହାତ, ମୃଣାଳସୂତ୍ର—ପଦ୍ମନାଡ଼ର ସୂତା, କକ୍ଷମୂଳେ—କାଖମୂଳରେ, କୁଚାଗ୍ରେ—ସ୍ତନଅଗରେ, ରସନା—ଜିଭ ।

୧୭ । ଦଶନ—ଦାନ୍ତ, ଦଂଶନ—କାମୁଡ଼ିବା, ଗଣ୍ଡମଣ୍ଡଳ—ଗାଲ, ମାଦକ—ନିଶାଦ୍ରବ୍ୟ, ଅଜ୍ଞାନ—ମୋହ,

୧୮ । ଲଲାଟପଟ—କପାଳ, ନେତ୍ର—ଆଖି, ବିବସନ—ଉଲଗ୍ନ, ତନୁ—ଦେହ, ଭିନ୍ନ—ଅଲଗା, ବସନ—ଲୁଗା,

୧୯ । ରଣାଣ—ପାଲିସ କରିବା, ଉର—ଛାତି,

୨୦ । ଉରଜ—କୁଚ, କରଜ—ନଖ, ନାଭି—ନାହି, କନିଷ୍ଠାଙ୍ଗୁଳି—କାଣୀ ଅଙ୍ଗୁଠି, ନିତମ୍ବ—ପିଚା, ରମା—ସ୍ତ୍ରୀ,

ଯେ । ରତିପତି ଛଳେ ରତି ପତି ବରଚିତ । କଙ୍କଣ ନୂପୁର ନାଦେ ପୁର ଜହ୍ନୁଳଉ ଯେ । ପରସ୍ପରେ ହୋଇଲେ ଅଧର ପିଅପିଇ । ଏଣୁ ତେଣୁ ଯହୁଁରେ ଚୁମ୍ବନ ଦଅଦେଇ ଯେ ।୨୧। ଦ୍ୱାର ଜଣି ମୁକୁଣ୍ଡ ପଡ଼ୁଛି ବାସ ବେଣି । ସେହୁ ଯାଇଛନ୍ତି ସଙ୍ଗେ ସଙ୍ଗେ ଲଜ୍ଜା ଘେନି ଯେ । କେଳିଉଜନନୀ ଜଗ-ଜିଣୁ ଯୁଦ୍ଧ ବାଦ । ସାକ୍ଷୀ କର ରଖିଛନ୍ତି ପ୍ରଦୀପ ପ୍ରସିଦ୍ଧ ଯେ ।୨୨। ରାଜ-ସୁତ ରାଜା ହେଲ ବୋଲି ହୋଏ ତୋଷି । ସୁତନୁ ବିଶାଳ ଜାନୁସିଂହା-ସନେ ବସି ଯେ । କେ ନଖରେ କ୍ଷତ କରେ କେ ପୀଡ଼ଇ ଦନ୍ତେ । କଲେ ଜ୍ୱଳାନ ପାର୍ଶ୍ୱଶୟନ ରତ ଯେତେ ଯେ ।୨୩। ରମଣୀ ଇଷିବଚନେ ପୁରୁଷ ହୁଂକୃତ । ବାଳାନଖକ୍ଷତକୁ ପୁରୁଷ ମୁଷ୍ଟିଘାତ ଯେ । କି କରନ୍ତି କି ବୋଲନ୍ତି ନ ପାରନ୍ତି ଜାଣି । ପିତ୍ତବେଗ ହୋଇଲେ ଅଧିକ ଯଥା ପ୍ରାଣୀ ଯେ ।୨୪। ସନ୍ନିପାତୀ ପ୍ରାୟ କ୍ଷଣେ କ୍ଷଣେ ଚଢ଼ ନାଡ଼ୀ । ବାତକୀ ପରାୟ ବେପଥୁରେ ଛନ୍ତି ଜଡ଼ି ଯେ । ଇଚ୍ଛା ହୁଏ ମନ୍ଦ ଶୀତଗନ୍ଧବହ ବହୁ । ଏ ବଡ଼ କାମନା ଏକା ରଜନୀ ନ ପାହୁ ଯେ ।୨୫। ଏମନ୍ତ ଯେ ଦର୍ପଣ ଗୃହୁଅ ପୂର୍ବେ ଥିଲ । ନାଗରୀ ଗୃହଁଙ୍କ ଯୋଗେ ଜ୍ୱଳନ୍ତ ଦଟିଲ ଯେ । ଲଜ୍ଜେ ବୁଲି ନେନ ମହାବ୍ୟାକୁଳ ତା ମତ । ସତେହେଁ ଅରମ୍ଭ କଲେ ବିପରୀତ ରତ ଯେ ।୨୬। ପୁଣି ଚକ୍ଷୁ ଫେଡ଼ି ଦେଇ ଅରତ ହୋଇଲ । ଖସିତାବେଳକୁ କାନ୍ତ ଯୋ ଅନ ବୋଇଲ ଯେ । ରହିଲ ଅଣଅପୃତେ ସେ ସେହିଠାଣିରେ । ନତ୍ୟ ଅଧିକାର ଦେଲ ନାସିକାମଣିରେ ଯେ ।୨୭। ସେ ରତିମଧୁକୁ ଏଯେ ବରଷା ପ୍ରାପ୍ତକ । କିଙ୍କିଣୀ-କେକିନାଦରେ ମୂକ ବଳା-ପିକ ଯେ । ଯୋଷାମୁଖେ ସ୍ୱେଦବନ୍ଦୁ ଗୃହୁଁ ପୁଂସ ଲୋଭ୍ୟ । ଇନ୍ଦୁ ଅମୃତ-

---

୨୧ । ଦ୍ୱାରଜଣ—ଦ୍ୱାରବା ଜଣିବା, ମୁରୁଣ୍ଡ—ପଣ, ବାସ—ଲୁଗା, ଜନନୀ —ମାତା, ଜଗଜ୍ଜିଣୁ—କନ୍ଦର୍ପ

କାମ ଯୁଦ୍ଧରେ ସ୍ତ୍ରୀ ପୁରୁଷ ଦୁହେଁ କଏ ହାରବ କଏ ଜଣିବ ବାଜିରଖି ଲୁଗାକୁ ଛଡ଼ ଲାଗିଥିବାରୁ—ଲଜ୍ଜା ଲୁଗା ସଙ୍ଗେ ଯାଇଛି, ରତି ଓ କନ୍ଦର୍ପର—ଯୁଦ୍ଧପର ଏ ଲାଗିଥିବାରୁ, ହାରଜଣ ଦେଖିବାକୁ ଦୀପକୁ ସାକ୍ଷୀ ରଖି ଜାଳୁଛନ୍ତି—

୨୩ । ସୁତନୁ—ସୁନ୍ଦରୀ, ବିଶାଳ—ବଡ଼, ଜାନୁ—ଜଙ୍ଘ,

୨୫ । ବେପଥୁ—ଥରବା, ଶୀତଗନ୍ଧବହ—ଥଣ୍ଡାପବନ,

୨୭ । ଅରତ—ଅସ୍ଥିର, ଅନ—ଗ୍ରାଣ, ଅଣଅପୃଣ—ସହଜ,

୨୮ । ମଧୁ—ବସନ୍ତ ସମୟ; କେକୀନାଦ—ମୟୂରଶବ୍ଦ, ପିକ—କୋଇଲି, ଯୋଷା—ସ୍ତ୍ରୀ, ସ୍ୱେଦ—ଝାଳ, ଇନ୍ଦୁ—ଚନ୍ଦ୍ର—

ବନ୍ଧୁ ବନ୍ଧନ୍ଦ ପ୍ରାପ୍ତ ଶୋଭା ଯେ । ୨୮ । କୁଚଗିରି ମାଡ଼ି ପଡ଼ିବାକୁ ଲର
ଭୟ । ବସ୍ତ୍ରାବୃତ କରନ୍ତି ଛଇଲ କର ଦ୍ୱୟ ଯେ । ଗାଢ଼ବନ୍ଧେ ଯଥା
ଭୀତ ଥିଲ୍ଲ ଯୁବତୀର । ଭାଙ୍ଗ ଯାଇ ଥାଇ ନିକ ସନ୍ଧୁବନ୍ଧି ମୋର ଯେ ।୨୯।
ଏମନ୍ତ ସମୟେ ଗୃହ୍ନି ବାଳା ଅବଶକୁ । ପୂର୍ଣ୍ଣ ପୁରୁଷ ଅବଶ୍ୟେ ପ୍ରକୃତ
ରସକୁ ଯେ । ବଗୃହଲ୍ଲ ମୋହେ ଏଥି ଯଶ ନାହିଁ ଅଙ୍ଗ । ଧନୁଃଶର
ପକାଇ ପଳାଇ ମନସିଜ ଯେ । ୩୦ । ବଲ୍ଲଭ ନେତ୍ର ବଞ୍ଚାଇ ଯୁବତୀ
ରତନ । ଉରତରେ ବେଢ଼ ଦେଇ ପିନ୍ଧିଲ୍ଲ ବସନ ଯେ । ପୁରୁଷ ନେଲେ
ଆଦର କରି ଉତପରେ । ପ୍ରିୟାକୁ ଦେଖି ଶୟନ ପଲ୍ୟଙ୍କ ଉପରେ ଯେ ।୩୧।
ଶ୍ରମଘର୍ମଯୋଗେ କରି ନଖକ୍ଷତ ଜ୍ୱାଳା । ଶ୍ରମ ହେଲ୍ଲ ଏ ଦେଖି ନ ଲଭେ
ନିଦ୍ରା ବାଳା ଯେ । ଗୃହୁଁ କହେ ପ୍ରିୟ କଥା ଶୁଣିବାକୁ ପ୍ରିୟ । ଏସକାଶୁଁ
ନିଦ୍ରା ତାକୁ ନ ଭଲ୍ଲ ଆଶ୍ରୟ ଯେ ।୩୨। ନିର୍ଲ୍ଲଜ୍ଜକାମ ମଗଧରାଜ ପ୍ରାୟ ହୋଇ ।
ପୁଣି ଧାଡ଼ି ଦେଇ ଚିତ୍ତ ଉଚ୍ଛୁନ୍ନ କରାଇ ଯେ । ଏଣୁ ପ୍ରକାଶିଲେ ରତି ପୁଣି
ସେ ଦମ୍ପତି । ସେ ଗତିଯାକ ଲଭିଲେ ଅଶେଷ ସମ୍ପତ୍ତି ଯେ । ୩୩ ।
ରାମାକୁ କୋଳେ ବସାଇ ଫେଡ଼ି ବାତାୟନ । ରତାନ୍ତେ କରୁଅଛନ୍ତି
ବ୍ୟଜନ ଗୃହଜନ ଯେ । ତାହାର କରରେ ସ୍ନେହେ କେ ନ ଦେଲେ ରଖି ।
ବେନି ତନୁ ଜଡ଼ିତ ଶୟନେ ମହାସୁଖୀ ଯେ । ୩୪ । ଏ ସମୟେ ନିଶି
ନାଶ କଲେ ମନ୍ଦ ଘୋଷ । ଦରଶବଦେ ଲଭିଲେ ବିଟପୀ ବରସ ଯେ ।
ନିଃଶ୍ୱାସ ବାରି ଗଣିକା ବିଟପାଶୁଁ ଗଲେ । ଦୀପ ମଳିନ ଅନାଇଁ ବଟୁ ଏ
ଉଠିଲେ ଯେ । ୩୫ । ବାସରଶଯ୍ୟା ନାରୀଶ ନିଶ୍ୱାସ ପକାଇ । ଅକାଶକୁ

୨୯ । କୁଚଗିରି—କୁଚପର୍ବତ, ଛଇଲ—ନାଗର, ଭୀତ—ଭୟ, ଭାଙ୍ଗ—ଭାଙ୍ଗି,
୩୦ । ଅବଶ—କ୍ଳାନ୍ତ, ମନସିଜ—କନ୍ଦର୍ପ,
୩୧ । ବଲ୍ଲଭ—ପୁରୁଷ, ନେତ୍ର—ଆଖି, ବଞ୍ଚାଇ—ଉହାଡ଼ କରି,
୩୨ । ଶ୍ରମଘର୍ମ—ଶ୍ରମଝାଳ, ଜ୍ୱାଳା—ପୋଡ଼ିବା, ଶ୍ରମ—କଷ୍ଟ,
୩୩ । ନିର୍ଲ୍ଲଜ୍ଜକାମ—ନିଲଠାମଦନ, ମଗଧରାଜ—ଜରାସନ୍ଧ,
ଜରାସନ୍ଧ କୃଷ୍ଣଙ୍କ ସଙ୍ଗରେ ଯୁଦ୍ଧକୁ ଯାଇ ଥରକୁ ଥର ହାରି ପୁଣି ନିର୍ଲ୍ଲଜ୍ଜ
ପଣରେ ଧାଡ଼ିଦଏ—ସେହି ମଦନଶରେ ହାରିଶୁଦ୍ଧା ଆରମ୍ଭ କରନ୍ତି—
୩୪ । ରମ୍ଭା—ସ୍ତ୍ରୀ, ବାତାୟନ—ଝରକା, ବ୍ୟଜନ—ବଡଣା,
୩୫ । ମନ୍ଦ—ତାର, ଘୋଷ—ଶବ୍ଦ, ଦର—ଶଙ୍କା, ବିଟପୀ—ଅସଙ୍ଗ, ଗଣିକା—
ବେଶ୍ୟା, ବିଟ—ଲମ୍ପଟ,

ଗୃହଁ ତାରା ମଳିନ ଅନାଇଁ ଯେ । ହାରଣିଥିଲ ତାମ୍ବୁଲ ଭକ୍ତ ଜାଣି ସମା ।
ପନେ ପନେ ବଗୁରଲ୍ଲ ବନାଶ ତ୍ରିଯାମା ଯେ । ୩୬ । କେମନ୍ତେ ଗୃହଁବ
ଯାଇଁ ସଜଣୀଙ୍କ ମୁଖ । ସୁଖରୁ ତ ଅଧିକ ହୋଇବ ଲାଜ ଦୁଃଖ ଯେ ।
ତାହାଙ୍କ ନ ତରୁଁ ଯିବ ବଗୁର ଉଠିଲା, ଇଷି ଗ୍ରୀଷି ଅଙ୍ଗ ମୋଡ ହୋଇ
ବାହାରିଲା ଯେ । ୩୭ । ବାଳା ପଛେ ପଛେ ଧବ ଶୋଭା ଦେଖିବାକୁ ।
ଆସିବା ବେଳକୁ ସେହୁ ଦ୍ୱାର ନିକଟକୁ ଯେ । ଜାଣି ସିହାଣୀ ରହିଲା
ପଛ ହେଲା ବୋଲି । କେ ତାହାକୁ ନ ଯାନ୍ତି ସେନେହବଳେ ବଳି ଯେ
। ୩୮ । ଉଭାରେ ଉଭାରେ ସ୍ପର୍ଶ କଲା ଆଲିଙ୍ଗନ । ବୋଇଲା ପାଶୁଁ ଯିବାକୁ
ନ ବଳଇ ମନ ଗୋ । ଛାଡି ଗଲେ ଜୀବ ଯିବ ଛାଡ ଏ ପରତେ । ଶୁଭିଲା
ସଖୀମାନଙ୍କ ରହଳ ଏମନ୍ତେ ଯେ । ୩୯ । ତରୁଣୀ ଚଞ୍ଚଳ ଯଥା ଯୂଥବର୍ଣ୍ଣା
ଏଣୀ । ମୁଖେ ଚୁମ୍ବ ଦେଇ ସ୍ପର୍ଶ ହୋଇଲା ମେଲାଣି ଯେ । ମିତ୍ରଙ୍କ ସଙ୍ଗରେ
ଯାଇ ହେଲା ପରବେଶ । ହାସ୍ୟ ନ ଛଳେ କରେ ଦେଖାଇ ଆଦରଶ
ଯେ । ୪୦ । ତଦୁତ୍ତରେ କେଳିପୁରୁଁ ବାହାର ସୁନ୍ଦରୀ । ମନ୍ଦେ ମନ୍ଦେ ଆସେ
ଭିତ୍ତି ଅବଲମ୍ବ କରି ଯେ । ଅଳସ ଗୃହୁଁ ପ୍ରିୟସଖୀ ପ୍ରତିଭାଷ । ଆର ଛାନ୍ଦେ
ଶୁଣିବ ଏ ଛାନ୍ଦ ହେଲା ଶେଷ ଯେ । ଜାନକୀ କୁଚକୁଙ୍କୁମ ଅଙ୍କିତ ହୃଦୟ ।
ମୁନିଜନ ଚିତ୍ତେ କାମ ବିକାର ଉଦୟ ଯେ । କାରକତାରକ ମନ୍ତ୍ର ଯାହା
ନାମ ଶ୍ରୁତି । ଉପଇନ୍ଦ୍ର ବୀରବର ସେହୁ ରାମ ଗୁଣି ଯେ । ୪୨ ।

୩୬ । ବାସରଶଯ୍ୟା—ବିବାହଦିନ ରାତିର ଶୋଇବାଘର, ନାଗ୍ରଣ—ନାଗ୍ରଶ୍ରେଷ୍ଠ
ତାମ୍ବୁଲ—ପାନ, ଭକ୍ତ—ପିଠା, ଶିଥିଳ—ହୁଗୁଳା, ତ୍ରିଯାମା—ରାତ୍ରୀ,
୩୮ । ଧବ—ସ୍ୱାମୀ
୩୯ । ଉଭାରେ ଉଭାରେ—ଠିଆ ଠିଆରେ, ଆଲିଙ୍ଗନ—କୋଳ,
୪୦ । ଚଞ୍ଚଳ—ଶୀଘ୍ର—ଅସ୍ଥିର, ଯୂଥବର୍ଣ୍ଣା—ଦଳଛଡ଼ା, ପଲଛଡ଼ା ଥିବା;
ଏଣୀ—ମୃଗୀ, ଆଦରଶ—ଆରସି,
୪୧ । ଭିତ୍ତି—କାନ୍ଥ, ଅବଲମ୍ବ—ଆଶ୍ରୟ,
୪୨ । ରାମତାରକମନ୍ତ୍ର—ତାରକମନ୍ତ୍ର,

ଲାବଣ୍ୟବତୀକୁ ଚନ୍ଦ୍ରଭାନ ଗୃହକୁ କହି କୋଳକୁ ନେଲାବେଳେ ଲାବଣ୍ୟ-
ବତୀ ଅନେକ ଛଟା କଲା—କିନ୍ତୁ ସ୍ନେହ ବଶରେ କ୍ରମେ ଆଲିଙ୍ଗନ—
ଚୁମ୍ବନ ନଖକ୍ଷତ ଇତ୍ୟାଦିରେ ଉନ୍ମତ୍ତ ହୋଇ ଦୁହେଁଯାକ ମିଳନ ସୁଖ
କଲେ—ଥରକୁ ଥର ଏହିପରି ମିଳନ ସୁଖକର ସକାଳ ହେବାରୁ
ଦୁହେଁଯାକ କେଳି ପୁରରୁ ବାହାରି ଆସିଲେ—


Digitized by srujanika@gmail.com

# ଚତୁସ୍ତ୍ରିଂଶ ଛାନ୍ଦ ।

## ( କେଳିପୁରବାହୁଡ଼ା ଏବଂ ସଖୀମାନଙ୍କର ପରିହାସକରଣ । )

ରାଗ କଲ୍ୟାଣ ଅହାରୀ ।

କେଳିସଦନୁ ବାହୁଡ଼ି ପଥ ଭୁଲି ଆସିବା ବେଳେ ସୁକେଶୀ ଯେ । କୋକିଳଭାଷୀକି ଭାଷିଲା ଏମନ୍ତ କେଉଁ ପରିହାସୀ ହସି ଯେ । ସୁନ୍ଦରୀ । କହ କହ ମହୀଶୋଭା ରେ । କରୁଛୁ ବିଗ୍ରହ କେଉଁ ସୁକୃତରୁ ଭ୍ରମର କେତକୀ ଲଭି ରେ । ୧ । ଯିଜ୍ଞପତି ରଣପରାଜୟୁ ଭୂର ପରାୟୁ ନୂପୁର ବାଜେ ରେ । ଖସିପଡ଼ିବାରୁ ନିତମ୍ବ ଉପରୁ ଭଲ ଏ ବସନ ରାଜେ ରେ । ସୁନ୍ଦରୀ । ଖେଦ ପାଇ ଯୁଦ୍ଧବଶେ ରେ । ଖସିଯାଉଛି କି ଯୋଦ୍ଧାମସ୍ତକରୁ ଉଷ୍ଣୀଷ ଏମନ୍ତ ଦିଶେ ରେ । ୨ । ଚାରୁ ଚଞ୍ଚଳ ଈକ୍ଷଣ କ୍ଷଣେ କ୍ଷଣେ ଭଜୁଅଛୁ ସୁଲକ୍ଷଣୀ ରେ । ଗଜରିପୁ ଆଗେ ପଡ଼ିଥିଲା ଏଣୀ ହୋଇଛୁ କି ଗଣବଣା ରେ । ସୁନ୍ଦରୀ । ଗତି ତଥା ଦେନି ମାର ରେ । ଗୁଣି ପୁଣି ପରାଭବ ଭାତି ଚିତ୍ତେ ଥରଥରେ ବହେ ଶର ରେ । ୩ । ଦେନୁଛି

---

# ଚତୁଃତ୍ରିଂଶ ଛାନ୍ଦ ।

୧ । କେଳିସଦନୁ—କେଳିମନ୍ଦିରରୁ, ବାହୁଡ଼ି—ଫେରି, ପଥ—ବାଟ, ଭୁଲି—ଭୁଲି, ସୁକେଶୀ—ସୁନ୍ଦରୀ, କୋକିଳଭାଷୀକି—କୋଇଲିପରି ଯେ କଥା କହେ ଲାବଣ୍ୟବତୀ, ପରିହାସୀ—ସଖୀ, ଭାଷିଲା—କହିଲା, ମହୀଶୋଭା—ପୃଥିବୀ ଶୋଭନୀ. ସୁକୃତ—ପୁଣ୍ୟ,

୨ । ଯିଜ୍ଞପତି—ରାଜା, ଏଠାରେ ରାଜପୁତ୍ର, ରଣପରାଜୟ—ଯୁଦ୍ଧରେ ହାରିବା ଏଠାରେ କାମ ଯୁଦ୍ଧରେ ହାରିଯିବା, ନିତମ୍ବ—ପିଚ୍ଛ, ରାଜେ—ଶୋଭାପାଏ, ଖେଦ—ଦୁଃଖ, ଯୋଦ୍ଧା ମସ୍ତକରୁ—ବୀର ମୁଣ୍ଡରୁ—ଉଷ୍ଣୀଷ—ପଗଡ଼ି,

୩ । ଚାରୁ—ସୁନ୍ଦର, ଈକ୍ଷଣ—ଆଖି, ଗଜରିପୁ—ସିଂହ, ଏଣୀ—ମୃଗୀ, ଗଣବଣା—ପଲଛଡ଼ା, ପରାଭବ—ହାରିବା,

ମୃଗ ସିଂହ ହାବୁଡ଼ରେ ପଡ଼ିଲେ; ପଲରୁ ଛାଡ଼ି ଭୟରେ ଏକୁଟିଆ ପଳାଇ ଏଣିକି ତେଣିକି ଚାହିଁ ଥାଏ ଲାବଣ୍ୟବତୀ ସେହିପରି ଚାହୁଁଛି, କନ୍ଦର୍ପ ଯୁଦ୍ଧରେ ଥରି ଥରିକି ହାରିଯାଇ ତରତର ହୋଇ ଘର ବାହାରିଲାପରି ଲାବଣ୍ୟବତୀ ଅମଙ୍ଗ ହେଉଛି,


Digitized by srujanika@gmail.com

କୋକନଦମଦମର୍ଦ୍ଦନେ କରୁଛି ରଙ୍ଗ ଅସ୍ପଦ ରେ । ଘନେ ଦଣ୍ଡିବ ମଦ-କଳମଦର ବ୍ୟକ୍ତ କି ମଦନମଦ ରେ । ସୁନ୍ଦର । ଦେନାଦେନି ତୋର ଭଲ ରେ । ଘୋର ଜାଗ୍ରବସ୍ଥା ଅନିଦ୍ର ତ କର ପଦ୍ମମୁଦ୍ରିତ ନ କଲ ରେ । ୪ । ନିଟିଳେ ମୃଗମଦ ବହି ରହିଛି ଜାତହୋଇ ସ୍ୱେଦପନ୍ତି ରେ । କିଣ୍ଟେ ଅଳକା ଅହିବର ତରଳଗରଳ କରୁଛି ବାନ୍ତି ରେ । ସୁନ୍ଦର । ନୋହିଲେ ହେବ ଏମନ୍ତ ରେ । ନିଶୀଶ କଳଙ୍କ ନାଶ କରୁଥିଲା ପ୍ରକାଶ ବିଧିରେ ଭୂତି ରେ । ୫ । ଚଟୁଳନୀରବିନ୍ଦୁ ଧାଡ଼ୀ ହୋଇ ଯେ ରହିଛି ଅଳକାତଳରେ । ଚନ୍ଦ୍ରଅର୍ଦ୍ଧକୁ ଗ୍ରାସ କରି ରାହୁ କି ଗଣ୍ଡଘଣେ ଗଲା ଚପ-ଳରେ । ସୁନ୍ଦର । ଶ୍ଲେଷଦନ୍ତଯୋଗେ ତାର ରେ । ଶିଞ୍ଜନ କରୁଛି ସ୍ଫୋଟକନିକର ଦେଶେ ମନୋହରତର ରେ । ୬ । ଛୁଟିପଡିଲା ସୁଜ୍ୟୋତି

---

୪ । କୋକନଦ—ରକ୍ତକଇଁ, ମଦ—ଗର୍ବ, ମର୍ଦ୍ଦନ—ନାଶକରିବା, ଘନେ—ନିଶ୍ଚୟ, କଳମଦର—ଖଞ୍ଜନପକ୍ଷୀର ଆଖି, ଦଣ୍ଡିବ—ପରାସ୍ତ କରିବ, ଜାଗ୍ରବସ୍ଥା—ଜାଗ୍ରୀ, ଅନିଦ୍ର—ଅନିଦ୍ର, ମୁଦ୍ରିତ—ବୁଜିଦେବା,
ଲାବଣ୍ୟବତୀର ଆଖି ଅନିଦ୍ରାରୁ ଲାଲ ହୋଇଛି । ଲାଲ କଇଁର ଗର୍ବକୁ ପରାସ୍ତ କରୁଛି ଜଣାଯାଏ, ଖଞ୍ଜନ ଆଖିକି ପରାସ୍ତ କରିବ, କନ୍ଦର୍ପର ମାଦକତା ଆଖି ଉପରକୁ ଉଠି ଯାଇଛି କି, ରାତିରେ ତ ପଦ୍ମ ବୁଜି ହୋଇଯାଏ । ମାତ୍ର କାଲି ରାତିରେ ତୋର ନେତ୍ର ପଦ୍ମ ବୁଜି ହୋଇ ନାହିଁ ।

୫ । ନିଟିଳ—କପାଳ, ମୃଗମଦ—କସ୍ତୁରୀ, ଅଳକା—ଚୂର୍ଣ୍ଣ କୁନ୍ତଳ, ଅହିବର—ସାପ, ଗରଳ—ବିଷ, ନିଶୀଶ—ଚନ୍ଦ୍ର, ଭୂତି—ଭସ୍ମ ।
ଝାଳ ବହିବାରୁ କପାଳରୁ କସ୍ତୁରୀ ଗଡ଼ା ବୋହି ପଡ଼ୁଛି, ଚୂର୍ଣ୍ଣ କୁନ୍ତଳ ହେଲା ସାପ, ବୋହି ପଡ଼ିବା କସ୍ତୁରୀ ହେଲା ତାର ବିଷ ବାନ୍ତି କଲାପରି ଜଣା ଯାଉଛି, କିବା ଚନ୍ଦ୍ର ନିଜ ଦେହରୁ କଳଙ୍କ ଛଡ଼ାଇବାକୁ ବସିଲା-ବେଳେ ଭସ୍ମ କରି ରହି ଯାଇଛି ।

୬ । ଚଟୁଳ—ଗୋଲ, ନୀର ବିନ୍ଦୁ—ଝାଳ ବିନ୍ଦୁ, ଚପଳ—ଚଞ୍ଚଳ, ଶ୍ଲେଷ—ସୁନ୍ଦର, ସରୁ ସରୁ, ସ୍ଫୋଟକ—ଫୋଟକା, ମନୋହର—ସୁନ୍ଦର,
ଲାବଣ୍ୟବତୀ ମୁହଁରୁ ଝାଳ ଠୋପି ଠୋପି ହୋଇ ବହି ଥିବାରୁ ଏପରି ଜଣାଯାଉଛି ରାହୁ ଅର୍ଦ୍ଧଚନ୍ଦ୍ରକୁ ଗ୍ରାସ କରୁଥିଲା, ମାତ୍ର ଶୀଘ୍ର ଛାଡ଼ି ପଳାଇ ଯାଇଛି, ତେଣୁ ତାହାର ସରୁ ସରୁ ଦାନ୍ତଯୋଗୁଁ ଫୋଟକା ଗୁଡ଼ାଏ ହୋଇଛି କି ?

ସୁପ୍ରୋଜ୍ଜ୍ୱଳ ବାଳ ନ ଜାଣିଲୁ ତହୁଁ ରେ । ଛଇଳପତ ତାହା ସ୍ୱିତ ସୁରତ ଶିକ୍ଷା ଯେତେବେଳେ ଦେଇ ରେ । ସୁନ୍ଦର । ଛଟକାଷ୍ଠି ଗୁଣଶାଳି ରେ । ଛଦ୍ମେ ନ ଜାଣିବ ବାସ ପ୍ରକାରରେ କରିଥିବ ନିଜ ଗ୍ଲାନି ରେ । ୭ । ଜାହ୍ନବୀ ଲଭିଲା ମାନ ଶାମ୍ଭବରେ କସ୍ତୁରୀ କାଳିନ୍ଦୀ ଗୃହୁଁ ରେ । ଜଣା-ଯିବାକୁ ନଖପଦ୍ମ ବଣଦମୟୂଖ ନାୟକ ବନ୍ଧ ରେ । ସୁନ୍ଦର । ଜବାଧର ଚନ୍ଦ୍ରମୁହିଁ ରେ, ଜଳଜ ପାଣିରେ ପୂଜା କରିଥିବ କାମ ବ୍ୟାଧି ହତ ପାଇଁ ରେ ।୮। ଝଂଲକ ଅଙ୍କୁଶ ପ୍ରାସ ଲଭିଛି କି ଯଉବନ କରି କୁମ୍ଭ ରେ । ଝଂସନିବାସ ସୂତରେ ମର୍ଦ୍ଦି ହେଲା ମହା ମହୀଧର ଦମ୍ଭ ରେ । ସୁନ୍ଦର । ଝଲିଛି ଚିତ୍ରେ ଏ ଚିହ୍ନ ରେ । ଝଂଝକହାସିନୀ ଘର୍ମେ ଲଭିଗଲା ମର୍ମେ ଲେଖିଥିଲା ଚିହ୍ନ ରେ ।୯। ନୀଳ କୁନ୍ତଳ ଫିଟି ଲୋଟେ ଚରମେ କରିହାଗ୍ନି ପ୍ରେମନୀର ରେ । ନିଷ୍ଠା କଲୁ ଶାନ୍ତି କି ସେ ଧୂମପନ୍ତି ଊର୍ଦ୍ଧ୍ୱେ ଅଧୋଗତି ତାର ରେ । ସୁନ୍ଦର । ନୟୂନ କରଇ ବଣ ରେ । ନବ ବିକଚ ନଳିନ ମଧୁ ପିଇ ଉଡ଼ିଲେ କି ଅଳିଗଣ ରେ ।୧୦। ଟେକ କରୁଣା ହେବାପାଇଁ

---

୭ । ସୁପ୍ରୋଜ୍ଜ୍ୱଳ—ଅତ୍ୟନ୍ତ ଉଜ୍ଜ୍ୱଳ, ଛଦ୍ମେ—କପଟରେ, ତାହା ସ୍ୱିତ ସୁରତ—ବିପରୀତ ରତ ।

୮ । ଜାହ୍ନବୀ—ଗଙ୍ଗା, ନାୟକ—ପୁରୁଷ, ଜଳଜ ପାଣି—ପଦ୍ମକର ।

୯ । ଯୌବନ ରୂପକ ହାତୀର ମୁଣ୍ଡରେ ଅଙ୍କୁଶ ପ୍ରହାର କଲା କୁଚରେ ନଖଘାତ ହୋଇଛି । ଝଂସ—ପଦ୍ମ, ନିବାସ—ଘର, ସୁତ—ପୁତ୍ର, ଝଂସନିବାସ ସୁତ—ପଦ୍ମ, ମହା—ପ୍ରଧାନ, ମହୀଧର—ପର୍ବତ ( ମେରୁ ପର୍ବତ ) ପୁରୁଷର ହସ୍ତ ପଦ୍ମରେ ସ୍ତ୍ରୀ ମେରୁତୁଲ୍ୟ ସ୍ତନ ମର୍ଦ୍ଦି ହେଲା । ଘର୍ମ—ଝାଳ ।

୧୦ । ନୀଳ କୁନ୍ତଳ—ନେଳିଆ ବାଳ, ଚରମ—ପିଠି, ନିଷ୍ଠା—ଲୁଣ୍ଠନ, ଧୂମ-ପନ୍ତି—ଧୂଆଁ ସବୁ, ଊର୍ଦ୍ଧ୍ୱ—ଉପର, ଅଧୋ—ତଳ, ଅଳି—ଭ୍ରମର, ନେଳିଆବାଳ ଫିଟି ପିଠିରେ ପଡ଼ିତ, କାମ ଅଗ୍ନି ପ୍ରବଳ ହୋଇବାରୁ ସ୍ୱେଦ ହବାରୁ ତା ଉପରେ ଲୁଣ୍ଠି ଦେବାରୁ ଧୂଆଁ ଯେପରି ତଳୁ ଉପରକୁ ଯାଏ । ତା ଦେଖି ଆଖି ତୃପ୍ତ ହୁଏ ସେହିପରି ଲାବଣ୍ୟବତୀର ବାଳ ବାଧାରେ ତଳକୁ ଉପରକୁ ଫିଟି ପଡ଼ିଥିବାରୁ ସୁନ୍ଦର ଦେଖା ଯାଉଛି । ନବ ବିକଚ—ନୂଆ ଫୁଟିଥିବା, ନଳୀନ—ପଦ୍ମ—ନୂଆ ଫୁଟିଥିବା ପଦ୍ମରୁ ଭଅଁରମାନେ ମହୁ ପିଇବାକୁ ଉଡ଼ିଲା ପରି ଦେଖା ଯାଉଛି ।


Digitized by srujanika@gmail.com

ଅରୁଣାଧର ଫୁରୁଣାରେ କବା ରେ । ଝିଙ୍କାଏ ଗଲା ରଛରେ କ ପଛଙ୍କ ଭଲୁ ଏ ଗ୍ରମରେ ସେବା ରେ । ସୁନ୍ଦର । ଝାଙ୍କ ନୃହର ଏ ଗିର ଓରେ । ଝଙ୍କ ହାସ କୁଟିଳ ଲୋକେ କାଙ୍କ ବନ୍ଧନ ମୁକ୍ତ ବେଭାର ରେ ।୧୧। ଠିକେ ପଉନ ହୋଏ ବାଳା ରଉନ ଯଉନ ଫୁଲ ମାଳକା ରେ । ଠାଟିକ ଦଣେ ଅମ୍ବୁଜରୁ କ ଖସେ ଅବନୀକି ବଳାଳକା ରେ । ସୁନ୍ଦର । ଠଣ ସେ ପୁଣ ଏ ପର୍ବ ରେ । ଠୁଳେ ଗଙ୍ଗାରୁ ଜଳ ଅଣି ଘନ କ ପଉନ କରଇ ଧରା ରେ ।୧୨। ଡ଼ମ୍ବରୁମଧ୍ୟା ମହୋଜ୍ଜ୍ୱଳ ତାମ୍ବୂଲ ବୋଳ ତୋ ନିର୍ମଳ ଗଣ୍ଡରେ । ଡ଼ାଳମ୍ବ କୁସୁମ ବମ୍ବ ମନୋରମ କ ଅବା ମୁକୁର ଖଣ୍ଡ ରେ । ସୁନ୍ଦର । ଡ଼ୋଳେ ବଣ କରେ ପୁଣି ବର । ଡ଼ାହା ଉତ୍ତୀର୍ଣ୍ଣ ରସାଣ ହେମ ପାତ୍ରେ ସ୍ଥିତ କ ମଣିକ୍ୟ ମାଣିରେ ।୧୩। ଢଳ ଗୃହଁ ରଙ୍ଗଅଧରୁ ଝଁରୁଛି ଦନ୍ତ ଷତ ବଣେ ରକ୍ତ ରେ । ଢ଼ାଳେ ହୃଦସ୍ଥ ସୁଖେ ମୁଖେ କରେ କ ଜଣି ଅନୁରାଗ ବ୍ୟକ୍ତ ରେ । ସୁନ୍ଦର । ଢ଼ମାଳ ଲୋଡେ ଏ ଘଉ ରେ । ଢଳଢଳ ଚୂତପଲ୍ଲବେ ଯେମନ୍ତ ମତ୍ତ

୧୧ । ଫୁରୁଣା—ଅନନ୍ଦ, ଗୀର—କଥା ।
ହେ ସୁନ୍ଦରୀ, ତୁ ବାଲମୁକୁଳ କରି ତୋର ସ୍ୱାମୀଙ୍କ ଏ ବାଲରୂପ ଚଅଁରରେ ସନ୍ତୋଷ କରିବାକୁ ଇଚ୍ଛା କରୁଥିଲୁ କ, ତୋ ବାଳ ତ କୁଞ୍ଚିକୁଞ୍ଚିଆ ବା କୁଟିଳ, କୁଟିଳ ଲୋକଙ୍କୁ ବନ୍ଧନ ମୁକ୍ତ କରିବା ଭଲ ନୁହେଁ, ତୋର ବାଳ ଫିଟାଇବ ସେହିପରି ।

୧୨ । ଅମ୍ବୁଜ—ମେଘ, ବଳାଳକା—ବଗସବୁ, ଧରା—ପୃଥିବୀ, ମେଘରେ ବଗ ଉଡ଼ିଲା ପରି ତୋ ମୁଣ୍ଡରୁ ଫୁଲମାଳ ଖସିବା ଦେଖା ଯାଉଛି, ପୁଣି ମନେ ହୁଏ ଗଙ୍ଗାଜଳ ସ୍ୱଚ୍ଛ, ମେଘ ଗଙ୍ଗାଜଳ ଉଠାଇ ପୃଥିବୀରେ ପକାଉଛି କ,

୧୩ । ଡମ୍ବରୁ ମଧ୍ୟା—ସରୁଅଣ୍ଟା, ତାମ୍ବୁଲ ବୋଲ—ପାନପିକ, ଡାଳମ୍ବ କୁସୁମ—ବମ୍ବ—ଡାଳମ୍ବ ଫୁଲ ଛଇ, ଡାହା—ପୋଡ଼ା, ରସାଣ—ପାଲିସ, ହେମପାତ୍ର—ସୁନାପାତ୍ରରେ ସରୁ ସରୁ ପାନ ବୋଲ ତୋ ଗାଲରେ ଲାଗି ଥିବାରୁ ଏପରି ମନେ ହୁଏ । ଆରସିରେ ଡାଳମ୍ବ ଫୁଲ ପାଖୁଡ଼ା ଲାଗିଛି କ, କବା ପୋଡ଼ା, ପାଲିସ ସୁନା ପାତ୍ରରେ ମାଣିକ୍ୟ ଅଛି କ ?

୧୪ । ଦନ୍ତଷତ—ଦାନ୍ତରେ ଖଣ୍ଡିଆ, ଅନୁରାଗ—ସ୍ନେହ, ଢମାଳ—ଗପ, ଚୂତ ପଲ୍ଲବେ—ଆମ୍ବ ପତ୍ରରେ, ରାତିରେ କାମ ମଦରେ ତୋର ପତି ତୋ ଗାଲରେ ଚୋକ ଦେଲାବେଳେ ଦାନ୍ତସବୁ ବସିଯାଇ ଖଣ୍ଡିଆ ହୋଇଛି । କୋଇଲି ଆମ୍ବପତ୍ରକୁ ଖଣ୍ଡିଆ କଲାପରି ଜଣାଯାଉଛି ।

ପିକ ଚଞ୍ଚୁଘାତ ରେ । ୧୪ । ଅମୂଲ୍ୟ କୁନ୍ଦ ସୁନ୍ଦର କାଶ ମନ୍ଦହାସ ଲେଶ-ମାନ ନାହିଁ ରେ । ଅନନ୍ଦଚନ୍ଦ୍ରମା କେବଣ କାରଣେ କରଣ ଦେଲା କୁହାଇ ଓର । ସୁନ୍ଦର । ଅତ୍ୟନ୍ତ ରସିକ ସେହି ରେ । ଅମୃତ ଭ୍ରମ ଓଷ୍ଠ-ମଧୁ ସହିତେ ପିଇଗଲା ପରା ଛାଡ଼ି ରେ । ୧୫ । ତନୁରେ ଠାବେ ଠାବେ ଲାଗି ଚନ୍ଦନ ଏହି ପ୍ରତୀତ କରାଇ ରେ । ତୋତେ ସେ ଏ ଶୋଭା ଦେଇଗଲା ସ୍ତନକୁଙ୍କୁମ ପାଲଟ ନେଇ ରେ । ସୁନ୍ଦର । ତଥା ତୋ ଅଙ୍କ ଶୋଭନ ଓର । ତରୁଣକୁଞ୍ଜର କରମର୍ଦ୍ଦନରେ ଯେସନ୍ତ ପଦ୍ମାବନ ରେ । ୧୬ । ସ୍ଥୂଳଜାନୁରେ ଦୀପ୍ୟମାନ ଅନେକ ପ୍ରଖର ନଖର ଗିରି ରେ । ଅସ୍ଫୁ ଏ ଇଙ୍ଗିତସଙ୍ଗୀତଜାଣେ ସେ କଳା ପ୍ରସାରଇଲା ପରିରେ । ସୁନ୍ଦର । ଥରୁଅଛୁ କମ୍ପା ନ୍ତର ରେ । ଥିରେ କହ୍ୱଥା କରଛୁ କ ବଲ୍ଲଭ ଚିତ୍ତରତନକୁ ଚୋରି ରେ । ୧୭ । ଦେହେଁ ଦଶୁଛୁ କଙ୍କଣ ଚିହ୍ନମାନ ରଞ୍ଜନ ଖଞ୍ଜନଦୃଶି ରେ । ଦବ୍ୟ ଦାହ ହେମ ପିତୁଳାକୁ କାମ ହୁତଭୁକ କଲା ବସି ରେ । ସୁନ୍ଦର । ଦେଖି ମୁଁ

---

୧୫ । କୁନ୍ଦ—କୁନ୍ଦ ଫୁଲ, କାଶ—କାଶତଣ୍ଡୀ ଫୁଲ, କୁନ୍ଦଫୁଲ ଓ କାଶତଣ୍ଡୀ ଫୁଲପରି ଧଳା ହାସ ତୋର ତ ଦେଖା ଯାଉ ନାହିଁ, ମୁଖଚନ୍ଦ୍ରର କରଣ ନ ଥିଲେ ଯେପରି ଦେଖାଯାଏ ସେହିପରି ଦେଖା ଯାଉଛି, ଜଣାଯାଏ ତୋ ସ୍ୱାମୀ ଭ୍ରମ ରସିକ ଅମୃତ ମନେ କରି ତୋର ଓଠ ମଧୁ ପିଇବାରୁ ଏପରି ଜ୍ୟୋତିହୀନ ହୋଇଛୁ ।

୧୬ । ତନୁ—ଦେହ, ଠାବେ ଠାବେ—ଯାଗାଏ ଯାଗାଏ, ପାଲଟ—ନେଇଟ, ଅଙ୍କ—କୋଳ, କୁଞ୍ଜର—ହାତୀ, କର—ଶୁଣ୍ଢ, ପଦ୍ମିନୀ—ପଦ୍ମବନ ।

ତୋ ଦେହରେ ଯାଗାଏ ଯାଗାଏ ଚନ୍ଦନ ଲାଗିଥିବାରୁ ଏହା ମନେ ହୁଏ, ତୋର ସ୍ତନରେ ଥିବା କୁଙ୍କୁମକୁ ନେଇ ତା ବଦଳରେ ତାଙ୍କ ଦେହରେ ଥିବା ଚନ୍ଦନ ତୋତେ ଦେଇଗଲା, ଅର୍ଥାତ୍ କୁଣ୍ଢାଇଲା ବେଳେ ଚନ୍ଦନ ତୋ ଦେହରେ ଲାଗିଲା, କୁଙ୍କୁମ ତା ଦେହରେ ଲାଗିଲା, ଯୁବାହାତୀ ଶୁଣ୍ଢରେ ପଦ୍ମବନକୁ ମନ୍ଥିଲେ ଯେପରି ଏପାଖ ସେପାଖ ହୁଏ ତୋର ସ୍ୱାମୀ ହାତରେ ତୋତେ ମନ୍ଥିବାରୁ ତୋର ସବୁ ଅଙ୍ଗ ଛନ୍ନମନ୍ନ ହୋଇଛି,

୧୭ । ସ୍ଥୂଳ—ମୋଟ, ତୋର ମୋଟା ଜଙ୍ଘରେ ଅନେକ ନଖଗାର ଦେଖାଯାଉଛି, ସଙ୍ଗୀତ ବୋଲିଲାବେଳେ କଳା ବାହାର କଲାପରି ଏ ଜଣାଉଛି, ଥରୁଛୁ କାହିଁକି—ଅସ୍ତେ ଅସ୍ତେ କଥା କହିତ ସ୍ୱାମୀ ମନକୁ ହରଣ କରଛୁ ?

୧୮ । ଖଞ୍ଜନଦୃଶୀ—ଚଞ୍ଚଳନୟନା,ଦବ୍ୟଦାହ—ଭଲରୂପେ ପୋଡ଼ହୋଇଥିବା, ହେମ—ସୁନା, ପ୍ରୀତିବାନ—ପ୍ରେମସୁନା,

ହେଲଣି ତୋଷି ରେ । ବଲ୍ଲଭ ହୃଦକପଟିରେ ଥିବ ସେ ପ୍ରୀତବାନମାନ କଷି ରେ । ୧୮ । ଧର ମଧ୍ୟ ଧୀରେ ଅଣକତରେ ଅସିବାରୁ ମୁଁ ଯେ ହେଜ ରେ । ଧୂର୍ଜଟିଡ଼ମ୍ବରୁ ସର ସନ୍ଧ୍ୟଟୀ ଅହା ସେ ଗଲା କି ଭାଜ ରେ । ସୁନ୍ଦରି । ଧରାଧର ଯେହ୍ନ ଟେକ ରେ । ଧବ ଭାରା ନିକ ସହି ନ ପାରଲା ଯେବନ୍ତୁ ଅଛୁ ଏଥି କ ରେ । ୧୯ । ନବଭଣୀବାତ ମହା ଅସ୍ତବ୍ୟସ୍ତ ଖୋଷିଲେ ଖସି ପଡଇ ରେ । ନାଗର ଗ୍ରୀବର ଦର ଏତେଦୂର କର ସ୍ଥାନେ ନ ରଖଇ ରେ । ସୁନ୍ଦରି । ନ ରହେ ଏହା ଶୁଣି କ ରେ । ନକଲା ମୋତେ ବନ୍ଧନ ଅବକାଶ ନୋହିବ ଅଜ ଏଣିକ ରେ । ୨୦ । ପ୍ରଣିତ ପଣନ୍ତ ମଧ୍ୟରେ ଲୋଟିଛୁ ଭଲେ ଅସମ୍ଭାଳ ଦେଖି ରେ । ପାଦେ ପଡ ଶାଢୀ କହେ ପତ ସଙ୍ଗବେଳେ ପାରବୁ କ ରଖି ରେ । ସୁନ୍ଦରି । ପଗୃଛୁଛୁ ଏତେ ମୁହିଁ ରେ । ପାଇ ନାହାନ୍ତି ସ୍ଥାନ ଯହିଁ ଏମାନେ ଲଜ୍ଜା ରଖିଥିବ କାହିଁରେ । ୨୧ । ଫୁଲ୍ଲାରବନ୍ଦମୁଖେ ନାହିଁ ପ୍ରସନ୍ନ କାନ୍ତେ ପରାଜୟ ଇଚ୍ଛିରେ । ଫୁରୁଣା ହୁଅ ଫୁଲଧନୁ ଜିଣିଲୁ ଏଥେ ପୃଣି ଯଶ ଅଛୁ ରେ । ସୁନ୍ଦରି । ଫେଡ କହୁଅଛୁ ଜାଣି ରେ । ସ୍ଫୁଟେ କହୁଥିଲୁ ବାଲା ଫୁଲଧନୁ

---

ହେ ଖଞ୍ଜନନେତ୍ରୀ ତୋ ଦେହରେ କଙ୍କଣ ଚିହ୍ନମାନ ଦେଖା ଯାଉଛି, ଭଲରକମ ପୋଡ଼ା ହୋଇଥିବା ସୁନା ପ୍ରତିମାକୁ କଷ୍ଟିରେ ଘଷିକଲା ଭଳି ଜଣାଯାଉଛି, ତୋର ସ୍ୱାମୀ ତାର ହୃଦୟରୂପ କଷଟି ପଥରରେ ପ୍ରେମରୂପ ସୁନାକୁ କଷି ଅଛି କି ?

୧୯ । ମଧ୍ୟ—ଅଣ୍ଟା, ଧୂର୍ଜଟି ଡ଼ମ୍ବରୁ—ଶିବଡମ୍ବରୁ, ଧରାଧର—ପର୍ବତ ।

ଅଣ୍ଟାକୁ ଧର ଆଶକତରେ ଅସ୍ତେ ଅସ୍ତେ ଆସିବାରୁ ମୁଁ ମନେ କରୁଛି ଶିବଙ୍କ ଡ଼ମ୍ବରୁ ପରି ଯେ ତୋର ସରୁକଟି କଣ ଭାଙ୍ଗିଗଲା—ଯେ (କୁଚ) ପର୍ବତ ଧରିବାରୁ ଯଣ ସେ କଣ ସ୍ୱାମୀର ଭାର ସହିପାରିଲା ନାହିଁ—

୨୦ । ଦର—ଭୟ, ବନ୍ଧନ—ବାନ୍ଧିବା, ଅବକାଶ—ଫୁରସତ ।

ତୋର ଭଲରୂପେ ଭଡ଼ାହୋଇଥିବା ନୀବ ସମ୍ଭାଳି ନୋହି ଖସି ପଡ଼ୁଛି, ତୋର ସ୍ୱାମୀର ହାତର ଭୟରେ ସେ କ'ଣ ରହୁନାହିଁ, ବାନ୍ଧିବାକୁ କ'ଣ ଫୁରସତ ହେଲାନାହିଁ ।

୨୧ । ଅସମ୍ଭାଳ—ଅତଶୟ ।

୨୨ । ଫୁଲ୍ଲାରବନ୍ଦମୁଖେ—ଫୁଟିଲା ପଦ୍ମରୂପ ମୁହଁରେ, ଫୁରୁଣା—ଆନନ୍ଦ, ସ୍ଫୁଟେ—ପ୍ରକାଶ୍ୟରେ କାନ୍ତକୁ ହରାଇବାକୁ ଇଚ୍ଛା କର କଣ ମୁଖ-ପଦ୍ମରେ ଆନନ୍ଦ ନାହିଁ, ଛାଡ଼ ସେ କଥା କନ୍ଦର୍ପକୁ ଜିଣିଲୁ ଏଥିରେ ତ ଯଶ ଅଛି, ପ୍ରକାଶ୍ୟରେ କହୁଥିଲୁ ରେ ଫୁଲଧନୁ ଏବେ ତୁ ପଲା—

ପଲା ପଲା ପୁଣି ପୁଣି ରେ । ୨୨ । ବିଧୁ ବିଧୁନ୍ତୁଦମାନଙ୍କୁ ଏହିକ୍ଷଣି ବାହାରିଲା ପରି ମୁଖ ରେ । ବାଧିରେ ଚିକୁରଶୋଭି ମିଳି ହେଲେ ମୁକୁର ଅଣାଇଁ ଦେଖ ରେ । ସୁନ୍ଦରି । ବିଗୁରେ ଏଥି କି ଗୋଳ ରେ । ବୋଲନ୍ତି ତୋ'ତେ ସୁକୁମାରୀ ଏ ଦୁଃଖ ସୁହାଇଲା ଭାବବୋଲ ରେ । ୨୩ । ଭର୍ତ୍ତା ଧରି କରୁ ଗମନ ମଣ୍ଡୁଳୁ ପଦ୍ମହସ୍ତ ଶତକୋଣ ରେ । ଭରି ଦେଇ ଅପସରେ ଅବସର ପାଇଲୁ ଏବେ ତୁ ବଶ ରେ । ସୁନ୍ଦରି । ଭାବ କି ସେ ତାର ଅରି ରେ । ଭାଗ୍ୟ ଦରବିକଶିତ କୋକନଦ ମୁଦ୍ରା କୁମ୍ଭାକୁ ଅଦରି ରେ । ୨୪ । ମହା ଅଳସଭରେ କୁଚକଳଶ ଲୋଟେ ମେରୁଦର୍ପ ହରି ରେ । ମର୍ଦ୍ଦନ ତାଡ଼ନ କରଜ-ପୀଡ଼ନ କେତେ ବେଗରେ ପାସୋରି ରେ । ସୁନ୍ଦରି । ମୁହିଁ ଶିଖାଇଛି ତୋତେ ରେ । ମନ୍ଦ କହିବା ପରେ ନୋହେ ଉଚିତ କରିଥିବୁ ଧବ୍ୟଚିତ୍ତେ ରେ । ୨୫ । ଯଶ ଅଯଶ ବିଗ୍ରହ ଅନୁଗ୍ରହ ବିଗ୍ରହ ନିଗ୍ରହ କରି ରେ । ଯୁବତି ରତିରଣ ଭାବ ନିତମ୍ବ ଉରଜ ଚିହ୍ନିଲ କରରେ । ସୁନ୍ଦରି । ଯୁକ୍ତ ଏ ପାଇବେ ଶାଢ଼ୀରେ । ଯୋଗ ବେଗେ ଅଗେ କର ବନ୍ଧ କଲା ତାକୁ ଦଅ ମଣି ଚୂଡ଼ା ରେ । ୨୬ । ରଙ୍ଗବେଶ ହୋଇ ଅତନୁ ନୟନ ଭୁଜ ହେଲା ଅତି ସୁଖରେ । ରମଣୀ ଚତୁରୀ ଶିରୋମଣି ଅଣି କାଳ ଦେବା ତାର ମୁଖେ ରେ । ସୁନ୍ଦରି । ରତେ କେଶ ଅସମ୍ଭାଳ ରେ । କମ୍ପ ଚରମେ ପଳାଇ ଲୁଚିଥିଲା ବାନ୍ଧିବା ତାହାକୁ ଭାଳ ରେ । ୨୭ । ଲାବଣ୍ୟ ବିମ୍ବ ବିଡ଼ମ୍ବ ଅଧର ତୋ ଘାତକ ହୋଇଛି ଅତି ରେ । ଲାଲସେ ଏତେ ତାମ୍ବୁଳ ଅଭିଷଧି ଦେଇଣ କର ତୃପତି ରେ । ସୁନ୍ଦରି । ଲକ୍ଷ ପ୍ରାପ୍ତ ଅଦ୍ୟ ପ୍ରାନ୍ତ ରେ । ଲଳିତଅଙ୍ଗ ଯେ ରହିଥିଲା ଯାକୁ ଚନ୍ଦନେ କରି ଲେପିତ ରେ ।୨୮

---

୨୩ । ବିଧୁ—ଚନ୍ଦ୍ର, ବିଧୁନ୍ତୁଦ—ରାହୁ, ମୁକୁର—ଆରସି, ଚିକୁର—ବାଳ ।

୨୪ । ଭର୍ତ୍ତା—କାନ୍ତ, ଅପସର—ଛକଅ, ଦର ବିକଶିତ—ଅଳ୍ପ ଫୁଟିଥିବା, କୋକନଦ—ନାଲିକଇଁ, କୁମ୍ଭା—ହାଇ,

୨୫ । କରଜ—ନଖ, ପୀଡ଼ନ—ପୀଡ଼ାଦେବା କରଜ ପୀଡ଼ନ—ନଖକ୍ଷତ ।

୨୬ । ବିଗ୍ରହ—କଜିଆ, ନିଗ୍ରହ—ଦଣ୍ଡଦେବା, ନିତମ୍ବ—ପିଚ୍ଛ, ଉରଜ—ସ୍ତନ, କର—ହାତ,

୨୭ । କାଳ—କଳା,

୨୮ । ଲାବଣ୍ୟ—ସୁନ୍ଦର, ବିମ୍ବ—ପ୍ରତିମା, କଇଁଚ କାକୁଡ଼ି, ବିଡ଼ମ୍ବ—ଖରାପ, ଅଧର—ଓଷ୍ଠ, ତୃପତି—ସନ୍ତୋଷ, ଲକ୍ଷ—ଯତ୍ନ,

ତୋର ପାଚିଲା କଇଁଚ କାକୁଡି ଓଷ୍ଠ କ୍ଷତ ଲାଲ ପାନ ଖାଇ ତାକୁ ନିବାରଣ କର । ତୋର ଦେହ ଜଡ଼ ପଡ଼ି ପୁରୁଷ ଦେହରେ ଲାଗିଥିଲା, ତାକୁ ଚନ୍ଦନ ବୋଳ ହୋଇ ଶୀତଳ କର ।


Digitized by srujanika@gmail.com

ବଗୃହରେ ପବନ ଘନସାର ଅଗ୍ନି ସମେ ଦେଉଥିଲେ ପୀଡ଼ା ରେ । ବ୍ୟାଜ କ ଆଜ ସେ ସୁଖଦ ହେଲକୁ ସିନା ବଢ଼ୁଅଛୁ ଲଜ୍ଜା ରେ । ସୁନ୍ଦର । ବଦେଇ ସେ ଶୋଭାନିଧି ରେ । ବଧୂ ଅସ୍ତବ୍ୟସ୍ତ କରଥିବ ସାଧୁ ସବୁ ଶନୁ ହେଲ ସାଧି ରେ । ୨୯ । ଶୟନ ଚର ନୟନରୁ ଜାଣିଲ ରାଜ କଲ ଶିବରଜନିରେ । ଶ୍ରୀଅଙ୍ଗକୁ ଦେବେ କିଛୁ ଶାନ୍ତି ହେବ ଅଶେଷ ସୁରସପାନି ରେ । ସୁନ୍ଦର । ଶ୍ରଦ୍ଧା ଏଡ଼ାଅଛୁ ତହିଁରେ । ଶଶିହାସି ସେ ବଧି ସ୍ୱପ୍ନେ ଦେଖିବୁ ପାସୋରବା କଥା ନୋହିରେ । ୩୦ । ଷଡ଼ାନନ ତାତ ଅଦ ଦେବତାଙ୍କୁ ଏ ପୂରୁଷ ସଙ୍ଗ ଅଶେ ରେ । ଷୋଡ଼ଶୀ ଯେତେ ଦ୍ରବ୍ୟ ଥିଲ ମନାସି ଦେବୁଛି ଏହି ଦବସେ ରେ । ସୁନ୍ଦର । ଷଣ୍କୁସୁମ ସୁକାନ୍ତିରେ । ଷଡାର୍ଦ୍ଧପୁରବ ପ୍ରମଦା ମାନେ ନାହିଁତୋ ସମାନ ଭାଗ୍ୟବତୀ ରେ ॥ ସାରସଗତ ସଖୀଭାଷ ବଣରେ ମଳ୍ପିଲ ହାସ୍‌-ସରତେ ଯେ । ସତେ ଜରଜ କଲ ଚନ୍ଦ୍ରଶେଖର ମୁଖ କଟବଣ ଭୁରତେ ସେ । ସୁନ୍ଦର । ସଧୀରେ ସଖୀରେ ଯାଇ ଯେ । ସମୀର ବହିଲ ସ୍ଥାନରେ ବସିଲ ଆଶ୍ୱାସନ କଲେ ସଖୀ ଯେ ।୩୨। ହାଟକଟ୍ଟଙ୍କ ଗୋସ୍ୱର ଦେଲେ ସେ ଛଟକେ ମୀଛ ବଢାଇ ଯେ । ହସ୍ତୀ ଦଶନପଲ୍ୟଙ୍କ ଅଙ୍କରେ ସେ ନିଃଶଙ୍କେ ଦେଲେ ଶୁଆଇ ଯେ । ସୁନ୍ଦରୀ ହେଲ ପୂର୍ଣ୍ଣମନୋରଥ ଯେ । ହେଲା ନ କଲ ପୁଂସଲୀଲ! ଭାବନା ଲବମାନ ହୃଦପଥ ଯେ ।୩୩। ଯଡମଣ୍ଡଳମଣ୍ଡନ ଯୀଣୋଦରୀ ଭାବନା ବଣରେ ପୁଂସ ଯେ । ଯଶଦା ଯଣ ପ୍ରାପ୍ତ ଗଲ ବଗୃହରେ କାହିଁ ଥିଲ ଏ ଦବସ ହେ । ଯୁଜନେ । ଯିତେ ଚିନ୍ତି ରାମଚନ୍ଦ୍ର ଯେ । ଯମେ ଉପଇନ୍ଦ୍ର ଉଞ୍ଜ ବୀର କହେ ଅଘ କରିନ୍ଦ୍ର ପାଦନ୍ଦ ହେ ।୩୪।

---

୨୯ । ଘନସାର—କର୍ପୂର, ବ୍ୟାଜ—ଛଳନା, ବଧୂ—ଚନ୍ଦ୍ର, ସାଧୁ—ପଣ୍ଡିତ ପୁଂସ ।

ସ୍ୱାମୀ ସଙ୍ଗରେ ଭେଟ ନ ହେବା ଅଗରୁ ପବନ ଓ କର୍ପୂର ନାଅଁ ପର ଲଣା ଦାଉଥିଲ । ଏ ଛଳନା କଥାନୁହେଁ ଚନ୍ଦ୍ର ମଧ କଷ୍ଟ ଦେଇଥିବ ତେଣୁ ପୁରୁଷ ଚନ୍ଦ୍ର ଗୃଳକ କର ଚନ୍ଦ୍ରକୁ ଅସ୍ତ ବ୍ୟସ୍ତ କରଛୁ ।

୩୦ । ଅଶେଷ—ବେଣି, ସୁରସପାନି—ରସିକା ସ୍ତ୍ରୀ ।

୩୧ । ଷଡ଼ାନନ—କାର୍ତ୍ତିକେଶ୍ୱର, ତାତ—ପିତା, ଷଡ଼ାନନ ତାତ—ମହାଦେବ ଷଣ୍କୁସୁମ—ଛଣପଟ ଫୁଲ, ଷଡ଼ାର୍ଦ୍ଧ—ସ୍ୱର୍ଗମର୍ତ୍ତ୍ୟ ପାତାଳ ତନପୁର ପ୍ରମଦା—ସୁନ୍ଦରୀ ସ୍ତ୍ରୀ,

୩୨ । ସାରସଗତ—ହଂସଗତ ?

# ପଞ୍ଚତ୍ରିଂଶ ଛାନ୍ଦ ।

## ରାଗ-କଳସା ।

( ଦେବତାଙ୍କର ଅଭିଶାପ ପ୍ରଦାନ ଓ ବରର
କନ୍ୟାସହ ସ୍ୱଦେଶ ପ୍ରବେଶ ।)

ଏଥୁଅନନ୍ତରେ ଜନେ ଶୁଣ ଦିବ୍ୟରସ । ପୂରେ ସପତମଙ୍ଗଳା ହେଲା ତହିଁ ଶେଷ ଯେ ।୧। ପଡ଼ିଲା ପରମକଷ୍ଟ ଅଷ୍ଟମଙ୍ଗଳାରେ । ନୋହିଲା ସେ ଦିନ ଭେଟ ପୁରୁଷ ବାଳାରେ ଯେ ।୨। ବସି ବଗୃର ଭରଇ ଲସିକରତନ । ଉତ୍ସବେ କାହିଁକି ହେଲା ଏତେ ହୀନ ଦିନ ଯେ ।୩। ମୋତେ ହରିତାଳୀଗୋଷ୍ଠୀ ହରିତାଳ କରି । ପରି କରି ଦେବ ଦୁଃଖ ଏ ଘୋରଶର୍ବରୀ ଯେ । ୪ । କୁହୂ ନୋହି ଜଗତରେ ମୋଠାରେ ହୋଇଲା । ବଦନଇନ୍ଦୁ ଦର୍ଶନ ଏଣୁ ବରୋଧିଲା ଯେ । ୫ । ଏକାଳେ ଜ୍ୟୋତିଷ ଶୁଭକାଳ ପରବେଶ । ବୋଇଲା ମନ୍ତ୍ରୀସୁତକୁ ମନ୍ତ୍ରୀ କହି ବେଶ ଯେ ।୬। ସୁତା ବିଭା କରି ଦେବ ନେଇଅଛୁ ବର । ଚିତ୍ରଚିନ୍ତା ଅନ ଏ ସନ୍ଦେଶ ଶୁଣି କର ଯେ । ୭ । ରତ୍ନଧ୍ୱଜ ବିଭା ପୁଣି ପୁରୋହିତ ସୁତା । ମୋତେ ଅଗ୍ରେ ଏ ଦେଶେ କରନ୍ତୁ ଯୋଗଧାତା ଯେ । ୮ । ରତ୍ନାକର ସାଧୁର ଅମ୍ବର ଅତିସ୍ନେହୀ । ତାହାର ଭଗ୍ନୀକି ଦାଗ ପୁରନ୍ଦର ପାଇଁ ଯେ । ୯ । ଶୁଣି ତୋଷ ହୋଇ ଧରାପତି ପ୍ରିୟସୁତ । ସେ କାର୍ଯ୍ୟ ନିର୍ବାହ କଲା

---

ପଞ୍ଚତ୍ରିଂଶ ଛାନ୍ଦ ।

୨ । ପରମ—ଶ୍ରେଷ୍ଠ, ଅତ୍ୟନ୍ତ, କଷ୍ଟ—ଦୁଃଖ, ବାଳା—ସ୍ତ୍ରୀ,

୩ । ଉତ୍ସବେ—ଆନନ୍ଦରେ, ହୀନମାନ—ଅବସ୍ଥା

୪ । ହରିତାଳୀ ଗୋଷ୍ଠୀ—ହଳଦୀଆବର୍ଣ୍ଣ, ହରିତାଳ—ହରିତାଳିକା, ବା ଗଣେଶ ଚତୁର୍ଥୀ, ହରି—ଚନ୍ଦ୍ର, ଘୋର—ଭୟଙ୍କର, ଶର୍ବରୀ—ରାତି, ହରି ତାଳିକା ଦିନ ଚନ୍ଦ୍ର ଦେଖନ୍ତି ନାହିଁ ।

୫ । କୁହୂ—ଅମାବାସ୍ୟା, ଜଁଅଁସ, ବଦନଇନ୍ଦୁ—ମୁଖଚନ୍ଦ୍ର, ବରୋଧିଲା—ନିଷେଧ କଲା,

୭ । ସୁତା—ଝିଅ, ବରୁ—ବରଣକର,

୯ । ଭଗ୍ନୀ—ଭଉଣୀ ।

୧୦ । ଧରାପତି—ରାଜା,

ପାଶୁ ପେଣ ପୂର୍ଣ୍ଣ ଯେ । ୧୦ । ଛଳମିଷ ବନ୍ଧୁବଧୂ ଶୁଭେ ହେଲା ସିଦ୍ଧି । ପୂର୍ଣ୍ଣ ଅତି ହରଷ ହୋଇଲା ରସନିଧି ସେ । ୧୧ । କାମକଳା ମେଘମାଳୀ ତାମ୍ରବଲୀ ନାମ । ସପତ୍ନ ହେବାରୁ ସେ ହୋଇଲେ ପୂର୍ଣ୍ଣକାମ ଯେ । ଅଙ୍ଗମାନେ ଦାସୀମାନଙ୍କୁ ପାଇଲେ ବାବତା । ଦେବେ ଯଜ୍ଞଭୁଜେ ସାତେ ଏଣୁ ଦୂର ଚିନ୍ତା ଯେ ।୧୩। ଏମନ୍ତ କେତେ ଦିବସ ଶେଷ ଚଳେ ଛନ୍ଦି । ସିଂହଳଭୂପାଳେ ପ୍ରବୋହିତ ସୁତ ବନ୍ଧି ଯେ ।୧୪। ବୋଇଲା ଯେ କର୍ଣ୍ଣାଟ ସେ ସଂହଳ ପ୍ରଦେଶ । ଏମନ୍ତ ଅବଧାନରେ କର ନରଈଶ ଯେ ॥ ଶଶି-ଶେଖର ରାଜାର ଏକମାତ୍ର ପୁତ୍ର । ଅଛୁ ପ୍ରତିମାକୁ ଘଟିଅଛି ରଖି ନେତ୍ର ଯେ ।୧୬। ଅବଧାନ କଲେ ଏବେ ହୋଇବୁଁ ମେଲାଣି । ଦଣ୍ଡଧର ହରଷ ହୋଇଲେ ଶଚିବ୍ର ଶୁଣି ଯେ ।୧୭। ଯଜ୍ଞଭୁଜ ସମ୍ଭାର ଘେନାଇ ସଚିବଙ୍କୁ । ପ୍ରେଷିତ କଲେ ତ୍ୱରିତ କୁମାର ପାଶକୁ ଯେ । ୧୮ । ଗୃହିଁ ସେ ସମ୍ଭାର ଯୁବରାଜ ହୋଇ ତୋଷ । ଦେଇଛୁ ଧନଦକୋଷ ପରି ରତ୍ନକୋଷ ଯେ । ୧୯ । କରୀ ହୟ ହରିଚୟ ଯାନ ସମାନରେ । ଲକ୍ଷ ସଂଖ୍ୟକ ଦେଇଛୁ ସହିତ ଶିବିରେ ଯେ । ୨୦ । କାମଧେନୁ ପରି ଧେନୁ ସବତ୍ସା କରଣ । କେତେ ପରମିତ ଘେନିଛନ୍ତି ବ୍ରଜଗଣ ଯେ । ୨୧ । କଥା କୁହା ପିକ ଶୁକ ସାରିକା ଅନେକ । ଅଶେଷ ମଞ୍ଜୁଷ ଚର୍ମ ଅଡ଼େଣୀ ସାୟକ ଯେ । ବସନ ପେଡ଼ାମାନଙ୍କ ସଂଖ୍ୟା ହେବ କାହିଁ । ହାଦୋଳା ସ୍ୟନ୍ଦନ ଯହିଁ ଗଣନାହିଁ ନାହିଁ ଯେ । ୨୩ । ଏ ବିଧିରେ ପଦାର୍ଥ ସମର୍ପି

---

୧୧ । ରସନିଧି—ଲାବଣ୍ୟବତୀ, କାରଣ ଏ ତିନହେଁ ତାହାର ସଙ୍ଗୀଥିଲେ ।
୧୬ । ଭୂପତି—ସନ୍ତୋଷ ।
୧୪ । ସିଂହଳ ଭୂପାଳ—ସିଂହଳ ଦେଶ ରାଜା ।
୧୫ । ଅବଧାନ—ଶ୍ରବଣ,
୧୬ । ମେଲାଣି—ବିଦାୟ, ଦଣ୍ଡଧର—ରାଜା,
୧୮ । ଶଚିବ—ମନ୍ତ୍ରୀ, କୁମାର—ରାଜପୁତ୍ର, ସମ୍ଭାର—ସାମଗ୍ରୀ ।
୧୯ । ଧନଦ—କୁବେର, କୋଷ—ଭଣ୍ଡାର,
୨୦ । କରୀ—ହାତୀ, ହୟ—ଘୋଡ଼ା, ହରିଚୟ—ସିଂହ, ଯାନ—ରଥ ।
୨୧ । କାମଧେନୁ—କାମନା ପୂର୍ଣ୍ଣକାରଣୀ ଗାଈ, ସବତ୍ସା—ବାଛୁରସହିତ, ବ୍ରଜଗଣ—ଗଉଡ଼ମାନେ ।
୨୨ । ସାରିକା—ସାରୀ, ମଞ୍ଜୁଷା—ସାଞ୍ଜୁ, ସାୟକ—ଶର ।
୨୩ । ହାଦୋଳା—ପାଲିଙ୍କି ସବାର, ସ୍ୟନ୍ଦନ—ରଥ ।

ଙ୍କଣାଇଲା । ସଭୂଷଣ କର ଦାସୀ ସହସ୍ରେକ ଦେଲା ଯେ । ୨୪ । ଯାଉଛନ୍ତି ଏ ବାହାରେ ପ୍ରିୟସଖୀଗଣ । ଯାହାଙ୍କୁ ଲାବଣ୍ୟଲକ୍ଷ୍ମୀ କଲେ ସମର୍ପଣ ହେ । ୨୫ । ତାହାଙ୍କୁ ପଦାର୍ଥ ଦେଇ ନାହିଁ ତୋଷିବାକୁ । ଶିବର ଅଙ୍କ ଇଚ୍ଛା ଲଭିଲେ ଶିବାକୁ ଯେ । ୨୬ । ଯାହା ଅଙ୍କରେ ହୋଇଛି ଦେଖ ଇନ୍ଦ୍ରପଦ । ଶୁଣାନେ ଭ୍ରମି ସେ ଇଚ୍ଛା ନ କଲେ ସମ୍ପଦ ଯେ । ୨୭ । ଏ ବଧୂରେ ଯେନାଯେନ ଅନେକ ରତନ । ସଜ କରଦେଲା ସେ ବହୁତ ପୋତମାନ ଯେ । ୨୮ । ମାତା ତୋଳ କର ପ୍ରିୟସୁତାକୁ ତଅର । ଉଦୁଖରେ ରତ୍ନହାଦୋଳାରେ ବଢ଼େ ଭଳି ଯେ । ୨୯ । ବୋଇତରେ ବଢ଼େ କଲା ଯୁବରାଜ ସଙ୍ଗେ । ଅନନ୍ତ ପରିବାରିକା ସଖୀ ସଙ୍ଗେ ରଙ୍ଗେ ଯେ । ୩୦ । ଜେମାବ୍ରାତ ମନ୍ତ୍ରୀଆଦ ଯେନ ବାହାରିଲେ । ସେ ଧନ ସବଳ ହୋଇ ସିନ୍ଧୁପାର ହେଲେ ଯେ । ୩୧ । ନାରଦ ମୁଖୁଁ ଶୁଣିଲେ ଅମର-ନକର । ଅତୁଲ୍ୟ ଶୋଭା ନାଗରେ ଥିଲା ମର୍ତ୍ତ୍ୟପୁର ଯେ । ୩୨ । କାଞ୍ଚିପତିସୁତ ଚନ୍ଦ୍ରଭାନୁ ହେଲା ବର । ଦେବେ ପଚାରିଲେ କହ ସେ ସୁନ୍ଦରୀ ଶୋଭା ଯେ । ୩୩ । ଋଷି କହେ କ କହିବ କିଛିମାନ ଶୁଣ ।

---

୨୪ । ସୁଭୂଷଣ—ଭଲ ଗହଣା ପିନ୍ଧାଇ ।

୨୬ । ଶିବ—ମହାଦେବ, ଶିବା—ପାର୍ବତୀ ।

୨୮ । ପୋତ—ଯାହାଜ ।

୨୯ । ପ୍ରିୟସୁତା—ସ୍ନେହର ଝିଅ, ତଅର—ଝୁଲାଇ ।

୩୦ । ବୋହିତ—ଯାହାଜ ବା ଡ଼ଙ୍ଗା ।

୩୧ । ଜେମାବ୍ରାତ—ରଜାଝିଅ, ମନ୍ତ୍ରୀଝିଅ ପୁରୋହିତ ଝିଅ, ସାଧୁ ଭଉଣୀ ସିନ୍ଧୁ—ସମୁଦ୍ର

୩୨ । ଅମର—ଦେବତା, ନକର—ସମୂହ, ଅତୁଲ୍ୟ—ଅତୁଳନୀୟ, ମର୍ତ୍ତ୍ୟପୁର —ପୃଥିବୀ ।

୩୩ । କାଞ୍ଚିପତିସୁତ—କାଞ୍ଚିରାଜା ପୁଅ ।

୩୪ । ନୀଳ—ନେଳିଆ, ଧବଳ—ଧଳା, ବୃଷଳ—ସୁନ୍ଦର, ଗହଳ—ଘନ, ପକ୍ଷ୍ମଳ—ପତଳା, ରଙ୍ଗପୁର—ସୌନ୍ଦର୍ଯ୍ୟ ପୂର୍ଣ୍ଣ, ଇନ୍ଦୀବର—ନୀଳକଇଁ ପୁଣ୍ଡରୀକ—ଧଳାପଦ୍ମ, ଖଞ୍ଜରୀଟ—ଖଞ୍ଜନପକ୍ଷୀ, ମୀନ—ମାଛ, ମଦର— ମଧୁ, ପିଙ୍ଗଳ ।

ସେ ଲାବଣ୍ୟ ବତୀର ଆଖି ନୀଳକଇଁ ପରି ନେଳିଆ ଧଳାପଦ୍ମ ପରି ଧଳା, ଖଞ୍ଜନ ପକ୍ଷୀପରି ଚଞ୍ଚଳ, ମାଛପରି ସୁନ୍ଦର, ଭୁରୁପତଳା ଗହଳ ହେତୁ ଅତ୍ୟନ୍ତ ସୁନ୍ଦର କନ୍ଦର୍ପପରି ମଧ ସେହିରଙ୍ଗିମାଭାବ ଧରିଛି ।

ମାଲ ଧବଳ ଚଞ୍ଚଳ କୁଶଳ ତା ଗୁଣ ଯେ । ୩୪ । ଅତି ଗହଳ ପକ୍ଷ୍ମଳ ରଙ୍ଗପୁର ନେତ୍ର । ଗୁଣେ ଗୁଣେ ଲଭି ହେଲେ ଏମାନେ ପବିତ୍ର ଯେ । ୩୫ । ଇନ୍ଦୀବର ପ୍ରଣ୍ଡରୀକ ଖଞ୍ଜରୀଟ ମୀନ । ମଦବ ଅନ୍ୟ ନେତ୍ରକୁ ହୁଅନ୍ତି ସମାନ ହେ । ୩୬ । ସିହାଣୀ ଗୁହାଣୀ ଶର ବଙ୍କିବା ଛଟକ । ଗୁହିଁ ନ ଗୁହିଁବ କ ଯେ ବଳୁଳ ଟ୍ଟକ ଯେ । ୩୭ । ଡୋଳା ଚଞ୍ଚଳ ରସିକା ନାସିକାକୁ ଗୁହିଁ । ଅନ୍ତପଲାସ୍ଥିତ ଶ୍ରୁତି ଗୁହିଁ ଲେଉଟଇ ଯେ । ୩୮ । ଏତେମାନ ନେତ୍ର ପ୍ରଶଂସାକୁ ଶୁଣି ସୁରେ । ଲାବଣ୍ୟବତୀ କି ବୋଲି କଥା ପରସ୍ପରେ ଯେ । ୩୯ । ସେହି ବୋଲି ବାହାରିବାବେଳେ ମୁନିବର । ଶରପରେ ମାର ତହିଁ ପ୍ରହାରିଲା ଶର ଯେ । ୪୦ । ନିଶ୍ୱାସ ପକାଇ କର ସିନ୍ଧି ବସ୍ମୟ । ନରେ ନିକି ଭୋଗ ହେଲା ଏତେ ଶୋଭାମୟ ଯେ । ୪୧ । ଆମ୍ଭ ଆଶା ବିଫଳକୁ ନେଲା ତ ଦଇବ । ଅବଶ୍ୟ ତାହା ତାହାର ବିଚ୍ଛେଦ କହାଇବ ଯେ । ୪୨ । ସୁରରମଣୀଙ୍କ ମହାଶଙ୍କା ହେଲା ଦୂର । ଭାବିଲେ ବିଚ୍ଛେଦ ଶାପ ନୁହଇ ବେଭାର ଯେ । ୪୩ । ନଳ ଦମୟନ୍ତୀ ପ୍ରାୟ କନ୍ଦୁଦନ ଭଳି । ହୋଇ ପୁଣି ଲଭନ୍ତୁ ବିପୁଳ ଭୋଗମାନ ଯେ । ୪୪ ।

---

୩୭ । ସିହାଣୀ—ଚତୁରୀ, ଗୁହିଁାଣୀ—ଅନାଇବା, ବଳୁଳ ଟ୍ଟକ—ବଳୁଳ ତେଜ ।

୩୮ । ଡୋଳା—ଆଖିଡୋଳା, ନାସିକା—ନାକ, ଶ୍ରୁତି—କାନ, ଅନ୍ତପଲାସ୍ଥିତ—ଶେଷଯାଏ ଲମ୍ବିତ ।

୩୯ । ସୁର—ଦେବତା ।

୪୦ । ଶରପରେ ଶର—ବାଣପରେ ବାଣ, ମାର—କନ୍ଦର୍ପ ।

୪୧ । କର—ହାତ, ବସ୍ମୟ—ଆଶ୍ଚର୍ଯ୍ୟ, ଶୋଭାମୟ—ସୁନ୍ଦର ।

୪୨ । ବିଚ୍ଛେଦ—ପୃଥକ ।

୪୩ । ସୁର ରମଣୀ—ଦେବସ୍ତ୍ରୀ, ମହାଶଙ୍କା—ବେଶିଭୟ ।

ଦେବସ୍ତ୍ରୀମାନେ ଭାବିଲେ ଲାବଣ୍ୟବତୀ ପରି ସୁନ୍ଦରୀ ଏଠାକୁ ଆସିଥିଲେ ଆମ୍ଭଙ୍କ ତ ଦେବତାମାନେ ପଚାରିବ ନ ଥାନ୍ତେ, ସେ ବିଭା ହେବାରୁ ତାଙ୍କ ଭୟ ମଧ ଗଲା ।

୪୪ । ବିପୁଳ—ବେଶି, ଭୋଗ—ସୁଖ ।

ଦମୟନ୍ତୀ ଦେବତାଙ୍କୁ ଛାଡ଼ି ନଳକୁ ବିଭାହେବାରୁ ଦେବତାମାନେ କଷ୍ଟ ଦେଇଥିଲେ କିନ୍ତୁ ଦମୟନ୍ତୀର ସତୀତ୍ୱ ବଳ ଓ ନଳର ଧର୍ମ ବଳରେ ପୁଣି ମେଳହୋଇ ଅତ୍ୟନ୍ତ ସୁଖଭୋଗ କଲେ ।

ନିଃଶ୍ୱାସଉଦ୍ଭବ ଚଣ୍ଡୀ ସିନ୍ଧୁ ଦେଶେ ଯାଇ । ଉପଚ୍ଛାରେ ରହିଲା ରାଜାରେ ପୂଜା
ପାଇ ଯେ । ୪୫ । ଏଥୁ ଅନନ୍ତରେ ତହିଁ ନପତି କୁମାର । ଦେଶଦେଶେ
ପରବେଶ ଅପଣା ନଗର ଯେ । ୪୬ । କର୍ଣ୍ଣାଟଜନକ ଶୁଣି ଅତିତୋଷ
ହେଲେ । ସଚିବଙ୍କୁ ହକାରି ପୁର ମଣ୍ଡାଇଲେ ହେ । ୪୭ । ମହୋତ୍ସବେ
ଅନ୍ତଃପୁରେ ନେଲେ କନ୍ୟା ବର । ଏହି ବଧୂ ମନ୍ଦୀ ପ୍ରବେଶିତ ସାଧୁତର
ଯେ । ୪୮ । ନନ୍ଦନୀ ନିଷେଧପୁର ସ୍ୱୟଂ ସୁକୁମାରୀ । ଯନ୍ତ୍ର ବନ୍ଧୁଭୂଷଣ ବସନେ
ବୋଧ କରି ଯେ । ୪୯ । ଶାଶୁଙ୍କୁ ଓଳଗି ବାସ ନିଭଗ୍ଗଳ କଲା । ପ୍ରବସିନ୍ଧୁ
ହୁଳହୁଳି ନାଦେ ଉଚ୍ଛୁଳିଲା ଯେ । ୫୦ । ନାରୀଏ ପ୍ରଶଂସା କଲେ ଏ
ସଂସାର ସାର । ଜଗଜ୍ଜୟୁଜୟୀମୂର୍ତ୍ତି କି ଏ ମଦନର ଯେ । ୫୧ । କୁନ୍ତଳ
କାଳନ୍ଦୀଜଳ ଜଳଦ କଜ୍ଜ୍ୱଳ । କିଏ ତମ ତାମସ ତମାଳ ଖଣ୍ଡମାଳ
ଯେ । ୫୨ । କି ରାମର ଭ୍ରମର ଅମରବର ମଣି । ଶୁଚି ସୁରୁଚି କସ୍ତୁରୀ
ଶିଖିପୁଚ୍ଛ ଜିଣି ଯେ । ୫୩ । ଚକୋର ପାଳକା କିବା ଅଳକା ଅଳକ ।
ଲଲାଟପଟ ଅର୍ଦ୍ଧେନ୍ଦୁ ଅନଙ୍ଗ ଫଳକ ଯେ । ୫୪ । କର୍ଣ୍ଣ ଚୁତଫଳଫାଳ
କିଂଶୁକ ପାଟଳୀ । କିବା ବନ୍ଧୁଳ ଓଷ୍ଠର ପାଶ ଖଟଦୋଳୀ ଯେ । ୫୫ ।

---

୪୫ । ନିଶ୍ୱାସଉଦ୍ଭବ—ନିଶ୍ୱାସରୁ ଜନ୍ମ ହୋଇଥିବା, ଚଣ୍ଡୀ—ଯୋଗିନୀ ।

୪୭ । କର୍ଣ୍ଣାଟ ଜନକ—କର୍ଣ୍ଣାଟ ରାଜା, ସଚିବ—ମନ୍ତ୍ରୀ ।

୪୮ । ମହୋତ୍ସବେ—ଅତ୍ୟନ୍ତ ଉତ୍ସବରେ, ଅନ୍ତଃପୁରେ—ଭିତର ପୁରକୁ ।

୪୯ । ନନ୍ଦନୀ—ଝିଅ, ରାଜାଝିଅ ନଣନ୍ଦ ।

୫୧ । ନାରୀଏ—ସ୍ତ୍ରୀମାନେ, ସଂସାର ସାର—ଜଗତରେ ପ୍ରଧାନ, ଜଗଜ୍ଜୟୁ—ସଂସାର ଜୟକାରୀ ରୂପ ଏକ'ଣ ମଦନଙ୍କୁ ଅର୍ଥାତ୍ କାମ ସଂସାର ଜୟ କରିବାକୁ ଏରୂପ ତିଆରି କରିଛି ।

୫୨ । କୁନ୍ତଳ—ବାଳ, କାଳନ୍ଦୀ ଜଳ—ଯମୁନାପାଣି, ଜଳଦ—ମେଘ, କଜ୍ଜ୍ୱଳ—କଳା, ତମ—ରାହୁ; ତମସ—ଅନ୍ଧାର, ତମାଳ—କଳା, ଖଣ୍ଡମାଳ—ମେଘ ।

୫୩ । ଭ୍ରମର—ଭଅଁର, ଅମର ବରମଣି—ଇନ୍ଦ୍ର ନୀଳମଣି, ଶିଖିପୁଚ୍ଛ—ମୟୂରପୁଚ୍ଛ, ଶୁଚି—ପବନ ।

୫୪ । ଚକୋର—ଚକୁଆ ପକ୍ଷୀ, ପାଳକା—ଘର, ଅଳକ—ଚୁନାବାଳ, ଅଳକା—ଇନ୍ଦ୍ରପୁର, ଲଲାଟ ପଟ—କପାଳ, ଅର୍ଦ୍ଧେନ୍ଦୁ—ଅଧାଚନ୍ଦ୍ର, ଅନଙ୍ଗ ଫଳକ—କନ୍ଦର୍ପର ଶର ଫାଳ ।

୫୫ । ଚୁତଫଳ ଫାଳ—ଅମ୍ବଫାଳ, କିଂଶୁକ—ପଳାଶ ଫୁଲ, ପାଟଳୀ—ପାଟଳ ଫୁଲ ଲାଲ, ବନ୍ଧୁଳ—କୁଣବନ୍ଧୁ ।

'ଗଣ୍ଡ ଖଣ୍ଡଚନ୍ଦ୍ର ଆଦରଣ ପାଳି ଦଣି । ଗୃହ୍ମ ଭୂରୁ କମାଣ ପରଶୁ ଶିଶୁଣଣୀ ଯେ । ୫୬ । ନାସିକା କୀରତୂଣୀର ଡିଲଫୁଲ ତୁଲ । ଚବୁକ ଚତୁର୍ଥୀଚନ୍ଦ୍ର ନାଗରଙ୍ଗଫଳ ଯେ । ୫୭ । ନେତ୍ର କୁରଙ୍ଗ ତୁରଙ୍ଗ ନୀଳଇନ୍ଦୀବର । ମୀନ ଖଞ୍ଜନ ନଳିନ ମାର୍ଗଣ ମଦର ଗୋ । ୫୮ । ଭଲାତ୍ତୋଳା ଖେଳା ଇନ୍ଦୀବର ଲୀଳା ନିନ୍ଦ । ଅନ୍ତ କୁନ୍ତ ଶାଣିତ ଚରୁଣମର୍ମଭେଦୀ ଯେ ।୫୯। ଗୃହ୍ମ ହୁଳକ ପଲକ ପତନ ଗୃହ୍ମସ୍ତି । ସଂଯତରେ ଦର୍ପକର ଦର୍ପକକରୁସ୍ତି ଗୋ । ୬୦ । ଅଧର ବାଳ ଅରୁଣ ପ୍ରବାଳୁଁ ପ୍ରବାଳ । କି ବିମ୍ବ ଡ଼ାଳିମ୍ବପୁଷ୍ପ ମାଣିକ୍ୟ ହିଙ୍ଗୁଳ ଯେ । ୬୧ । ବନ୍ଧୁକ ସନ୍ଧ୍ୟାମିହିର ମଦାର ସିନ୍ଦୂର । ପୁଣି ଅନୁରାଗ ଜନ୍ମସ୍ଥଳ ପରକାର ଗୋ । ୬୨ । ହାସ କାଶ ପୀୟୁଷ କର୍ପୂର ଚନ୍ଦ୍ରକର । କିଏ କୁମୁଦ ହିଣ୍ଡିର ଦର ହରଧର ଗୋ ।୬୩। ଦଶନ କୁନ୍ଦକୋରକ କରକ ହୀରକ । ମୋତି-ପନ୍ତି ସୁଧାବନ୍ଦୁ ତଣ୍ଡୁଳ ତୁଳକ ଗୋ ।୬୪। ମୁଖବାସ ହୁଳ ଅହ୍ଲାଦ ମନୋହର । ଏକତନୁ କମଳ ଦର୍ପଣ ନିଶାକର ଗୋ । କମ୍ବୁ କପୋତ

---

୫୬ । ଗଣ୍ଡ—ଗାଲ, ଖଣ୍ଡଚନ୍ଦ୍ର—ଅଧାଚନ୍ଦ୍ର, ପାଳୀ—ଫାଳ ( ଦୁଇଖଣ୍ଡ ) ଭୂରୁ—ଭୂଲତା, କମାଣ—ଧନୁ, ପରଶୁ—ଫାରସା, ଶିଶୁଣଣୀ—ଦ୍ୱିତୀୟା ଜନ୍ଦ ।

୫୭ । ନାସିକା—ନାକ, କୀର—ଶୁଆ, ତୂଣୀର—ଶରମୁଣା, ଶୁଆଥଣ୍ଟ ଓ ଡିଲଫୁଲ ସଙ୍ଗେ ନାକ ସମାନ, ଚବୁକ—ଓଠ, ନାଗରଙ୍ଗ—ନାରଙ୍ଗ,

୫୮ । କୁରଙ୍ଗ—ହରିଣ, ତୁରଙ୍ଗ—ଘୋଡ଼ା, ନୀଳଇନ୍ଦବର—ନୀଳକଇଁ, ନଳିନ—ପଦ୍ମ, ମାର୍ଗଣ—ଶର, ମଦର—ରଙ୍ଗବର୍ଣ୍ଣି,

୬୦ । ପଲକପତନ—ପତା ପକାଇବା, ସଂଯତରେ—ସାବଧାନରେ, ଦର୍ପକର—କନ୍ଦର୍ପର, ଦର୍ପକ କରୁସ୍ତି—ଦମ୍ଭ ନାଶ କାସ୍ତି,

୬୧ । ବାଳଅରୁଣ—ସକାଳ ସୂର୍ଯ୍ୟ, ପ୍ରବାଳ—ପୋହଳା, ପ୍ରବଳ—ଅଧିକ, ବିମ୍ବ—କଇଁଞ୍ଚି କାକୁଡ଼ି, ବନ୍ଧୁକ—ହିଙ୍ଗୁଳ—ଲାଲ,

୬୨ । ବନ୍ଧୁକ—ବଧୂଲିଫୁଲ, ସନ୍ଧ୍ୟାମିହିର—ଅସ୍ତବେଳ ସୂର୍ଯ୍ୟ

୬୩ । କାଶ—କାଇଁଶଫୁଲ, କର—କିରଣ, କୁମୁଦ—କଇଁ, ହିଣ୍ଡିର—ଫେଣ, ଦର—ଶଙ୍ଖ, ହରଧର—କୈଳାଶ ପର୍ବତ,

୬୪ । କୁନ୍ଦ—କୁନ୍ଦଫୁଲ, କୋରକ—କଢ଼, କରକ—ଡ଼ାଳିମ୍ବ, ପନ୍ତି—ସମସ୍ତ ତଣ୍ଡୁଳ—ଚାଉଳ,

୬୫ । ହୁଳ—ହୁଟକ, ନିଶାକର—ଚନ୍ଦ୍ର, ପଦ୍ମ, ଦର୍ପଣ, ଚନ୍ଦ୍ର—ଏକଦେହରେ ତା ମୁହଁରେ ଅଛି,

ମଙ୍ଗଳକୁମ୍ଭ ଗ୍ରୀବାଗଳ । ଚରମପ୍ରଭ୍ରା ନିର୍ମଳନଧୀ ରମ୍ଭାଦଳ ଗୋ ।୬୬। ଭୁଜ ଚମ୍ପାମାଳବଧି ମୃଣାଳବଳ୍କସ୍ଥ । ଭଲ କୋକନଦ ବେନ୍ଦୁ ପଲ୍ଲବକୁ ସର ଯେ ।୬୭। ଗନ୍ଧଫଳୀ ଅଙ୍ଗୁଳି ଭଲଜ ଜାତ ଭଲୀ । ବାଣୀ ବେଣୁ ବୀଣା ପିକ ଶୁକ ଥିବ ଦଳ ଯେ ।୬୮। ଜଲଜ କନ୍ଦୁକ ଚକ୍ରବାକ ସମ୍ପୁଟକ । କ ସ୍ୱୟଂଭୂ ଶମ୍ଭୁ ଢମ୍ଭୁ ଅମ୍ବୁଜ କୋରକ ଯେ ।୬୯। ସାତକୁମ୍ଭ କୁମ୍ଭ କୁମ୍ଭୀ କୁମ୍ଭ ରମ୍ଭାକୋଷ । ମୁଦ୍ର ଛତ୍ର ବୋଚନ ସ୍ୟନ୍ଦନଲକ୍ଷଣ ଗୋ ।୭୦। କାମନୃପର ଚୌପର ଚ୍ଚଳଟ ନିଶାଣ । କ ମଲ୍ଲସାଧନଚଳା ପ୍ରସ୍ତର ଘଟଣ ଗୋ ।୭୧। କ ନାରକେଳ ଶ୍ରୀଫଳ ଭାଳ ମାତୁଳଙ୍ଗ । ପୀୟୂଷକୋଷ କ ମେରୁ ସର ଗୁରୁ ତୁଙ୍ଗ ଯେ ।୭୨। ଉଦର ଲାବଣ୍ୟସର ସାରସପଞ୍ଜର । ତ୍ରିବଳୀ ସୋପାନ କିବା ତ୍ରିବେଣୀ ରୁଚିର ଗୋ । ୭୩ । ପ୍ରେମଲତା ଧୂମଲତା, ଶଇବାଳଲତା, ନୀଳପିପିଲିକା ଅଳିଅଳକା ଶୋଭିତା ଯେ ।୭୪। ନୀଳମଣିମାଳା ଭେଲ ମରକତଦଣ୍ଡ । ପଟ୍ଟିଶ ତେଜର ଥୋଇଛନ୍ତି କ ଫୁଲକୋଦଣ୍ଡ ଗୋ

---

୬୬ । କମ୍ବୁ—ଶଙ୍ଖ, ଗ୍ରୀବା—ବେକ, ଚରମପ୍ରଭ୍ରା—ପିଠିର ଶୋଭା. ନିର୍ମଳନଧୀ—ପରିଷ୍କାର ନଈ—ଖର୍ବାଦନଥିବା ନଈ—ଶୁଖିଲାନଈ, ରମ୍ଭାଦଳ—କଦଳିପତ୍ର,

୬୭ । ମୃଣାଳ ବଲ୍କସ୍ଥ—ପଦ୍ମନାଡ଼ି, କୋକନଦ—ଲାଲକଇଁ, ପଲ୍ଲବ—କଅଁଳ ପତ୍ର,

୬୮ । ଗନ୍ଧଫଳୀ—ଚମ୍ପାକଢ଼ି; ଜାତକଳୀ—ଜାଇଫୁଲକଢ଼ି ବେଣୁ—ବାଉଁଶ,

୬୯ । କନ୍ଦୁକ—ପେଣ୍ଡୁ, ସମ୍ପୁଟକ—ଫରୁଆ, ସ୍ୱୟମ୍ଭୁ ଶମ୍ଭୁ—ଶିବଲିଙ୍ଗ, ଅମ୍ବୁଜ କୋରକ—ପଦ୍ମକଢ଼ି,

୭୦ । ସାତକୁମ୍ଭକୁମ୍ଭ—ସୁନାମାଠିଆ, କୁମ୍ଭିକୁମ୍ଭ—ହାତୀଉପରେ ଥିବା ମାଂସ ବା କଳଶ, ରମ୍ଭାକୋଷ—କଦଳୀ ଭଣ୍ଡା, ମୁଦ୍ରତ—ମୁଦ୍ରା, ଛତ୍ର—ଛତା ସ୍ୟନ୍ଦନ—ରଥ,

୭୧ । କାମନୃପ—ମଦନ, ନିଶାଣ—ନାଗରା, ମଲ୍ଲସାଧନ—ମାଲକୁସ୍ତି, ପ୍ରସ୍ତର—ପଥର,

୭୨ । ନାରକେଳ—ନଡ଼ିଆ, ଶ୍ରୀଫଳ—ବେଲ, ମାତୁଳଙ୍ଗ—ଟଭା, ପୀୟୂଷକୋଷ—ଅମୃତଭଣ୍ଡା; ଗୁରୁତୁଙ୍ଗ—ଅତିଉଚ୍ଚ,

୭୩ । ଲାବଣ୍ୟସର—ଶୋଭାପୁଷ୍କରଣୀ, ତ୍ରିବେଣୀ—ଗଙ୍ଗାଯମୁନା ସରସ୍ୱତୀ ସଙ୍ଗମ,

୭୪ । ପ୍ରେମଲତା—ପେଟର ଲୋମ, ଶଇବାଳ—ଶିଉଳ, ପିପିଲିକା—ପିମ୍ପୁଡ଼ି, ଅଳି ଅଳକା—ଭ୍ରମର ସବୁ,

୭୫ । ପଟ୍ଟୀଶ—ଖଣ୍ଡା, ଫୁଲକୋଦଣ୍ଡ—କନ୍ଦର୍ପ,

।୭୫। ମଧ୍ୟ ସିଂହ ଉପରୁ ଝରଣ୍ଟ ଅଟେ ପର । ଗୁରୁଅଙ୍କ କୁଶମୁଦ୍ରା ବିସର୍ଗ ଘଟିବ ଗୋ ।୭୬। ନାଭି ଚୋପ କୂପଗୁଣ ଓକୋଟି ଜଳଭ୍ରମ । ନୀତମ୍ବ ସୁଧାଂଶୁ ଜିଣି ରଥାଙ୍ଗକୁ ସମ ଗୋ ।୭୭। ବଳି ଯଜ୍ଞଅର୍ଘ୍ୟସ୍ଥାଳୀ କିବା ପାନପତ୍ର । ସୁସଞ୍ଚ ସ୍ଥିର ଲକ୍ଷଣ ଯନ୍ତ୍ରଭୂମି ମାତ୍ର ଯେ ।୭୮। ମଣ୍ଡପ କଚ୍ଛପ ଯଜ୍ଞବେଦୀ ଭଦ୍ରାସନ । ହେମପାଣୀ କାମପୁର ରମ୍ଭବ ଜଘନ ଯେ ଗୁରୁ ଉରୁ ରମ୍ଭାତରୁ ଅର୍ଗଳ ସୃଜନ । କରଭ ଜଙ୍ଘୁପ ଜାନୁ ଗୁଲ୍ଫ ବନ୍ଧନ ଗୋ ।। ଅଙ୍ଗୁଳି ଅଶୋକଦଳ ନଖ ଭାନୁମଣି । ପଦ ସ୍ଥଳପଦ୍ମ ଜଳ ମନ୍ଦାରକୁ ଜିଣି ଗୋ ।୮୧। ଗଉରୀ ଗଉରକାନ୍ତି ଚନ୍ଦ୍ରଜଅନ୍ତୁ ଦଳି । ଶମ୍ପା ଚମ୍ପା ସମ୍ପାକକୁସୁମ ହେମହୁଲ ଗୋ ।୮୨। ଗଉରୀ ହରିଦ୍ରା ହରିତାଳ ମଣିପୁଲ । କେତକୀ କଞ୍ଜକେଶର କେହୁ ହେବ ତୁଲ ଗୋ ।୮୩। ତୋମଲେ ତୁଳା ଲବଣୀ ଶିରୀଷ ଧିକ୍କାରୀ । କରଶିରେ ପଦ ଦେବ କସ୍ତିଗତ କର ଗୋ ।୮୪। ବାସେ ଉତ୍ପଳ ଜସୁରୀ ଅନ୍ୟ ମନେ ରମା । କାହା ଅକ୍ଷି ଦେଖି ନାହିଁ ଏମନ୍ତ ସୁଷମା ଯେ ।୮୫। ଏ ବିଧି ପ୍ରଶଂସିବାରେ ରସି ଶୋଭାନିଧି । ଦର୍ଶିତ କରନ୍ତି କେଳି ତହିଁ ନାନାବିଧି ଯେ ।୮୬। ସିଂହଳ ଦ୍ୱୀପ ନୃପଙ୍କ ମନ୍ତ୍ରୀ କି ମେଳାଣି । କେତେଦିନ ଅନ୍ତେ ଯହିଁ କଲେ ନୃପମଣି ଯେ । ୮୭ । ଗଉତମନାରୀର ଉଦ୍ଧାର ଗତିଦାୟୀ । ଉପଇନ୍ଦ୍ର ବୀରବର ସେ ଶ୍ରୀରାମ ଧ୍ୟାଇ ଯେ । ୮୮ ।



୭୬ । ମଧ୍ୟ—ମଝି ବା ଅଣ୍ଟା,
୭୭ । ଜଳଭ୍ରମ—ପାଣି ଭଉଁର, ସୁଧାଂଶୁ—ଚନ୍ଦ୍ର, ରଥାଙ୍ଗ—ଚକ୍ର ବା ଚକ,
୭୮ । ସୁସଞ୍ଚ—ସୁନ୍ଦର ସ୍ଥିର—ସିଗ୍ଧ, ଯନ୍ତ୍ର ଭୂମି—ବୀଣାର ଲାଉ ଭୂମି,
୭୯ । କଚ୍ଛପ—କଇଁଛ,
୮୦ । ଅର୍ଗଳ—କାଠଖମ୍ବ, କରଭ—ହାତିଛୁଆ, ଜଙ୍ଘୁପ—ହେଲା,
୮୧ । ଭାନୁମଣି—ସୂର୍ଯ୍ୟକାନ୍ତ ମଣି,
୮୨ । ଗଉରୀ—ଗୋରୀ, ଗଉରକାନ୍ତ—ଗୋରା ତେଜ ବା ଜାଫ୍ରାନ କେଶର ତେଜ, ଶମ୍ପା—ବିଜୁଳି, ସମ୍ପାକକୁସୁମ—ସୁନାରି ଫୁଲ, ହେମ—ସୁନା,
୮୩ । କଞ୍ଜକେଶର—ପଦ୍ମକେଶର,
୮୪ । କର—ହାତୀ,
୮୫ । ଉତ୍ପଳ—କଇଁ, ଏଠାରେ ନୀଳକଇଁ, ସୁଷମା—ସୁନ୍ଦର,
୮୮ । ଗଉତମ ନାରୀ—ଅହଲ୍ୟା,



# ଷଟ୍‌ତ୍ରିଂଶ ଛାନ୍ଦ ।

## ରାଗ—ଷଡ଼ଜଦେଶ । ତାଳରୂପକ ।

### ( ଦମୟନ୍ତୀର କୌତୁକ ବର୍ଣ୍ଣନା । )

ପ୍ରବେଶ ସୁରଭି ଘନରସସମୟ ଜଡ଼ବର ସୁରଞ୍ଜନ । ସୁଖଦାତା ଘନ-ସାର ପ୍ରକାଶରେ ହରିତାପପ୍ରଭଞ୍ଜନ ହେ ସାଧୁ । ୧ । କମଳତୋଷଦାନ-କର ହୋଇଲା ଦନକୁ ଦୁଃଖ କର । ସୁବାସସୁମନାରେ ସ୍ନେହ ଅଧିକ

---

# ଷଟ୍‌ତ୍ରିଂଶ ଛାନ୍ଦ ।

୧ । ସୁରଭି—ବଉଳଗଛ, ଘନରସସମୟ—ମେଘ, ଅବ ରସପର୍ଣ୍ଣି, ଜଡ଼ବର—ବୃକ୍ଷମାନେ, ପଞ୍ଚମମାନେ, ବେଙ୍ଗୀତ, ସୁରଞ୍ଜନ—ରଞ୍ଜିତ, ଦାବାଗ୍ନି, ଆନନ୍ଦ—ସୁଖ, ଘନସାର—କର୍ପୂର, ମେଘ, ହରିତାପ— ( ହରିତ—ଆପ ) ହରିତ—ହଗ, ଆପ—ଜଳ, ହରି—ବେଙ୍ଗ, ସୂର୍ଯ୍ୟ; ପ୍ରଭଞ୍ଜନ—ପବନ, ଭଣା, ସାଧୁ—ପଣ୍ଡିତ,

(କ) ଅବରସର (ବସନ୍ତ) ଆନନ୍ଦ ଦାୟକ ସମୟ ଆସିଲା । କାରଣ, ଗଛମାନେ ନୂଆପତ୍ର ଫୁଲରେ ଶୋଭିତ ହେଲେ, କର୍ପୂର ଦେହକୁ ଭଲ ଲାଗିଲା, ହଗମାନେ ସୁନ୍ଦର ଦଶିଲେ, ଜଳ ହେବାରୁ ପଦ୍ମ ଫୁଟିଲା, ପବନ ମଧ୍ୟ ବହିଲା ।

(ଖ) ଖରା ସମୟ ହେଲାପରି ଜଣାଗଲା, କାରଣ ବଉଳ ଗଛ ପତ୍ର ଫୁଲରେ ଶୋଭିତ ହେଲା, ପଞ୍ଚମରେ ନଆଁ ଲାଗିଲା, କର୍ପୂର ମଧ ଥଣ୍ଡା ଲାଗିଲା, ପବନ ଅସ୍ରମ ହେଲା ।

(ଗ) ବର୍ଷା ସମୟ ହେଲାପରି ଜଣାଗଲା, ମେଘ ବର୍ଷିଲା, ଗଛମାନେ ସତେଜ ହେଲେ, ବେଙ୍ଗଙ୍କର କଷ୍ଟ ଗଲା ।

(ଘ) ଶୀତ କାଳପରି ମଧ ଜଣାଗଲା, ବେଶି ଜାଡ଼ ହେଲା, ଘୋଡ଼ ହେବାକୁ ସୁଖ ଲାଗିଲା, କର୍ପୂର ମୁଖକୁ ପିତା ହେଲା ଓ ଅସୁଖ ଲାଗିଲା, ସୂର୍ଯ୍ୟଙ୍କର ତେଜ ମଧ କମିଲା ।

୨ । କମଳ—ପଦ୍ମ, ଜଳ, ସାରସ ପକ୍ଷୀ, ଅଗ୍ନି, ଦନ—ଦିବସ, ଗାନ—ଦୁଃଖ । ( ଏଠାରେ ବଢ଼େଇ ) ସୁବାସ ସୁମନା—ମାଳତୀ ଫୁଲ, ସୁନ୍ଦରୀଙ୍କୀ ସୁବାସ—ଭ୍ରମ ଲତା ।

ସଞ୍ଜଳଜନ ଆଦର । ୨ । କଳକଣ୍ଠ ରବ ଦାଗଲେ ଶୁଭଇ ଅନଙ୍ଗ ପ୍ରବଳ ଯହିଁ । ହେଲା ଶୋଭା ବନବିହାର ଯହିଁରେ ଅନେ ମନ ନ ରସଇ ।୩। ପୁଷ୍କରେ ସାରଙ୍ଗ ଲୀଳା ପ୍ରକାଶିଲେ ନାୟିକା ବିଚ୍ଛେଦୀ ଲୁନ୍ତ । ଅଶାରେ

---

(କ) ଏହି ଅଦରସ କାଳରେ ( ବସନ୍ତ କାଳରେ ) ପଦ୍ମ ଆନନ୍ଦ ଦେବାରୁ ଦନରେ ମିଳନ ନ ହେବାଯୋଗୁ ଦନନାୟକ ଦୁଃଖ କ କଷ୍ଟକର ହେଲା । ସମସ୍ତେ ବାସନା ଫୁଲକୁ ସ୍ନେହ କଲେ ।

(ଖ) ଖରାଦନ ହେବୁ ( ଜଳକୁ ସମସ୍ତେ ଆଦର କଲେ । ଖରାହେବୁ ଦନଯାକ ବଡ଼ କଷ୍ଟ ହେଲା, ସମସ୍ତେ ସୁଗନ୍ଧ ଫୁଲମାଳ ପକାଇଲେ ।

(ଗ) ବର୍ଷା ହେବୁ ସାରସ ପକ୍ଷୀ ଆନନ୍ଦ ହେଲା, ବିଚ୍ଛେଦୀମାନେ ବର୍ଷାଯୋଗୁ ଦୁଃଖ ଅନୁଭବ କଲେ, ମାଳତୀ ଫୁଲକୁ ସମସ୍ତେ ଆଦର କଲେ ।

(ଘ) ଶୀତକାଳ ହେବୁ ଲୋକେ ନିଆଁକୁ ଭଲ ପାଇଲେ, ସୁନ୍ଦରୀ ସ୍ତ୍ରୀମାନଙ୍କୁ ସମସ୍ତେ ନବାକୁ ଇଚ୍ଛା କଲେ ।

୩ । କଳକଣ୍ଠ—କୋଇଲି, ଗାୟକ ଶବ୍ଦ, ହଂସ, ପାରାବତ, ବନବିହାର—ବଣରେ କ୍ରୀଡ଼ା କରିବା, ପାଣିରେ କ୍ରୀଡ଼ା କରିବା, ଘରେ କ୍ରୀଡ଼ା ।

(କ) ବସନ୍ତକାଳ ହେବୁ କୋଇଲି ବୋବାଇଲା, ତାହା ଶୃରଅଡ଼େ ଶୁଣି ଲୋକେ କାମରେ ଆତୁର ହୋଇ ଫୁଲ ବଗିଚାରେ ବିହାର କଲେ ।

(ଖ) ଖରାଦନରେ ପାରାବତର ଶବ୍ଦ ଶୁଭିଲା, ଲୋକେ ଖରାହେବୁ ଜଳକେଳି କରି ତୃପ୍ତ ହେଲେ ।

(ଗ) ବର୍ଷା ଦନରେ ଗାୟକମାନେ ଗୀତ ବୋଲିବାରୁ ସମସ୍ତେ ଆନନ୍ଦ ହେଲେ ପାଣିସବୁ ନଈରେ ପ୍ରବଳ ବେଗରେ ଯିବାକୁ ଲାଗିଲା ।

(ଘ) ଶୀତଦନରେ ହଂସମାନେ ଶବ୍ଦ କରି ଆନନ୍ଦରେ ଜଳକ୍ରୀଡ଼ା କଲେ, ଏହା ଦେଖି ଲୋକମାନେ ଆନନ୍ଦ ହୋଇ ଘରେ ରହି କ୍ରୀଡ଼ାରେ ମାତିଲେ ।

୪ । ପୁଷ୍କର—ପଦ୍ମଫୁଲ, ପାଣି, ଆକାଶ, ସାରଙ୍ଗ—କୋଇଲି, କର୍ପୂର, ଚାତକ ପକ୍ଷୀ, ହଂସ ।

(କ) ବସନ୍ତରେ ପଦ୍ମଫୁଲ ଫୁଟିବାରୁ ଶୋଭା ଦଶିଲା, କୋଇଲି ବୋବାଇବାରୁ ଆନନ୍ଦ ଜାତ ହେଲା, ସ୍ୱାମୀ ପାଶରେ ନ ଥିବା ସ୍ତ୍ରୀମାନେ ସ୍ୱାମୀ ଆସିବା ଦନକୁ ଗଣି କାନ୍ଥରେ ଗାର ପକାଇଲେ ।

(ଖ) ଗ୍ରୀଷ୍ମରେ ଲୋକସବୁ କର୍ପୂର ନାଇ ପାଣିରେ ପଡ଼ି ଗ୍ରୀଷ୍ମତାପ ହରିଲେ, ବିଚ୍ଛେଦୀ ସ୍ତ୍ରୀ କାମ ଭୟରେ ନିଶିଦନ ଗଣିଲେ ।

(ଗ) ବର୍ଷାହେବୁ ଆକାଶରେ ଚାତକ ପକ୍ଷୀ ଉଡ଼ି ଆନନ୍ଦ ହେଲେ, ମେଘମାନେ ଆକାଶରେ ଉଡ଼ି ଖେଳୁଥିବାପରି ବର୍ଷା କଲେ, ବିଚ୍ଛେଦୀମାନେ ସ୍ୱାମୀ ନ ଥିବାରୁ ବଡ଼ ଦୁଃଖିତ ହୋଇ ଦନ ଗଣିଲେ ।

ଦୃଷ୍ଟି ପକାଇ ସେ ଭିତରେ ଲେଖି ବସେ ବଣ୍ଟ ଦିନ । ୪ । ନଗରେ ବରହ୍ମି ଦୀପ୍ତିମାନ ହେଲେ ସଂଯୋଗ ଲୀଳା ପ୍ରକାଶ । ଜନନୟନକୁ ଉନ୍ମୀଳିତ ଅତି, ଜୀମୂତ ନୋହିଲା ଦୃଶ୍ୟ । ୫ । ଏମନ୍ତ କାଳମାନଙ୍କେ ନୃପସୁତ ନୃପନନ୍ଦିନୀର ସଙ୍ଗେ । ଗୃହଦନୀ ମଣାଇ ଜଗତୀଅଙ୍କରେ ବଢାଇ ରଙ୍ଗେ । ୬ । ଏକ ଲବ ନବପଲ୍ଲବଅଧର ପାଶରୁ ନୁହଇ ଭିନ୍ନ । ଅଙ୍ଗ ସୁବାସ ଶୀତଳ ସଦା କରୁଥାଇ କର୍ପୂର ଚନ୍ଦନ ।୭। ଅଧରପାନେ ଅମୃତ ଅଛି ଜାଣେ ସକଳ ମଧୁର ଦେଖି । ଭାବଇ ସ୍ୱୟମ୍ଭୁ ଶମ୍ଭୁ କମ୍ବୁକଣ୍ଠୀ ତରଙ୍ଗ

(ଘ) ଶୀତରେ ପାଣିରେ ହଂସମାନେ ଆନନ୍ଦରେ ଖେଳଲେ, ଏହା ଦେଖି ବିଚ୍ଛେଦୀ ସ୍ତ୍ରୀମାନେ ଏକାକୀ ଶୀତକଷ୍ଟ ଓ ସ୍ୱାମୀ କଷ୍ଟରେ ବଡ଼ ଦୁଃଖିତ ହୋଇ ଦିନ ଗଣିଲେ ।

୫ । ନଗରେ—ପର୍ବତ ମାନଙ୍କରେ, ବୃକ୍ଷମାନଙ୍କରେ, ଲୋକ ବସତିନଗରରେ, ବରହ୍ମି—ଗଛସବୁ, ବନଅଗ୍ନି, ମୟୂର, ଅଗ୍ନି, ସଂଯୋଗ—ଏକତ୍ର, ଜୀମୂତ—ମେଘ, ପର୍ବତ—ବଜ୍ରଦ,

(କ) ବସନ୍ତରେ—ପର୍ବତମାନଙ୍କରେ ଥିବା ବୃକ୍ଷସବୁ ନୂଆଫୁଲ ପତ୍ରରେ ଭୂଷିତ ହେବାରୁ ସୁନ୍ଦର ଦିଶିଲେ, ସ୍ତ୍ରୀ ପୁରୁଷ ଏକତ୍ରରେ ଆନନ୍ଦରେ କ୍ରୀଡ଼ାକଲେ, ମେଘ ମଧ ଦେଖା ନ ଯିବାରୁ ଆକାଶ ନିର୍ମଳ ଦେଖାଗଲା ।

(ଖ) ଖରାରେ ପର୍ବତମାନଙ୍କରେ ଗଛଗୁଡ଼ିକ ଗରମ ହୋଇ ଘଷି ହେବାରୁ ନିଆଁ ବାହାରିଲା, ସେ ନିଆଁ ଏ ବଣରୁ ସେ ବଣକୁ ମାଡ଼ିବା ଲୀଳା ଦେଖାଗଲା, ସୂର୍ଯ୍ୟଙ୍କ ତେଜହେତୁ ମେଘ ଆକାଶରେ ହେଲେ ନାହିଁ ।

(ଗ) ବର୍ଷାରେ ବର୍ଷା ହେବାରୁ ପର୍ବତରେ ବା ଗ୍ରାମମାନଙ୍କରେ କଳା ମେଘକୁ ଦେଖି ମୟୂରମାନେ ପୁଚ୍ଛଟେକି ନାଚିବାରୁ ଶୋଭା ଦିଶିଲା, ପର୍ବତ ସବୁ ମେଘରେ ଢୋଡ଼ାଇ ହୋଇଗଲେ ।

(ଘ) ଶୀତରେ ଲୋକମାନେ ଘରେ ଘରେ ନିଆଁ ଜାଳି ଶୀତକଷ୍ଟ ନିବାରଣ କଲେ, ଆକାଶ ନିର୍ମଳ ଦେଖାଗଲା, ସଂଯୋଗଲୀଳା ମଧ ଅଧିକ ହେଲା ।

୬ । ଗୃହଦନୀ—ଚନ୍ଦ୍ରକାନ୍ତ, ଚନ୍ଦ୍ରଗତ, ଜଗତି ଅଙ୍କରେ—କୋଠାଘର ଉପରେ ବା ସିଂହାସନ ଉପରେ ।

୭ । ନବପଲ୍ଲବ—ନୂଆ କଅଁଳ ପତ୍ର (ଲାଲ), ଅଧର—ଓଷ୍ଠ, ଅଙ୍ଗ—ଦେହ, ସୁବାସ—ବାସନା, ଶୀତଳତା—ଥଣ୍ଡା ।

୮ । ସକଳ ମଧୁର—ସମସ୍ତ ପ୍ରକାର ମିଠା ଜିନିଷ, ସ୍ୱୟମ୍ଭୁ—ନିଜ ଇଚ୍ଛାରେ ଉଠିଥିବା, ଶମ୍ଭୁ—ମହାଦେବ, କମ୍ବୁ—ଶଙ୍ଖ,

ଅଭସ୍ତ ଦାମା ।୮। ସକଳ ଗୃହରୁ ଉପରେ ଗୃହଟି କହଇ ଚତୁର ବାଣୀ । ଅଣିପାଦ ଘୁଞ୍ଚୁ ବଢ଼ ଭବ ଗଣ ଗୁମ୍ଫନ ଦେବାର ଅଣି ।୯। ଲେଖଇ ନୀବୀମୋକ୍ଷକୁ ମୋକ୍ଷ କର ନିରତେ ମନରେ ଛାର । ଗ୍ରବେ ଦମ୍ପତିରୁ ବଡ଼ ସମ୍ପତ୍ତ କ ଭୋଗ କରେ ପୁରନ୍ଦର ।୧୦। ନୀରଦକୁନ୍ତଳ ପର୍ଯ୍ୟ ଗ୍ରମର ଗଛ ପର୍ଯ୍ୟ ଦ୍ୱିରଦ । ନୟନ ପର୍ଯ୍ୟ କୁରଙ୍ଗ ଜାହାଙ୍କ କର ତରଙ୍ଗ ବନୋଦ ୧୧ । ଜଘନ ପର୍ଯ୍ୟ ସିଂହାସନ, ସ୍ତନ ପ୍ରାୟ ପୂର୍ଣ୍ଣକୁମ୍ଭ ଜାହିଁ । ଚକ୍ରବର୍ତ୍ତି ଏ ସମାନେ ସୁଖ ଅଭିଷେକ କାଳେ ପାଇ ନାହିଁ ।୧୨। ଏମନ୍ତ ପ୍ରେମ୍ଣା ଜାନୁ ବନା ଅସନ ଉର ବନୁ ଅନ ଶଯ୍ୟା । ନ ଦେଇ ହରଲା ଦବା ରଜନୀକ ବଶ କର ତୃଷ୍ଣରଜା ।୧୩। ଚକ୍ଷୁଲେକ୍ଷଣୀ ଯେ ଅଖିଲେ ବାନ୍ଧିଲା ତା ମନ ପ୍ରକାଶି ପ୍ରେମ । ଥାଉ ଶୟନେ ନୟନେ ନ ଦେଖଇ ଅୟନେ ଅଜ ଚରମ ।୧୪। ସୋପାନ ଅବରୋହଣେ କରପଇଠ ଯାଶ ଭ୍ରଙ୍ଗ ଦେଇ ପାନ । ଭଦ୍ରାନ୍ତେ ବ୍ୟଞ୍ଜନେ ବିଅଁ ଛଡ଼ାଇବେ କରେ ଚନ୍ଦନ ଲେପନ ।୧୫। ପ୍ରାତରୁ ଉଠି ସ୍ମରଣ କରନ୍ତି ଦୁହେଁ ଦୁହିଁଙ୍କର ନାମ । ମୁଖ ନିରେଖିଲ ଉଠାରୁ ଦେଖନ୍ତି ଦେବପତି ଏଡ଼େ ପ୍ରେମ ।୧୬। ବାରନ୍ତି ନେତ୍ରକୁ ପଲକ ଥିବାକୁ ପୁଲକ ହେବାକୁ ଅଙ୍ଗେ । ରଖି ଦେବେ ନାହିଁ ଛାର ବସନକୁ ଅଲିଙ୍ଗନ ଅନୁରାଗେ ।୧୭। ଶୟନକାଳେ ବେନି ହୃଦ ମଧ୍ୟରେ ନ ଗଲେ ମୃଣାଳସୂତା । କୁସୁମକାଳେ ଏକମୃରେ ଥିଲେହେଁ ତନୁଅନ୍ତ-

---

୯ । ଅଣି—ଢଙ୍ଗ—ଭଙ୍ଗୀ,

୧୦ । ନୀବୀ ମୋକ୍ଷ—ବସ୍ତ୍ର ଫିଟାଇବା, ପୁରନ୍ଦର—ଇନ୍ଦ୍ର,

୧୧ । ନୀରଦ—ମେଘ, କୁନ୍ତଳ—ବାଳ, ଗ୍ରମର—ଚଅଁର, ଦ୍ୱିରଦ—ହାତୀ, ତରଙ୍ଗବନୋଦ—ଢୋ଼ଲା ଖେଳାଇବା ଭଙ୍ଗୀ,

୧୨ । ଜଘନ—ଜଙ୍ଘ, ଚକ୍ରବର୍ତ୍ତି—ଲକ୍ଷେଶ୍ୱରଙ୍କର ମଉଡ଼ମଣି,

୧୩ । ଅସନ—ବସାଇବା, ତୃଷ୍ଣରଜା—ନବଯୁବତୀ,

୧୪ । ଚକ୍ଷୁଲେକ୍ଷଣୀ—ଶୀଘ୍ର ଅଖି ଫେରାଇବା,ଶୋଇଲା ବେଳେ ପିଠି କରିବା ଦୂରେ ଥାଉ—ପରସ୍ପର ବଦାୟ ବେଳେ ପିଠିକର କେହି ଯାଆନ୍ତି ନାହିଁ,

୧୫ । ସୋପାନ—ପାହାଚ,

୧୬ । ନେତ୍ର—ଅଖି, ପଲକ—ପତା ପକାଇବା, ପୁଲକ—ଆନନ୍ଦ, ରୋମ ଟାଙ୍କୁରିବା,

୧୮ । ମୃଣାଳସୂତା—ପଦ୍ମନାଡ଼ ଭିତରୁ ଯେଉଁ ସରୁସୂତା ବାହାରେ, କୁସୁମକାଳ—ଋତୁ ସମୟ, ତନୁ—ଦେହ;


Digitized by srujanika@gmail.com

ରକୁ ଚିନ୍ତା ॥ କାନ୍ଦନ୍ତି ଧାତାକୁ ବଡ଼ ଦାରୁଣ ସେ ଏ କଥା କାହୁଁ ବଗୁବ । ତାଗ ଚନ୍ଦ୍ରପସ ଭୋଗ ନ କରଇ କୁମୁଦ ଚନ୍ଦ୍ରମା ପର । ୧୯ । କାଶାପତି ଦୀପକେ୍ୟାତ ଯହିଁ ଦୂତୀ ହୋଇ ଛଡ଼ାଇ ସଙ୍କୋଚ । ପଞ୍ଚନାଗଚ ପାଞ୍ଚ ଛାଙ୍କ ନ ଧାଇ ଦୁହେଁ ଦୁହିଁଙ୍କ କବଚ । ୨୦ । କ୍ଷୀରନୀର ପରି ଅଭେଦ ପୀରତି ବେନି ଛନ୍ତି ଏକ ପ୍ରାଣ । ଦର୍ପଣ କରି ହୃଦରେ ପ୍ରତିବମ୍ବେ ମନେ ଭଲ କଥା ପୁଣ । ୨୧ । ନାଗବଲ୍ଲୀଦଳ ବେନିଭାଗ କରି ଭୁଞ୍ଜନ୍ତି ରଞ୍ଜନ୍ତି ଚିତ୍ତ । ବଚନ ପ୍ରତିପଦରେ ଉପସର୍ଗ ହୋଇ ଥାଇ ଯେ ଇଙ୍ଗିତ ।୨୨। ମଧୁ ମାଧବରେ ଜଳଯନ୍ତ୍ରପୁରେ ଜଳଦବାଡ଼ ରଚନ । ଅଗର ଚନ୍ଦନ ଚୁଅରେ ପିଚକା କରନ୍ତି ଭାବେ ସେଚନ । ୨୩ । କୁସୁମଶେଯେ ଚନ୍ଦ୍ରକରେ ଶୟନ ଏଣୁ ନିଦ୍ରା ନ ଆସଇ । ଯେଣୁ ମନ ଶଙ୍କା ବିବସନ ପାଇଁ ବେନି ଜନଙ୍କର ଥାଇ । ୨୪ ବରଷରେ ବିଦ୍ୟୁ ଝିଟିଝିଟି କେକୀନାଦକୁ ଗୃହାନ୍ତି ସୁଖେ । ଅତି ତମସ ଦବସ କାଶାମଣି ରତ୍ନକୁ ପ୍ରଶଂସି ମୁଖେ । ୨୫ । ରଖି ନ ପାରନ୍ତି ବିଧିନିଷେଧକୁ ଭେକ ଡ଼ାହୁକ ଶବଦ । ଶୁଣନ୍ତି ମଣନ୍ତି ତାହୁଁ ଭିଆଇଲା ଅନଙ୍ଗ ଠେଲଙ୍ଗୀ ବାଦ୍ୟ । ୨୬ । ଶରଦ ଋତୁରେ ଚତ୍ୱରେ ଭ୍ରମନ୍ତି କର ଧରାଧରି ହୋଇ । ମାଲତୀ ମଧୁପ ପ୍ରୀତିକି ଲଭନ୍ତି ଏହି ନାମ ଛଳ ଦେଇ । ୨୭ । ନିଜ ଅନୁରାଗ ଅଧିକେ ଦେଖାଇ ସେ

---

୧୯ । ତାଗ ଚନ୍ଦ୍ର ଏକବ ଥାନ୍ତି ସ୍ନେହଥାଏ କିନ୍ତୁ ଚନ୍ଦ୍ର ଦୂରରେ ଥାଇ ପରସ୍ପର ଦେଖା ହେବାରୁ ସ୍ନେହଥାଏ ସେହିପରି—

୨୦ । ଦୂତୀ—ଯେ ସ୍ତ୍ରୀ ପୁରୁଷ ମିଳାଇ ନାନାଦି କଥା କହି ଭୟ ଛଡ଼ାଇ ଆନନ୍ଦ ଦୁଅନ୍ତି ସେହିପରି ଚନ୍ଦ୍ର ଦୂତୀପରି ଆଲୁଅ ଦେବାରୁ ଆନନ୍ଦରେ କ୍ରୀଡ଼ା କରନ୍ତି, ପଞ୍ଚନାଗଚ—କନ୍ଦର୍ପ, କବଚ—ସାଞ୍ଜୁ,

୨୧ । ଆରସିରେ ଯେପରି ମୁହଁ ଦେଖାଯାଏ—ମାନ ଏ ଦୁହେଁ ପରସ୍ପର ମନକୁ ଦେଖନ୍ତି

୨୨ । ନାଗବଲ୍ଲୀଦଳ—ପାନପତ୍ର ଉପସର୍ଗ—ଉପସର୍ଗ,

୨୩ । ମଧୁ—ବସନ୍ତ ସମୟ, ମାଧବ—ଗ୍ରୀଷ୍ମକାଳ, ଜଳଦ—ବେଣାଚେର— ବାଡ଼—ପରଦା, ସେଚନ—ସିଞ୍ଚିବା,

୨୪ । କୁସୁମ—ଫୁଲ, କରେ—କିରଣରେ, ବିବସନ—ଲଙ୍ଗଳା, ଶଙ୍କା—ଭୟ,

୨୫ । ବିଦ୍ୟୁ—ବିଜୁଳି, ଝିଟିକି—ଝିଟିକିବା, କେକୀ— ମୟୂର, ଦବସ—ଦିନ, ତମସ—ଅନ୍ଧାର, କାଶା—ରାତି,

୨୬ । ବିଧି ନିଷେଧ—ନିୟମ ନଥିବା, ଭେକ—ବେଙ୍ଗ, ଅନଙ୍ଗ—କନ୍ଦର୍ପ,

୨୭ । ସ୍ତ୍ରୀ ପୁରୁଷକୁ ଭ୍ରମର, ଓ ପୁରୁଷ ସ୍ତ୍ରୀ କି ମାଲତୀବୋଲି ଡ଼ାକନ୍ତି—

କାଲେ ସୃମାରଛନ୍ତି । ସବୁଠାରେ ଜୀବଧବ ପାଇଁ ପ୍ରିୟା-ଚେତନାର ସିନା ଜୀବନ । ୨୮ । ବସ୍ତ୍ରର ଉତ୍ତୁଣ ବୋଲଇ ଦାରୁଣ ଜୀଅଁଇ ସିନା ତେ ପକ୍ଷୀ । ତାମ ବନା ରତ ଚନ୍ଦ୍ର ବନ୍ଦୁ ସହ ନ ପାରଲେ ଜୀବ ନକ୍ଷୀ । ୨୯ । ହିମ ଶିଶିରେ ଅଗୁରୁଧୂପ ସ୍ନେହେ କର ହସନ୍ତୀ ଜ୍ୱଳିତ । ନଶାରେ ନିଶାରେ ଅଦର ତେଜନ୍ତ ତନୁ ଜୁଷୁମରୁ ସତ । ହେବନ୍ତ ବେଳ ଯେ ଧନ୍ୟ ଦମ୍ପତିଙ୍କ ବପତ୍ତ ନାହିଁ ଏ କାଳେ । ବହୁତ ଚାପ ବାରଣର ସମ୍ପତ୍ତି ଜରୁ ଉତ୍ତୁଣୀର ବଳେ ।୩୧। ଭାବୁଥିବେ ଦନ ବରହୀ ଅଙ୍ଗକୁ ଜଳ ସ୍ଥଳେ ଗତ ନାହିଁ । ବସ୍ଥ ମକର ବଡପ ଘାତ ସହି ଜୀଇବା କେମନ୍ତ ହୋଇ ।୩୨। ଏ ବଧି ଭାବ ଜଲ୍ପ ନାନା ବବଧ ବଳାସ ପ୍ରକାଶ ଯେତେ । ପଛେ ତ ପାଞ୍ଚୁଛନ୍ଦେ ବ୍ୟକ୍ତ ହୋଇବ ଶୁଣିନ ପୁଣି ପଣ୍ଡିତେ ।୩୨। କହିବା ଦନକ ରସ ରହସ୍ୟକୁ ଶୁଣ ଦେଇକର ମନ । ପଶା ଖେଳିବା କି ବାଳୀ ବୋଲିବାକୁ ଛଳି ଲା ପୁଂସ ରତନ ।୩୪। ଉଭ ଚରଣ ପାଲ୍ ଛକ ଶବ୍ଦ ସ୍ତନ ସାରେ ଶୋଭା ପାଉ । ବଦ୍ୟୁବଳିତ କାନ୍ତି ଧାନ ଯହିଁରେ କି ଖେଳ ଖେଳିବା ଆଉ ।୩୫। ବେନି ଜଣରୁ ଜଣେହେଁ ନ ହାରିବା ହାରିବ କୁସୁମଶର । ମନେ ବସ୍ତ୍ରର ତ ଏତେ ସୁଖ ସ୍ଥଉ ଅନ ନିକ କରିବାର ।୩୬। ଶୁଣି ରସିକାରମଣୀ ଯେ ବୋଇଲା ଏ ଉକ୍ତିକି କେ ପାରିବ । କାହିଁ କଥା ନେଇ କାହିଁ ଲଗାଇବ ତହିଁ କି ଉତ୍ତର ଥିବ ।୩୭। ଏ ସମୟରେ ସାରମାତା ବଧୁକୁ ଦେଖିବା ପାଇଁ ନିଅଇ । ପ୍ରିୟପ୍ରତପଟ୍ଟ ପେଡ଼ୀରେ ଥିଲା ତା ଫେଡ଼ି ପୁଚ୍ଛିଷ ଦେଖଇ ।୩୮। ଏହି ସମୟରେ ଚରମେ ଉରମବଚନା ପ୍ରବେଶ ହେଲା । ପୁଣି କେ ସଜୁଣା ହେଲାଣି ସପତ୍ନୀ ହେବା ଶଙ୍କାକୁ ଘେନିଲା ।୩୯। ସ୍ୱଭାବେ

୩୦ । ହସନ୍ତୀ—ନିଆଁ ଜଳୁଥିଲ, ନଶା—ରାତି, ନିଶା—ଶଯ୍ୟା,
୩୧ । ଜରୁ—ଛାତ ବା ବଡ଼,
୩୨ । ( ଶୀତଦନ, ବସ୍ଥ ମକରମାସ ) ଏ ଶୀତ ତ ବସ୍ଥ ଓ ମକରପର କଷ୍ଟଦେବ,
୩୫ । ଗୋଡ଼ ଓ ହାତ, ପଶାପାଲି, ଗୃହପାଲି, ଚନ୍ଦ୍ରକ ତଳକ ହେଲା ଛକ, କୁଚ ହେଲା ସାର, ଦେହ ହେଲା ଦାନ ।
୩୬ । କୁସୁମଶର—କନ୍ଦର୍ପ, ପଶାରେ ଜେବେ ହାରେ, ଏ ପଶାରେ କନ୍ଦର୍ପ ହାରଯିବ ।
୩୮ । ସାରମାତା—ଲାବଣ୍ୟବତୀ ଶାଶୁ, ପ୍ରିୟା ପ୍ରତପଟ୍ଟ—ଲାବଣ୍ୟବତୀର ଚତ୍ରପଟ୍ଟ,
୩୯ । ଉରମ ବଚନା—ସୁନାଗୋସ୍ୱା ।

କୋପନା ଚନ୍ଦ୍ରମାଲ୍ପନା ନ ମଣିଲ୍ଲ ନିଜ ସ୍ନେହ । ଜଳେ ପ୍ରଭବମ୍ମ ନିରେଖି କେଶରୀ ଯେମନ୍ତ କଲ୍ଲ କୋହ ।୪୦। ମାନ ଅଇମ୍ମ ରମ୍ଭୋରୁ ଭଲ୍ଲ ଥାଇଁ ମଦନମଧ୍ୟ ବିପକ୍ଷ । କହେ ଉପେନ୍ଦ୍ର ଭଞ୍ଜ ସୀତବର ରାମ-ଚନ୍ଦ୍ର ରକ୍ଷାଦକ୍ଷ ।୪୧।



## ସପ୍ତତ୍ରିଂଶ ଛାନ୍ଦ ।

ରାଗ—କାଳୀ ।

( ମାନଦର୍ଶନେ ଚନ୍ଦ୍ରଭାନୁର ଗୃହଂକୁତ୍ର )

ଅତ କାତରେ ନିଜକାନ୍ତରେ ଶଙ୍କା ଚିତ୍ତରେ ଲଭି ।
କୋପ ଅଙ୍କୁର ପତ୍ନୀ ମୁକୁର କଲ୍ଲ ଚିକୁରଶୋଭୀ ।
ରତିଅବେଣୀ ରତନବେଣୀ ଗଣ୍ଡେ ନିବେଶି କର ।
ନୟନନୀରରୁହରୁ ନୀର ତେଜିଲ୍ଲ ନିରନ୍ତର । ୧ ।

---

୪୦ । କୋପନା—ରାଗୀ, ଲପନ—ମୁହଁ, କେଶରୀ—ସିଂହ, ପ୍ରଭବମ୍—ଶଶ ।
୪୧ । ରମ୍ଭୋରୁ—ସୁନ୍ଦରୀ, ବିପକ୍ଷ—ଶତ୍ରୁ ।
ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର ହାସ ପରିହାସ ଶୃଙ୍ଗାରାଦ ବିଷୟରେ ଲାବଣ୍ୟବତୀ ଚନ୍ଦ୍ରଭାନୁଙ୍କୁ ମାନ କରିବା ।



## ସପ୍ତତ୍ରିଂଶ ଛାନ୍ଦ ।

୧ । କାତରେ—ବିକଳରେ, କାନ୍ତରେ—ସ୍ୱାମୀଠାରେ, ଶଙ୍କା—ଭୟ, ଏଠାରେ ସତ୍‌ଭୁଣୀର ଭୟ, କୋପ—ରାଗ, ପତ୍ନୀ—ଦଳ, ମୁକୁର—ଦର୍ପଣ, ଚିକୁରଶୋଭ—ବାଳ ଶୋଭନୀ (ଲାବଣ୍ୟବତୀ), ରତିଅବେଣୀ—ରତିକୁଶଳା; ରତନବେଣୀ—ନାନାଦ ରତ୍ନ ଅଲଙ୍କାରରେ ଭୂଷିତା ( ଲାବଣ୍ୟବତୀ ), ନୟନନୀରରୁହ—ନେତ୍ରପ୍ରାନ୍ତ; ନୀର—ଲୁହ, ନିରନ୍ତର—ସର୍ବଦା ।

ଶ୍ୱାସ ପ୍ରଖରେ ବହେ ଦୁଃଖରେ ଧରା ନଖରେ ଖରେ ।
ଓଷ୍ଠ କମ୍ପନ ହାସ ସ୍ୱପନ ମ୍ଳାନଲପନ ଧରେ ।
ଦେଖି ନାଗର ବସି ଆଗର ଅନୁରାଗର ବଶେ ।
ଅତି ଆରତ ହୋଇ ପୀରତିଯୁକ୍ତ ଭାରତୀ ଭାଷେ ।୨।
ତୋର ସୂଚିତ ଅନଙ୍ଗଚିହ୍ନ ମାନ ସହିତ ଯେଣୁ ।
ତେ ସର୍ବଭୂତ ମୋହ ଅଦ୍ଭୁତ ମାନଦମୂଳ ଏଣୁ ।
ଉଦେ କମଳକୋଳେ କମଳଧର ନିର୍ମଳ ପ୍ରୀତି ।
ଧୈର୍ଯ୍ୟଭଞ୍ଜନ ମୋତି ରଞ୍ଜନ କରେ ଖଞ୍ଜନ କାନ୍ତି ।୩।
ବସନ୍ତେ କଳକଣ୍ଠ ବିକଳ ଏ କି ସକଳମତେ ।
ଶାନ୍ତି ବିରାଜମାନ ନ ରାଜ ମଦନରାଜ ହାତେ ।
ତେଣୁ ତୋ ସମାନ କାହାକୁ ମାନ ଯେନ ତୋ ମାନସର ।
ତୋ ବିନା ଗତି ନାହିଁ ଜଗତୀମଧ୍ୟେ ସୁଗତି ମୋର ।୪।
ମୋ ନିବେଦନା ଯେନ ବେଦନା ଚନ୍ଦ୍ରବଦନା ହର ।
କର ବିକାଶ କୁସୁମ କାଶ ହାସ ପ୍ରକାଶ କର ।
ତେବେ ବୀଣାଭଣି ବାଣୀ ନ ଭଣି ବସିଲେ ଭାସିଗଲ ।
କୋଳରେ ହାର କରୁ ବାହାର ଏବେ କାହାର ହେଲ ।୫।

---

୨ । ଶ୍ୱାସ—ନିଶ୍ୱାସ, ପ୍ରଖର—ଶୀଘ୍ର, ଧରା—ପୃଥିବୀ, ହାସ ସ୍ୱପନ—ହସ ସପନପରି ହେଲା, ମ୍ଳାନ—ମଳିଆ, ବିମର୍ଷ, ଲପନ—ମୁହଁ, ଅନୁରାଗ—ସ୍ନେହ, ଆରତ—ଉତ୍କଣ୍ଠିତ, ପୀରତିଯୁକ୍ତ—ସ୍ନେହପୂର୍ଣ୍ଣ, ଭାରତୀ—ବିନୟ କଥା, ଭାଷେ—କହେ ।

୩ । ସର୍ବଭୂତ ମୋହ—ସମସ୍ତ ପ୍ରାଣୀଙ୍କି ମୋହକାରଣୀ, ଅଦ୍ଭୁତ—ଆଶ୍ଚର୍ଯ୍ୟ, ମାନ—ଅଭିମାନ, ଉଦେ—ପ୍ରକାଶେ, କମଳ—ପଦ୍ମ, କୋଳେ—ଉପରେ, କମଳ—ପାଣି, ଧୈର୍ଯ୍ୟ ଭଞ୍ଜନ—ଦମ୍ଭ ହତ, ଖଞ୍ଜନ କାନ୍ତି—ଖଞ୍ଜନ ସଦୃଶ ଆଖି, ମୋତିରଞ୍ଜନ—ମୋତିପରି ପାଣି ଟୋପା ।

୪ । କଳକଣ୍ଠ—କୋଇଲି, ଜଗତୀ ମଧ୍ୟେ—ସଂସାର ମଧ୍ୟରେ ।

୫ । ନିବେଦନ—ବିନୟ, ବେଦନା—ଦୁଃଖ, ବିକାଶ—ପ୍ରକାଶ, କାଶହାସ—କାଶତଣ୍ଡି ଫୁଲପରି ହାସ, ବାଣୀ—କଥା, କୋଳରେ ଯାହାକୁ ହାରପରି କରିଥିଲ ଏବେ ତାକୁ ବାହାର କଲେ କାହାର ହେବ ।

Digitized by srujanika@gmail.com

ରସଜଦୟା ମୃଦୁ ହୃଦୟା ପରି ତୋ ଦୟାବାରି ।
କହୁ ନୟଣ ରବିଗ୍ରାସ ମୋତେ ପରାସ କରି ।
ମୁଁ ଯେ ସ୍ତବକସ୍ତନା ସେବକ ପାଦଯାବକ ପରି ।
ଏବେ ଖଣ୍ଡ ନା ସୁଖ, ଦଣ୍ଡନା ମଣ୍ଡନା ତୋର ।୬।
ସବୁ ଭରସା ତୁ ମୋର ରସାଳସା ସାରସାନନା ।
ନୋହେ ଏ ମତ୍ତକାଶିନୀ ମତି ମୁଁ ତୋ କେମନ୍ତ ଅନା ।
ଗୃହଦ୍ୱିଗୁଣ ମଙ୍ଗଳାଗୁଣ ଅଙ୍ଗ କି ଗୁଣବତି ।
ଦରିଦ୍ରଧନ ତୁ ମୋର ଧନ କର ନିଧନ ଭୀତି ।୭।
ଭଜୁଛି ବିନାଶକୁ ନଦୀନା ମୁହିଁ ତ ବିନା ଦୋଷେ ।
ଦଣ୍ଡି ଯାହାକୁ ମଣ୍ଡି ତାହାକୁ ମୃଦୁଦେହାକୁ ଭଷେ ।
ଧରୁଛି ପଦ ନାଶ ବିପଦ ଲବ୍ଧସମ୍ପଦ ଦାତ୍ରି ।
ରତି ରମଣୀ ରସିକ ମଣି ନାସିକାମଣି ନୃତ୍ୟ ।୮।
ଲେଖି ମକରୀ ସୁବେଣୀ କରି ଦଅଇ କରିଗତି ।
ଅଛୁ ରସନା ଅନେ ରସନା ହୁଅ ପ୍ରସନ୍ନମତି ।
ନୃପନନ୍ଦନା ଜଗତ୍‌ବନ୍ଦନା ଭଜ ଚନ୍ଦନାଙ୍କିତେ ।
ନୋହେ ଭୂଷଣ ଦୋଷ ଦୂଷଣ ଦେଉ କଷଣ କେତେ ।୯।

---

୬ । ମୃଦୁ ହୃଦୟ—କୋମଳମନା, ଦୟାବାରି—ଦୟାରଜଳ, ରବିଗ୍ରାସ—ସୂର୍ଯ୍ୟ ତାପରେ ଅସ୍ଥିର । ଏଠାରେ କନ୍ଦର୍ପର ତ୍ରାସ, ପରାସ—ଦୁଃଖ, ସ୍ତବକସ୍ତନା—ବର୍ତ୍ତୁଳ ଉରଜା, ସେବକ—କିଙ୍କର, ପାଦଯାବକ—ଗୋଡ଼ର ଅଳତା ।

୭ । ସାରସାନନା—( ସାରସ+ଆନନା ) ସାରସ—ପଦ୍ମ, ଆନନ—ମୁଖ, ମତ୍ତକାଶିନୀ—ସୁନ୍ଦରୀ, ଗୃହଦ୍ୱିଗୁଣ—ଆଠ, ଆଠମଙ୍ଗଳାରେ ପୁରୁଷ ଓ ସ୍ତ୍ରୀର ଦେଖାଦେଖି ମନା । କରନିଧନ ଭୀତି—ମରିବାକୁ ଭୟ କରିବା, ଅର୍ଥାତ୍ ମୁଁ ତୋ ଦୟା ବିନା ମରିବି ।

୮ । ବିନାଶକୁ—ମରିବାକୁ, ଦଣ୍ଡି—ଦଣ୍ଡଦେବା, ମଣ୍ଡି—କ୍ଷମାଦେବା, ମୃଦୁଦେହା—କୋମଳାଙ୍ଗୀ, ରସିକାମଣି—ରସିକାଶ୍ରେଷ୍ଠ, ରମଣୀ—ସୁନ୍ଦରୀ ।

୯ । ମକରୀ—ଗାଲରେ ମକର ଲେଖିବା, ସୁବେଣୀ—ଉତ୍ତମବେଣୀ ପକାଇ ଦେବା, କରିଗତି—ଗଜଗମନା, ରସନା—ଜିଭ, ରସ—ମଣ୍ଡ, ଭୂଷଣ—ଉଚିତ, ଦୂଷଣ—ମନ୍ଦ, ନିନ୍ଦା, କଷଣ—ଦୁଃଖ ।


Digitized by srujanika@gmail.com

ସୁରସଲତା ପାଦେ ଅଳତା ମଞ୍ଜୁଳଲତା କୁଚେ ।
ଅଦେ ହେମାଙ୍ଗି ସୁଜନ୍ତମାଙ୍କି ଥିଲି ଯେ ମାଗି ତୋତେ ।
ମୋର ବର୍ତ୍ତିନ ସୁଖ ଯତନ ମହୀପତନ କରୁ ।
ହେଠଅଧରୁ କେଉଁ କୋଧରୁ ଶବ୍ଦେ ନ ଧରୁ ଗିରୁ ।୧୦।
ନ କର ଦଣ୍ଡ ବଳମ୍ବ ଦଣ୍ଡ ହେଲେ ଅଦଣ୍ଡ ମୁହିଁ ।
ବାହୁପାଶରେ ବାନ୍ଧ ପାଶରେ ରଖି ତୋଷରେ ତୁହି ।
କୁଚମନ୍ଦର ଠେଁସି ଧୂଧର ଦିଅ ମୋ ଡ଼ର ନାହିଁ ।
ନଖକରତ ତହିଁ କରତ ତନୁ ନିରତ ସହି ।୧୧।
ଦୁଃଖ ପିହାଣ ବନ୍ଧଗୃହାଣୀ ଖଡ଼୍‌ଗେ ହାଣି ପକା ।
ଭାବେ ନିଉନ ନୋହେ ମୁଁ ଭିନ ନୁହ ମଜନ ଏକା ।
ପରେ ପ୍ରାଭବ ଦଅଇ ଭବ ମଧ୍ୟରେ ଭବମୋହି ।
ହେବ କାରଣ ନିନ୍ଦିତ ରଚିରସ୍ୟସୁଚତ ସହି । ୧୨ ।
ସେତେ ଅଳପଦନୁ କଳପ ତୁ ଯେ କଳପତରୁ ।
ପୂର୍ଣ୍ଣ ନ କର ବାଞ୍ଛାନିକର ମୋର କ କରମରୁ ।
ରଣକରଣେ ଥିଲେ ବାରଣେ ଅହା କରଣେ ଭାବେ ।
ନାହିଁ ଜଗତେ କେହି ସୁଗତେ ତୋ ବିନୁ ଗତେ ଏବେ ।୧୩।
ରେ ପ୍ରେମକଳା କୁଟିଳ କଲା ତୋ କେଶକଳାପର ।
ଯହୁଁ ରହିଲେ ନିନ୍ଦା ନୋହିଲେ ସେ ଯେ ମୋହିଲେ ସୁର ।
ମନ୍ଦ କୃଦର ହାସେ ସୁନ୍ଦର ତୋହ ଅଦରବଶେ ।
ମୁଁ କି ଅସାର ଏଥୁଁ ସଂସାର-ସୁନ୍ଦରୀ ସାର ଘୋଷେ ।୧୪।

---

୧୦ । ସୁରସଲତା—ସୁନ୍ଦରୀ, ମଞ୍ଜୁଳଲତା—ସୁନ୍ଦରଲତା, ହେମାଙ୍ଗି—ସୁନାଦେହୀ
ବର୍ତ୍ତନ—ପାଉଣା, ମହୀପତନ—ତଳେପକାଇବା ।

୧୧ । ଦଣ୍ଡ—ସମୟ, ଦଣ୍ଡ—କଷ୍ଟ, ସଦା, ଅଦଣ୍ଡ—ଇଷ୍ଟ, ଦର—ଭୟ,
କରତ—ଚିରପକା, ତନୁ—ଦେହ ।

୧୨ । ଦୁଃଖ—କଷ୍ଟ, ବନ୍ଧଗୃହାଣୀ—ବନ୍ଧେଇ ଗୃହିବା, ଭାବେ—ଆଳାପରେ,
ମନେକରେ, ନିଉନ—ଊଣା, ଭବ—ସଂସାର, ଭବମୋହି—ମହାଦେବଙ୍କ
ମୋହକାରଣୀ, କାରଣ—ଯଣ ।

୧୩ । ଅଳପଦନୁ—ପିଲାଦିନୁ, କଳପ—ମନେକର ।

୧୪ । କେଶକଳାପ—ବାଳସବୁ, ସୁର—ଦେବତା ।

ସ୍ମାରଉଚନେ ପ୍ରେମରଉଚନେ ହୋଇ ଯଉନେ ଶଙ୍କ ।
ଦୁଃଖ ପାଇଲି କାହିଁ ନୋହିଲି ତ୍ୟାଜ୍ୟ ହୋଇଲି ନିଙ୍କ ।
କୃପା କୃପଣ ଏ ପ୍ରଭୁପଣ ଶୋଭୁ ଦର୍ପଣମୁଖି ।
ପଢାଇ ନ ଦେ ସନ୍ତାପନଦେ ପିକନିନାଦେ ସଖି ।୧୫।
ଉରୁବର୍ତ୍ତୁଳା ତୋଳାପିତୁଲା ମୋର କି ତୁଲା ତୋତେ ।
ଏହି ଭୁବନ ମୁଁ ପିଣ୍ତ୍ର ବନଜାକ୍ଷି ଜୀବନ ସତେ ।
ହେବ ମୁଁ ବଳା ପ୍ରାପ୍ତ ଅବଳା ସ୍ନେହପ୍ରବଳା ସେନ ।
ଛନ୍ଦ ଚରଣେ ତ୍ୟକ୍ତକରଣେ ନାହିଁ ଶରଣେ ଆନ ।୧୬।
ଜଳଦରସେ ଗୃଢକ ରସେ ସେ ନ ବରଷେ ଯେବେ ।
ଯାଇ ଅଶାରେ ନଦୀକାସାରେ ମହାତୃଷାରେ କେବେ ।
ନ ପାଇ ମଧୁ ଭୁଲନ୍ତି ମଧୁକର କି ମଧୁରକୁ ।
ଡରେ ମୁଁ ବଧୁ କୁମୁଦ ବଧୂହାସି ତୋ ବଧୁରକୁ ।୧୭।
ଚନ୍ଦ୍ରଯାମିନୀ ଦେଖି ଦାମିନୀକାନ୍ତି କାମିନୀବନ୍ଧୁ ।
ନୋହୁ ଫୁରୁଣା କମ୍ପା ଅରୁଣାଧର କରୁଣାସିନ୍ଧୁ ।
କେଳିଆଗ୍ରମ କି ଅଭିରାମ ଅନା ରେ ସ୍ମନ୍ଦୃଶା ।
ଆଜ ଶୋକର ବଶେ ନ କର ଚକ୍ରବାକର ଦଶା ।୧୮।

---

୧୫ । ତ୍ୟାଜ୍ୟ—ଛାଡବା, କୃପା—ଦୟା, କୃପଣ—ଲୋଭ, ସନ୍ତାପନଦେ—ଦୁଃଖ ନଦୀରେ, ପିକ ନିନାଦେ—କୋଇଲି ବଚନେ ।

୧୬ । ଉରୁବର୍ତ୍ତୁଳା—ଗୋଲଜଙ୍ଘୀ, ତୁଲା—ସମାନ, ବନଜାକ୍ଷୀ—( ବନଜ+ ଅକ୍ଷି ) ବନଜ—ପଦ୍ମ, ତ୍ୟକ୍ତ କରଣେ—ଛାଡ଼ିବାରେ ।

୧୭ । ଜଳଦରସେ—ବର୍ଷା ଜଳରେ, ନଦୀ—ନଈ, କାସାରେ—ପୋଖରୀରେ, ମଧୁ—ମହୁ, ମଧୁକର—ଭ୍ରମର, ବଧୁ—ଚନ୍ଦ୍ର, କୁମୁଦ—କଇଁ, ବଧୁର —ବିଚ୍ଛେଦ ।

ବର୍ଷା ନହେଲେ ଶେଷରେ ଗୃଢକ ପକ୍ଷୀ ନଈକିମ୍ବା ପୋଖରୀକୁ ଯାଏ-ନାହିଁ । ମହୁନପାଇ ଭ୍ରମରମାନେ ଗୁଡ଼କୁ ଆଦର କରନ୍ତି ନାହିଁ, ଚନ୍ଦ୍ର ଓ କୁମୁଦ ପରି ତୋର ମୋର ଭାବ ବିଚ୍ଛେଦରେ ମୁଁ ଦୁଃଖିତ ହେଉଛି ।

୧୮ । ଚନ୍ଦ୍ରଯାମିନୀ—ଜହ୍ନରାତି, ଦାମିନୀ କାନ୍ତି—ବିଜୁଳିରୂପା, କାମିନୀ—ସୁନ୍ଦରୀ ଫୁରୁଣା—ଆନନ୍ଦ, ଅରୁଣାଧରା—ଅରୁଣ+ଅଧରା, ଅରୁଣ—ରକ୍ତବର୍ଣ୍ଣ, ଅଧର—ଓଷ୍ଠ, କେଳି ଆଗ୍ରମ—କ୍ରୀଡ଼ାଘର, ଅଭିରାମ—ସୁନ୍ଦର, ସ୍ମର—ମୃଗ, ସ୍ମନ୍ଦୃଶା—ମୃଗାକ୍ଷି ।

ତୋଏ ତବନ ନିଷ୍ଟେ ସରିତ ସ୍ନେହବାରିତ ହୋଇ ।
ସ୍ମରୁଜଘନେ ଦୁଃଖ ସଘଟନ ଶକ୍ୟ ଲଙ୍ଘନେ ନାହିଁ ।
ମାନ ରଜନୀ ଅନ୍ତ ସଜନି ମୋ ଦୁଃଖ ଜନ୍ମି ଭଲେ ।
କେ ମୋ ରକ୍ଷଣେ ନାହିଁ ଈକ୍ଷଣେ ଲୋତକ କ୍ଷଣେ ଥିଲେ । ୧୯ ।
ବଗ୍ଲୁରେଁ ଧୀରେ ରମନାଧିରେ ଅଷ୍ଟ ବଧିରେ ଦୋଷ ।
କରେ ବାଳିକା ଗୁଞ୍ଜାମାଳିକା ଚିକୁଅଳିକା ନାଶ ।
କାମଦ୍ରବଳେ ଦୂଲଭ ବଳେ ରଚେ ଶବଲେକ୍ଷଣି ।
ଦୀପପ୍ରକାରେ ଚନ୍ଦ୍ରମାକରେ ବିବାସ କରେ ପୁଣି । ୨୦ ।
କରେ କରଜକ୍ଷତ ଉରଜ ସ୍ମରୁ ନୀରଜକଟେ !
ମୁଁ ନ ସ୍ମରିଲି ଓଷ୍ଠ ପୀଡ଼ିଲି ଭୁଜେ ଭିଡ଼ିଲି ଗାତେ ।
ତୋର କିପତ ନ ଦେବେ ପଞ୍ଚ ଦୋଷୀ ମୁଁ ସତତର ।
ମୋ କଷ୍ଟ ଗରିଷ୍ଠ ରେ ନାଗର କ୍ଷମା ସାଗର ହର । ୨୧ ।
ଲବ ଅନ୍ତର ବଶେ କାତର ହୋଇ ମାତର ଗୋର ।
ନୋହେ କପଟ ଦେଖି ଲମ୍ପଟ ତୋ ରୂପପଟ ଧର ।
ସପତ୍ନୀଦର ଦେଜ କି ଦରଣ୍ଡି ସାଦର ରୋଷେ ।
କିସ ଏ ଥରେ ଭାବ ତ ଥରେ ହୃଦ-ପଥରେ ବଶେ । ୨୨ ।
ଏହି ବଚନାମୃତ ରଚନା କଲା ଶୋଚନା ଦୂର ।
ବକେ ସୁହିଁଲା ମନ ମୋହିଲା ନେତ୍ରୁଁ ବହିଲା ନୀର ।
ବଳେ ବାହାର ହେଲା ତାହାର ହାମ ନିହାରଭାବୁ ।
ସ୍ମିତ ହୃଷିଲା କଥା ଯୋଡ଼ିଲା ବୋଲି ଜଡ଼ିଲା ତନୁ । ୨୩ ।

---

୧୯ । ସରିତ—ନଈ, ସ୍ନେହବାରିତ—ସ୍ନେହରୁ ବର୍ଜିତ, ସ୍ନେହରୂପ ଜଳ, ସ୍ମରୁ—ସୁନ୍ଦର, ଜଘନ—ଜଙ୍ଘ, ଅନ୍ତ—ଶେଷ,

୨୦ । ଗୁଞ୍ଜାମାଳିକା—ଗୁଞ୍ଜାହୋଇ ଥିବା ଫୁଲମାଳ, ଚିକୁଅଳକା—ଗଣ୍ଡରେ-ମକଣ୍ଡି ପ୍ରଭୃତି ଚିତ୍ରପତ୍ର, ଶବଲେକ୍ଷଣୀ—ସୁଲୋଚନୀ, ଦୀପପ୍ରକାରେ—ଦୀପ ଆଲୁଅରେ, ଚନ୍ଦ୍ରମାକରେ—ଚନ୍ଦ୍ର କିରଣରେ, ବିବସନ—ଲଙ୍ଗଳା ।

୨୧ । କରଜ—ନଖ, କ୍ଷତ—ଖଣ୍ଡିଆ, ସ୍ମରୁ—ସୁନ୍ଦର, ନୀରଜକର୍ତ୍ତି—ପଦ୍ମକଳ, କିପତ—ଅବଶ ମନା, ଗରିଷ୍ଠ—ଅଧିକ ।

୨୨ । ଲବ—କ୍ଷଣ, ଅନ୍ତର ବଶେ—ଅଲଗାହେବାରୁ, ରୂପପଟ—ଚିତ୍ରପଟ, ସପତ୍ନୀଦର—ସଉତୁଣୀଭୟ, ରୋଷେ—ରାଗରେ, ହୃଦପଥରେ—ମନ-ମଧ୍ୟରେ, ବଶେ—ଆଲୋଚନାକର ଟିକିଏ ।

ଫୁଲଶାୟୁକବଶନାୟକ-ପ୍ରେମଦାୟକ ବାଳା ।
ନୋହେ କହି ତ ଅଶେଷ ହୃତ ଯେତେ ବହୁତ ଲୀଳା ।
ସେ ବିଚକ୍ଷଣ କଲେ ଯେ କ୍ଷଣ ପରିଯେ କ୍ଷଣଦାଙ୍କୁ ।
ବାସ ହରିଲେ ସେ ବିହରିଲେ ବେଗେ ଧରିଲେ ଦଳୁଁ । ୨୦ ।
ତପସ୍ୟାଭଙ୍ଗୀ ଗୋପିତଭଙ୍ଗୀ ଖ୍ୟାତ ନିଭଙ୍ଗୀଛନ୍ଦ ।
ବୁଧମୋହନ ଖଳଗହନ ନାଶେ ଦହନ ଗ୍ରନ୍ଥ ।
ହେ ରାମ ଘନଶ୍ୟାମ ସଘନ ଦୁରିତ ଘନହର ।
ଭଜ ଉପେନ୍ଦ୍ର ଅପ-ଦ୍ୱିପେନ୍ଦ୍ର ହରି ନୃପେନ୍ଦ୍ର ଦର । ୨୫ ।



## ଅଷ୍ଟାବିଂଶ ଛାନ୍ଦ ।

ରାଗ ବରାଡ଼ି ।

( କେଳିପ୍ରଶଂସା )

ସୁରତଶେଷେ ପୀରତନିଧିଙ୍କ ଅଗରେ ପଡ଼ ବସାଇ ବସି ପଲ୍ୟଙ୍କ ପରେ । ଅବେଶ ହୋଇ ସୁବେଶ କରି ସାରି ସେ ଜୀବେଶ କରକୁ

୨୩ । ବଚନାମୃତ—କଥାସୁଧା, ଶୋଚନା—ଦୁଃଖ, ମାର—କ୍ରୁଦ୍ଧ, ହାସନହାର ଭାନୁ—ଚନ୍ଦ୍ରପରିହାସ ।
୨୪ । ଫୁଲଶାୟକ ବଶ—କନ୍ଦର୍ପ ଅଧୀନ, ବିଚକ୍ଷଣ—ରତିକୁଶଳ, କ୍ଷଣଦାଙ୍କୁ—ରାତିକୁ, ଦଳୁ—ତଳ୍ପରୁ ।
୨୫ । ତପସ୍ୟାଭଙ୍ଗ—ଯେ ତପସ୍ୟାକୁ ଭାଙ୍ଗିପାରେ, ଖ୍ୟାତ—ବିଖ୍ୟାତ, ବୁଧମୋହନ—ପଣ୍ଡିତ ତୃପ୍ତିକାରକ, ଖଳଗହନ—ମୂର୍ଖରୂପକ ବଣ, ଦହନ—ଅଗ୍ନିରେ ପୋଡ଼ିବା, ସଘନ—ବେଗି, ଦୁରିତ—ପାପ, ଘନହର—ନାଶକର ତାପ—ଦୁଃଖ, ଦ୍ୱିପେନ୍ଦ୍ର—ହାତୀ, ହରି—ସିଂହ, ଦର—ଭୟ ।



## ଅଷ୍ଟାବିଂଶ ଛାନ୍ଦ ।

୧ । ଅବେଶ—ଅନାଦରେ ମନଯୋଗ, ସୁବେଶ—ଉତ୍ତମବେଶ, ଜୀବେଶ—ସ୍ୱାମୀ, ଚିବୁକ—ଗାଲ, ସନ୍ଦର୍ଭ—ଅନନ୍ଦ, ସୁଗର୍ଭ—ରସପରିପୂରିତ ପୂର୍ଣ୍ଣ, ରସଗର୍ଭ—ରସରସିଆ, ବଚନ—କଥା ।

ନାବେଣ ଚନ୍ଦ୍ରଜରେ । ସେ ମନୋହର । ଏବେ ବସନ୍ତ ଗୃହମଣି ନାଶି । ସନ୍ଦର୍ଭସ୍ପୃଗର୍ଭହାରୀ ଶୋଭାଗୁଣକୁ ପ୍ରଶଂସି ରସଗର୍ଭ ବଚନକୁ ଭାଷି ସେ ।୧। କନ୍ଦରସ୍ତନା ସୁନ୍ଦରୀ ପୁରନ୍ଦରୀ କୃଶୋଦରୀ ଦରବ୍ରୂ ମୁଁ ତୁ ନିଧିପ୍ରତିମା । ଦର୍ପକଦର୍ପବର୍ଦ୍ଧିନୀ ଧନୀ ଦର୍ପଣବଦନ ଅଶେଷ ଅନଙ୍ଗ ରଙ୍ଗସୀମାରେ । ଜୀବେଶ୍ୱର । ତୋତେ ଉପମା ହୋଇଣ ତୁହି । ସାବଧାନ ତୋ ଶ୍ରୀମୁଖ ସେ ପିଠା ଶୀତମୟୂଖ ତୋତେ ଦେବଙ୍କୁ ଅମୃତ ଦେଇ ରେ । ୨ । ଗ୍ରାମା କଳ୍ପନା ପାଇଁଲ ରମା ଉମା ନିର୍ମାଣର ହସ୍ତ ବଳିବାକୁ ଅଗ ଶହି । ହେମପିତୁଳା ନାମୀଣି ରସରେ ରସାଣି ପୁଣି ଭାବହାବ ଯୋଗେ ଜୀବ ଦେଇରେ । ଜୀବେଶ୍ୱର । ଶୋଭା ଗୃହିଁ ହୋଇଲା କାତର । ବାଙ୍କୁ ବାଙ୍କୁ ଘୂର୍ଣ୍ଣକୁନ୍ତଳ ହେଲା ଚିକ୍କଣ କୁଟିଳ ସ୍ୱେଦ କମ୍ପ ବହିଥିବ କର ରେ । ୩ । ଗଣେଶ ତୋ ଶୋଭା ଗୃହିଁ ଗଣେ କରେ ମାଳା ବଢ଼ି କେଉଁ ଅଙ୍ଗେ କ ଉପମା ଦେବ । ଅଶେଷମୁଖ ବହିଲା ଶେଷ ଛଡ଼ି ନ ପାରିଲା ଦେଖି

---

ପ୍ରୀତି ଶେଷରେ ଚନ୍ଦ୍ରଭାନୁ ଲାବଣ୍ୟବତୀକ ପଲଙ୍କରେ ବସାଇ ତାର ଇତସ୍ତତଃ ହୋଇଥିବା ବେଶକୁ ଭଲରୂପେ ସଜାଡ଼ି ଦେଇ ରସ ରସିଆ କଥା କହିଲା ।

୨ । ମନ୍ଦରସ୍ତନା—ପର୍ବତସ୍ତନା, ସୁନ୍ଦରୀ ପୁରନ୍ଦରୀ—ସୁନ୍ଦରୀ ଶ୍ରେଷ୍ଠା କୃଶୋଦରୀ—କ୍ଷୀଣଉଦରୀ, ନିଧି—ରତ୍ନାଦି ସମ୍ପତ୍ତି, ଦର୍ପକ—କନ୍ଦର୍ପ, ଦର୍ପ—ଗର୍ବ ଶୀତମୟୂଖ—ଚନ୍ଦ୍ର, ଚନ୍ଦ୍ରରୁ ଦେବତାମାନେ ଅମୃତ ଖାଇବାରୁ ସେ ପିଠା ଦେଖାଯାଏ ।

୩ । ରେ ରାମା ରେ ସୁନ୍ଦରୀ, ମୁଁ ମନେକରେ ବିଧି—ଯେ ବିଧାତା, ସେ ରମା କ ଲକ୍ଷ୍ମୀ, ଉମା କ ପାର୍ବତୀ, ଏହି ଦୁହିଁଙ୍କୁ ପ୍ରଥମେ କରି ତାଙ୍କର ହାତ ଠିକ ହେବା ପରେ ତୋତେ କଲା, ତେଣୁ ତୁ ତାଙ୍କଠାରୁ ସୁନ୍ଦରୀ ଅଛୁ, ହେମ ପିତୁଳା ନିର୍ମାଣି—ସୁନାର ପ୍ରତିମାଟିଏ କରି, ରସରେ ରସାଣି —ଅଦରସରେ ପାଲିସ କରି, ଜୀବଦାନ ଦେବାରୁ ଏପରି ସୁନ୍ଦରୀ ହେଲୁ ତୋର ବାଳକୁ ବାଙ୍କ ବାଙ୍କ ବିଧାତାର ହାତ କମ୍ପିଲା ଅର୍ଥାତ୍ ସେ ମଧ୍ୟ ମଦନରେ ଅସ୍ଥିର ହେଲା ତେଣୁ ତା ହାତ କମ୍ପିବାରୁ ତୋ ବାଳ କୁଞ୍ଚି କୁଞ୍ଚିଆ ହୋଇଗଲା ।

୪ । ଗଣେଶ—ବିଦ୍ୱାନଶ୍ରେଷ୍ଠ ଶିବଙ୍କସୁତ, ସେ ତୋର ସୁନ୍ଦର ପଣ ଦେଖି କେଉଁ ଅଙ୍ଗକୁ କ ଉପମା ଦେବେ ବୋଲି ଠିକ କରି ନପାରି ମାଳାକରି ଗଣେଶ ଶେଷଦେବ ତୋର ନାସିକାର ଛବିକୁ ସହନ୍ତ୍ର ମୁଖ ଧରି ସୁଦ୍ଧା

ରସିକା ନାସିକା ଛବି ରେ । ଜୀବେଶ୍ୱର । ଗୁଣ ଶୋଭା ଅକଥନ ତୋର । ଗୁରୁସ୍ତନ ରମ୍ଭାଜରୁ ଏହି ଶବଦ ଶ୍ରୁତରୁ ରମ୍ଭା କଲେ ସ୍ୱର୍ଗେ ଅଲଙ୍କାର ରେ । ୪ । ଧନ୍ୟ ତୋ ନୟନରଙ୍ଗ ନୀଳ ଧବଳ ସୁରଙ୍ଗ ତ୍ରିବର୍ଣ୍ଣ ତ୍ରିଭୁବନ ତୋଷେ । ପୁଣି ଶ୍ରୀପତି ଶଙ୍କର ସବିତା କମଳକର ନିଜସ୍ଥଳ କରିବାର ଆଶେ ରେ । ଜୀବେଶ୍ୱର । ସେ ଉଭାରୁ ଭବିବେ ହେ ସ୍ତୁତି । ସ୍ମରଣରେ ତୁ କ୍ଷଣ ଅଟେ ତ ସୁରସବଶ ପାରିଲେ ବିନାଶ କରି ଯତି ରେ । ୫ । ତୋପରି ଚଳିବା ଇଚ୍ଛି ଇନ୍ଦ୍ର ଗଜେନ୍ଦ୍ର ଚଢିଛି ମୁନି ଶାପତାପ ଲୋପ ମନି । ତପ କରି କେତେ ଭାଗ୍ୟ ଭେଜି ଦେବତା ପନାଇଁ ମୁହିଁ ତୋତେ

କହି ପାରିଲା ନାହିଁ । ତୋର ଗୁଣ ଓ ସୌନ୍ଦର୍ଯ୍ୟ ବଡ଼ ଅକଥନୀୟ । ତୋର ଗୁରୁସ୍ତନ କି ପୃଥୁଳ କୁଚ ଓ ରମ୍ଭାତରୁ କି କଦଳୀ ଗଛପରି ଜଙ୍ଘଦେଖି ସ୍ୱର୍ଗରେ ଦେବତାମାନେ ରମ୍ଭାକୁ ଶ୍ରେଷ୍ଠ କରିଥିଲେ ମାତ୍ର ତୋତେ ଦେଖି ତାଙ୍କର ସେ ଭ୍ରମ ଦୂରହେଲା ଅର୍ଥାତ୍ ତୁ ରମ୍ଭାଠାରୁ ଅଧିକ ସୁନ୍ଦରୀ ହେଲୁ ।

୫ । ହେ ସଖି ତୋର ନୟନ ରଙ୍ଗ, କି ଆଖିରଙ୍ଗ, ନୀଳ କି ନେଳିଆ, ଧବଳ କି ଧଳା ଓ ସୁରଙ୍ଗ କି ଲାଲ ଏହି ତିନିବର୍ଣ୍ଣ ଯଥା ନୀଳବର୍ଣ୍ଣ ବିଷ୍ଣୁ ଧଳା-ବର୍ଣ୍ଣ ଶଙ୍କର, ଓ ଲାଲବର୍ଣ୍ଣ ସୂର୍ଯ୍ୟ ଏ ତିନିଦେବ ତ୍ରିଭୁବନକୁ ତୋଷ କରନ୍ତି ସେହିପରି ତୋ ଆଖିକି ଦେଖିଲେ ତିନିପୁର ଲୋକ ତୋଷ ହୁଅନ୍ତି, ପୁଣି ବିଷ୍ଣୁ-ଶିବ ଓ ସୂର୍ଯ୍ୟ ତୋର ଆଖିରେ ଏତିକି ପ୍ରକାର ଶୋଭାଦେଖି ତୋତେ ମାନ୍ୟ କରିବା ଇଚ୍ଛା କରନ୍ତି, ତୋର ଜ୍ୟୋତି ତାଙ୍କର ତେଜରୁ ଅଧିକ ପୁଣି ଦେବତାମାନେ ଆମ୍ଭଙ୍କୁ ସିନା ସ୍ତୁତି କରନ୍ତି ଯେ କି ପ୍ରଧାନ ବୋଲି ମାନନ୍ତି କିନ୍ତୁ କନ୍ଦର୍ପ ବାଣରେ ମୋହିତ ହୋଇ ତୋତେ ସମସ୍ତେ ସ୍ତୁତି କରନ୍ତି ଓ ଶ୍ରେଷ୍ଠ ବୋଲି ମାନନ୍ତି । ଯତି କି ତପସ୍ୱୀ ମାନଙ୍କର ସୁରସବଶ କି ମଧୁର ଉକ୍ତି ରସରେ ଆମ୍ଭେସିନା ତାଙ୍କୁ ରକ୍ଷାକରୁ କିନ୍ତୁ ତୋ ଶୋଭା ଦେଖି ଯତିମାନେ ସୁରସରସ କନ୍ଦର୍ପ ରସରେ ଘାରି-ହୋଇ ମରିବେ ।

୬ । ଗଜେନ୍ଦ୍ର—ଐରାବତ ହସ୍ତୀ, ତୋର ଗତିକି ଦେଖି ଇନ୍ଦ୍ର ଐରାବତ ଚଢ଼ିଛି, ମୁନିଶାପ ତାପ ଲୋପ ମନି—ମନର ମୁନିଙ୍କର ଶାପକୁ ଲୋପ କରିଛି ଅର୍ଥାତ୍ ତାକୁ ବରବୋଲି ମଣିଛି—କାରଣ ଇନ୍ଦ୍ର ଗୌତମନାରୀ ଅହଲ୍ୟାକୁ ହରନ୍ତେ ଗୌତମ ଶାପରେ ତାଙ୍କର ଦେହରେ ସହସ୍ର ଚକ୍ଷୁ ହେଲା, ମାତ୍ର ସେ ସହସ୍ର ଚକ୍ଷୁରେ ତୋ ଶୋଭା ଦେଖିବାରୁ ଖୁସି ହୋଇ

ଲଭିଲି ସୁଜନୁ ରେ । ଜୀବେଶ୍ୱର । ନରେନ୍ଦ୍ର ତୁ ନରେନ୍ଦ୍ରକୁମାରୀ । ଅନଙ୍ଗ ଭୁଜଙ୍ଗପର ବିଷର ସନ୍ତାପ ମୋର ସ୍ମରଣେ ହରୁଛୁ ଯେଣୁ କର ଯେ ।୬। ଅନବରତରେ ହାସବଦନ ରଦନବାସ ରସ ରହସ ସ୍ୱରୂପ ପ୍ରିୟେ । ନଭ-ଗଙ୍ଗାଜଳ ଅଣି ସୁରଙ୍ଗ ପ୍ରୀତି-ବରଣି ନିରତେ ଢାଳି ହୋଇଲୁ ପ୍ରାୟେ ରେ । ଜୀବେଶ୍ୱର । ତୁହି ମୁଁ ମଜ୍ଜନ ହୋଇ ତହିଁ । ବିଶେଷେ କାମକଳୁଷ ସହଜେ କରଛୁ ନାଶ ସୁଗତି ଜନସୁଗତିଦାୟୀ ରେ । ୭ । ହେଜୁଥାଇ ମନେ ମନ ତୁ ମୋ ଅମୂଲ୍ୟରତନ ବୋଲନ୍ତି ଯେ ରତ୍ନ ମୂଲ୍ୟ ହୋଇ । ନାଶ କଲୁ ଏ ସଂଶୟ ରମଣୀୟ ରତ୍ନ-ମୟ ଅଟେ ରମଣୀରତ୍ନ ବୋଲାଇ ରେ । ଜୀବେଶ୍ୱରୀ । ପଦ୍ମରାଗ ଓଷ୍ଠ ପାଦ ପାଣି । ହଂସ ଦନ୍ତ ହୀରା ମୋତି ଭ୍ରୂରୁ ତୋଲା ପ୍ରେମପନ୍ତି ଚିକୁର ଅଳକା ନୀଳମଣୀରେ । ୮ । ଭଲା ବିବେକ ବିଜ୍ଞାଣି କଠିନଗୁଣକୁ ଘେନି ଘଟସ୍ତନ କଲା ତୋ ଘଟଣା । ହୃଦରେ ପଦକ ମୋର ବାନ୍ଧିବ ହେବାକୁ ତୋର ଅବୟବଯାକ କଲା ସୁନା ରେ । ଜୀବେ-ଶ୍ୱର । ଏଣୁ ଦବଂଗୁଣେ ତୁ ରଞ୍ଜନ । ଫନ୍ଦା କର ତୋତେ ପାଇ କାଛୁ ମୋର ଚିନ୍ତା ନାହିଁ ଏ ଘେନି ବୋଲାଇଁ ସିନା ଧନ୍ୟ ରେ । ୯ । ଛଇଲ-ଭ୍ରମର ବୋଲି ବୋଲିବାକୁ ମୋତେ ବାଲି ଛଳ ତୋ ନୋହିବ ଜଣା-ଉଛୁ । ଶ୍ରୀମୁଖ ଚଞ୍ଚଳ ନେନ୍ତ୍ର ଚେନି ପଦ୍ମ ବିକଟିତ ଅଧର ବନ୍ଧୁଲି ଚୁମ୍ବୁଅଛୁ ରେ । ଜୀବେଶ୍ୱର । କାନ୍ତି କେତକୀ ଉତ୍ଫୁଲ୍ଲ ବାସ । ଉରଜ ନୀରଜକୋଷ ପ୍ରଫୁଲ୍ଲ ମଲ୍ଲିକାହାସ ନୋହିଲୁ ମୋ କେଉଁ ଫୁଲେ ଅଶ ରେ । ୧୦ । ପ୍ରିୟେ

---

ଶାପକୁ ବର ବୋଲି ମନେକଲେ ।—ରେ ନରେନ୍ଦ୍ର କୁମାରୀ—ରଜାଝିଅ, ତୁ ନରେନ୍ଦ୍ର—ନରେନ୍ଦ୍ର ପୁଷ୍କରଣୀ ତୀର୍ଥ ଅଟୁ, ଭୁଜଙ୍ଗ—ସର୍ପ, ସର୍ପର ବିଷପରି କନ୍ଦର୍ପର ତେଜ, ତୋତେ ଛୁଇଁଲାକ୍ଷଣି ଦୂର ହେଉଛୁ ।—

୭ । ଅନବରତ—ସର୍ବଦା, ରଦନବାସ—ଦାନ୍ତସବୁ, ଓଷ୍ଠ; ସୁରଙ୍ଗ ପ୍ରୀତି ବରଣୀ—କାମକଳାରେ ପ୍ରବୀଣା, ମଜ୍ଜନ—ବୁଡ଼ିବା, କଳୁଷ—ପାପ ସୁଗତି—ମୁକ୍ତି—ଉତ୍ତମଗତି,

୮ । ପଦ୍ମରାଗ—ଲାଲବର୍ଣ୍ଣ ମଣି, . ପାଣି—ହାତ ଏଠାରେ ପାପୁଲି, ଅଳକ—ମୁଣ୍ଡର ଛୋଟବାଳ,

୯ । ଘଟ—ମାଠିଆ—କୁମ୍ଭ, ଅବୟବ—ଶରୀର ବା ଦେହ,

୧୦ । ବାଲି—ସୁନ୍ଦରୀ, ନୀରଦକୋଷ—ପଦ୍ମକଢ଼, ପ୍ରଫୁଲ୍ଲ ମଲ୍ଲିକା—ଫୁଟିଲା ମଲ୍ଲୀ

ତୋର ସଙ୍ଗ ନୋହୁଁ ଚମ୍ପାମାଳା ପରି ବାହୁ ଭାବ ଶ୍ଳେଷେ ଗଲେ ବାନ୍ଧ-
ବାକୁ । ଚନ୍ଦ୍ରଚନ୍ଦନ ଲେପନ କରୁଥାଇଁ ଅପଘନ କଣେ ପୀତାମ୍ବର
ପିନ୍ଧିବାକୁ ରେ । ଜୀବେଶ୍ବର । ଲଗାଇ ନବପଲ୍ଲବେ ଶିର । ପ୍ରିୟ ତୋ
ପ୍ରତିପ୍ରତିମା ଦେଖିଲି ଦିନ ତ୍ରିଯାମା ଦିନେ ଏହି ବ୍ୟବସାୟ ମୋର ରେ ।୧୧।
ଯାବତ ଶୋଭା ସଂଗ୍ରହ ପର ବିଗ୍ରହେ ବିଗ୍ରହ ଲାଗିଲା ଯେଉଁ ସ୍ୱପନଭ୍ରମେ ।
ନିଶ୍ଚେ ସେ ସ୍ୱପ୍ନ ଦେଖିବାର ମହାମହିକ୍ଷପତିର ଶୁଣି ନୋହିବ ସହସ୍ରଜନ୍ମେ
ରେ । ଜୀବେଶ୍ବର । କସ୍ତୁରୀସୁଗନ୍ଧା ସୁକୋମଳା । ଚତୁରୀ ଶ୍ରେଣୀରେ ମଣି
ବୋଲି ତୋ ଚାତୁରୀ ବାଣୀ ପ୍ରେମ ପତ୍ରିକାରେ ଜଣାଇଲା ରେ ।୧୨।
ଘେନ ରେ ହରିଣାକ୍ଷି ମାନସ ହଂସେ ନ ରସି ହଂସର ମାନସ ସବୁ
ଫନ୍ଦା । ଭାନୁ-ଜଳଜ ଜଳଦ ଚାତକ ଚନ୍ଦ୍ରକୁମୁଦ ପ୍ରୀତି ଲକ୍ଷ୍ୟ ଯାକ କଲୁ
ନିନ୍ଦା ରେ । ଜୀବେଶ୍ବର । ଅଛି ପୁଣି ବିଚ୍ଛେଦ ତାଙ୍କର । ଦେହକୁ ନ
ଛାଡ଼େ ଛାଇ ଛାଇ ଦେହ ନ ଛାଡ଼ଇ ଧନ୍ୟ ତୋର ଅନୁରାଗ ସାର ରେ ।।
ଫୁଲ ଭ୍ରମର ବାଞ୍ଛଇ ଭ୍ରମର ଫୁଲ ଇଚ୍ଛଇ ମଧୁ ଦେଇ ଫୁଲ ତୋଷ କରେ ।
ଅନୁସରଇ ଭ୍ରମର ତୋର ମୋର ଏ ପ୍ରକାର ସ୍ନେହ ନ ତୁଟିବ ଜୀଇଁବାରେ
ରେ । ଜୀବେଶ୍ବର । ନିଷ୍ଠା କରି ଜାଣେ ମୁଁ ଏ କଥା । ମାଜିଲା ମୁକୁର
ପରି ନିର୍ମଳ ତୋ ହୃଦ ଗୋରି ପ୍ରତିବିମ୍ବେ ମୋର ହୃଦବ୍ୟଥା ରେ ।୧୪।

---

୧୧ । ସଙ୍ଗନୋହୁ—ଏକଜ ନୋହୁ—ବିବାହ ଆଗରୁ, ପ୍ରତିପ୍ରତିମା—ଚିତ୍ରପଟ,
ତ୍ରିଯାମା—ରାତି, ଚନ୍ଦ୍ର ଚନ୍ଦନ—କର୍ପୂର ଚନ୍ଦନ, ଅପଘନ—ଦେହ,
ପୀତାମ୍ବର—ହଳଦିଆ ପାଟଲୁଗା, ନବପଲ୍ଲବ—ନୂଆପତ୍ର—( ଲାଲ )

୧୨ । ବିଗ୍ରହ—ଦେହ ବା ଶରୀର, ପତ୍ରିକା—ଚିଠି,

୧୩ । ମାନସ—ମନ ଓ ମାନସସରୋବର, ଭାନୁ—ସୂର୍ଯ୍ୟ, ଜଳଜ—ପଦ୍ମ,
ଜଳଦ—ମେଘ, କୁମୁଦ—କଇଁ, ହଂସ—ମାନସସରୋବର, ସୂର୍ଯ୍ୟ—ପଦ୍ମ,
ଚନ୍ଦ୍ର—କଇଁ ଓ ମେଘ—ଚାତକ, ଏମାନଙ୍କ ପ୍ରୀତିରେ ବିଚ୍ଛେଦ ଅଛି,
ମାତ୍ର ତୋର ମୋର ପ୍ରୀତିରେ ଦେହ ଛାଇପରି ବିଚ୍ଛେଦ ନାହିଁ,

୧୪ । ନିଷ୍ଠା—ନିଶ୍ଚୟ, ମୁକୁର—ଦର୍ପଣ, ପ୍ରତିବିମ୍ବେ—ଦେଖାଯାଏ ଫୁଲରେ
ମଧୁ ସରିଗଲେ ଭ୍ରମର ଫୁଲକୁ ଅନୁସରଣ କରେ, ମୁଁ ମଧ୍ୟ ତୋପାଖରେ
ସେହିପରି,

ଦାନ୍ତଶ୍ରେଷ୍ଠ ଭାବବତୀ ଦର୍ଶନେ ଦେବସମ୍ପତ୍ତି ଲୋଚନଯୁଗକୁ ଯାଚି ଦେଇ । ସମ୍ପୂର୍ଣ୍ଣ ପ୍ରେମରତନ ସମ୍ପୁଟକ ପ୍ରାଣଧନ ଭାବଭୋଳେ କରେ ଦେଇ ଯାଇ ରେ । ଜୀବେଶ୍ୱର । ପଶ୍ଚାତ୍ତୁଷ୍ଟି କହୁବୁଝି ସତ । ଶିରୀଷକୁସୁମଦେହ ଝାଉଁ ପାଇଁ କରୁ ନାହିଁ ମାଗିଲାବେଳକୁ ବିପରୀତ ରେ । ୧୫ । ମଧ୍ୟ ତୃଣାଙ୍କୁରଠାରୁ ସରୁ ଭାଜିବାକୁ ଡ଼ରୁ କିବା ଭାରୁ ଏ ନୁହଇ କଷ୍ଟ । ବହେ କୁଚ ମେରୁଭାର କେଶରୀ ପ୍ରଶଂସା ତାର କୁଳିଶ ହୋଇ ପ୍ରଶଂସା ଅଛି ରେ । ଜୀବେଶ୍ୱର । ହେଜ ପାରୁନାହିଁ ଭାବଭୋଳେ । ମୁକୁରବିତାନେ ରତି କେଳିଟି ଦେଖି ଯୁବତୀ ବେଳେ ରସିକୁ ମୋ ପୁଣ୍ୟଫଳେ ବୋଲି ୧୬। କହିବାକୁ ଅଗୋଚର ସେ ଶୋଭା ପୁଣି ତୋହର କଲଗ୍ନ ସୁଲଗ୍ନ ହୋଇଥିଲା । ଜିଭେ ରସନା ଜଦତ ମୋ ସୁଖଖଣିରେ ମିତ ନାଶାମଣି ଯାହା ଫୁଟିକିଲା ରେ । ଜୀବେଶ୍ୱର । ଇନ୍ଦ୍ରପଦ ପଦତଳେ ହେଲା । କାମ ଚକ୍ରବର୍ତ୍ତୀ ପଣେ ଅଧିକାରୀ ଯୁବାଗଣେ ତାକୁ ଇଷିତରେ ଜଣାଇଲା ରେ । ୧୭ । ସବୁ ବଢ଼ପଣ ପ୍ରାଣବନ୍ଧୁ ଯେଣୁ ମୋର ଜାଣି ଦହୁଥିଲେ ଯେଉଁ ଚନ୍ଦ୍ର, ବାତ । ସେ ତୋହର ସଙ୍ଗ ମାନେ ସୁଖଦ ହେଲେ ରତାନ୍ତେ ବହୁତ ରୂପେ ହରିଲେ ଶ୍ରାନ୍ତ ରେ । ଜୀବେଶ୍ୱର । ତୋ ବଉମା ଅଖିଳରେ ସାର । କଳକ ଉଲ୍ଲୂକାର ଯେଉଁ ଭୃଙ୍ଗ ପିକସ୍ୱର ସେହି ଏବେ ଶୁଭିଲା ମଧୁର । ଏରୂପେ ଗୃହୁଁ ପ୍ରକାଶି ବଲ୍ଲଭ ବଲ୍ଲଭୀ ତୋଷି ଅନୁଗ୍ରହ ଚୁମ୍ବ ଆଲିଙ୍ଗନ । ଲଭି ହେଲେ ହରଷିତ ନିୟମ କଲେ ଏମନ୍ତ ରସବତ ନ କରିବୁ ମାନ ରେ । ଜୀବେଶ୍ୱର । ପରବାସ ନ କରିବ କେବେ । କଲା ଏମନ୍ତ ସମ୍ମତ ଶଙ୍କା ହୋଇଗଲା ହତ ମାତିଲେ ବିଳାସ ମହୋତ୍ସବେ ସେ ।୧୯। ମିଥିଲା

---

୧୫ । ଲୋଚନ ଯୁଗ—ଦୁଇଆଖି, ସଂପୁଟକ—ଫରୁଆ,

୧୬ । ତୃଣାଙ୍କୁର—ଘାସରଗଜା, ମଧ୍ୟ—ଅଣ୍ଟା, କେଶରୀ—ସିଂହ, କୁଳିଶ—ବଜ୍ର ମୁକୁରବିତାନ—ଦର୍ପଣ ଗୃନ୍ଦୁଆ,

୧୭ । ସଲଗ୍ନ—ଉତ୍ତମ ବେଳ, ଜିଭେ—ବଡ଼ଙ୍ଗାଏ, ରସନା—ଅଣ୍ଟା ଘାଗୁଡ଼ି, ନାସାମଣି—ନାକଚଣା,

୧୮ । ବାତ—ପବନ, ଅଧିକ—ସମସ୍ତ, ଉଲ୍ଲୂ—ଲୁନ୍ତ,

୧୯ । ବଲ୍ଲଭ—ପୁରୁଷ, ବଲ୍ଲଭୀ—ସ୍ତ୍ରୀ, ବିଳାସ—ଆମୋଦ ପ୍ରମୋଦ,

ନବସଙ୍ଗମକାଳେ ଯେ ଭଲେ ନିଯ୍ୟମ ଏକପତି ଏକପତ୍ନୀ ବ୍ରତ । ଜଗତେ ଉପହ୍ନୁ ଦମ୍ପତି ସାଧୁଙ୍କ ସୁଖସମ୍ପତ୍ତି ମଧୁର ଅଦ୍ଭୁତ ଅଲୌକିତ ସେ । ତାଙ୍କ ପାଦ । ମହାବିପଦକୁ ନାଶକରେ । ଶିକ୍ଷ ଚିତ୍ର ହୃପଚନ୍ଦ୍ରଭଞ୍ଜ ପରମ ଅନନ୍ଦ କହେ ରସିକଜନଙ୍କ ହୃଦେରେ । ୨୦ ।



# ଊନଚତ୍ୱାରିଂଶ ଛାନ୍ଦ ।

( ଦେବ ଶାପବଳେ ଚଣ୍ଡୀଦ୍ୱାରା ସ୍ତ୍ରୀପୁରୁଷର ବିଚ୍ଛେଦ ପ୍ରସଙ୍ଗ )

ରାଗ—ମୁଖାବରୀ ଅଷାଢ଼ଶୁକ୍ଳ ବାଣୀରେ ।

ଏଥୁଅନ୍ତରେ ସାଧୁଜନେ ଶୁଣ । ଦୁଷ୍ଟ ପୁଲୋମ କାଳକେୟଗଣ ।
ମେଳ ହୋଇ ସେ ଫସପ୍ରକ ସଙ୍ଗ । ନାଶ କରନ୍ତି ଋଷିବୃନ୍ଦ ଯାଗ ।
ରକ୍ଷା ଚନ୍ଦ୍ରଭାନୁ । ଏହି ଯେ ଶବଦ ଶୁଭିଲା ଦନୁ । ୧ ।
ସର୍ବଜ୍ଞ ସହଜେ ମୁନି କଳାପ । ଯୋଗବଳେ ଜାଣି ଦେବଙ୍କ ଶାପ ।
ନିଃଶ୍ୱାସିକାଚଣ୍ଡୀ ସିନ୍ଧୁ ଦେଶରେ । ଥିଲା ମିଳିଲେ ସେହି ତା ପାଶରେ ।
ମନାଇ ତାହାକୁ । ପେଷିଲେ ଚନ୍ଦ୍ରଭାନୁ ହରିବାକୁ । ୨ ।
ମଧୁର ମାଧବେ ମନ ଉଲ୍ଲାସେ । ମାନସ ବଳାଇ ବନବିଳାସେ ।
ରସୋଦୟବନେ କାବେରୀକୂଳେ । କୁମାର କୁମାରୀ କ୍ରୀଡ଼ନ୍ତି ହେଳେ ।
ଦେଖଇ ସେ ଶୋଭା । ସୁମନାମନ କରୁଅଛି ଲୋଭା । ୩ ।

୨୦ । ନବସଙ୍ଗମକାଳେ—ନୂଆ ହୋଇ ଏକତ୍ର ହେବାବେଳେ, ଏକପତ୍ନୀ—ଗୋଟିଏ ସ୍ତ୍ରୀ,



## ଊନଚତ୍ୱାରିଂଶ ଛାନ୍ଦ ।

୧ । ପୁଲୋମ—ରାକ୍ଷସ, କାଳକେୟ—ଅସୁର, ଫସପ୍ରକ—ଦାନବ, ଋଷିବୃନ୍ଦ—ମୁନିସବୁ,
୨ । ସର୍ବଜ୍ଞ—ସବୁ ଜାଣିପାରନ୍ତି, ମୁନିକଳାପ—ଋଷିସବୁ, ନିଃଶ୍ୱାସିକାଚଣ୍ଡୀ—ଦେବତାଙ୍କ ନିଶ୍ୱାସରୁ ବାହାରିଥିବା ଚଣ୍ଡୀ,
୩ । ମାଧବ—ବସନ୍ତସମୟ, ସୁମନା—ସ୍ତ୍ରୀ ଓ ଫୁଲ,


Digitized by srujanika@gmail.com

କଳକଣ୍ଠ କାଳକଣ୍ଠ ଶବଦର । ଭ୍ରମରେ ହୋଇଛି ମହାମାଧୁରୀ ।
ବହୁଛି ସାରସଗନ୍ଧ ସମୀର । ସ୍ୱାଦୁରେ ସଘନ ଅମୃତାକର ।
ଯୋଗିମନ ମୋହ । କାମଶରାଳିରେ ଛନ୍ନ କରାଇ । ୪ ।
କାନ୍ତ କାନ୍ତା ତହିଁ ବହାର କରେ । କୁଞ୍ଜକୁଟୀରେ ଅମ୍ବୁଜକୁଟୀରେ ।
ଅନୁସରି ଅନୁସର ଜଗତ । ଚୁଆ ଚନ୍ଦନେ ପିଚକା ରଚତ ।
ସୁମନ ମଣ୍ଡନ । ବନା ଅଲଙ୍କାରେ ଯହିଁ ସୁମନ । ୫ ।
ଯଥେ ଭ୍ରମ ନୋହି ପ୍ରିୟ କଣୋରୀ । ବଡ଼ଭି ବଳାସ ଦେଲେ ପାଶୋରି ।
ପ୍ରବାଳ ନାବରେ ଭାବରେ ବସି । ପରିବାଦନୀ ବାଦନ ପ୍ରକାଶି ।
ବୋଲଇ କୁମର । କେଳ ପ୍ରବୀଣା ତୁ ବୀଣା ମୋହର । ୬ ।
ଅଶେଷ ରାଗ କରିବାରୁ ଜାତ । କେ ସର ଅଛି ରଞ୍ଜିବାକୁ ଚିତ୍ତ ।
ଏଣୁ କର ସାର ଗୁଣାମଞ୍ଜୁଳା । ସ୍ୱର୍ଣ୍ଣକଷ ତୁମ୍ବୀ ବହୁଛୁ ବାଲା ।
ହେଉଛି ମୋ ମନ । ଶୁଣିବ ଥରେ କଲେ ଗୀତ ଗାନ । ୭ ।
ଚତୁରୀ ସ୍ନେହଗୃତୁରୀ ବଢ଼ାଇ । ଦଣ୍ଡେ ଛାଡଦେଇ ଶୁକ ପଢ଼ାଇ ।
ବନପ୍ରିୟ ଲଭି ମୂନ ବଳୂଡ । ସପତ ସ୍ୱର ବଶୋର ଦାଅନ୍ତି ।
ତା ରସିକ ଜାଣି । ସ୍ନେହଭରେ ଉରେ ଲଗାଇ ଅଣି । ୮ ।

---

୪ । କଳକଣ୍ଠ—କୋଇଲି, କାଳକଣ୍ଠ—ଡାହୁକ, ସାରସଗନ୍ଧ—ପଦ୍ମଗନ୍ଧ, ସମୀର—ପବନ, ଅମୃତାକର—ଅମୃତର ଖଣି, ପୋଖରୀ, ଛନ୍ନ—ପୂର୍ଣ୍ଣ, ଶରାଳି—ଶରସବୁ,

୫ । କୁଟୀର—କୁଡ଼ିଅଘର, ଅମ୍ବୁଜକୁଟୀର—ଜଳ ମଧ୍ୟସ୍ଥ କୁଡିଅଘର ବା ଜାପଦାଣ୍ଡୀ, ସୁମନ—ଖୁସି, ଫୁଲ ଓ ଦେବତା,

୬ । ବଡ଼ଭିବଳାସ—କୋଠାଘର କ୍ରୀଡ଼ା, ପରିବାଦନୀ—ବୀଣା, ବାଦନ—ବଜାଇବା, କେଳପ୍ରବୀଣା—ରତିପଣ୍ଡିତା,

୭ । ରାଗ—ସ୍ନେହ, ସ୍ୱର; ଗୁଣା—ତାର, ଗୁଣ,

ବୀଣା ସହିତ ଲାବଣ୍ୟବତୀର ତୁଳନା, ବୀଣାରେ ଅନେକ ସ୍ୱର ଜାତହୁଏ ତୋର ମଧ ଅନେକ ସ୍ୱରଅଛି, ବୀଣାରେ ମନମୁଗ୍ଧ ହୁଏ, ତୋ ସ୍ନେହରେ ମନମୁଗ୍ଧ ହୁଏ, ବୀଣାରେ ମଧ ତାର ଅଛି—ତୋର ଅନେକ ଗୁଣଅଛି—ଲାଉ ତୁମ୍ବୀ ବୀଣାରେ ସୁନା ଛଉଣୀ—ତୋକୁଚ ତୁମ୍ବୀରେ ସ୍ୱର୍ଣ୍ଣ ଅଲଙ୍କାର ତେଣୁ ବୀଣାଗୀତ ଶୁଣିବାକୁ ଯେପରି ମନହୁଏ ତୋ ଗୀତ ଶୁଣିବାକୁ ମନ ସେହିପରି ହେଉଛି ।

୮ । ବନପ୍ରିୟ—କୋଇଲି, ମୂନ ବଳୂଢ—ମୁନିପରି ମୂକ, ବଶୋର—ଭୁଲି, ଉର—ଛାତି,

ଚୋଟେ ବସାଇଚା ଚେଟେ ନାଗର । ହୃଦରୁ ତରଳ କରଇ ଦୂର ।
ଜାଣି ହସିଲା ହୋଇଲା ନାଗରୀ । ମଧୁରେ ଭାଷଇ ଚିବୁକ ଧରି ।
ମାଡୁଥାଇ ଡର । ଚିହ୍ନ ଗୃହିଁ ହେଲା ଦନ୍ତୁ କାତର । ୯ ।

ଗୁରୁତର ପ୍ରୀତି ଦେଖିଲା ଦେବୀ । ଅଙ୍ଗନାର ଅଙ୍ଗେ ଅନାଇ ଭାବି ।
ଫୁଲରୁ ଫୁଲ ରତନୁ ରତନ । ଫଳୁଁ ଫଳ ଜାତ ଅତି ଯତନ ।
ପ୍ରକାଶରେ ହାସ । ଯହୁଁ ମନ ସେହୁ ପଗ୍ର ସେ ଭୂଶ । ୧୦ ।

ଗୃର ସୁମନ ସୁକାନ୍ତ ଏ ବହୁ । ସ୍ତ୍ରିଗ୍ରମାନଙ୍କରେ ଅମୂଲ୍ୟ ଏହୁ ।
ଭଜି ପକ୍ଷୀରେ ତ ଗାନ ଘଟିତ । ତନୁ ଏ ନିନ୍ଦୁଥିବ ବେନି ପନି ।
ଥଜ କଳେବର । ବଧାନ ହୋଇଛୁ ପଞ୍ଚ ଫଳର । ୧୧ ।

ଚିତ୍ତେ ଚିନ୍ତାକର ଶ୍ବାସ-ଯୋଗିନୀ । ଲବେ ଅନ୍ତର ତ ନୁହନ୍ତି ବେନି ।
କି କର୍ ହରବ କୁମରବର । ଶାପ କି ବ୍ୟର୍ଥ ହେବ ଦେବଙ୍କର ।
ବଗୃର ମରାଳୀ । ହୋଇ କରୁଥାବ ସେ ବନେ କେଳି । ୧୨ ।

ଏମନ୍ତେ ତହିଁ କୁସୁମ ସମୟୁ । ବାଳା କୁସୁମ ସମୟୁ ଜଦୟୁ ।
ଗୃର ମିନଙ୍କୁ କ୍ରମର ତଳାଇ । ଗୃର ସଜନୀଙ୍କି ନୃପଜା ନେଇ ।
ଭିନ୍ନ ଭିନ୍ନ ହୋଇ । ଦନରେ କେଳି କରଚିଲେ ତହିଁ । ୧୩ ।

---

୯ । ତରଳ—ରତ୍ନମାଳା ବା ପଦକ ମାଳା,

୧୦ । ଗୁରୁତର—ଅତି ଅଧିକ, ଅଙ୍ଗନା—ଲାବଣ୍ୟବତୀ, ଫୁଲରୁ ଫୁଲ, ମୁହଁ ଓ ଆଖି ଏ ଦୁହେଁ ପଦ୍ମ ଓ ନୀଳକଇଁ ହେଲେ, ଫଳରୁଫଳ—କୁଚ ହେଲା ବେଲ, କୁଚ୍ଚ ହେଲା ଶ୍ରେଷ୍ଠ ଗୁଆ,

୧୧ । ଗୃର ସୁମନ—ଗୃରପ୍ରକାର ଫୁଲ, ( କେତକୀ ଛଣପଠ, ଚମ୍ପା ଓ କନିଅର ) ଲାବଣ୍ୟବତୀର କାନ୍ତି—ବର୍ଣ୍ଣ—ଏଗୃର ପ୍ରକାର ଫୁଲ ପରି, ଭଜିପକ୍ଷୀ—ତିନୋଟି ଚଢ଼େଇ—ଚକୁଆ ଚକୋଇ ପରି କୁଚ. ଖଞ୍ଜନପରି ନେତ୍ର, କୁଆ ପରି ନଖ, ତନୁ—ଦେହ ବା ପେଟ ପଦ୍ମପତ୍ରପରି. ପିଠି କଦଳୀ ପତ୍ରପରି, ଦେହ—ପାଞ୍ଚଫଳ—ପାଞ୍ଚଫଳ, ଓଠ—କଇଁଚକୋଳି, ନେତ୍ର—ନାରଙ୍ଗ, କୁଚ—ବେଲ, କୁଚ୍ଚ—ଗୁଆ, ପିଚ୍ଛ—ଝଉଁ,

୧୨ । ମରାଳୀ—ମାଇହଂସ,

୧୩ । କୁସୁମସମୟ—ଗ୍ରୀଷ୍ମକାଳ ବା ବସନ୍ତ କାଳ,

ଏକାଳେ ବହି ପ୍ରଚଣ୍ଡ ପବନ । ରଜେ ବୁଜି ହୋଇଗଲା ନୟନ ।
ମିତ୍ର ସହ କୁମରଙ୍କୁ ହରଲା । ଏଳାବୃତ ଖଣ୍ଡ ବନେ ରଖିଲା ।
ନିବର୍ତ୍ତିଲା ବାତ । ସୁନ୍ଦର ଜାଣିଲା ଅନ୍ତର କାନ୍ତ । ୧୪ ।
ମନେ କଲା ସେ ଅମର ପୁରୁଷ । ମେଳ କରିଥିଲା ମୋ ଭାଗ୍ୟବଶ ।
ଅପସରି ରସରଙ୍ଗ ଚିତ୍ତେଇ । ମୋହ ପାଶରୁ ଅପସର ଯାଇ ।
ମୁଁ ଅଭାଗ୍ୟବନ୍ତ । ଖଣ୍ଡତପ ଫଳ କଲା ଏମନ୍ତ । ୧୫ ।
ଯାହାକୁ କରିଥାଇ ପ୍ରାଣ ପର । ତାକୁ ନିକି ଏତେ ନିର୍ଘଣ କର ।
ଦାସୀ କର ହେଲେ ରଖିଲ ନାହିଁ । ଭ୍ରମର ପ୍ରୀତି କେତେକାଳ ଥାଇ ।
କି ସେନେହ କଲ । ଗ୍ଲାଉଲ ପରି କର ଛଡ଼ା ଫୁଲ । ୧୬ ।
ଏତେ କପଟକୁ ନୁହଇ ଭଲ । ଅନ୍ତର ହେବାକୁ କି ଦୋଷ କଲ ।
ତନୁ ପୁଲକ ନ ସହିଲା ଜନେ । ଏ ହଟ କରୁଛ କି ଘେନି ମନେ ।
ମୁଁ ଅରମ୍ଭିମାନ । ଦେଖିବ ନାହିଁଟି ଗୃହ ବଚନ । ୧୭ ।
ଏମନ୍ତ ଭାଷି ଲୁଚିଥିବେ ବୋଲି । ଖୋଜିଲେ ସେ କେଳି କାନନ ବୁଲି ।
କାହିଁ ନ ପାଇଲେ ତରୁଣ ଈଶ । ବେଳୁଁ ବେଳ ଭାଙ୍ଗିଗଲା ସାହସ ।
ସେ ଜ୍ୟୋତିଷ ବାଳୀ । ଶକୁନେ ଜାଣିଲା ବିଚ୍ଛେଦ ବୋଲି ।୧୮।
କର୍ଣ୍ଣାଟ ଜନକ ଜନକ ତାର । ଶୁଣି ଏ ଗୋଳ ହୋଇଲେ କାତର ।
ଇଷ୍ଟ ଦେବୀଙ୍କି ଜପ କରାଇଲେ । ବିବୁଧ ଶାପ ବିଚ୍ଛେଦ ଜାଣିଲେ ।
ପୁରେହିଲ ସୁତା,—ବଦନୁ ଜାଣିଲା ନବବନିତା । ୧୯ ।
ସେହିଠାରୁ ସେ ଶୋଭା କୁବଳୟ । ଏକା ରଖିଲା କରକୁ ବଳୟ ।
ନୀର ନିଳୟ ନେତ୍ର କୁବଳୟ । ତିର କୁମରଠାରେ କଲା ଲୟ ।
ତା ଗୁଣ-କଳାପ । ମୃଣାଳ ନାଳ ମାଳେ କରେ ଜପ । ୨୦ ।

---

୧୪ । ରଜ—ଧୂଳି, ଏଳାବୃତଖଣ୍ଡ—ଦେଶ ବିଶେଷ,
୧୫ । ଅମର ପୁରୁଷ—ଦେବତା, ଖଣ୍ଡ ତପଫଳ—ଅଳ୍ପତପଫଳ,
୧୬ । ଅନ୍ତର—ପୃଥକ, ତନୁପୁଲକ—ଦେହ ଉଲ୍ଲସିବା,
୧୮ । କେଳିକାନନ—କେଳିବନ, ଶକୁନ—ଚିହ୍ନ,
୧୯ । ଜନକ—ରାଜା, ପିତା, ଓ ଜନକଋଷି, ବିବୁଧ—ଦେବତା ଓ ପଣ୍ଡିତ,
ନବବନିତା—ନୂଆ ସ୍ତ୍ରୀ, ( ଲାବଣ୍ୟବତୀ )
୨୦ । କୁବଳୟ—ଶ୍ରେଷ୍ଠ, ପଦ୍ମ, ସାଗର; ବଳୟ—ଖଡ଼ୁ, ନୀରନିଳୟ—ଲୁହଘର,
ଗୁଣକଳାପ—ଗୁଣସବୁ, ମୃଣାଳ ନାଳମାଳେ—ପଦନାଡ଼ ମାଳାରେ

ଓଡ଼ଣେ ମାୟା ଦୂର କୁମରଗୃହିଁ । ଶୋଭା ମନ୍ଦର ମନ୍ଦସଞ୍ଚୀ ନାହିଁ ।
ନିଜ ଅଗ୍ରମ ଅଭିଗ୍ରମ ପର; ସେ ସ୍ଥାନ ବନ ହୋଇଛି ମାଧୁରୀ ।
ଓବାଲିର ରେ ଧନ । କାହିଁ ଲୁଚିଅଛୁ ଦେଖା ବଦନ । ୨୧ ।
କାହିଁକି ଦାସରେ ଏଡ଼େ କପଟ । କପଟ ଭିତରେ ଯାଉଛି ଘଟ ।
ଘଟ ଆଉ କେତେଦିନ ରହିବ । ଜୀବ ଯେବେ ଭିନ୍ନ କଲା ଦହିବ ।
ବୁଝିଲେ ଚେତନା । ଭୋଗ ନ କରନ୍ତିକି ବେଦନା । ୨୨ ।
ଓଭୋଗ କରୁଥାଇ ଯୋଗରେ ମୁହିଁ । ଯୋଗରେ ଶିବ ଯୋଗରେ ମନାଇଁ ।
ଯାହା ହେଲା ତୋର ମୋର ବଚ୍ଛେଦ । ନୋହିଲା କାହିଁପାଇଁ ଶିରଚ୍ଛେଦ ।
ସୁବାକୁ ସୁବତୀ —ବଚ୍ଛେଦରୁ ଅଉ ନାହିଁ ବପତ୍ତି । ୨୩ ।
କାନ୍ତ ବୋଲିବାକୁ ପାଇଲେ ଲାଜ । ଦାସ ହୁଅନ୍ତି କମ୍ପା କଲୁ ତ୍ୟାଜ ।
ନାହିଁ ତୋର ମୋ ତଳକ ଅନ୍ତର । ତରୁଣୀ ତଳକ ତଳକ ମୋର ।
ଯେନ ରେ ବନିତା । ମୁଁ ତୋର ପଯୁର ଅଲତା ଲତା । ୨୪ ।
ମଞ୍ଜିଷ୍ଠା ରଙ୍ଗ କ ହୀନ ବସନ୍ତ । ଧୋଇ ଦେଲେ ଛାଡ଼ିଯାଏ ସୁତନୁ ।
ଓଏହୁ ପରକାରେ ପଙ୍କଜମୁହିଁ । ଛାଡ଼ିଲେ ତୁ ତ ମୁଁ ଛାଡ଼ିବ ନାହିଁ ।
ମୋ ସବୁ ଭରସା । ରସା ମଧ୍ୟରେ ଏକା ରସାଳସା । ୨୫ ।
ପୁଣି ଭ୍ରମେ ଭ୍ରମେ ବପିନ ସ୍ଥଳେ । ଯେଉଁ ପାଦପରେ ପଲ୍ଲବ ଚଳେ ।
ଝିଙ୍କାରି ଝଙ୍କାର ଶୁଣଇ ଯହିଁ । ମନେ କରେ ବାଳାମଣି ଆସଇ ।
ଲୁଚିଥିଲା କାହିଁ । ମୋହର ମାନସ ବୁଝିବା ପାଇଁ । ୨୬ ।
ଯେଉଁ ଲତାପରେ ଭ୍ରମନ୍ତି ପିକେ । ପ୍ରତେ ପରାଣବନ୍ଧୁ ପରି ଡାକେ ।
ନିକଟକୁ ଯାଇଁ ରମଣୀ ମଣି । ଲତା କୋଳ କର ଧରଇ ପୁଣି ।
ପୁନଃ ପୁନଃ ଚୁମ୍ବେ । ହାସ ଓଷ୍ଠ ଛବ ପୁଷ୍ପ ପଲ୍ଲବେ । ୨୭ ।

---

୨୧ । ଶୋଭାମନ୍ଦର—ସବୁ ସୁନ୍ଦରର ସ୍ଥାନ, ମନ୍ଦରାକ୍ଷୀ—ସୁଲୋଚନା, ଅଭିରାମ—ସୁନ୍ଦର,

୨୩ । ଯୋଗ—ତପସ୍ୟା, ସମସ୍ତ,

୨୪ । ତଳକ—ଚନ୍ଦ୍ରା, ପଯୁର—ପାଦ,

୨୫ । ମଞ୍ଜିଷ୍ଠାରଙ୍ଗ—ମେହେନ୍ଦିରଙ୍ଗ, ରସା—ପୃଥିବୀ, ରସାଳସା—ରସିକା,

୨୬ । ଝଙ୍କାର—ଶବ୍ଦ, ମାନସ—ମନ,

ଝୁଣ ଦେଇଣ ଜଡଗଲେ ପିକ । ପ୍ରିୟାକୁ ସୁମର କରଇ ଶୋକ ।
ପୁଲକାଇ ଦେଉଥାଇ ଶରୀର । ତାହାର ଭାବେ ହୋଇ ଜରଜର ।
ଫୁଲମାଳା କର । ଉପାଳେ ମଣ୍ଡଇ କେଶ ବନ୍ଧୁର । ୨୮ ।
ନାରିକେଳଫଳ ନାସ୍ତି ଜରଜ । ସମାନ ରଚେ ଦେଖାଇ କରଜ ।
ଅଲଙ୍ଗନେ ତୁହି ବଲଗ୍ନ କରୁ । ଏବେ ଧନ ଭଜ ତୋହ ଯୋଗରୁ ।
କରଗତ ହେଲେ । ଏଥର ଏ ଦଣ୍ଡ ପାଇବୁ ଭଲେ । ୨୯ ।
କହଇ ବୃକ୍ଷଙ୍କୁ ଅଛ ପାବନୀ । ଜାମ୍ବବ ଡାଳମ୍ବ କୁନ୍ଦକୁ ଘେନି ।
ପୁଣି ପନସ କଞ୍ଚନ ଚନ୍ଦନ । ଏହି ହୋଇଛନ୍ତି ମହାରଞ୍ଜନ ।
ଦିଅ ମୋ ବନିତା । ଶ୍ରୀରାମଙ୍କୁ ଦେଲ ହଜିଲା ସୀତା । ୩୦ ।
ଯେଣୁ ସାଧୁ ନାମ ସ୍ମରଣ କଲା । ଶୂନ୍ୟେ ବଲ୍ଲକୀଶବଦ ଶୁଭିଲା ।
ଯୁବରାଜନ ମନରେ ନ ଭାଳ । ବାଳା ଲଭିବ କାରୁଣ୍ୟ ସମ୍ଭାଳ ।
ଅମର-ଶାପରେ । ହେବ ବଚ୍ଛେଦ ମାତ୍ର ସମ୍ବସ୍ତରେ । ୩୧ ।
ନାରଦ ମୁଖ ଗଲା ଦଣି ଦଣି । ହେତୁ ପ୍ରସରିଲା ସେଠାରେ ବସି ।
ଜାଣିଲା ନୁହଇ ନିଜ ଭବନ । କାବେରୀତଟ ରସୋଦୟ ବନ ।
ଦଣେ ମେରୁ ଗିର । ମହୀ-ମହିଳା ଜଡ ସ୍ତନ ପର । ୩୨ ।
ଅର୍ଦ୍ଧଭାଗରେ ଚନ୍ଦ୍ର ସୂର୍ଯ୍ୟ ଗତ । ରତନ ଶୃଙ୍ଗମାନ ଜଳୁଛନ୍ତି ।
ମନେ କଲା ଏ ଏଲାବୃତଖଣ୍ଡ । କନକଧୂଳି ମଣିଶିଳଗୁଣ୍ଡ ।
ଭ୍ରମି ତା ଦେଖଇ । ଗୁରମିତ୍ର ସଙ୍ଗେ ବ୍ୟାକୁଳ ହୋଇ । ୩୩ ।

---

୨୮ । ପୁଲକାଇଦେବା—ରୋମ ଟାଙ୍କୁରିବା,
୨୯ । ବଲଗ୍ନକରୁ—ଅଲଗା କରୁ,
୩୦ । ପାବନି—ହନୁମାନ, ଭୀମ, ହରଡ଼ାଗଛ, ଜାମ୍ବବ—ଜମ୍ବବ ଓ ଝିଅ,-
ଡ଼ାଳମ୍ବ—ମାଙ୍କଡ଼ ବଶେଷ ଓ ଡ଼ାଳମ୍ବଗଛ, କୁନ୍ଦ—ଫୁଲଗଛ ଓ ମାଙ୍କଡ଼,
ପନସ—ପଣସଗଛ ଓ ମାଙ୍କଡ଼, କଞ୍ଚନ—କଞ୍ଚନ ଗଛ ଓ କଞ୍ଚନ ମାଙ୍କଡ଼
ଚନ୍ଦନଗଛ ଓ ଚନ୍ଦନ ନାମକ ମାଙ୍କଡ଼, ମହାରଞ୍ଜନ—ଅତି ସୁନ୍ଦର,
୩୧ । ଶୂନ୍ୟ—ଆକାଶ, ବଲ୍ଲକୀ—ବୀଣା, କାରୁଣ୍ୟ—ବେଦନ,
୩୨ ହେତୁପ୍ରସରିଲା—ଚେତାହେଲା, ଭବନ—ଘର,
୩୩ । ଅର୍ଦ୍ଧଭାଗରେ—ଅଧାରୁଆରେ, ମେରୁର ଏକ ପାଖରେ ସୂର୍ଯ୍ୟ ଚନ୍ଦ୍ର
ଗତକରେ.


Digitized by srujanika@gmail.com

ଦେଖିଲେ ତାଙ୍କୁ ଗନ୍ଧର୍ବ କାନନରେ । ଏମନ୍ତ ଆଶଙ୍କା କଲେ ମନରେ ।
ଦେଖିବେ ଯେବେ ଏ ପୁଂସ ମାଧୁରୀ । ଭ୍ରଷ୍ଟା ହୋଇବେ ଅମ୍ଭ ମନୋହାରୀ ।
ଡାକି ତାଙ୍କୁ ନେଲେ । ଅମୂଲ୍ୟମଣି ଗୁମ୍ଫାରେ ଥୋଇଲେ । ୩୪ ।
ସ୍ତ୍ରୀ ପୁରୁଷ ଅନୁରାଗ ତୁଲା । ହେବା ପାଇଁ ବିଧି ବିଚ୍ଛେଦ କଲା ।
ହେବ ଜଡ଼ ହେଲେ ରସିକପଣ । ବଶ ହୋଇଅଛି ସୁଜନେ ଜାଣ ।
ଏ ବତିଶ ଛାନ୍ଦ । କହିଲା ରାମ ଚିନ୍ତି ଉପଇନ୍ଦ୍ର । ୩୫ ।

—o—

## ଚତ୍ୱାରିଂଶ ଛାନ୍ଦ ।

ରାଗ—ବଙ୍ଗଳାଶ୍ରୀ ।

( ବିରହେ ଗ୍ରୀଷ୍ମଋତୁ ବର୍ଣ୍ଣନ )

ଗ୍ରୀଷମ ସମୟ ପ୍ରବେଶ ହୋଇଲା ନବୀନା ଦୂତୀ ପ୍ରକାର ।
ପତି ସଙ୍ଗତେ ଶୁଆଇ ଚନ୍ଦ୍ରକରେ ଲାଜ କରାଇଲା ଦୂର ।
ବିରହିଚିତା ପରାଏ ଦଶେ ଦଶେ ଦଶିଲେ ବନଅନଳ ।
ରଜନୀକରେ ପବନ ବହି ଦେବଦୀପକୁ କଲା ଅକୁଳ । ୧ ।
ସରିତ ହୋଇଲେ ଜରତୀ ପରାଏ ଘନରସ ବିହୀନରେ ।
ରସିକ ରସାଧିକ ପ୍ରାପ୍ତ ସରସୀ ମହିଷୀ ଆଲିଙ୍ଗନରେ ।

୩୪ । ଆଶଙ୍କା—ଭୟ,

—o—

## ଚତ୍ୱାରିଂଶ ଛାନ୍ଦ ।

୧ । ବିରହିଚିତା—ବିରହୀଙ୍କ ଚିତାଅଗ୍ନି, ଦଶେ—ଦଶରେ, ବନଅନଳ—ବନଅଗ୍ନି, ରଜନୀକର—ଧୂଳିସମୂହ, ଦେବଦୀପ—ଚକ୍ଷୁ,
ଏଠାରେ ଖରାଦିନ ଦୂତୀପରି ହେଲା—କାରଣ ଦୂତି ସ୍ତ୍ରୀ ପୁରୁଷଙ୍କ ମନକୁ ନାନାକଥା କହି ଭୁଲାଇ ଦିଏ ଖରା ହେତୁ ଚନ୍ଦ୍ରକିରଣରେ ଶୋଇବାର ଦେହରେ ଲୁଗା ରହିଲା ନାହିଁ ପରସ୍ପରଙ୍କୁ ଦେଖି ଲାଜ ଦୂର ହେଲା—ଧୂଳି ଉଡ଼ିବାରୁ ଆଖିରେ ମଧ ପଡ଼ି କଷ୍ଟହେଲା,
୨ । ସରିତ—ନଦୀ, ଘନରସ—ପାଣି, ଜରତୀ—ବୁଢ଼ୀ, ସରସୀ—ପୋଖରୀ, ଖରାଦିନେ ପୋଖରୀରେ ମହିଷୀ ପଡ଼ି ଘାଣ୍ଟିଲାପରି—ରସିକ ରାଜାମାନେ ରସ ଆଶାରେ ମଧ ରାଣୀମାନଙ୍କୁ ଆଲିଙ୍ଗନ କରି ରସସବୁ ଘାଣ୍ଟିଲେ


Digitized by srujanika@gmail.com

ମୃଗେ ପ୍ରକଟ ରସନା କଲେ ବପସ୍ରିତ-ରତା ପ୍ରାପ୍ତ ହୋଇ ।
ପତ୍ରାବଳୀ ତ୍ୟାଗେ ରତାନ୍ତ ନାୟିକା ସମାନ ତରୁଏ ବହି । ୨ ।
ଜନେ ଚନ୍ଦ୍ରମାରେ ରଞ୍ଜନ ହୋଇଲେ ଶୁଦ୍ଧଯାମିନୀ ଯେମନ୍ତ ।
ତୁଳାରାଶିରେ ଯୁକ୍ତ ହେଲେ ଶାଳ୍ମଳୀ ମୃଗମଳମସବତ ।
କରେ ତାପିତ କରେ ବଦମଣ୍ଡଳ ପ୍ରତାପୀ ରାଜା ଯେସନ ।
ଭୁଜଙ୍ଗ ପଞ୍ଚଗ୍ଲରେ ରକ୍ଷି ଶିଖୀ କୁଳଟାନାରୀ ସମାନ । ୩ ।
ଦାମ ଚଳାଇଲା ସରଣୀ ତାପରେ ନାଗରିଦୋଷୀ ବଦେଶୀ ।
ନବୋଢ଼ା ଗାଢ଼-ସୁରତକାଳ ପ୍ରାପ୍ତ ଭୃଙ୍ଗ ମଲ୍ଲୀ ମଲ ଭାଷି ।

---

ରସନା—ଜିଭ—ଅଣ୍ଟାଘାଗୁଡ଼, ପ୍ରକଟ—ବାହାର, ଖରାହେତୁ ମୃଗମାନେ ଜିଭ କାଢିଲେ—ଖରାହେତୁ ଏ ପାଖ ସେପାଖ ହେବାରୁ ଅଣ୍ଟା ଘାଗୁଡ଼ ବାହାରିଲା, ତରୁ—ଗଛ, ଗଛରୁ ପତ୍ର ଶୁଖିଯାଇ ଝଡ଼ିବାରୁ ସ୍ତ୍ରୀମାନେ ଖାଲରେ ଛତା ଲଭଯିବାରୁ ସେହିପରି ଦିଶିଲା,

୩ । ଶୁଦ୍ଧଯାମିନୀ—ଜହ୍ନରାତ୍ର, ରଞ୍ଜିତ—ସୁନ୍ଦର, ଶାଳ୍ମଳୀ—ଶିମିଳି, ମୃଗମଳ-ମସବତ—ଚନ୍ଦ୍ର ତୁଳରାଶିକି ଯିବା, ତାପିତ—କଷ୍ଟ, ଶିଖୀ—ମୟୂର ଭୁଜଙ୍ଗ—ସାପ, ଦାସ—ପୁରୁଷ,

ଜହ୍ନ ରାତିରେ ଲୋକମାନେ ଚନ୍ଦ୍ର କିରଣରେ ଶୋଇବାରୁ ସୁନ୍ଦର ଦିଶିଲେ, ଶିମିଳିଗଛର ମଞ୍ଜିଫାଟି ତୁଳା ବାହାରିଲା—ଚନ୍ଦ୍ର ମଧ୍ୟ ତୁଳ ରାଶିକି ଗତିକଲେ, ରାଜା ଖଜଣା ପାଇଁ ପ୍ରଜାଙ୍କୁ କଷ୍ଟଦେଲା, ଖରାରେ ଲୋକେ କଷ୍ଟ ପାଇଲେ, ମୟୂର ଖରା ହେତୁ ପୁଚ୍ଛଟେକି ବିକଳ ହେଲା ଓ ସାପକୁ ଘୋଡ଼ାଇଲା—ବିଟପୀମାନେ ପରପୁରୁଷକୁ ମଧ୍ୟ ଆଶ୍ରୟ ଦେଲେ,

୪ । ଦାମ—ଘୋଡ଼ାନିଅଁ, ସରଣୀ—ବାଟ ।

ପଣା ସଙ୍କ୍ରାନ୍ତିରେ ପାଠୁଆମାନେ ନିଅଁରେ ପଶିଲେ—କନ୍ଦର୍ପ ହେତୁ ବିଦେଶରେ ଥିବା ପୁରୁଷ ନିଜ ସ୍ତ୍ରୀ ସକାଶ ବାଟରେ ଖରା ହେତୁ କଷ୍ଟ ପାଇଲେ ।

ନବୋଢ଼ା—ନୂଆ ଯୁବତୀ, ନୂଆ ସ୍ତ୍ରୀମାନେ ଗାଢ଼ ସୁରତରେ ମଲ୍ଲ ମଲ୍ଲ କହିଲା ପରି, ଭଅଁରମାନେ ପବନରେ ଦୋହଲୁଥିବା ମଲ୍ଲୀଫୁଲରେ ବସି ନ ପାଇ ଗୁଣୁ ଗୁଣୁ ଶବ୍ଦ ( ମଲ୍ଲ ମଲ୍ଲ ) କଲେ ।

ସିନ୍ଧୁବାର—ବେଗୁନିଆଁ ଫୁଲ, ବିପିନ—ବଣ, ଧୀବର ରାମା କଳେ-ବର—କେଉଟୁଣୀମାନଙ୍କ ଦେହ ବେଗୁନିଆଁ ଫୁଲପରି ଅଁସିଣିଆଁ ଗନ୍ଧ

ଧୀବର-ଷମା କଲେବର ପଷସ୍ଥ ଗନ୍ଧେ ଝିଙ୍କୁ ବାର ଫୁଲ ।
ଝିଙ୍କାର ଙ୍କାର ଝୁଣ୍ଟିଆ ଶବଦେ ବପିନ ନର୍ତ୍ତକୀ ତୁଲ୍ୟ । ୪ ।
ଏତେ ପ୍ରଭଞ୍ଜନ ରଞ୍ଜନ ହୋଇଲା ବ୍ୟଜନ ଭଳରେ ପଶି ।
ବନାଶଲୁ ଭାନୁସନ୍ତାପକୁ ଶଶୀ ଦବସ ତାପକୁ ନାଶି ।
ଶ୍ଳେଷ୍ମ-ଅଶ୍ରିତ ଗାୟକସ୍ୱର ପ୍ରାପ୍ୟ ଶୁଭିଲା କୋକିଳ ନାଦ ।
ଏ ଋତୁ ଗୃହୁଁ ଚନ୍ଦ୍ରଭାନୁ ବଗୃହରେ ଲଭି ବଲକ୍ଷ ବଚ୍ଛେଦ । ୫ ।
ଘରେ ପରେ ଆଣି ପବତେରେ କଷାଇ ବଧାତା ବଧାନ ଦେଖ ।
ପୀରତ ହୋଇ ଲଥାଏ ଜପୃଙ୍କର ପରସ ରମ୍ୟଟି ସୁଖ ।
ପ୍ରାଣରୁ ଅଧିକ ଯେଉଁ ପେନାପେନ ତାହା ଯାହା କରେ ଭଲ ।
ପବ ପତନ କର୍ମା ଶିରେ ନ କରେ ଜାଣିଲ ଅତ ପିଶୁନ । ୬ ।
ମନ ଜାଣିବାକୁ ପ୍ରିୟସମ ଜଣେ ଖୋଜିଲେ ନ ଥିବ କାହିଁ ।
ମୋ ମନେ ଯେଜୁଛୁ ପ୍ରୀତ ଦେଖିବାକୁ ତାହାର ସମାନ ସେହି ।
ତାହା ପ୍ରତବମ୍ବ ସୁନ୍ଦରପଟକୁ ତାକୁ ପ୍ରତତୁଲ୍ୟ ଅଛି ।
ଏମନ୍ତ ପଦାର୍ଥ ପାଇ ହରାଇଲେ ପଶୁ କି ପାରବ ମୁଛି । ୭ ।
ଜାଣି ନ ଥିଲୁ ଏ ରସ ଏମନ୍ତ ସ୍ମରକୁ ଦହିଲେ ହର ।
ଜାଣିଲା ଦନରୁ ଯୁବତୀକି କଲେ ଅର୍ଦ୍ଧଅଙ୍ଗେ ଅଙ୍ଗୀକାର ।
ଅଜନ୍ମ ବ୍ରହ୍ମଗୃହୀପଣେ କେ ବଡ଼ ବୁଝ ଋଷ୍ୟଶୃଙ୍ଗ ଠାରୁ ।
ନିଜ ଦୀଷା ଛାଡ଼ି ଶିଷା କଲେ ରସ ରୁପାଜୀବା କର ଗୁରୁ । ୮ ।
ସୁଧା ସ୍ୱାଦୁ ପାଇ ଶିରଚ୍ଛେଦ ରାହୁ ନ ଛାଡ଼ିଲା କଦାଚିତ ।
ପ୍ରୀତ ଏମନ୍ତ ଚନ୍ଦ୍ରମଣି ପାଷାଣ ଚନ୍ଦ୍ର ଗୃହେଁ ଦ୍ରବୀଭୂତ ।
ପ୍ରୀତଅନ୍ତର ଯେମନ୍ତ ହୋଇ କଷ୍ଟ ହେଲେ ଫାଟିଯାନ୍ତା ସତେ ।
କାହିଁ ଘଟନା ହୋଇଛି ଘଟ ମୋର ଗୋଚର ନୋହିଲା ମୋତେ । ୯ ।

---

ହେଲା । ଖରାଦନେ ମାଛ ଶୁଖାଇବାରେ ଓ ମାରବାରେ ବଣରେ ଝିଙ୍କାର ଶବ୍ଦ ହେବାରୁ ଓ ପବନ ଯୋଗେ ବଣ ନାଚିଲାପର ଜାଣୁଅ ପିଲା ହେଲା ।

୫ । ପ୍ରଭଞ୍ଜନ—ପ୍ରଳୟ ପବନ, ରଞ୍ଜନ—ସୁଖପ୍ରଦ, ଭାନୁ ସନ୍ତାପକୁ—ଖରା କଷ୍ଟକୁ, ଶ୍ଳେଷ୍ମଅଶ୍ରିତ—ଶରଦ, ନାଦ, ଶବ୍ଦ ।

୬ । ପବ—ବଜ୍ର, ପିଶୁନ—ଖଳଲୋକ ।

୮ । ସ୍ମର—କନ୍ଦର୍ପ, ଦୀଷା—ତପସ୍ୟା, ରୁପାଜୀବା—ବେଶ୍ୟା ।

୯ । ପାଷାଣ—ପଥର, ଚନ୍ଦ୍ରମଣି—ପଥର ବଶେଷ, ଘଟ—ଦେହ ।

ଏହା ସୁମରିବାଠାରୁ ମରିବାର ଭଲ ଘେନୁଅଛୁ ମନେ ।
ଆଜଯାଏ ଆଜନମସୁଖୀ ଦୁଃଖ ଦେଖି ନ ଥିଲି ସ୍ୱପନେ ।
ନୀରଜବନ୍ଧୁ ଜରଜରେ କରଜକ୍ଷତ କଲେ ବୋଲେ ଋଷି ।
ବିଷମବିଶିଖ ବିଶିଖକୁ ଲକ୍ଷ ସେ ହୋଇଲି ଏବେ ଆସି । ୧୦ ।
ମୋ ଭାବ ଭାବନା କରି କରୀଗତି ନୀର ନିରତରେ ବହି ।
ମୃଗଖଞ୍ଜନ ଗଞ୍ଜନ ଆଖିରେ ତ ଅଞ୍ଜନ ରଖିବ ନାହିଁ ।
ଲୁଚି ହୋଇଯାଇ ନିଜଛୁଇ ଥାଇ ଯେଉଁ ବଦନକୁ ଇନ୍ଦୁ ।
ନିହାର ନିକର ପତନକମଳ ମଳିନ କରିବ ବନ୍ଧୁ । ୧୧ ।
ହୃଦ ବନ୍ଧୁ ନିଦ କୁମୁଦବାସୀକି ପଲ୍ୟଙ୍କେ ଆସଇ ନାହିଁ ।
ଚଞ୍ଚଳେ ଅଞ୍ଚଳେ ମନ୍ଥରେ ମନ୍ଥୁଳା ପଲ୍ଲବେ ଶୋଇବ କେହି ।
ଘଡ଼ି ଘଡ଼ିକରେ ନାଡ଼ୀ ଛୁଡ଼ିଯାଇ ହେଉଥିବ ପରା ମୋହ ।
ବିରହେ ତପତ ହୋଇଥିବ ନବସପତ ବରଣୀ ଦେହ । ୧୨ ।
କଶୋସ୍ତ୍ରୀ ତିଳକ ପାଶୋରି ଦେବନି ତିଳକ ରଚନା ଚିତ୍ତୁ ।
ଲବକ ଯୁଗ ପରସ୍ତୁ ନ ସହିବ ଯୁଗଳ ନୋହିବା ହେତୁ ।
ରତିସଦୃଶା ସୁଦୃଶାକୁ କି ଦଶା ଦେଲା ଦାରୁଣ ଦଇବ ।
ଚିତ୍ତେ ପରତେ ନ ଥିଲା ମୋର ସଖୀ ଅନ୍ତର ସତେ ହୋଇବ ।୧୩
ଦିନ ଦିନକରେ କନକଅଙ୍ଗୀର ଅନେକ ଭାବକୁ ଧ୍ୟାୟି ।
ଜୀବ ଥିବାଯାକ ଜୀବକା କରି ମୁଁ ବୁଲୁଥିବ ଯୋଗୀ ହୋଇ ।
ଗୃରୁଶୀଳା ନାମ ଜପାରୁଁ ଜପାରୁଁ ମାରୁ ଏକା ମୋତେ ମାର ।
ରସିକ ସଂସାର ମଧ୍ୟରେ ପ୍ରଶଂସା ସାର ହୋଇ ରହୁ ମୋର ।୧୪।

---

୧୦ । ନୀରଜ—ପଦ୍ମ, କରଜ—ନଖ, ବିଷମ ବିଶିଖ—କନ୍ଦର୍ପ ଶର ।
୧୧ । କରୀଗତି—ଗଜଗମନୀ, ଗଞ୍ଜନ—ପରାସ୍ତ, ନିଜଛୁଇବା—ମାନିବା, ଇନ୍ଦୁ—ଚନ୍ଦ୍ର, ନିହାର—କାକର, ନିକର—ସମୂହ ।
୧୨ । ମନ୍ଥରେ—ଢଳେ, ତପତ—ତତଲା, ନବସପତ—ଷୋହଳ ।
୧୩ । କଶୋସ୍ତ୍ରୀ ତିଳକ—ନାରୀଶ୍ରେଷ୍ଠ, ତିଳକ ରଚନା—ଚିତା ବେନିବା, ରତିସଦୃଶା—ରତିତୁଲ୍ୟା, ସୁଦୃଶା—ସୁନ୍ଦରୀ ।
୧୪ । କନକଅଙ୍ଗୀ—ସୁନାଗୋରୀ, ଗୃରୁଶୀଳା—ସୁନ୍ଦରୀ ।

ରସଲତା ପାଦେ ଅଲତା ରଞ୍ଜିବାପାଇଁ ବଢ଼ାଇଲେ କର ।
ବଧୂଳୀ ଅଧସ୍ତ୍ରୀ ଧରଣ ବୋଲଇ କୁସୁମେ କବରୀ କର ।
ବେଣୀଟି ବୋଲି କହିବାକୁ ଜାଣି ତ ନୋହିବ କାହିଁକି ଲଜ୍ଜା ।
ଅସନମତ ସନମତ ସେ ମତ୍ତକାଶିନୀ ଭ୍ରମରେ ଥାଇ । ୧୫ ।
ଧର ପାନ ବୋଲି ଯାଚିଲା ବେଳକୁ ଦାଗିଲେ ଅପୂର୍ବ କର ।
ଏହି କଥା ନକି ଜୀବକା ହେଲା କି ରସିକାବର ଉଚ୍ଚାର ।
ଅବଲା ବଲା ପିଟିଗଲେ ଖଞ୍ଜିଲେ ରଞ୍ଜିବା ବଗୃହୁଁ ମନ ।
ଆନନ ଢଙ୍କାଇ ଅନ କଥା ନାହିଁ ବୋଲି ଯେ ପଚାଇ ଅନ ।୧୬।
ମଦାଳସା ଓଷ୍ଠଯୋଗ କରୁଥାଇ ଚୁମ୍ବନ ଲାଳସୀ ହୋଇ ।
ପିକବାଣୀ ପାନପିକ ପକାଇବା ବ୍ୟାଜରେ ଲାଜେ ବଞ୍ଚାଇ ।
ଧନକୁ ସମ ମନକୁ ଅଣବାକୁ ନୋହିବେ ସର୍ବଜ୍ଞପାନେ ।
କସ୍ତୁରୀ ବୋଳୁଁ ମୁଁ ଚତୁରୀ ସ୍ତନକୁ ଚେଳେ ଆଚ୍ଛାଦଲା ଘନେ ।୧୭।
ଦେଖ ରସାଲ ରସାଳସା ଭ୍ରଷିଲା ଶିକ୍ଷ କର ଦଅ କି ନା ।
ବୋଇଲ ଅନ ନ ଜାଣଇଁ ନାରି ମୁଁ ନାରକେଳ ଶିକ୍ଷ ବନା ।
ଅଣଛ ବୋଲି ଅଣିଛୁ କି ଭଙ୍ଗୀକି ଅଲପ ହସିଲା ହୋଇ ।
ଯେଣେ ଅନାଇଲେ ତେଣେ ତ ଦଶଇ ତେଣେ ସିନା ଚନ୍ଦ୍ରମୁହିଁ ।୧୮
ମନେ ନୋହିଥିଲା ସୁମନରଜ କି କବରୀଧୂପିତ ଧୂମ ।
ଲାଗି କୋମଳାଙ୍ଗୀ କମଳନୟନୁ ଜଳ ଯେ ହେଲା ଜନମ ।

---

୧୫ । ରସଲତା—ରସିକା, କବରୀ—କେଶବିନ୍ୟାସ, ଜୁଡ଼ା, ଅସମ୍ମତ—ନାହିଁ କରିବା ।

୧୬ । ଧର ପାନକୁ ଧର, ଅଲଗାକ୍ରେ ଅଧର—ଓଷ୍ଠ ପାନ, ଜୀବକା—ବ୍ୟବଶାୟ, ଅବଲା—ସ୍ତ୍ରୀ, ଆନନ—ମୁହଁ, ଅନ—ଅନ୍ୟ, ଅନ—ଗୁଣ ।

୧୭ । ଚୁମ୍ବନଲାଳସୀ—ଚୋକରେ ପ୍ରିୟ, ପିକବାଣୀ—କୋଇଲି କଣ୍ଠି, ଚେଳ—କାଛଲାରେ ।

୧୮ । ରସାଳ—ଆମ୍ବ, ନାରିକେଳ—ନଡ଼ିଆ, ଆମ୍ବସଙ୍ଗେ ଗାଲ—ନଡ଼ିଆ ସଙ୍ଗେ କୁଚ ।

୧୯ । ସୁମନରଜ—ଫୁଲରେଣୁ, କବରୀ ଧୂପିତ ଧୂମ—ବାଳ ଶୁଖାଇବା ଧୂଆଁ, ପୂର୍ବେ କୃଷ୍ଣ ଗୋକୁଳ ଧୂଆଁରେ ବାଳକୁ ଶୁଖାଉଥିଲେ, ସାରସାଳ—ପଦ୍ମହୁଇ ବା ଉତ୍ତମ ସ୍ତ୍ରୀ, କୃଷ୍ଣ ଧୂଆଁରେ ଦେହ ଦେହି ବା ଦେଖି ମନେ ହେଲା ମାନ କଲା, ତେଣୁ ପଦ୍ମ ହୁଇଟି ବା ପାଦପଦ୍ମରେ ଶିର ରଖି

ବଢସ ହୋଇ ସାରସାଳ ନେଇ ଛା ଲଗାଇ ଦେବାକୁ ଶିରେ ।
ପୋଛୁଲା ନେତ ପୁଚ୍ଛିଲା ମନମଥ ଅଛନ୍ତି କି ଜୀବନରେ । ୧୯ ।
କୃପ ବଗ୍ଭୂରଲା ପୁଣ ପଗ୍ଭୂରଲା ଜଳେ ଜାତ ମୀନ ବୋଲି ।
ଚୈତକବେଳକୁ ଭ୍ରୂବଲ୍ଲୀ କମ୍ପିଲା ନାସିକା ଉଠିଲା ଫୁଲି ।
ବୋଇଲି ସ୍ୱଜନୁ ଅଣ୍ଟିଳକୁ ଧନୁ ପାଞ୍ଚିଲି ଏ କଥା ମୁହିଁ ।
ପାଣି ଦେଇଥିଲୁ ଶାଣଲାବାଣକୁ ବାନ୍ଧବ ବନ୍ଧୁକୁ କାହିଁ । ୨୦ ।
ମୁଁ ନାକ ସହ ମୁନାଙ୍କି ବନ୍ଧ କହ କି ଯଶ ଅଛି ତହିଁରେ ।
ଅଛି ଧାରଣ ସ୍ୱର ଅନୁସରଣ କରନ୍ତି ପ୍ରହାର କରେ ।
ଚତୁରଦଶଭୁବନମୋହିନୀ କି ଚତୁରପଣ ବହିଲା ।
ତହିଁକି କଛି ନ କହିଲା ସ୍ତନକୁ ଗୁହିଁଲା ହୋଇ ରହିଲା । ୨୧ ।
ଏହିକାଳେ କୋଳେ ଗୃନ୍ଦନୀ ଉପରେ ଗୃଛୁଭୁଲୁ ଥାଇ ଶୋଇ ।
ହେଉଥାଇ ମନ ବାଳାବବସନ ଦର୍ଶନ କରବା ପାଇଁ ।
ଚିତ୍ତକୁ ଅପ୍ଳଷ୍ଟ ହିତକୁ ରଚଲା କୁସ୍ତପତନୀ ଜାଣି ।
ବାଳା ମୋ ବନ୍ଧଙ୍ଗଯୋଗେ ଥାଉ ଥାଉ ଅକାଶେ ପ୍ରକାଶେ ଶଶୀ ।୨୨।
ଏଣେ କରୁଥାଇ ଏଣୀଈକ୍ଷଣୀ ଯେ ମନ ମିଶିବାକୁ ଗାନେ ।
ତେଣେ ନେଉଥାଇ କରକରଦନୀ କର ଢାଙ୍କିବାକୁ ନେନେ ।
ହେଲଟି ବୋଲି ଯେ ଲାଜେ ନେଉଥାଇ ମୋ ଉରଜକଟେ ମୁଖ ।
ଗୃହିଁ ବୋଲୁଥାଇ ନ ପାଇ ପାଇଛି ନୟନ ପରମସୁଖ । ୨୩ ।
ଭବଉପରେ ଯେ ଭାବ ଉପୁଜିଲା ରତାନ୍ତେ ଶାନ୍ତେ ଅଧିକ ।
ଲଜ୍ଜାକାତରେ ତରତରେ ତରୁଣୀ ପିନ୍ଧିଲା ବାସ ମୋହର ।
ମୁଁ ଯେ ଭାଷିଲି ଦଣି ଦଣି ଅପୁଛି ଏଣିକି ସୁଭାଗ୍ୟ ସିନା ।
ମୋହପଣ୍ଡ ହୋଇବାକୁ ହୋଇଲାଣି ପଣ୍ଡଶେଣ୍ଟ ଭାବନା । ୨୪ ।

---

ଗୋଡ଼ତଳେ ପଡ଼ୁଛି କହିବାରୁ ସେ କହିଲା କନ୍ଦର୍ପ ତ ଅଛି, ସ୍ତ୍ରୀମାନେ କଅଣ ଧୈର୍ଯ୍ୟ ଧରି ପାରିବେ ଏକ କଥା ?

୨୦ । ଭ୍ରୂବଲ୍ଲୀ—ଭ୍ରୂଲତା ଦୁଇ ।
୨୧ । ଚତୁରଦଶ—ଚଉଦ, ସ୍ତନକୁ ଗୃହିଁଲେ—ତଳକୁ ମୁହିଁ ପୋତିଲେ ।
୨୨ । ଗୃରୁଭୁରୁ—ସୁନ୍ଦରୀ, ବବସନ—ଲଙ୍ଗଳା ।
୨୩ । ଏଣୀକ୍ଷଣୀ—ମୃଗନେତ୍ରୀ, କରକରଦନୀ—ଡାଳମ୍ବଦନ୍ତୀ ।
୨୪ । ରତାନ୍ତେ—ରତି ଶେଷରେ, ଶାନ୍ତେ—ଅବଶରେ ।

ଶ୍ରବଣେ ତରଳ କର କି ଭାବରେ କୋରକୀକୃତ ଓସ କଲା ।
ପଣନ୍ତେ ପଣନ୍ତେ ଚିହ୍ନ ବୋଧି ମୋତେ ବାସପାଲଟାଇ ନେଲା ।
ସେ ଉଭା ଶୋଭାରେ ଲୋଭା ହେଲା ଅକ୍ଷି ଆନ କି ଦେଖିବ ଅଉ ।
ଗୁଣି ହେଉଅଛୁ ପୁଣି ହେବ କି ସେ ଉତ୍ସବ ଜୀବନେ ଥାଉଁ । ୨୫ ।
କେତକୀ ଗୋଟି ଚରମ ମନୋହର ଏତକ ଦେଖିଛୁ ମୁହିଁ ।
ହେମରମ୍ଭାପତ୍ର କାମପତ୍ରୀ ମାତ୍ର କି ଉପମା ହେବ ତହିଁ ।
ଉରପରୁଁ ଚୀର ଦୂର କର କରୁଁ ତନୁ ପୀଡ଼ନେ ଯତନ ।
ମୋର ପ୍ରବେଶରେ ଲଜ୍ଜା ଆବେଶରେ ପଛକର ଉଭା ଧନ । ୨୬ ।
ନାସୁମ ଲଙ୍ଘିଲୁ ଅମରମୋହନୀ ବୋଲି ମୁଁ ବୋଲିବାବେଳେ ।
ହୃଦକଷଟିରେ କାନ୍ତିକନକକୁ କଷିଲା କୁଙ୍କୁମ ଛଳେ ।
ପ୍ରେମପଞ୍ଜରୀ ପଢ଼ାସାରୀ-ପଞ୍ଜରୀ ସେ ଦନ ଆଦ୍ୟରୁ ଦ୍ୱାରେ ।
ମୋ ଯିବା କହିବାପାଇଁ ଲମ୍ବାଇ ଯେ ସୁବେଶ ହୁଅଇ ପୁରେ । ୨୭ ।
ଅଳକାରେ ଗୁନ୍ଥୁଥିଲା ବସି ଝଲକାନନୀ ଯେ କଉଁରୀ ଦେନି ।
କବରୀ ନିବଡ଼ ନୀବୀ ମୋଷ ଭାବ ପରୁଁ ଗଲ ହୋଇ ଭିନ୍ନ ।
କମ୍ବୁକଣ୍ଠୀ କମ୍ବୁ ଦେଖି ଆଦରଶେ ହରଷେ ଧର ମୋ କର ।
ଗ୍ରୈର ଗଲାଟି ଧରି ବୋଲି ସେ ଧରାମଣ୍ଡନା ଭାଷିଲା ଗିର । ୨୮ ।
କଣ୍ଠିତ ଦୋଷକୁ ଉଚିତ ଏ ଦଣ୍ଡ ବାନ୍ଧିବ ବାନ୍ଧ ତୋ ଭୁଜେ ।
ବୋଲିବାକୁ ମୋର ସଙ୍ଗୀତପଟିମୀ ଭଲ ଇଙ୍ଗିତ କଲା ଯେ ।
ନମ୍ରିତ ଭ୍ରୂରୁ କୋଦଣ୍ଡ ତେବେ ଦଣ୍ଡ ସିନା ସେ ନୋହେ ତା ଭାବ ।
ଉନ୍ନତି ଲୁଣ୍ଠ ବନିତ ହେଲେ ଅଉ ମାଗିଲେ ଥରେ କେ ଦେବ । ୨୯ ।

---

୨୫ । ଶ୍ରବଣେ—ଶୁଣିଲାକ୍ଷଣି, କର—ହାତ, କୋରକୀକୃତ—ହାତରେ ମୁହଁ ଘୋଡ଼ାଇବା, ବାସ—ଲୁଗା, ପାଲଟାଇ—ଲେଉଟାଇ, ଉତ୍ସବ—ଆନନ୍ଦ ।

୨୬ । ଚରମ—ପିଠି, ତନୁ ପାତନେ—କର ଲେଉଟାଇବାରେ, ଉଭା—ଠିଆ ।

୨୭ । ଅମରମୋହନୀ—ଦେବତା ମୋହକାରଣୀ, ପଢ଼ା ଶାରୀ ପିଞ୍ଜରା—ପଢିଲା ଶାରୀ ପିଞ୍ଜରା । ସୁବେଶ—ଭଲ ଭାବରେ ବେଶ ହେବା ।

୨୮ । କର୍ତ୍ତରୀ—କତୁରୀ, ଆଦରଶେ—ଦର୍ପଣରେ, ଧରାମଣ୍ଡନା—ସ୍ତ୍ରୀ, ( ଲାବଣ୍ୟବତୀ )

୨୯ । ଭୁଜେ—ବାହୁରେ, ଉନ୍ନତି—ବଡ଼ପଣ, ଠାଣି ।


Digitized by srujanika@gmail.com

ହେମନ୍ତେ ପୀଡ଼ିତ ସୁରତଶ୍ରାନ୍ତକୁ ଭ୍ରାନ୍ତ କରୁଥାଇ ମୋର ।
କୁନ୍ଦନକୁମ୍ଭକୁଚେ ଲେପି ଚନ୍ଦନ ଠେଁସିଦିଏ ହୃଦୟର ।
କି କଲ୍ ବୋଲ୍ ଲାଗିଲା ନ ଲାଗିଲା ଚେତୁଅଛି ସେ ନବୀନା ।
ସେ ହୃଦବେଦନା କଲେ ନିବେଦନା ଯେଣିବ କେ ତାହା ବିନା ।୩୦।
ଏରୂପେ ଭାବିନୀ ଭାବକୁ ଭାବନା କରୁଁ କରୁଁ ଭଜେ ମହୀ ।
ସଖୀ ଆଶ୍ୱାସନା ରଚିଲେ ମୁଖରେ ନୀର ସିଞ୍ଚି ବଞ୍ଚି ଦେଇ ।
ସମସ୍ତେ ନେନେ ଲୋତକ ପୂରାଇଲେ ଚେତି ଏ ବାଣୀ ପ୍ରକଟ ।
ଲାବଣ୍ୟବତୀ ବତଶାର୍ଦ୍ଧ ବୟସୀ କେଉଁ ଦିନ ହେବ ଭେଟ ।୩୧।
ଏ ରତ୍ନ ଗୃହିଁ ମକରକେତୁ ତାପେ ଆରତ ନୃପକୁମାରୀ ।
ବସି କାନ୍ତଗୁଣ ଗୁଣି ପୁଣ ପୁଣ ମନରେ ବିଚାର କରି ।
କ୍ଷିତିଭିତରେ ଯୁବତୀଙ୍କ ହେମନ୍ତ ପତି ମିଳିବାର ପୁଣ୍ୟ ।
ପ୍ରଭୁତ୍ୱ ଥିଲେ ଲକ୍ଷ୍ୟଠାରୁ ଅଧିକ ବନସ୍ତ୍ରୀ ରସିକ ଧନ୍ୟ ।୩୨।
ଦିନେ ବନେ ଭ୍ରମି ତପନତାପରେ ବିରସ ମୋର ଲପନ ।
ଦେଖି ସଖୀଙ୍କ ପୁଚ୍ଛିଲେ ମୋର ଶିର ଅମ୍ଳାନଗର୍ଭ ତ ମ୍ଳାନ ।
ରଖି ନ ପାରି ଧଇର୍ଯ୍ୟ ନିଜ ଶିରଲୁଛି ମୋ ପାଦକୁ କଲେ ।
ଆଜିଦିନେ କଲେ ଏରୂପେ ଅବଶ୍ୟ ରୁଷିବସିବ ମୁଁ ବୋଲେ ।୩୩।
ସେ ଦିନୁ ଭାନୁ ଥିବାରେ ଯେ ସଦନୁଁ ବାହାର ନ କଲେ ମୋତେ ।
କୋଟିକ ରତନ ଦେବାରୁ ଅଧିକ ଗୋଟିକ ବଚନ ସତେ ।
ଦିନେ ପଚାରିଲେ ଭିନେଇଭଙ୍ଗି କରି ଯୁବତୀ ପୁରୁଷ ପ୍ରାଣ ।
ତାହା ବିନୁ ଗାତ୍ର ଯାହା ରହେ ଚିତ୍ର ଏକଥା ନୋହେ କି ପୁଣ ।୩୪।

---

୩୦ । କୁନ୍ଦନ କୁମ୍ଭକୁଚେ—କୁନ୍ଦା ହୋଇଥିବା ସୁନା କଳସପରି କୁଚ ।

୩୧ । ଭାବିନୀ—ସ୍ତ୍ରୀ, ମହୀ—ପୃଥିବୀ. ନୀର—ଜଳ, ବତଶାର୍ଦ୍ଧ—ଷୋହଳ ।

୩୨ । ମକରକେତୁ—କନ୍ଦର୍ପ, କ୍ଷିତି—ପୃଥିବୀ, 'ପ୍ରଭୁତ୍ୱ—ଅଧିକାର ।

୩୩ । ତପନ ତାପରେ—ଖରା ତେଜରେ, ବିରସ—ମଳିନ, ଲପନ—ମୂର୍ଦ୍ଧ, ଅମ୍ଳାନ—ଅତି ସୁନ୍ଦର, ମ୍ଳାନ—ମଳିନ, ମୁଣ୍ଡର ଲୁହ ସ୍ତ୍ରୀ ପାଦତଳେ ପଡ଼ିବା ।

୩୪ । ଭାନୁ—ସୂର୍ଯ୍ୟ, ସଦନୁ—ଘରୁ, ଗାତ୍ର—ଦେହ, ଚିତ୍ର—ଆଶ୍ଚର୍ଯ୍ୟ ।

ଦୁର୍ଗା ପଦ୍ମନାଭ କରନ୍ତୁ ଏ ଶୁଭ ବଲ୍ଲଭ ମନେ ଏ ପ୍ରୀତ ।
ନ ପଢ଼ୁ ପୋଢ଼ୁ ଏ ଷଟ୍ଛନ୍ଦ ଷଟ୍ପଦ ବୋଲି ସେ ଭଜନ୍ତି କ୍ଷିତ ।
ଲଲନା ପଲ୍ଲବ ତୁଳନା କରଣ ମୁଖେ ଦେଲେ ଶୀତ ବାର ।
ତେବୁଁ ଶୁଭସ୍ୱପ୍ନ ହେତୁକୁ କହିଲେ ଝଷକେତୁତାପ ହର । ୩୫ ।
ଏ ରସେ ମନ ନ ଖେଳଇ ଯାହାର ସେହି ନର ପଶୁ ହୀନ ।
ଯେଉଁ ରସରେ ବ୍ରହ୍ମା ବଶ ହୋଇଛନ୍ତି ତାହାଙ୍କ ତାହା ସମାନ ।
ଜାନକୀ ରୂପ ବିଶେଷ ଭବ ଜାଣେ ଭାବ ତାଙ୍କ ଶ୍ରୀପସ୍ୱର ।
କହେ ଉପେନ୍ଦ୍ର ଭଞ୍ଜ ବୀରବର ଗ୍ରନ୍ଥ ରସ ରତ୍ନାକର । ୩୬ ।



## ଏକଚତ୍ୱାରିଂଶ ଛାନ୍ଦ ।

ରାଗ ବରାଡ଼ୀ—ଅଷ୍ଟାଉଶୁକ୍ତ ବାଣୀରେ ।
( ବିରହେ ବର୍ଷାଋତୁ ବର୍ଣ୍ଣନ )

ପ୍ରବେଶ ହୋଇଲା ବରଷାକାଳ । ପ୍ରମାଦମାନଙ୍କ ଜନମସ୍ଥଳ ।
ଜଳଦ କଜ୍ଜ୍ୱଳକାନ୍ତି ଶାର୍ଦ୍ଦୂଳ । ମୁଖେ ବହିଲେ ଶିଖରଚୂଳ ।
ଗର୍ଜିଲା ସତତ । ପ୍ରକାଶି ଝଲ ବକାବଳୀଦନ୍ତ । ୧ ।

---

୩୫ । ପଦ୍ମନାଭ—ବିଷ୍ଣୁ, ଶୁଭ—ମଙ୍ଗଳ, ବଲ୍ଲଭ—ସ୍ୱାମୀ, କ୍ଷିତ—ପୃଥିବୀ, ଲଲନା—ସଖୀମାନେ, ପଲ୍ଲବ ତୁଳନା କଲେ—ପଦ୍ମପତ୍ରରେ ବିଞ୍ଚିଲେ, ଶୀତବାର—ଥଣ୍ଡା ଜଳ, ଝଷକେତୁ—କନ୍ଦର୍ପ, ହର—ହରଣକର ।

୩୬ । ରସ ରତ୍ନାକର—ରସ ସମୁଦ୍ର ।



## ଏକଚତ୍ୱାରିଂଶ ଛାନ୍ଦ ।

୧ । ପ୍ରମାଦ—ଦୁଃଖ, ଜଳ—ମେଘ, କଜ୍ଜ୍ୱଳକାନ୍ତି—କଳାବର୍ଣ୍ଣ, ଶାର୍ଦ୍ଦୂଳ—ବାଘ, ଶିଖରଚୂଳ—ପର୍ବତ ଉପରେ, ବକାବଳୀ—ବଗସବୁ ଧାଡ଼ି ଧାଡ଼ି ହୋଇ ଉଡ଼ିବା ।

ମେଘ ବାଘପରି ପର୍ବତ ଶିଖରେ ଶବ୍ଦକଲା—ବଗମାନେ ଧାଡ଼ି ଧାଡ଼ି ଉଡ଼ିବାରୁ ବାଘ ଦାନ୍ତ ଦେଖାଇଲା ପରି ଜଣାଗଲା ।

କୁରଙ୍ଗ ତୁରଙ୍ଗ ଥିଲା ସକାଶେ । ଚନ୍ଦ୍ର ସୂର୍ଯ୍ୟ ଲୁଚି ରହେ ଅକାଶେ ।
ମୁନିଏ ମୃଗଚର୍ମ ଥିଲା ଦକୁଁ । ହିମାଳୟ ତଳୁଁ ଗଲେ ଶୃଙ୍ଗକୁ ।
ଋକ୍ଷପନ୍ତ୍ର ମ୍ଳାନ । ଅଗଛର ସେ ଗିଳିଦେଲା ଦିନ । ୨ ।
ଜାହୁକମାନେ ଡ଼ାକିଦେଲେ ତହିଁ । ସିଂହଅଛି ଅଛି ସନ୍ଦେହ ନାହିଁ ।
ଶୁଣି ବିଯୋଗିନୀ ଲଭି ଦରକୁ । ଛିଣ୍ଡାଇ ହାର ଘୋଡ଼ାଇଲେ କୁଚ୍କୁ ।
ସେ ମିଥ୍ୟା ନ କଲେ । କାଳିକାଙ୍କୁ ଯେଣୁ ଅନାଇ ଦେଲେ ।୩।
ବିଧାତା ବିଧାନୀ ବିତା ବିଜୁଳୀ । କାଷ୍ଠାବଳୀ ଯୋଗେ ଉଠିଲା ଜଳି ।
ଝଞ୍ଜା ମାଳଲାଗି ପ୍ରଭା ପ୍ରକାଶି । ସଜୀବରେ ଦହି ଦିଏ ବିଦେଶୀ ।
ତହିଁ ଅଗ୍ନିକୋଣ । ଉଡ଼ ଦୋଲାଇଲେ ଜ୍ୟୋତିରିଙ୍ଗଣ । ୪ ।

---

୨ । କୁରଙ୍ଗୀ—ମୃଗୀ, ତୁରଙ୍ଗ—ଘୋଡ଼ା, ଋକ୍ଷପନ୍ତ୍ର—ଭାଲୁମାନେ ଓ ତାରାମାନେ ।

ଉପର ପଦରେ ବାଘ ଥିବାରୁ ଚନ୍ଦ୍ରଙ୍କ ମୃଗ ଓ ସୂର୍ଯ୍ୟଙ୍କ ଘୋଡ଼ା ଭୟରେ ଲୁଚଲେ, ଚନ୍ଦ୍ର ସୂର୍ଯ୍ୟଙ୍କୁ ମେଘ ଘୋଡାଇ ଦେଲା, ମୁନିଙ୍କ ପାଖରେ ମୃଗଚର୍ମ ଥାଏ ବାଲେ ବାଘ ମୃଗ ମନେକରି ଖାଇବ ତେଣୁ ପାହାଡ଼ ଉପରକୁ ପଳାଇଲେ, ଅର୍ଥାତ ପର୍ବତତଳ ବର୍ଷା ହୁଏ ହିମାଳୟ ଉପରେ ବର୍ଷାହୁଏ ନାହିଁ—ବର୍ଷାହେତୁ ମୁନିମାନେ ହିମାଳୟ ଉପରକୁ ଗଲେ । ଭାଲୁମାନେ ବାଘ ମନେକରି କାଲେ ସେ ଦିନରେ ଖାଇବ,ତେଣୁ ଅନ୍ଧାରକୁ ଗଲେ ଅର୍ଥାତ୍ ତାରା ସବୁ ମେଘ ହେତୁ ଦିଶିଲେ ନାହିଁ ।

୩ । ମେଘ ଦେଖି ଡ଼ାହୁକମାନେ ବୋବାଇଲେ, ବିଚ୍ଛେଦିନୀ ସ୍ତ୍ରୀମାନେ ତାଙ୍କର ମୁକ୍ତାହାରକୁ ଛିଣ୍ଡାଇ ଗଜକୁ ଦେଖିଲେ ସିଂହ ଗୋଡାଇବ, ତେଣୁ ସେ ଗଜମୁକ୍ତା ହାରକୁ ଛିଣ୍ଡାଇ ଦେଲେ ଓ ମୁକ୍ତାଙ୍କୁ ଫୋପାଡ଼ି ଦେଲେ—ମୁକ୍ତାମାଳା ହେଲା ତାରା, ସିଂହହେଲା ମେଘ, କାଳୀକା କି ଦୁର୍ଗାଙ୍କୁ ଦେଖି ଅର୍ଥାତ କଳା ମେଘକୁ ଦେଖି ଭୟକଲେ, ଦୁର୍ଗା ବାହାନ ସିଂହ କାଲେ ଗୋଡ଼ାଇବ ।

୪ । ତା—ନିଆଁ, କାଷ୍ଠାବଳୀ—କାଠସବୁ, ଜ୍ୟୋତିରିଙ୍ଗଣ—ଜୁଳୁଜୁଳିଆ ପୋକ ।

ମଲ୍ଲମଣିଷଙ୍କୁ ପୋଡିଲାବେଳେ ଚିତାରେ କାଠ ଦେଲେ ଜଳେ ପବନ ଦେଲେ ନିଆଁରୁ ଅଗ୍ନି କଣା ଉଠି ଘୂରି ଅଚ୍ଛେ ପଡ଼େ,ଏଠାରେ, ବିଜୁଳି ହେଲା ଚିତା ଅଗ୍ନି, କାଠ ଦେଲେ ଚିତା ଅଗ୍ନି ଯେପରି ଦାଉ ଦାଉ ଜଲେ ମେଘରେ ବିଜୁଳି ସେହିପରି ଚକ ଚକ ହେଲା, ଚିତାରେ ମଲା ଲୋକଙ୍କୁ ପୋଡନ୍ତି ମାତ୍ର ବିଚ୍ଛେଦୀମାନେ ବିଜୁଳିଦେଖି କାମାତୁର ହୋଇ

କରକାଲେଷ୍ଟ୍ରି ପତନ ବହୁତ । ଯୁବାଙ୍କୁ ଲାଗିଲା ଅନଙ୍ଗଭୂତ ।
ଇନ୍ଦ୍ରକୋଦଣ୍ଡ ଦଣ୍ଡ ନଭେ ରାଜ । ମାନିନୀ-ମନ-ଦମ୍ଭକୁମ୍ଭ ଭଜ ।
ସେ ଘନ ପ୍ରଭବେ । ଏହା ଦେଖିଲା ନ ଥିଲା ସଂସାରେ । ୫ ।
ନଦୀ ନାଗ କଲେ ବେଗଗମନ । ଲହରୀ ରସନା ସଦାର ସ୍ୱନ ।
ଫେନ କଞ୍ଚୁକ ଭ୍ରମ ଚକ୍ରେ ଶୋଭ । ସାଗର ବଲେ ରହିବାକୁ ଯାଇ ।
ତା ଗୃହ୍ୟ ଚପଳେ । ପଳାଇଗଲେ ମେରୁକୁ ମରାଳେ । ୬ ।
ପର ଅପର ଏହାଠାରେ ନାହିଁ । ଦେଖ ଭେକକୁଳ ଗ୍ରାସ କରଇ ।
ପଥିକ ନିକର ଗୃହ୍ୟ ଶଙ୍କିଲେ । ଉରଗ ଭୂଷଣ ନାମେ ଡାକିଲେ ।
ଅତୁଳ ଦର୍ଦ୍ଦୁର । ନିରତେ ଆରମ୍ଭିଲେ ଅର୍ଦ୍ଧସ୍ୱର । ୭ ।

---

ତାଙ୍କ ମନ ପୋଡ଼ିଗଲା, ତହିଁ ଅଗ୍ନି କଥା ଶୁଣିଅଛେ ପବନରେ ପଡ଼ିବା ପରି ହେଲା ବର୍ଷାହେତୁ ଜଳ୍ଜଳିଆ ପୋକ ଶୁଣିଅଛେ ଉଡ଼ିଲେ ।

୫ । କରକାଲେଷ୍ଟ୍ରି—କୁଆପଥର, ଇନ୍ଦ୍ରକୋଦଣ୍ଡ—ଇନ୍ଦ୍ରଧନୁ, ନଭେ—ଆକାଶରେ, ରାଜ—ସୁନ୍ଦରଦିଶି, ମାନିନୀ—ରୁଷିଥିବାସ୍ତ୍ରୀ, କୁମ୍ଭ—ମାଠିଆ । ଯେଉଁ ସ୍ତ୍ରୀମାନେ ରୁଷିଥାନ୍ତି ସେମାନେ ଇନ୍ଦ୍ରଧନୁ ଦେଖି ମଦନ ଆତୁରରେ ରୁଷିବା ଛାଡ଼ି ପୁରୁଷଙ୍କୁ ତୋଷିବାକୁ ଦଉଡ଼ନ୍ତି ।

୬ । ନଦୀ—ନଈ, ନାଗ—ସାପ, ବର୍ଷାଦିନେ ନଈ ବଢ଼ିବାରୁ ସାପ ଦଉଡ଼ିଲେ ଯେପରି ଜିଭକାଢ଼ି ସୁ ସୁ ହୁଏ, ନଈ ସୁଅ ଢେଉ ଦେଇ ସୁ ସୁ ଦଉଡ଼ିଲା, ଫେନ—ଫେଣ, କଞ୍ଚୁକ—କାତି, ଚକ୍ର—ଚକ୍ରଚିହ୍ନ—ଭଉଁରି, ସାପଫେଣ ବାହାର କରେ କାତିଛାଡ଼େ ତାର ଚକ୍ରଚିହ୍ନ ଥାଏ, ସେହିପରି ନଈର ଫେଣ ବାହାରେ କାଛପରି ଢେଉ ହୁଏ, ଭଉଁରି ବୁଲି ଚକ୍ରପରି ଦେଖାଯାଏ, ବିଲ—ଗାତ, ବର୍ଷାରେ ସାପ ଗାତକୁ ଯାଏ ନଈ ସମୁଦ୍ର ଉଦରକୁ ଯାଏ । ସାପ ଅସୁଝି ବୋଲି ହଂସମାନେ ମେରୁ ପର୍ବତ ମାନସରୋବରକୁ ପଳାଇଲେ—ବର୍ଷାଦିନେ ନଈ ପୋଖରୀରେ ହଂସମାନେ ରହନ୍ତି ନାହିଁ ।

୭ । ସାପଠାରେ ଯେପରି ନିଜ ଓ ପର ବିଚାର ନାହିଁ, ନଈଠାରେ ମଧ୍ୟ ସେହିପରି ବିଚାରନାହିଁ, ଭେକକୁଳ—ବେଙ୍ଗ ଓ ଦୁଇକୂଳ, ନଈ ଦୁଇ କୂଳ, ସାପ ବେଙ୍ଗକୁ ଖାଏ, ପଥିକ କ ବାଟୋଇ ସାପକୁ ଦେଖିଲେ ଡରନ୍ତି, ନଈ ବଢ଼ିକୁ ଦେଖିଲେ ମଧ୍ୟ ପାରହେବାକୁ ଡରନ୍ତି, ଉରଗ ଭୂଷଣ—ମହାଦେବ ଓ ନାଉରି, ବାଟୋଇମାନେ ସାପ ଭୟରେ ମହାଦେବଙ୍କ ଡାକିଲେ, ବାଟୋଇମାନେ ବଢ଼ି ଭୟରେ ପାରହେବାକୁ ନାଉରିକୁ ଡାକିଲେ, ଦର୍ଦ୍ଦୁର—ବେଙ୍ଗ ଅର୍ଦ୍ଧସ୍ୱର—ବିକଳକଣ୍ଠ, ବେଙ୍ଗ-

ଚେଳି ଶିଖଣ୍ଡ କେକୀ ଷଣ୍ଢପତ । ନାରୀମଣ୍ଡଳୀ ମଧ୍ୟେ କଲେ ନୃତ୍ୟ ।
ଦେଖି ସୁମନା-ଗଣିକାଙ୍କର । ଦରବିକାଶ ହାସେ ମନୋହର ।
ରୁହେଁ ସେ ମଉନେ । ବାକ୍ୟ ନ ସ୍ଫୁରିଲା ପରଭୃତଙ୍କୁ । ୮ ।
ଏ ଋତୁ ରୁହୁଁ କୁମର ବରସ୍ତ୍ରୀ । ମେଘ ବଦନକୁ ଅନାଇ କହି ।
ବିଜୁଳୀ କାମୁକୀ ଘନାଳିନଳି । ସ୍ତନିତ ତୁଣ୍ଡ କୁଳିଶ ଗୁଳି ।
ମସ୍ତାଧର ଲକ୍ଷ । ପଥର ଫୁଟି ଯାଉଅଛି ଦେଖ । ୯ ।
ଛାଣିଲି ମୋ ହୃଦ ଅତି କଠିନ । ଫାଟି ନ ଯିବାରୁ ପ୍ରିୟା ବିହୀନ ।
ନ ଫୁଟିବ ଭଲି କୁସୁମ ବାଣ । ଢାଲ କରଛି ଏ ଅସ୍ଥି ଭୂଷଣ ।
ରକ୍ଷାହେବ କେହ୍ନେ । ଅଜ ତ ମୋତେ ବୁଦ୍ଧି ଦିଶୁ ନାହିଁ । ୧୦
ସଖୀ ବୋଇଲେ କି ବିଗ୍ରହ ଅଜ । ବାଳାମଣି ନାମ ସୁମନ୍ତ୍ର ଥାଉଁ ।
ଧ୍ରୁବେ ମନ ଏକଲୟ ଯହିଁ । ବିଶେଷେ ମନ୍ତ୍ରିଲ ଦୀକ୍ଷାକୁ ପାଇ ।
ବିଗ୍ରହଇ ମନେ । ମୂଁ ନିକି ମୂର୍ଚ୍ଛି ପାରିବ ଜୀବନେ । ୧୧ ।

---

ମାନେ ସାପକୁ ଦେଖି ବିକଳସ୍ୱର କଲେ—ବେଙ୍ଗଗାତରେ ପାଣି ପଶିବାରୁ ବିକଳସ୍ୱର କଲେ ।

୮ । ଶିଖଣ୍ଡ—ପୁଚ୍ଛ, କେକୀ—ମୟୂର, ଷଣ୍ଢ—ନପୁଂସକ, ନାରୀମଣ୍ଡଳୀ—ସ୍ତ୍ରୀ ସବୁ, ନୃତ୍ୟ—ନାଚ, ସୁମନା—ମାଳତୀଫୁଲ, ଗଣିକା—ଯୂଇଫୁଲ, ନିକର—ସମୂହ, ଦରବିକାଶ—ଅଳ୍ପ ଫୁଟିବା, ପରଭୃତ—କୋଇଲି ।
ବର୍ଷା ହେବାରୁ ମୟୂର ପୁଚ୍ଛଟେକି ସ୍ତ୍ରୀମାନଙ୍କ ମଧ୍ୟରେ ନାଚିଲା— ଅର୍ଥାତ୍ ମୟୂର ନୃତ୍ୟଦେଖି ସ୍ତ୍ରୀମାନଙ୍କ ମନ କାମରସରେ ନାଚିଲା ଏ ସମୟରେ ମାଳତୀ ଫୁଲ ଓ ଯୂଇଫୁଲ ସବୁ ଅଳ୍ପ ଫୁଟିବାରୁ ସୁନ୍ଦର ଦେଖାଗଲା । ବେଶ୍ୟାମାନେ ଫୁଲଦେଖି ଅଳ୍ପ ଅଳ୍ପ ହସିବାରୁ ସୁନ୍ଦର ଦେଖାଗଲା । ଏ ସବୁକୁ ଦେଖି କୋଇଲିର ଆଉ କଥା ବାହାରିଲା ନାହିଁ, ବର୍ଷାଦିନେ କୋଇଲି ବୋବାଏ ନାହିଁ ।

୯ । କାମୁକୀ—ନିଆଁ ବରଅ, ଘନାଳି—ମେଘମାନେ, ନଳୀ—ବନ୍ଧୁକ, ସ୍ତନିତ—ଘଡ଼ଘଡ଼ି, କୁଳିଶ—ବଜ୍ର, ବନ୍ଧୁକ ଫୁଟାଇବାରୁ ନିଆଁ ବରଅ ହେଲା ବିଜୁଳି, ମେଘହେଲା ବନ୍ଧୁକ, ବନ୍ଧୁକର ଗୁଳିଯାଏ ଏଠାରେ ଗୁଳିହେଲା ବଜ୍ର, ପର୍ବତ ହେଲା ଲକ୍ଷ ବଜ୍ରର ତୁ ଶବ୍ଦ ହୁଏ ବନ୍ଧୁକର ତୁ ଶବ୍ଦ ହୁଏ ।
୧୦ । କନ୍ଦର୍ପର ବାଣ ଫୁଲରେ ହୋଇଥିବାରୁ ତାହା ଦେହରେ ଆଘାତ ନ କରି ମରମରେ ଭେଦକରେ ।
୧୧ । ବାଳାମଣି—ସ୍ତ୍ରୀଶ୍ରେଷ୍ଠ, ସୁ—ଉତ୍ତମ ।


Digitized by srujanika@gmail.com

ଯେ ପ୍ରାଣ ପର କରିଥିଲା ମୋତେ । ସେ ପୁଷ୍ପ ମୂର୍ଚ୍ଛି ପାରିବ କେମନ୍ତେ ।
ଦିନଦିନକର ପୀରତିରୀତ । ଚିତୁଅଣକୁ ଏ ବରଷା ଦୃଶ୍ୟ ।
ହୋଇ ହେଲି ସିନା । କେହ୍ନେ ବଞ୍ଚିବ ସ୍ନେହପରାଧୀନା । ୧୨ ।
ଦିନେ ଜାନୁରେ କଟିଭରା ଦେଇ । ସୁତନୁ ଚନ୍ଦ୍ରାନନୁ ଥିଲି ଚାହିଁ ।
ଗୋକୁଳଈଶ ଚିତ୍ତ ମନେ ଭାବି । ପଛୁଁ ଚୋଳ କରି ଧରନ୍ତେ ଗ୍ରୀବା
ହାତ ଚପୁଚାଇ । ଭିତ୍ତି ଅନ୍ତରେ ଥିବେ ପରା ସଖୀ । ୧୩ ।
ଦିନେ କାମିନୀ ଯାମିନୀ ନ ପାହୁଁ; କୁସୁମ ବିକାଶେ ଅନ୍ତର ହେବୁଁ ।
ହୃଦ ବିଗଳରୁ ଭାଙ୍ଗିଲି ନିଦ । ଡାକିଲି ବନ୍ଧୁ ବୋଲି ଲଭି ଖେଦ ।
ସେ ଶୁଣିଲେ ନାହିଁ । ଦାମିନୀ ଚଟକ ଦେଲା ଦେଖାଇ । ୧୪ ।
ଏଡ଼େ ବଞ୍ଚନା କାହିଁକି ଦାସରେ । ବୋଲି ଯାନ୍ତେ ପ୍ରାଣବନ୍ଧୁ ପାଶରେ ।
ତ୍ରପାରେ ପ୍ରକାଶ କରି ହାସକୁ । ଅଚ୍ଛାଦ ଲାବଣ୍ୟ ଅଙ୍ଗେ ବାସକୁ ।
ମହୀକି ଅନାଇଁ । କିଛି ନ କହି ସେ ପଙ୍କଜମୁହିଁ । ୧୫ ।
ଫିଙ୍ଗିଲି ଫୁଲ ଚଳକ କମ୍ପାଇ । ଭାଷିଲି ଏ ଶରେ ଭାସିଲି ସହି ।
ଭୃଙ୍ଗ ଚୁମ୍ବଇ ପୁଷ୍ପବତୀ ଲତା । ବୋଲିବାକୁ ବୋଲିଅଛି ବିଧାତା ।
କି ବିରସ ମୋତେ । ବିଚ୍ଛେଦ ସହି ନୋହୁଥିଲି ଏତେ । ୧୬ ।
ଦିନେ ଦୁର୍ଦ୍ଦିନେ ପାହୁବାରୁ ରାତି । ଜଣା ନ ଯିବାରୁ ଅଂଶୁ ରତି ।
ସେକାଳେ ପଢିଲା ପଞ୍ଜରା କୀର । ଜାନ ଛନ୍ଦଦେଇ ମଧ୍ୟରେ ମୋର ।
ତୁମ୍ଭ କଥି କହେ । ବିଧି ନିଷେଧ ନ ମାନିବ କି ହେ ।୧୭।

---

୧୨ । ଚେତୁଅଣକୁ—ମନେପକାଇ ଦେବାକୁ, ଦୃଶ୍ୟ ଯେପରି ଅଗକଥା ସବୁ ମନେ ପକାଇ ଦିଏ ବର୍ଷାକୁ ଦେଖି ପୂର୍ବର ଭାବସବୁ ମନେପଡ଼େ, ସ୍ନେହପରାଧୀନା—ସ୍ନେହରେ ଯେ ବଶ ।

୧୩ । ଜାନୁ—ଜଙ୍ଘ, ସୁତନୁ—ସୁନ୍ଦରୀ, ଗୋକୁଳଈଶ—ଷଣ୍ଢ, ବୃଷଭରସ ବୃଷବନ୍ଧ, ଭିତ୍ତିଅନ୍ତରେ—ଘରଭିତରେ,

୧୪ । କାମିନୀ—ରସିକା, ଯାମିନୀ—ରାତି, କୁସୁମ ବିକାଶେ—ଋତୁମତୀହୋଇ, ବିଗଳ—ଅଲଗା ହେବା, ଖେଦ—ଦୁଃଖ, ଦାମିନୀ—ବିଜୁଳି, ବିଜୁଳିର ଝଟକରେ ଦିଶିଲା ।

୧୫ । ବଞ୍ଚନା—କପଟ, ଦାସ—ଚାକର, ତ୍ରପା—ଲଜ୍ଜା, ଲାବଣ୍ୟ—ସୁନ୍ଦର, ବାସ—ଲୁଗା, ମହୀ—ପୃଥିବୀ, ପଙ୍କଜ ମୁହିଁ—ପଦ୍ମବଦନୀ.

୧୬ । ଫିଙ୍ଗିଲି—ଫୋପାଡିଲି, ଭୃଙ୍ଗ—ଭଅଁର, ପୁଷ୍ପବତୀ—ଫୁଲ ଫୁଟିବା ।
ଋତୁମତୀ ହେବାରୁ ଫୁଲ ଫୋପାଡି ଦେଇ ଋତୁମତୀର ସଙ୍କେତ ଦେଲି

୧୭ । ଦୁର୍ଦ୍ଦିନ—ବର୍ଷାଦିନ, କୀର—ଶୁଆ, ମଧ୍ୟ—ଅଣ୍ଟା, ଦିନରେ ରତି କରିବା ନିଯମର ବିରୁଦ୍ଧ କାରଣ ଅଇସ କମେ ।


Digitized by srujanika@gmail.com

ମୁହିଁ କହିଲି ଲାବଣ୍ୟନିଧିଙ୍କି । ଏ ନିଶି ବଡ ବଧୂ ଅବଧିଙ୍କି ।
ଏତେକେ ଧନ ଜାଣିଲି ମୋ ମନ । ରତାନ୍ତଯାଏ ଦେଲା ଆଲିଙ୍ଗନ ।
ଉପୁଜାଇ ଗତ । ପୂତଅଙ୍ଗ ଶୋଭା ଦଶିବା ଭ୍ରାତ ।୧୮।
ଦିନେ ଅତି ପ୍ରାତୁଁ ପକ୍ୱବିମ୍ବୋଷ୍ଠୀ । ଗଲା ଗୋପ୍ୟପୁରେ ମୋ ପାଶୁ ଛାଡ଼ି ।
ଚରଣେ କରଜ ଚିହ୍ନ ଦେଖାଇ । ମୁହିଁ ଗବାକ୍ଷେ ଚାହିଁବାକୁ ଯାଇଁ ।
ସେହି ଦିଗେ ଚେଙ୍କା । ସ୍ୱନାମେ ଡ଼ାକିଲା ପୁଚ୍ଛକୁ ଟେକି ।୧୯।
ତାକୁ ଅନାଇଁ ଯେ ଦେଖିଲି ମୋତେ । ଅପରାଧ କ୍ଷମା କର ବୋଇଲେ ।
ମୁଖ ନ ଟେକିଲା କ୍ଷପା ତ୍ରାସରେ । ହାସ ପ୍ରକାଶିଲା କୃପାବଶରେ ।
ତା ସେହି ଚିତ୍ରଭଙ୍ଗୀ । ନୟନେ ମୋର ରହିଅଛି ପୂରି ।୨୦।
ଦିନେ ଜାଳିଦେଇ ଦୀପାବଳିକି । ବସିଲେ ବିବସନ କରୁଁ ବାଳୀକି ।
ଚମକିଲି ହେଉଁ ଲଜ୍ଜା ଆକୁଳେ । ପ୍ରଦୀପ ହତ ହେଲା ଝଞ୍ଜାନିଳେ ।
କଲି କି ସନ୍ତୋଷ । ରସାଳସା ହେଲା ରସରେ ବଶ ।୨୧।
ଦିନେ ଯେ ପାଶକୁ ଅଣାଇ ଦଶା । ଖେଳିବାକୁ ବୋଲି ବୋଇଲା ଯୋଷା ।
ମୁହିଁ ବୋଇଲି ବସି ହୁଡ଼ କର । ଶୁଣି ସୁନ୍ଦରୀ ଦେଖାଇଲା ହାର ।
ମୁଁ ବୋଇଲି ଧନ । ନ ଜାଣୁ କି ଯହିଁ ଥାଇ ମୋ ମନ ।୨୨।
ତହିଁକି କଲା କି ଭଙ୍ଗୀ ରଚନା । ହେଲେ ହେବ ପଛେ ହାରିଲେ ସିନା ।
ଖେଳ ଆରମ୍ଭ ଅତି ଅନୁରାଗେ । କଳକଣ୍ଠକଣ୍ଠୀ ହାରିଲା ଯୋଗେ ।
ପଣ ମାଗୁଁ ସଖୀ । ବୋଇଲା ଅସେ ସଖୀଠାରୁ ଶିଖି ।୨୩।
ଏବେ ଇନ୍ଦ୍ର ଧନୁ ଉଇଁଥିବ । ବନ୍ଧ୍ୟ ଫୁଟିକିବ ଅନ୍ଧାର ହେବ ।
ପ୍ରକଟ କେକୀନାଟ ଝଞ୍ଜାବାତ । ହେବେନି ଜନେ ପର ଖେଳେ ରତ ।
ଚିନ୍ତି ଏ ମତକୁ । ବଦାର ହେଉଥିବ ପର ଦ୍ୟୁକୁ ।୨୪।

---

୧୮ । ଉପୁଜାଇବା—ଜନ୍ମାଇବା ।
୧୯ । ପ୍ରାତୁଁ—ସକାଳୁ, ପକ୍ୱ ବିମ୍ବୋଷ୍ଠୀ—ପାଚିଲା କଇଁଚ କାକୁଡ଼ିପରି ଓଠ ରକ୍ତବର୍ଣ୍ଣି, କରଜ—ନଖ, ଗବାକ୍ଷ—ଝରକା ସ୍ୱନାମେ—ଆପଣା ନାମେ ।
୨୦ । କ୍ଷପା—ଲାଜ, ତ୍ରାସ—ଭୟ, କୃପା—ଦୟାସ୍ନେହ ।
୨୧ । ଝଞ୍ଜାନିଳ—ଝଞ୍ଜାପବନ, ହତ—ଲିଭିଯିବା ।
୨୨ । ହୁଡ଼—ପଣ
୨୩ । କଳକଣ୍ଠ—କୋଇଲି ପଣ, ବାପଣିତ ମାଗିବାରୁ ସେ ସଖୀଠାରୁ ଶିକ୍ଷି- ଅସେ କହି ଖୁଲିଗଲା ।

ଛୁଞ୍ଚ ନ ଥିବ ମୋ ଗୁଣ୍ଠିଲା ଝାଞ୍ଚ । ଲଦ ନ ଥିବ ସ୍ତନୁ ନଖ ଗିରୁ ।
ଫିଟାଇବ ନାହିଁ ମୋ ବନ୍ଧା ବେଣୀ । ଚେତାଉଥିବ ପ୍ରୀତି ଛତି ଷଣି ।
ପ୍ରମାଦେ ପ୍ରମାଦ । ପଡାଉଥିବ ପ୍ରକାଶେ ଜଳଦ ।୨୫।
ଦରଶନମାନେ ରସବର୍ତ୍ତୀକ । ଚିତ୍ରୁଅଛିଥିବ ଏହି ପ୍ରତିକ ।
ପୟୋଧର ଗିର ଗ୍ରାସିବା ଗୃହି । ପୟୋଧର ବେଳି କରେ ଯୋଡ଼ାଇ ।
ସିଂହାଣୀ ବୋଲିଛି; କବିଙ୍କ ଉପମା ନୁହଇ କଷ୍ଟ ।୨୬।
ନୂଆ ଭାବ ତୂନ୍ତୀ ଲଗାଇଥିଲା । ସଞ୍ଜା ନ ଦଶିଲା ଗାଢ଼େ ଭିଡିଲା ।
ପାନଭଳ ପୂରିଥିଲା ଯେ ତୁଣ୍ଡେ । ବୋଲ ନ ଲାଗିଲା ଚୁମ୍ବିଲା ଗଣ୍ଡେ ।
ସେ ଏମନ୍ତ ହେତୁ । ଗୃହୁଁ ଗୃହୁଁ ଭାର ବୁଝିଲା ହେତୁ ।୨୭।
ସଖୀଏ ପଦ୍ମତଳ୍ପରେ ଶୁଆଇ । ଚେତନାବଶରେ ଏତେକ ଧ୍ୟାୟି ।
ହା ହା ରେ କୋମଳା ସ୍ନେହଅଧୀନା । କାତିଦଳେଶଯ୍ୟାକରିରଚନା ।
ରହେ ଥାଇ ମନ । ପ୍ରବେଶ ହେଲେ ମୁଁ ତା ସନ୍ନିଧାନ ।୨୮।
କାତର ହୁଅଇ ଅସନ ଦେଖି । କର ଧରନ୍ତେ ମୁଁ ଉଚ୍ଛନ୍ନ ଭଜି ।
କୋଳରେ ବସାଇ ଧରଇ ମାବା । ବ୍ୟାଜେ ବୋଲଇ ଅଜ ନପାରିବ ।
ଏ ରସ ଭାବନ୍ତେ । ଫୁଲ ଭାବଯାକ ପଡିଲା ଚିତ୍ତେ ।୨୯।
ଧନେ ମୋ ପ୍ରୀତିଗୀତ ଯୋଡି ବାଳା । ବସିକେତକୀପତ୍ରେ ଲେଖୁଥିଲା ।
ଏତେକ ପଢ଼ିଲି ପଛରୁ ଯାଇ । ପ୍ରିୟ ପାଇଛି ମୁଁ ଗଙ୍ଗାରେ ଦାହି ।
ତା କ କରି ଜାଣି । ତର୍ଜିଗ୍ଲ କରି ଶିରଲ ରମଣୀ ।୩୦।
ବୋଇଲି ରେ ଶିଖିଶିଖଣ୍ଡବେଣି । ଶିଖିବାକୁ ଥିଲା ମୋ ମନ ରସି ।
ମଥା କମ୍ପାଇ ନ ଜାଣିଲା ପର । କେଉଁ କଥା କ ବୋଲି ସେ ପଗୁଇ ।
ବନ୍ଧୁଛି ପ୍ରାଣୀକୁ । ଲୁଚିଯାଇ ଦେଖା ଉଦାରପଣକୁ ।୩୧।

---

୨୫ । ପ୍ରମାଦେ ପ୍ରମାଦ—ଦୁଃଖ ଉପରେ ଦୁଃଖ ।
୨୬ । ପୟୋଧର—ମେଘ ବା ବଉଦ, ସ୍ତନ, ସିଂହାଣୀ—ଚକ୍ରୁଷ୍ଣ ।
୨୭ । ସଞ୍ଜ୍ଞା—ଦାଗ, ହେତୁ—ଚେତା ।
୨୮ । ପଦ୍ମ ତଳ୍ପରେ—ପଦ୍ମପତ୍ର ଶେଯରେ,କୋମଳା—ସ୍ନେହାଧୀନା—ଲାବଣ୍ୟବତୀ
କାତିଦଳେ—କାଇପାଖ ଦ୍ୱାରେ ।
୨୯ । ବ୍ୟାଜେ—ଛଳନାରେ, ଫୁଲଭାବ—ଫଳମାଳ ଦଅନଅ ବେଳେ ଯେଉଁ
ସବୁ କଥା ହୋଇଛି ।
୩୧ । ଶିଖୀ ଶିଖଣ୍ଡ—ମୟୂର ପୁଚ୍ଛପର କେଶ ।

ଦନେ ଯେ ଗୁର୍ଣ୍ଣି ସୁମନା ମାଳକୁ । ଶ୍ରୀକରେ ଦେଇବୋଇଲିବାଲାକୁ
ଅଜଠାରୁ ତୋର ମୋର ମାଳତୀ । ହୋଇ ନ କଲ ସେ ବଦନପୋତି
କେଶୁ କୁରୁଣ୍ଟକ । ଦେଖାଇ ବୋଇଲ ଏ ନାମେ ଡ଼ାକ ।୩୨।
ସୁନ୍ଦରୀ ଯେତେକ ଗୁଣବତୀ ତେତେ । ଜୀବନପ୍ରଭୁ ମୋ ବନସ୍ଥିକେତେ ।
ଥାଇ ଅଇ ଏ ଯେନାଯେଣ ଭାବ । ମନୁ ଜୀବ ଯିବାଯାଏ ନ ଯିବ ।
ଦଇବ କି କଲା । କାହୁଁ ବିଚ୍ଛେଦ ଦଣ୍ଡ ରଖିଥିଲା ।୩୩।
ଫୁଟିଲେଣି ଏବେ ଜାଡି କେତକୀ । ମାଳତୀଗୃହୁଁ ଗିତୋଇ ଏତିକି ।
ଶୋକ ଜଳଧିରେ ବୁଡ଼ି ରହିବ । ଲୋତକ କଲ୍ଲୋଳେ ଭସାଇ ଦେବ ।
ଧଇର୍ଯ୍ୟମାନଙ୍କୁ , କି ଦଶା ପଡ଼ିଲା ପ୍ରାଣଧନକୁ ।୩୪।
ଏକାଳେ ସେହି ନେତ୍ରୁ ମୁଞ୍ଚି ନୀର । କୃପାସ୍ତି କୁମାର ଲାବେକର୍ଣ୍ଣର ।
ଚିତ୍ରେ ଚିତ୍ରେଇଲା ଏତିକି ସ୍ନେହ । କ୍ଷଣେକ୍ଷଣକରେ ହୋଇଲା ମୋହ ।
ଚେତି ଦଣ୍ଡେ ଦଣ୍ଡେ । ଏହି ବାଣୀମାନ କହାରେ ତୁଣ୍ଡେ ।୩୫।
ପାଶୋରିଲେ ମୋତେ କୃପାଜଳଧି । ରଖିଲେ କି ଧ୍ୱଂସ ଭ୍ରମରସିଦ୍ଧି ।
ମୋହିଲା ଅବା କେଉଁ ମନୋହାରୀ । ନ ଜାଣନ୍ତି ବା ପଥ ତଥ୍ୟ କରି
ନ ଯାଇ ଜୀବନ । ପ୍ରିୟତନୁ ହେଲା କଲୁଁ କଠିନ ।୩୬।
ଚନ୍ଦନପାଟିଏ ଥିବ କପୋଳେ । ତନୁ ପୂରିଥିବ କମଳନାଳେ ।
ଏ ବିଧି ବିରହବଶରୁ ଯୁବା । ମାର ହର ଭ୍ରମ କରୁଛି ଅବା ।
କେନ୍ଦୁ ଏଥିକି । ଏମନ୍ତ ବୋଲି ଭଜିଲା କ୍ଷୀତିକି ।୩୭।

୩୨ । ସୁମନା—ମାଳତୀ. ଦୁର୍ବୈଯାକ ମାଳତୀ ବୋଲି ଡ଼ାକିବା, କେଶୁ—ଗଭିରୁ
କୁରୁଣ୍ଟକ—ଦାସକେରଣ୍ଟା, ଅର୍ଥାତ୍ ଦାସୀ ।
୩୪ । ଜଳଧି—ସମୁଦ୍ର, ଲୋତକ—ଲୁହ ।
୩୫ । ନେତ୍ରୁ—ଆଖିରୁ, ମୁଞ୍ଚି—ପୋଛି ବା ବନ୍ଦକରି
୩୬ । କୃପାଜଳଧି——ଦୟାସାଗର, ମନୋହାରୀ—ସୁନ୍ଦରୀ, ତଥ୍ୟକରି—ଠିକ
କରି, ପ୍ରିୟତନୁ—ସ୍ୱାମୀଦେହ ।
୩୭ । କମଳନାଳେ—ପଦ୍ମନାଡ଼ରେ ।

ଯୁବା ପୁରୁଷକୁ କନ୍ଦର୍ପ ମହାଦେବ ମନେ କରୁଛି, କାରଣ ମହାଦେବଙ୍କ ମୁଣ୍ଡରେ ଚନ୍ଦ୍ରଥାଏ, ପୁରୁଷ ମୁଣ୍ଡରେ ଚନ୍ଦନ ଟିକା ଚନ୍ଦ୍ରପରି ଅଛି, ମହାଦେବଙ୍କ ଦେହରେ ସାପ, ପୁରୁଷ ଦେହରେ କମଳ ନାଡ଼, ମାର ମହାଦେବ ମନେକରି ଶର ମାରୁ ନାହିଁ । ଏଣୁ ସେ ମୋକଥା ମନେ ପକାଉ ନାହାନ୍ତି ଏହା କହି ମାଟିରେ ଶୋଇଲା ।


Digitized by srujanika@gmail.com

ନଳ-ଦମୟନ୍ତୀ ଜାଣେ ଏ କଥା । ସମର୍ଥ ସ୍ୱପ ହରିବାକୁ ବ୍ୟଥା ।
ଚିତ୍ତରେ ତାଙ୍କୁ ନିରନ୍ତରେ ଧ୍ୟାୟି । ଉପେନ୍ଦ୍ର ବୀରବର କହଇ ।
ଏ ବଚିତ୍ର ଛାନ୍ଦ । ହୃଦ-କୁମୁଦ-ଉଲ୍ଲାସକୁ ଚାନ୍ଦ । ୩୮ ।



## ଦ୍ୱିଚତ୍ୱାରିଂଶ ଛାନ୍ଦ ।

ରାଗ—ଦେଶାକ୍ଷ ଚକ୍ରକେଳି ବାଣୀରେ ।

( ବରଷେ ଶରତ୍ ଋତୁ ବର୍ଣ୍ଣନ )

ଦେଖି ନୀରଦଦ୍ୱିରଦ ଶରଦ । ଋତୁ କେଶରୀ ପ୍ରସରି ଶବଦ । ୧ ।
ଗୃହ୍ଣି ତମସନାଶ ବନଦେଶ । ସ୍ଫୁଟେ ପ୍ରକାଶ କଲେ କାଶହାସ । ୨ ।
ଘୋର ଭେକଡାକ ଶୁଣିମା କର୍ଣ୍ଣେ । ଯାଇଥିଲେ ମାନସେ ଏହିମାନେ ।୩।
ଯହୁଁ ସେମାନେ ଗଲେ ଗର୍ଜି ଗର୍ଜି । ପମ୍ପା ପ୍ରବେଶ ହେଲେ ହଂସରାଜି ।୪।
କେହ୍ନି ଖଦ୍ୟୋତ ସଙ୍ଗେ ଭଦେ ହେବା । ଲଜ୍ଜେ ତାରକା ଲୁଚିଥିଲେ କବା ।୫।
ତାଙ୍କ ସ୍ନେହରୁ ଅବଦାତ ଶଶୀ । ଏବେ ନିର୍ମଳ ଆକାଶେ ପ୍ରକାଶି । ୬ ।

---

୩୮ । ହୃଦକୁମୁଦ ଉଲ୍ଲାସକୁ—ହୃଦୟ କଇଁ ଆନନ୍ଦକୁ ।



## ଦ୍ୱିଚତ୍ୱାରିଂଶ ଛାନ୍ଦ ।

୧ । ଶରଦ—ଶରତ୍‌କାଳ, ନୀରଦ—ମେଘ, ଦ୍ୱିରଦ—ହାତୀ, କେଶରୀ—ସିଂହ ।

ଶରତକାଳ ମେଘରୂପକ ହାତୀକ ଦେଖି ସିଂହପରି ପରସ୍ପର ହେଲା, ଶରତ କାଳରେ ଆକାଶ ସ୍ୱଚ୍ଛ ହୁଏ ।

୨ । ତମ—ମେଘ ଅନ୍ଧାର ମେଘନାଶ ହେବାର ଦେଖି ପରସ୍ପର ହାସ ପ୍ରକାଶ କଲେ । ଏସମୟରେ ମେଘ ନଥିବାରୁ ବଣରେ କାଶତଣ୍ଡି ଫୁଲ ଫୁଟିବା ହେତୁ ହସିବା ପରି ଦେଖାଯାଏ ।

୩ । ବର୍ଷାଦିନେ ବେଙ୍ଗ ଡାକନ୍ତି—ଘୋରବେଙ୍ଗ ଡାକ ଶୁଣିବେ ନାହିଁ ବୋଲି ହଂସମାନେ ମାନସରୋବରକୁ ଯାଇଥାନ୍ତି—

୪ । ବେଙ୍ଗ ଗର୍ଜି ଗର୍ଜି ବନ୍ଦ ହେବାରୁ ବର୍ଷାକାଳ ଯିବାରୁ ହଂସମାନେ ଫେରିଆସିଲେ,

୫-୬ । ଖଦ୍ୟୋତ—ଜୁଳୁ ଜଳଅ ପୋକ,


Digitized by srujanika@gmail.com

ବୃଷ ମତ୍ତ ହୋଇ ଋଷଭ ସ୍ୱରେ । କହୁଛନ୍ତି କ ଏମନ୍ତ ବ୍ୟାଜରେ । ୭ ।
ଦେଖ ଦେଖ ଭଜିଲେଟି ଲୀନକୁ । କେକୀ ଷଣ୍ଢମତ କେତେଦିନକୁ । ୮ ।
ଦଣେ ଦକ୍ଷିଣେ ଅଗସ୍ତି ସୁନ୍ଦର । ଲେଉଟିଛି ଭାବ ତୋଷ ମନ୍ଦର । ୯ ।
ପଦ୍ମ ଅନୁରାଗ କେମନ୍ତ ଭାବ । ଜଳେ ମେଘ ଭିତରେ ଥିଲେ ରବ ।୧୦।
କୁଳବଧୂ ଗୀତ ଶ୍ରବେ କେଦାରେ । ଯେହ୍ନୁ ପଥିକ ହୃଦସ୍ଥଳ ଦାରେ ।୧୧।
ଏ ଋତୁକୁ ଗୃହୀଁ ନୃପନନ୍ଦନ । ପ୍ରାଣବନ୍ଧୁ ଭାବ କଲା ଧିଆନ । ୧୨ ।
ସେହି ଶରଦ ରାତରେ ଚନ୍ଦ୍ରମା । ସେହି ପ୍ରକାରେ ହୋଇଛି ସୁଷମା ।୧୩।
ସେହି ମୁହିଁ ଜୀବନେ ଅଛି ପୁଣି । ଏ ତ ବଟିନ ଦୂର ମୋ ତରୁଣୀ ।୧୪।
ଏତେଁ ଦେଇଛି ଭାବମାନ ଯେତେ । ଏହିକ୍ଷଣି ସେ କଲା ପ୍ରାପ୍ତ ପ୍ରତେ ।୧୫।
ମହାଦରରେ କରେ ଦେଇ ନିଧି । ଏ କି ଦୁର୍ଦ୍ଦଶା ହରନେବା ବିଧି ।୧୬।
ଦନେ ଚୁମ୍ବନ ଦେଇ ଚୁମ୍ବ ମାଗୁଁ । ନାହିଁ ନ କଲା ଅତି ଅନୁରାଗୁ ।୧୭।
ଦେବ ବୋଲି ଅଧର କଲୁ ଗୋଳ । ସେହି ସମୟେ ବାରିଦେଲା ଲାଜ ।୧୮
ମୁହିଁ ବୋଇଲି କେଲେ ଦେଉ କିନା । ଲାଜ କାହାକୁ ମୁଁ ତୋ ଦାସ ସିନା
ଧୀରେ ଗୀର ପ୍ରକାଶ କଲା ତହିଁ । ଚୁମ୍ବ ଦେବାର ମୋତେ ଅଛି ନାହିଁ ।୨୦।
ଆଜପାଏ ସେ ଚତୁରୀ ବଚନ । ନେନେ ମନେ କରଅଛି ସଦନ । ୨୧ ।
ସେହି ଦନେ ପ୍ରଥମେ କଥା ଶୁଣା । ଦନେ ସାରୀ ଢୋଉ ସୁଲକ୍ଷଣା ।୨୨।
ଜାଣି ଲଚି ମୁଁ ଶୁଣୁଥିଲି ସ୍ୱଚ୍ଛେ । ସାରୀ ପଢ଼ି ଦେଲା ଯେ କାନ୍ତ ପଚ୍ଛେ ।୨୩।
ସଲଜ୍ଜିତେ ଜଗେନ୍ଦ୍ରସୁମୋହିନୀ । ଦେଇ ଗୃହୁ ଚିବୁକରେ ତର୍ଜନୀ ।୨୪।

---

୭୮ । ବୃଷ—ଷଣ୍ଢ, ଋଷଭସ୍ୱର—ହମ୍ବାରଡ, ଷଣ୍ଢ—ଅଣପୁରୁଷ; ମୟୂରମାନଙ୍କ ସ୍ତ୍ରୀ ପୁରୁଷ ସଙ୍ଗମ ହୁଏ ନାହିଁ,

୯ । ଅଗସ୍ତି—ଦକ୍ଷିଣରେ ଉଠୁଥିବା ଗୋଟିଏ ବଡ଼ ତାରାନାମ ଅଗସ୍ତି—ମନ୍ଦର ବଢିବାରୁ ସୂର୍ଯ୍ୟ ଗତିରୋଧ ହେଲା—ଅଗସ୍ତି ପଦାଘାତରେ ମନ୍ଦର ମୁଣ୍ଡ ତଳକୁ କରି ଗୋଡ଼ତଳେ ପଡ଼ିଲା—ଅଗସ୍ତି କହିଲେ ମୁଁ ଦକ୍ଷିଣରୁ ଫେରିବା ଯାଏ ଏହିପରି ଥା,

୧୦ । ବର୍ଷାଦିନରେ ପଦ୍ମମରେ—ସୂର୍ଯ୍ୟ ମେଘରେ ଲୁଚେ—ଶରତରେ ପଦ୍ମ ପ୍ରକାଶ ହୁଏ—ସୂର୍ଯ୍ୟ ଭଲ ଦେଖାଯାଏ,

୧୧ । କୁଳବଧୂ—କୁଳଭୂଅସୁଣୀ, ପଥିକ—ବାଟୋଇ, ହୃଦସ୍ଥଳଦହେ—ଛାତି କରିଭ ପକାଏ,

୧୨ । ଧ୍ୟାନ—ଏକଲୟରେ ରହିବା,

୨୪ । ସଲଜ୍ଜିତେ—ଲାଜ ଲାଜ ହୋଇ, ଜଗେନ୍ଦ୍ର ସୁମୋହିନୀ—ଜଗତମୋହିନୀ, ତର୍ଜନୀ—ବଣିଅଙ୍ଗୁଠି,


Digitized by srujanika@gmail.com

ନାସାପୁଡ଼ାକୁ ପୁଲାଇଲା କରି । ଅଧୋ ମୁଖେ ରହିଲା କୃଶୋଦରୀ । ୨୫ ।
ନବସପଡବସୁରୀକ ମୁହିଁ । ମୋହ ଶପଥ ପକାଇଲି ତହିଁ । ୨୬ ।
ମଥା ଠେକି କଥା କହ ବୋଲନ୍ତେ । କସ କନ୍ଧିବ କହିଦଅ ମୋତେ ।୨୭।
ବୋଲିବାରି ସଙ୍ଗତେ ଅଣମାଦ । ସ୍ୱର୍ଗ ଦେବାକୁ ଥିଲା ଯେ ସମ୍ବାଦ ।୨୮।
ଲବେ ଗ୍ଲାଡ ନ ପାରଇ ତୁଲକୁ । ଲଙ୍ଘି ନ ପାରଇ ଚାର ବୋଲକୁ ।୨୯।
ଧନେ କଣ୍ଠେ କହିଲି ତୃଣାକର । ଚନ୍ଦ୍ର କରେ ରତି ଦେବୁ ସୁନ୍ଦର ।୩୦।
ସେହିକ୍ଷଣି ସେ କଲା ପ୍ରତିଭାଷ । ବୋଲି କେବେ ନ କରବ ପ୍ରବାସ ।୩୧।
ମୁଁ ବୋଇଲି କାମ ଅଛୁ ଜୀବନେ । ତୋତେ ମୁଁ ଗ୍ଲାଡ ପାରବ କେସନେ ।୩୨
ଯେବେ ମନରେ ଶଙ୍କା ତୋ ବାନ୍ଧିବ । ଯେଉଁ ନିୟମ ବୋଲିବୁ କରିବ ।୩୩।
ବାଣୀ ପ୍ରମାଣ ନିୟମ କାହିଁକି । ନେବ ଢ଼ାଲ ଯେ ବୋଇଲା ତହିଁକି ।୩୪।
ତେତେ ସିହାଣୀ ଲୋଡିଲା ବଞ୍ଚାଇ । ସ୍ୱନେ ଚନ୍ଦ୍ରକରେ ଶେଯ ପକାଇ ।୩୫।
ତହିଁ ମିଳି ମୁଁ ହରଷେ ଅନାଇଁ । ପାନପିକ ଦେଲା ଅଗେ ପକାଇ ।୩୬।
ବାସେ ପୋଛି ପୁଣି ଭାଲି ସିନ୍ଦୂର । ମୋର ହୃଦ କରାଇଲା କାତର ।୩୭।
ଏତେ ବୁଝି ସ୍ଫୁରିଲା ଯୋଗେ ତହିଁ । ମୁଁ ଯେ କହିଲି କହ ମୋତେ ଗୃହି
ଏ ବଚନବଳେ ହାସ ବାହାର । କରାଇଲା ଚନ୍ଦ୍ରମୁଖୁଁ ଗାହାର । ୩୯ ।
ରକ୍ଷା ପାଇଲି ବୋଲି କୋଳ କଲି । ମୁଁ ଶେଯ ଉପରକୁ ଦେନିଗଲି ।୪୦।
ନ ହୁଁ ନାହିଁ ଭାଷୁଥିଲା ମୋ ଧନ । ଗତ ବହୁ ମୁଁ କଲି ବବସନ । ୪୧ ।
ଏକେ ଶ୍ରୀଅଙ୍ଗ କେତକୀରୁ ଗୋରି । ଶଶିକରେ ଦଟିଲା କେଡ଼େ ଓରି ।୪୨।
ରଶାଣିଲା ହେମକୁ ଲକ୍ଷଗୁଣେ । ନିନ୍ଦା କରୁ ଯେ ଥିଲା ଝଳଦଣେ । ୪୩ ।
ଏହି ସମୟେ ଶଯ୍ୟାରୁ ନାଗରୀ । ଦେନି କର୍ପୂରରଜ ମୁଖେ ମାରି । ୪୪ ।
ତେଣୁ ବୁଜି ହୋଇଗଲା ମୋ ଅକ୍ଷି । ଭଲ କରି ମୁଁ ନ ଧାରିଲି ଦେଖି ।୪୫।
ଭର ଧରବାବେଳକୁ ଶୋଭାଙ୍ଗୀ । ଭଙ୍ଗୀବଶେ ଯେ ଦେଉଥିଲା ଫିଙ୍ଗି ।୪୬।
ଯୋଗେ ପଡିଲା ସେ କାମସଦନେ । ଲବଣୀରୁ କୋମଳ କଲି ମନେ ।୪୭।
ନଖ ଚଳାଇଦେବାରୁ ତହିଁରେ । ରୋମାଙ୍କୁର ହୋଇଲା ଯେ ଦେହରେ ।୪୮

୨୫ । ଅଧୋମୁଖ—ତଳକୁ ମୁହଁ ପୋତିବା,
୪୨ । ଶଶିକରେ—ଚନ୍ଦ୍ରକିରଣରେ
୪୩ । ରସାଣିଲା—ପାଲିଶ କଲା,
୪୪ । କର୍ପୂର ରଜ—କର୍ପୂରଗୁଣ୍ଡ,
୪୮ । ରୋମାଙ୍କୁର—ରୋମଟାଙ୍କରିବା,


Digitized by srujanika@gmail.com

ଦଂଶିଲା ଯେ କଦମ୍ବପୁଷ୍ପ ଶର । ଏ କଷ ଗୋ ବୋଲିବାର ଶୁଶ୍ରୂଷା । ୪୯ ।
ଯିବ ସହସ୍ର ଜନ୍ମେ କି ପାସୋର । ଅମୃତରୁ ପ୍ରିୟବାଣୀ ମଧୁର । ୫୦ ।
ଅଜ ଭେଟିବ ନୋହୁଛି ପରତେ । ଭେଟ ହେବା ଉପାୟ ଅଛି ଏତେ ।୫୧
ପ୍ରଣ ଶରହଅନଳେ ଦହନ । ଦହାନ୍ତା ଏ ମୋହର ତନୁ ବହନ । ୫୨ ।
ଭସ୍ମ ଉଡ଼ାଇ କୃପାରେ ପବନ । ନେଇ ପକାନ୍ତା କାନ୍ତା ସନ୍ନିଧାନ ।୫୩।
କଷ ବୋଲି ଚାଳା କରନ୍ତା ଦୃଷ୍ଟି । ତହିଁପରେ ହୁଅନ୍ତା ସୁଧାବୃଷ୍ଟି ।୫୪।
ହୋଇ ମୃତମନ୍ତ୍ର ମୁଁ ଗୃହ୍ନିଁ ମୂଳ । କରଯୋଡ଼ କହନ୍ତ୍ର ସବୁ ଦୁଃଖ । ୫୫ ।
ଅହା ବୋଲି ସାହା ହୋଇ ସୁମୁଖୀ । ମୋତେ କରନ୍ତା ସେହିକ୍ଷଣି ସୁଖୀ ।୫୬।
ମୋର ଭରସା ହୋଇଛି ଏଥକୁ । ଜୀବ ଦେଇଛି ଭସ୍ମ ମନ୍ମଥକୁ । ୫୭ ।
ତହୁଁ ସୂକ୍ଷ୍ମରୂପେ ମୁଁ ଯେ ଅଧିକ । ନିତ୍ୟ ଅନୁସରନ୍ତାର ସେବକ । ୫୮ ।
ମନ ମୋହର ଭ୍ରମୁଛି ନଗରେ । ମଣା ମଣାବରେ ପଞ୍ଚ ଯେମନ୍ତେ । ୫୯ ।
ମୁହିଁ ଭ୍ରମରସଙ୍ଗେ ହେଲି ମିତ୍ର । ସେହୁ ମାଳତୀ ବରହେ ଯେମନ୍ତ । ୬୦ ।
ଏତେ ବୋଲୁଁ ବୋଲୁଁ ସ୍ତମ୍ଭ ଭଜିଲା । ହା ହା ପ୍ରିୟେ ବୋଲି ଶ୍ୱାସ ତେଜିଲା ।
ଦହି ନ ପାରୁଛି କାମ-ଅନଳ । କରେ ତା ଭାବ ଭାବନା ଶୀତଳ । ୬୨ ।
ସ୍ମୃତି ପ୍ରିୟ ସ୍ୱରୂପ ଦେଖି ପଟେ । ସ୍ୱେଦବଣେ ଲଗାଇ ହୃଦପଟେ ।୬୩।
ପଟପ୍ରସଙ୍ଗ ମନରେ ହୋଇଲା । ହା ହା ସେ ଦିନ କି କଲି ବୋଇଲା ।୬୪।
ବନ୍ଦିଚିତ୍ରିଲା ଦେଖୁଁ ଦେଖୁଁ ବସି । ଗଣ୍ଡେ ଅଇଲା ଯେ ଲୋମ ଉଲ୍ଲସି ।୬୫।
ହସି କର୍ଣ୍ଣପାଶେ ଦେଲା ବଧନ । କି କହିବ କରୁଛି ମୋର ମନ । ୬୬ ।
ପ୍ରେମସିନ୍ଧୁ କାମ-ଅନାସ୍ତ୍ରନରେ । ଜିହ୍ୱା ଗଳିଲା ଶ୍ରବଣ ଭିତରେ । ୬୭ ।
ବଧି ନିଃଷେଧ-ଅନଳେ ଅଦ୍ଭୁତ । କରି ରଚିଲି ଦତେସେ ସୂଚିତ । ୬୮ ।
କୁଚଅଗ୍ରେ ବୁଲାଇଲି ରସନା । ବେଳୁଁ ବେଳ ହେଲା ହତ ଚେତନା ।୬୯।
ମୁଦୁଥିଲା ଫେଡ଼ୁଥିଲା ଲୋଚନ । ପୁନଃ ପୁନଃ ଭାଷି ହୁଁ ହୁଁ ବଚନ ।୭୦।
କଟୀସଙ୍ଗତେ ମଦନମନ୍ଦିର । ଚମକାଇବା କେତେ ସୁଖକର । ୭୧ ।
ମଧ୍ୟତନୁକୁ ଜାନୁ ଭୁଜେ ଛନ୍ଦ । ମଦ ହତ ଯାଏ ସେ କଲା ବନ୍ଦୀ । ୭୨ ।

---

୫୭ । ମହାଦେବଙ୍କ କ୍ରୋଧାନଳେ କନ୍ଦର୍ପ ଭସ୍ମ ହୋଇଥିଲା ପୁଣି ପଛରେ ଜୀବନ ପାଇଲା,
୬୧ । ସ୍ତମ୍ଭ—କାବାହେବା,
୬୪ । ପଟପ୍ରସଙ୍ଗ—ଚିତ୍ରପଟ ଦେଖାଇବା ବେଳ କଥା,
୬୭ । ପ୍ରେମସିନ୍ଧୁ—ପ୍ରେମସାଗର ( ଜିଭକୁ କାନଭିତରେ ପୂରାଇଲେ ବେଶି ଉନ୍ମାଦ ଜନ୍ମେ )
୭୨ । ମଧ୍ୟତନ—ଅଣ୍ଟା ଓ ବେକ, ଭୁଜ—ବାହୁ,

ତୋଳାପିତୁଳା ସେ ଦନୁ ଘଡ଼ନ୍ତି । ନେନେ ରହିଲା ସେହି ଶୋଭା ଜଡ଼ି ।୭୩
ଏହା ଚିନ୍ତି ଫାଟି ଯାଉଛି ବୋଇଲା । ପୁନଃ ପୁନଃ ହୃଦେ କର ମାଇଲା ।୭୪।
ତେଣେ ନୃପକୁମାରୀ ସୁକୁମାରୀ । ବସି ଏକାନ୍ତେ କାନ୍ତକୁ ସୁମରି । ୭୫ ।
ଅହା ଦନ ବଞ୍ଚୁ ଥିବେ କେମନ୍ତେ । ଦଣ୍ଡେ ମୂର୍ଚ୍ଛି ନ ପାରନ୍ତି ସେ ମୋତେ ।୭୬।
ଦନେ ମନ ଜାଣିବାକୁ ପଡ଼ର । ଲୁଚି ରହିଲି ଗୁପତ ମନ୍ଦର । ୭୭ ।
ବଳା ନୂପୁର କଙ୍କିଣୀ ବାହାର । ଅଗୁଁ କରିଥିଲି କର ବଗୁର । ୭୮ ।
ଅସି ଭାଷି ପରାଣେଶ୍ୱରୀ ବୋଲି । ଖୋଜିଲେ ଯେ ଅନେକ ପୁର ବୁଲି ।୭୯
ଖୋଜି ନ ପାଇ ପ୍ରକାଶି ଏ ଭାଷା । କାହିଁଗଲ୍ ପ୍ରିୟେ ଦେଇ କି ଦଶା ।୮୦।
ବୋଲିବାକୁ ନେତ୍ରୁ ନୀର ବାହାର । ଅଛି ଏ ପୁରେ କହିଦେଲା କାର ।୮୧।
ତାହା କହିବାକୁ ତାଙ୍କ ଅରତ । ଶୁଣି ଧରି ମୁଁ ନ ପାରିଲି ଚିତ୍ତ ।୮୨।
ପୋଛି ପଣନ୍ତେ ନୟନ ଜଳକୁ । ଧାଇଁ ଯାଇ କୋଳ କଲାବେଳକୁ ।୮୩।
ବୋଇଲେ ରେ ଅଜ୍ଞ ଥରେ କପଟ । ରସେ ଏରୁପେ ହୋଇଲେ ଲମ୍ପଟ ।୮୪
କାନ୍ତ ବୋଲି ଡ଼ାକିବା ଅଙ୍କୁଳେପ । ତୁ ଅନ୍ତରେ ରସବତୀକଳାପ । ୮୫।
ମୁଁ ଯେ ବୋଇଲି ଯାଇକି ନା ଓଣା । ଚୁମ୍ବ ଦେଇ ଚିତ୍ତ କଲି ଫୁରୁଣା ॥
ଏହି ଭାବ ଗୋଟିକି ସୁମରଣ । କରି ଲଭନ୍ତି ଏଷଣ ମରଣ । ୮୬ ।
ପ୍ରିୟ ନିନ୍ଦା ଯେ ନ ପାରନ୍ତି ସହି । ଜୀବ ରଖିଛି ସେ କଥାକୁ ମୁହିଁ ।୮୮।
ରଙ୍ଗ ଅଧରୁ ଅମୃତ ପିଇଛି । ତାହା ବ୍ୟର୍ଥ କରିବ ମୃତ୍ୟୁ ଇଚ୍ଛି । ୮୯ ।
ଏହା ବୋଲି ସେ ପ୍ରଳୟକୁ ପାଇ । ଶୀଘ୍ର ଉପଗୃହେ ସଖୀ ଚେତାଇ ।୯୦ ।
ଚେତ ସୁନ୍ଦରୀ ବୋଲୁଛି ଏମନ୍ତ । ମହାସୁନ୍ଦରବର ମୋର କାନ୍ତ । ୯୧ ।
ମୋତେ ମାଗିଲେ ମାରବୁ ମଦନ । ମୁଁ କି ବୋଲିବି ତୁ ତାଙ୍କ ସମାନ ।୯୨।
ଏହା ବୋଲି କଥା ଏ ମନେ ଧରି । ତାହା ଭାବନା କରି ଗଲି ସରି । ୯୩ ।
ଦନେ ଏହି ଶରଦରଜନୀରେ । ବସିଥିଲୁଁ ଯେ ଚୁନ ଗୃନ୍ଦନୀରେ । ୯୪ ।
ଚାହିଁ ଶଶୀକି ମୋର ବଦନକୁ । ସମାନ ଅଣିଲେ ତାଙ୍କ ମନକୁ । ୯୫ ।
ବଳା ଦେଖିବା ଛଳେ ମୋର ପାଦ । ନ ଛୁଇଁଲେ ବୋଲି ଏ କି ପ୍ରମାଦ । ୯୬।

---

୮୧ । ନେତ୍ରୁ—ଆଖିରୁ, ନୀର—ଲୁହ ।
୮୫ । କାନ୍ତଲେପ—ମୁଁ ମରି ଯାଆନ୍ତି, କଳାପ—ଶ୍ରେଷ୍ଠ ।
୮୬ । ଫୁରୁଣା—ଆନନ୍ଦ ।
୮୯ । ମନୁଷ୍ୟ ଅମୃତ ଖାଇଲେ ଅମର ହେବ, ମୁଁ ତ ସ୍ୱାମୀ ଅଧରରୁ ଅମୃତ ପିଇଛି, ମୋର ମରଣ ଅକାରଣ ହେବ ।
୯୦ । ପ୍ରଳୟ—ଅଚେତ ହେବା ।


Digitized by srujanika@gmail.com

ଚନ୍ଦ୍ରମୁଖୀ ଯେ ବୋଲଇ ବାଳବ । ଖଣ୍ଡିଲ ଏ ଦୋଷ ବୋଲି ଖଣ୍ଡିବ ।୯୭।
କହିବାର ସେନାସେନି ବଚନ । ତୁଲେ ସମ ନୋହେ କୋଟି ରତନ ।୯୮।
ଏହି ଚିନ୍ତନ କରୁଁ କରୁଁ ମନ । ନେତ୍ରମାରେ ଜବ ଜବ ସ୍ତନ ।୯୯।
ଅନୁଭବ କ ଗୋଚର ଏ ରସ । ବୁଝାଇଲେ ପୂର୍ଣ୍ଣ ହେବ ସନ୍ତୋଷ ।୧୦୦
ପଶୁ ସହିବାର କଷ୍ଟ ନୁହଇ । କଲେ ବଚ୍ଛେଦ ହିବ କାହିଁପାଇଁ ।୧୦୧।
ତାଙ୍କ ବେଳକୁ ଅନ୍ତର କୋଳରୁ । ନ କରନ୍ତି କମଳାଙ୍କୁ ସ୍ନେହରୁ ।୧୦୨।
ସେହି ଦେବ ସରସିଜ ଚରଣ । ଉପଇନ୍ଦ୍ର ବୀରବର ଶରଣ ।୧୦୩।
ଛାନ୍ଦ ନାମ ରସିକ ରତ୍ନମାଳା । ଶୁଭେ ଏବେ ଏଠାରୁ ଶେଷ ହେଲା ।୧୦୪



## ତ୍ରିଚତ୍ୱାରିଂଶ ଛାନ୍ଦ ।

ରାଗ—କୁମ୍ଭକାମୋଦୀ ।

( ବରହେ ହେମନ୍ତ ଋତୁ ବର୍ଣ୍ଣନ )

ହେମନ୍ତ ଋତୁ ପ୍ରବେଶ ହୋଇ ହେଲା ନବୀନ ବଧାତା । ବେଳା-ଚନ୍ଦ୍ର ଏକ କଲା ଶଯ୍ୟନରେ ପୁରୁଷ ବନୀତା । ଜଳ ଆଦରତା ଅନଳେ ନିବେଶି ଅନଳେ ଅସ୍ନେହ । ଜଳରେ ପୂରଇ ପୁଷ୍ପବତୀ କଲା ସେବତୀ

୯୭ । ଚନ୍ଦ୍ର ତୋ ମୁହଁଠାରୁ ସୁନ୍ଦର ପଣରେ ହୀନ, ଏହିକାରଣୁ ତୋତେ ଚନ୍ଦ୍ର ମୁଖୀ ବୋଲି ଡ଼ାକିବା ଠିକ ନୁହେଁ ।



## ତ୍ରିଚତ୍ୱାରିଂଶ ଛାନ୍ଦ ।

୧ । ହେମନ୍ତଋତୁ—କାର୍ତ୍ତିକ ଓ ମାର୍ଗଶିର, ବେଳାଚନ୍ଦ୍ର—ହୁଇଶଖାର, ହେମନ୍ତ-ଋତୁକୁ ପୁରୁଷ କଲେ ତାର ସ୍ତ୍ରୀ ହୁଇଶଖର ତାଙ୍କ ଏକତ୍ର କଲା, ଅର୍ଥାତ ଶୀତ ହେତୁ ସ୍ତ୍ରୀ ପୁରୁଷ ହୁହେଁ ଯାକଯୁକ୍ତ ହୋଇ ଶୋଇଲେ । ପୂର୍ବେ ଶରତରେ ପାଣିକି ଆଦର କରୁଥିଲେ ଏବେ ପାଣିକି ଆଦର କଲେ ନାହିଁ ସେ ଅଦର ନିଆଁଠାରେ ହେଲା, ଅନଳ ଯେ ପବନ, ତାକୁ ମଧ୍ୟ ସ୍ନେହ କଲେ ନାହିଁ, ସେ ବଣଗଛ ସମସ୍ତ ଫୁଲରେ ଭରି ହେଲା ।

ସନ୍ଦେହ ।୧। ପ୍ରଦୀପପଣ୍ଡିଲେ ଜଳାଇଲେ ମନ୍ଦରେ ହସନ୍ତିମାନଙ୍କୁ । ନିଶି ନିଦ୍ରାବେଳେ ନତ କରାଇଲେ ଉନ୍ମତ୍ତଜନଙ୍କୁ । ଚନ୍ଦ୍ର ଚନ୍ଦନରୁ ଅଦର ଗୁଞ୍ଚାଇ ରଖିଲେ ବସନେ । ସମସ୍ତ ତନୁକୁ ଅଚ୍ଛାଦିତ କଲେ ଯୁବତୀ-ପିଧାନେ ।୨। ଦିନ କ୍ଷୀଣ କଲେ ରଜନୀ ବୃଦ୍ଧିକି କରାଇ ହରଷେ । ସକଳ ଅଙ୍ଗେ ବେପଥୁ ଜାତ କଲେ ପବନସ୍ପରଶେ । ରବିକିରଣେ ଅଦର କରାଇଲେ ଚନ୍ଦ୍ରମା ପ୍ରକାରେ । ଜାନୁ ଅଲିଙ୍ଗନ କରାଇଲେ ଏକ ଦରିଦ୍ରଜନରେ ।୩। ସକଳଗାତ୍ର ମସୃଣ ହବ ଦେଲେ କରିନିକଟରେ । ଶୁକଶିଶୁଙ୍କ ପାଳନକୁ ଉଦ୍ୟମ କରାଇ ଲୋକରେ । କର ଯୋଗାଇଣ କୃଷକକୁଳଙ୍କୁ କରାଇ ଅରଣୀ । କପଟରତେ କୁହାଇ ଏ କାଳକୁ ଗଡଟି ତରୁଣୀ ।୪। କେଦାର ସମ୍ପତ୍ତି ସଦନରେ ସ୍ଥିତି ସତ୍ୱରେ କରାଇ । ମୋଦରେ ପ୍ରତିମନ୍ଦିରେ ମଶାରିରେ ସୁଖିଙ୍କି ଶୁଆଇ । ଘନ ପ୍ରତିବନ୍ଧେ ଗିରିଙ୍କି ଗୋଡ଼ାଇ କୁଜ୍ଝଟି ପ୍ରକାଶେ । ଏ ଋତୁ ଗୃହେଁ କୁମାର ବର୍ଗ୍ଗରଇ ବରସ ମାନସେ ।୫। କି କହିବ ଏ ହିମନ୍ତ ଋତୁ ହୀନ ପଦ୍ମିନୀନାଶନ । ପ୍ରିୟା ମୋ ପଦ୍ମିନୀ ପଦ୍ମପାଦ ପାଣି ସୁବାସ ତେସନ । ପଦ୍ମ ପରି ଅକ୍ଷି ପଦ୍ମମୁଖୀ ପଦ୍ମପତ୍ରଉଦରୀ । ତାହା ଅଭାବେ ସ୍ୱଭାବେ ମୋ କି ଗତି ଏଥକୁ ମୁଁ ଦରି ।୬। ଦାରୁବ୍ରହ୍ମରୁ କେ ବଡ ଘୋଡ଼ା ଲାଗି ଜାଡ଼କୁ ଡ଼ରଣ । ଅନଳକୋଣାକୁ ଅଶ୍ରେ କଲେ ଭାନୁ ତେଜସ୍ୱୀ ହୋଇଣ । ଜନମଧ୍ୟଗତେ ଶରଣ ପଶିଲେ ଅନଳ ଅଚତେ । ଗୋଷ୍ଠୀ କୁଚ ଗିରି ଦରି ପାଶେ ନାହିଁ ରକ୍ଷିବ

---

୨ । ହସନ୍ତି—ନିଆଁ ଉହ୍ମେଇ, ଉନ୍ମତ୍ତଜନ—ବୃଦ୍ଧାମାନେ, ନତ—ଯାଡ଼ଯୁକ୍ତ ହେବା, ଚନ୍ଦ୍ର—କର୍ପୂର, ପିଧାନ—ଘୋଡ଼ାଇବା—ଯୁବତୀପିଧାନେ ସ୍ତ୍ରୀ କ ଘୋର ହେବା, ଅଥାତ୍, ସ୍ତ୍ରୀ କ ଉପରେ ନେଇ ଶୋଇବା ।

୩ । ବେପଥୁ—କମ୍ପ, ପବନ ସ୍ପରୁଷେ—ପବନ ଲାଗିଲାକ୍ଷଣି, ଅଲିଙ୍ଗନ—କୁଣ୍ଢାଇବା ।

୪ । ଗାତ୍ର—ଦେହ, ମସୃଣ—ଚିକ୍କଣ, କରିଣ—ଲୁଅ, ଶୁକଶିଶୁ—ଶୁଆଛୁଆ, କର—ଖଜଣା, କୃଷକ—ଚଷା ।

୫ । କେଦାର—ବିଆର, ସମ୍ପତ୍ତି—ଧନଇତ୍ୟାଦି, ସଦନେ—ଘରେ, ମୋଦରେ—ଆନନ୍ଦରେ, କୁଜ୍ଝଟି—କୁହୁଡ଼ି ।

୬ । ହୀନ—ମନ୍ଦ, ପଦ୍ମିନୀ—ସର୍ବସୁଲକ୍ଷଣୀ ଓ ପଦ୍ମିନୀଜାତିସ୍ତ୍ରୀ ସ୍ତ୍ରୀ, ସୁବାସ—ବାସନା, ଦରି—ଭୟଙ୍କର ।

୭ । ଦାରୁବ୍ରହ୍ମ—ଜଗନ୍ନାଥ, ଘୋଡ଼ାଲାଗି—ପୀତାମ୍ବର ଘୋଡ଼ାହେବା, ଅନଳକୋଣ—ଅଗ୍ନିକୋଣ, ଦରି—ଗୁମ୍ଫା ।


Digitized by srujanika@gmail.com

କେମନ୍ତେ ।୭। ବଧୂ ବୋଲନ୍ତି ବଧାଗାକୁ ତାହାଙ୍କ ଅବଧି କଲାତ । ଅମୃତ ଲୁଣ୍ଠାଇ ପିଚୁମର୍ଦ୍ଦଛଦଗାମୂଳ ଦେଲାତ । ଏହୁ ସମୟେ ଯେତେରୂପେ ଭାବକୁ ଦେଇଛୁ କଶୋଶ୍ରୀ । ବୃଦ୍ଧପଦବୀତେ ପାଇଲେ ନ ଯିବ ମନରୁ ପାସୋର ।୮। ଜଙ୍କୁମ କୁସୁମବାସୀ ଅଙ୍ଗ, ଜାତ ଶୀତକୁ ନାଶଇ । ପିନ୍ଧନ୍ତି ପତନୀ ଏ ଭ୍ରମ କ ରଙ୍ଗେ ଅଙ୍ଗରେ ମିଶଇ । ନୀଶାରେ ନିଶାରେ ଅନାଦର ହେଲେ ରଚେ କ ପୀରତ । ଗୁଣ ତ ଅପାର ପଣନ୍ତ ଘୋଡ଼ାଇ ଦେଅଇ ସୁରତ ।୯। ପଣାର ଅଧାର ଅଳୋକ ଦ୍ୱିମତ ଉଦରେ ଥିବାରେ । ଅଜନ୍ମସୁଖୀ ସୁଖଦାୟୀ ହୁଅଇ ସୁରସ ଦେବାରେ । ତାହା ମୋହର ପ୍ରଶଂସା ହୋଇଥାଇ ଯାମିନୀବୃଦ୍ଧି କ । କଣ୍ଠ ଅବକାଶ ହେବ ବୋଲି ବନ୍ଧମାନଙ୍କ ବାଧିକ । ୧୦ । ଯେତେ ମୋହପାର ତେତେ ବଧି-ରସ ହୁଅଇ ଜନିତ । ଏଣୁ ବଗୃହୁଛୁ କ୍ଷୀର ପଦକାର ପରାଣଧନୀ ତ । ଇକ୍ଷୁରସ ଜାତ ଦ୍ରବ୍ୟ ପ୍ରାୟ ବେଳୁ ବେଳ ସେ ମଧୁର । ଏଡକ ଅଗ୍ରଗ୍ୟ-ବନ୍ତ ମୁଁ ସେ ବାଳା ହୋଇଛୁ ଅନ୍ତର ।୧୧ । ଦିନେକି ଭାଗ୍ୟ ଜର ଦୂର ହୋଇଲା ଅଚେତ ବଣରେ । ଝିସ୍ପର ନିଦ୍ରା ଭାଜି ଗଲା ମୋର ଜାଡ଼ରେ ହାସରେ । ମନେ କଲି ପୁଷ୍ପବତୀ ହୋଇ ପାଶୁଁ ଗଲା କ ସଜନୀ । କ ଦଣ୍ଡ ପଡଲା ଏ କାଳେ କି ରୂପେ ନେବ ଏ ରଜନୀ ।୧୨। ଲୋତୁ ଶେଯଶେ କ୍ଷୂରେ ହସ୍ତ ପଡଲା ହେଲି କ ଅବେଶ । ମୃତ୍ୟୁ ପାଇଥିଲା ପିଣ୍ଡରେ ପୁଣି କ ପରାଣ ପ୍ରବେଶ । ଅଣିମାଦ ସୁଖ ଅଣିକର ଅଣହୋଲକୁ ପାଇଲି । ସେହୁ ପ୍ରକାରେ ନିଧୁବନ ଭବନେ ନିବାକ ଫେଇଲି । ୧୩ । ମଲ୍ଲିକି

---

୮ । ପିଚୁମର୍ଦ୍ଦଛଦ—ନିମ୍ବପତ୍ର ଏଠାରେ ଖଇର, ତାମ୍ବୁଲ—ପାନ, କଶୋଶ୍ରୀ—ଯୁବତୀ, ପଦବୀ—ପଦ ।

୯ । ଅଙ୍ଗରେ—ଦେହରେ, ପତନୀ—ପାଟଦୋଡହେଲା, ନୀଶାରେ—ଦୋଡ଼-ହେଲା ଶେଯରେ, ନିଶା—ରାତ୍ରି ।

୧୦ । ଯାମିନୀବୃଦ୍ଧି—ରାତ୍ରିବଢିବା ।

୧୧ । କ୍ଷୀର—ଦୁଧ, ବଧିରସ—ଲହୁଣୀ କନ୍ଦର୍ପ, ଦୁଧକୁ ମୋହଲେ ଲହୁଣୀ ବାହାରେ ଲାବଣ୍ୟବତୀକ ଖ ସାମତ କଲେ ବସ ଲହୁଣୀ ବାହାରେ ।

୧୨ । ଜର—ଶତ୍ରୁ, ହାସରେ—ଭୟରେ, ପୁଷ୍ପବତୀ—ଋତୁମତୀ; ଅବେଶ—ଉତ୍ସାହ ।

୧୩ । ମଦନ ଅଣି—କନ୍ଦର୍ପ ଗର୍ବ ।

ବୋଲି ଭଜ ଧର ମୋତେ ସେ ଅଳପ କର୍ମିଲ । ଅଜ ଏ କ ରଙ୍ଗ ବୋଲି ସେ ସୁରଙ୍ଗ ଅଧର ଗୁପିଲ । ମଦନ ଅଣିଚ ଭ୍ରମିଲ ସେ ଧନ ସମସ୍ତ ରୂପରେ । ରସ ଜାଣିବାକୁ ସୁନ୍ଦରୀ ନ ଥିବ ଜଗତେ ତା ପରେ ।୧୪। ବାନ୍ଧବୀଙ୍କ ଦନେ ବନ୍ଧବଧାନରେ ଝୋଲରେ ବସାଇ । ମୋ ମୁଖ ପାନ ତା ମୁଖେ ଦେଲେ ଓଷ୍ଠ ଓଷ୍ଠରେ ପେଶାଇ । ମୋ ମୁଖେ ତ୍ରୁ ଦଅ ଲେଉଟାଇ ବୋଲୁଁ ନ ଭଲ ସମ୍ମତ । ବୋଇଲ ପଣତ ପ୍ରସାଦ ମାଗୁଛ ନ ବୋଲ ଏମନ୍ତ । ୧୫ । ସୁଁ ବୋଇଲି ବନ୍ଧୁ ଅଧରବଧୂ ମଧୁରୁ ମୁଁ ନ ପାଇ । ଏଥକୁ ବରୋଧୀ ଲାବଣ୍ୟନିଧି ରେ ହେଉଛୁ କିମ୍ପାଇଁ । ବୋଇଲ ଦେବତା ପ୍ରତିଷ୍ଠା ସରଧାଜକୁଛି ସ୍ତ୍ରୀ ରସରେ । ତେମନ୍ତ ହୋଇଅଛୁ କ ଅଜ ତଥା ବସ୍ପାନ ଦୋଷରେ । ୧୬ । ଭ୍ରଷାରେ କ୍ଷଣି ନ ପାରି ମୁଁ ପ୍ରିୟାର ଚୁମ୍ବିଲି ଲପନ । ଥାଇ ସେ ବଧିରେ କେଳି ରଚିବାର ଦେଖିବା ସ୍ୱପନ । ନିଦ୍ରାହିଁ ହେଲେ ନୟନେ ନ ଅସଇ ସ୍ୱପନେ ସଙ୍ଗତ । ହେଉଥିଲେ ମୋର ହେଉଥାନ୍ତା ଟିକି ଏ ରୂପେ ସୁଗତ । ତାମ୍ବୁଲ ଭ୍ରଙ୍ଗି ବଢାଇ ଦେଉଁ ଦନେ ସେ ଅନୁରାଗରୁ । ଯାଚିଲ ତୁଷ୍ଟ କର କାମର ବଶେ ମୋହର ଭାଗ୍ୟରୁ । ତେଢାଇ ଦେଲି କଣ୍ଠତଳେ ଚଳାଇ ମୁଁ ତୀକ୍ଷ୍ଣ କରଜ । ଲଜ ପାଇଲ ପର ହୋଇ ନୁଅଇଁ ବଦନ ସରୋଜ । ୧୮ । ପୁରେ ବନ୍ଧୁ ଯାଇ କପାଟ ପାରୁଣେ ବଳରେ ଅନାଇ । ମନକୁ ମୋର ଅଧୀନ କର ନେଲ ତକ୍ଷଣେ ଅନାଇ । ଅର୍ଦ୍ଧ ଅଙ୍ଗ ଅଙ୍ଗୀକାର ହେଉଛୁ କ ଭାଷୁଁ ମୁଁ ସମ୍ଭାବ । ଶମ୍ଭୁଗଯାର୍ଦ୍ଧ କାହାର କହ ପ୍ରିୟା ଭାଷଲ ତହିଁକ । ୧୯ । ବଶେଷିତେ କଣା ବାଣୀ ବଚନାର ଏ ଗୀତେ ହୋଇଲ । ପଲ୍ୟଙ୍କ ଅଙ୍କକୁ କର ଧର ନେଇ ସୁରସ ବହିଲ । ନୀବୀ ବାନ୍ଧୁ ବନ୍ଧୁ ଅଧରେ ଭଡ଼ଇ ସ୍ୱଭାବେ ରଦନ । ବୋଇଲି କାହାକୁ ଏଡ଼େ କୋପ ପଳାଇଲାଣି ମଦନ । ୨୦ ।

---

୧୬ । ଅଧର ବଧୂରୁ—ଓଷ୍ଠ ଚନ୍ଦ୍ରରୁ, ସରଧା ଯେ ମହୁମାଛିର ଅଇଁଠା ଦେବତା ଖାଆନ୍ତ । ତୋ ଅଧର ପାନକୁ ଅଇଁଠା ବୋଲି କହୁ ସେଥିରେ ଦୋଷ ନାହିଁ ସ୍ତ୍ରୀ କହୁଲ ମହୁରେ ଦୋଷ ନ ଥିବା ବଧି ଅଛି ଅନ୍ୟରେ ନାହିଁ ।

୧୭ । ଲପନ—ମୁହଁ ।

୧୮ । ଅନୁରାଗ—ସ୍ନେହ, ତୁଷ୍ଟକର—ଖାଲିହାତ ।

୧୯ । କପାଟ—କବାଟ, ଅର୍ଦ୍ଧଅଙ୍ଗ—ହୋଡ଼, ( ଏଠାରେ )

୨୦ । ଅଧରେ—ଓଠରେ, ରଦନ—ଦାନ୍ତ ଉତ୍ତବା ।

ତାହାଙ୍କ କହିଲା ମୁଁ ନିକଷ୍ଟଜନ ଏମନ୍ତ ଭଙ୍ଗିକି । ସେନାସେନିରେ ତୁଳ ହୋଇ ନାହିଁତ କୋମଳ ଅଙ୍ଗକି । ବକ୍ଷ ଭେଦରେ ଲାଗିଥିଲା ଅଳତା ଲଲାଟେ ଗୃହୀଙ୍କ । ପୋଛୁ ଦେଇ ମୋତେ ସଖୀ କି ବୋଲନ୍ତେ ବୋଲି ଯେ ବୋଇଲା । ୨୧ । ମୁଁ ବୋଇଲି କି ବୋଲନ୍ତେ କାନ୍ତା ତୁ ମୋ ଶିରର ଭୂଷଣ । ତୁ ଅବା ମନକୁ କି ଘେନୁଛୁ ମୋତେ ନୁହଇ ଦୂଷଣ । ଏ ବଚନେ କୃତକୃତ୍ୟ ହେଲା ପରି ହୋଇଲା ଜୀବନ । ଲୁଚି ହୋଇଯାଇ କି ନା ବୋଲି ଦେଲା ଅମୂଲ୍ୟ ଚୁମ୍ବନ । ୨୨ । କବରୀ କରି ଦାଅ ମୋତେ ପ୍ରତ୍ୟକ୍ଷେ ନ ବୋଲେ ବାଳିକା । କୁନ୍ଦ କରବୀର କୁସୁମ ମିଶାଇ ବରଚି ମାଳିକା । ସୁନ୍ଦରମାଳା ହେଲା ବୋଲି ଦେଖାଇଁ ଧଇର୍ଯ୍ୟ ଖଣ୍ଡନା । ରମଣୀ ହୃଦୟମଣି ମୁଁ ତା କେଶ କରନ୍ତେ ମଣ୍ଡନା । ୨୩ । ଅନୁଗ୍ରହ ପାଇଲାର ଭୃତ୍ୟ ପରି ଓଳଗି କରଇ । କେମନ୍ତ ସେନାସେନି ସେନା ସୁମନା ମନକୁ ହରଇ । ଗୃହୁଁ ସ୍ନେହ ବଶେ ବସାଇଁ କୋଳେ ମୁଁ ଲାବଣ୍ୟବତୀକି । ଥର ଥକେତେ ଖସି ରସି ଅବମାରେ ବଢ଼ାଇ ପ୍ରୀତିକି । ୨୪ । ଆଜ ପାଇବ କି ଯୁବତୀ ଚରକୁ ନାହିଁ ଏ ପନତେ । ଯୋଗୀ ହୋଇ ଯାଇ ଦେଲା ଭ୍ରବ-ମାନ ଜପିବ ନିବତେ । ବାଞ୍ଛା ତରୁତଳେ ବସି କାଶୀବାସୀ ତୋଷି ଏ କାମନା । ଗଙ୍ଗାସାଗରେ ଝାସି ହେଲେ ଲଭିବ ଗଜେନ୍ଦ୍ର ଗମନା । ୨୫ । ଯେଉଁ ରୂପେ ହସେ ମୁଖୁଁ ସୁଧା ଖସେ ଦଶେ ସେ ଦଶୁଛି । ଯେଉଁ ରୂପେ ଅସେ ଧୂଚତେ ମୋ ବସେ ମନେ ସେ ପଶୁଛି । ଯେଉଁ ରୂପେ ଭାଷେ ବଚନ କର୍ଣ୍ଣେ କି ଏଷଣି କହୁଛି । ତେବେ ଅତ୍ୟନ୍ତ ଶୀତଳ କରୁଥିଲା ଏବେ ତ ଦହୁଛି । ୧୬ । ଏଣୀ ନୟନାକୁ ପାଇଲେ ଏଣିକି ଏମନ୍ତ କରିବ । ଦଣ୍ଡେହେଁ ନ ଛାଡ଼ି ଚକ୍ଷୁ ନ ପିଛାଡ଼ି କୋଳରେ ଧରିବ । ମୁହିଁ ସଖୀ ହୋଇ ମୀତକି ବତାଇ ଦେବ ଯେ ତାହାର । ନିୟମ ପକାଇ ପଞ୍ଚଗ୍ରାମୀ ପରି କରିବ ଅହାର । ୨୭ । ଦିବସ କାଳରେ ରତ ସିନା

---

୨୨ । ଶିରର ଭୂଷଣ—ମଉଡ଼ମଣି, କୃତକୃତ୍ୟ—ଅତିଆନନ୍ଦ ।

୨୩ । କରବୀର—କନିଅର, ବରଚି—ଗୁନ୍ଥି, ହୃଦୟ ମଣି—ମନକଥା ଜାଣି ।

୨୪ । ସେନାସେନି—ସ୍ନେହ ।

୨୫ । ବାଞ୍ଛାତରୁ—କଳ୍ପବଟ, କାଶୀବାସୀ—କାଶୀବିଶ୍ୱନାଥ ।

୨୬ । ଦଶେ—ଦଶମାନଙ୍କରେ, ସୁରତେ—ଆଗରେ ।

୨୭ । ଏଣୀନୟନା—ମୃଗାକ୍ଷୀ, ଚକ୍ଷୁ—ଆଖି, ପିଛାଡ଼—ପଛାପକାଇବା,

ନାହିଁ କରିବୁ ଦାଗର । ଭୁଜେ ଭୁଜ ଛନ୍ଦା ଛନ୍ଦ ହୋଇ ହୃଦ ଉପରେ ଶୋଇବ । ବର୍ତ୍ତି ଥିବାଯାକ ବୃତ୍ତି ହୋଇଥିବ ତାହାକୁ ପାଇଲେ । ରତି କେବଳ ନିଷେଧ ନ କରିବ ଏମନ୍ତ ହୋଇଲେ ।୨୮। ସ୍ୱତନ୍ତ୍ର ସ୍ୱତ ଦିବସ ଏହିମତି କରିବି ଏସନ । ଯେବେ ଯାଉଥିବ ସ୍ଥଳ ପ୍ରାପ୍ତେ ପଛେ କରିବି ଗମନ । ଗଣ୍ଠି ଦେଇଥିବ ବସନେ ବସନ ରଜନୀ ଦିବସେ । ଏମନ୍ତ ଯତ୍ନ କରିଥିଲେ ଅଛି କି ଅନ୍ତର ହେବ ସେ । ୨୯ । ବଗୃହୁ ବଗୃହୁ ସ୍ୱାହସ୍ୱାବ ମାନ ଲଭିଲ ମୋହକୁ । ଶୀତ ଉପଗୃହେ ସଖୀଏ ସାନ୍ତ୍ୱନା କଲେ ତା ଦେହକୁ । ଜ୍ଞାନବଶେ ସ୍ୱତେ ଏରୂପେ ଦିନେ ତ ଅବଶ୍ୟ ମରଣ । ଲଭିବ ପ୍ରିୟା ଅଧା ଭଲେ ସିନା ମୁଁ ଲଭନ୍ତି କାରଣ । ୩୦ । ବୁଝାଇ ଥାଇ ଜୀବ ତୋତେ କେତେ ମୁଁ ନ କଲି ବୋଲ ରେ । ଥାଉ ଥାଉ ଜୀବେଶ୍ୱରୀ ସୁକୁମାରୀ ସୁନ୍ଦରୀ ଭୁଲରେ । କହୁ କହୁ ପ୍ରିୟା ବୋଲି ତାକୁ ଗୃହୁଁ ଗୃହୁଁ ତା ମୁଖକୁ । ଯାଇଥିଲେ ପାଇଥାନ୍ତୁ ତୁ ପରମ ନିର୍ବାଣ ସୁଖକୁ । ୩୧ । ତେଣେ ନୃପସୁତା ବିରହ ଅତେ କହଇ ସଖୀକି । ସତେ ପରିଣ ଈଶ୍ୱରଙ୍କୁ ବାରେ ମୁଁ ପାଇବି ଦେଖି କି । ଅଭିଳାଷ ବୋଲି ଡାକୁ ଥାନ୍ତି ମୋତେ ସେ କି ସେହି ମନରେ । ଅଦ୍ଭୁତ ହରଣ କଲ୍ପିତ ବିଧାତା ଅଳପଦିନରେ । ୩୨ । ଏକା ହୋଇ ଏକଠାବେ ଯାମିନୀରେ କେମନ୍ତେ ଶୋଇବେ । ନୃପତି ନନ୍ଦନ କ୍ଷଣ-ସହ ସେ ନୁହନ୍ତି ଦଇବେ । ନ ପୂର୍ଣ୍ଣ ମୋ ଆଶ ସ୍ଥିତ ଅନେ ଆଶ କରି ସେ କୁମର । ଘନ ବନ୍ଧୁଥିବେ କେମନ୍ତେ ଅସିବେ ସ୍ମରୁଣ ଭ୍ରମର ॥ ଏମନ୍ତ ହୋଇଥିଲେ ସେ ଭଲ କଥା ଥିବାର ସେ ଜୀବେ ଦିନ ଦିନକ ପୀରତି ସ୍ୱବ ମୋର ଲୋଡିକ ତେଜିବେ । ମୋହ ପ୍ରସଙ୍ଗ ଦିନେ ଦିନେ ବଲ୍ଲଭୀ ଅଗରେ କହିବେ । ଅଜ ନିକି ଜୀବେ ଥିବ ବନ୍ଧୁ ବୋଲି ଅକୁଳ ହୋଇବେ । ୩୪ । ସଖୀ ତେତାଇ କହିଲେ ରେ ସଜନି

---

୩୦ । ସ୍ୱାରୁ—ସ୍ତ୍ରୀ, ସଖୀଏ—ସଙ୍ଗୀମାନେ ।

୩୧ । ପରମ ନିର୍ବାଣ—ଶ୍ରେଷ୍ଠମୁକ୍ତି, ବସ୍ତୁ ଅଙ୍ଗରେ ଲୀନ ହେବାକୁ ନିର୍ବାଣ କହନ୍ତି ।

୩୨ । ଆରତ—ଦୁଃଖ, ଅଦଭ୍ର ରୁ ଅ ଟି କାଢିନେଲେ ଦଭ୍ରହୁଏ ।

୩୩ । ଯାମିନୀ—ରାତି, କ୍ଷଣ—କଷ୍ଟ ।

୩୪ । ବଲ୍ଲଭୀ—ସ୍ତ୍ରୀ, ପ୍ରସଙ୍ଗ—କଥା ।

ଝୁହୁତ ଗୁଣିଙ୍କ । ଜଳ ବଦମାଳା ଯେନଇଁ ଯେ ପୂର୍ଣ୍ଣ ବହଇ ମାଣିକ୍ୟ । ଧନଭ ପଥ ମାସକେ ନ ସରବ ଦୁର୍ବଳ ବଣରେ । ଢୋନ ଅଣାରେ ଅସି ସେ ହୋଇବେକ ନିକଟ ଦେଶରେ । ୩୫ । ସ୍ୱପନେ ଦେଖିଲ ଜନକ-ନନ୍ଦନୀ ସ୍ୱରୂପେ କାମିନୀ । କହୁଲେ ନିକଟେ କାନ୍ତକୁ ଲଭବ କରୀନ୍ଦ୍ର-ଗମନୀ । କହେ ଉପେନ୍ଦ୍ର ବୀରବର ଅଣା ଏଣୁ ତା ଉଦନ୍ତ । ରସିକଭ୍ରମର ତୋଷଦ ମାଳତୀ ଏ ଛାନ୍ଦ ବଦନ୍ତ । ୩୬ ।



## ଚତୁଃଚତ୍ୱାରିଂଶ ଛାନ୍ଦ ।

ରାଗ—ବରାଡ଼ି ଦେଶାକ୍ଷ ।

( ବରନ୍ତେ ଶିଶିର ଏବଂ ବସନ୍ତଋତୁ ବର୍ଣ୍ଣନ )

ଶିଶିରକାଳ କାଳ ପ୍ରାପ୍ତ ପ୍ରବେଶ ନାଶ କଲା ପଦ୍ମିନୀଙ୍କ ।
ଦୀନବନ୍ଧୁ ପଶ୍ଚି ଘଡ ଥାଇଁ ବାଜେ ନଗର ପାଶେ ତାହାଙ୍କ ।
ଘୋ, ସୁବାଧ୍ୱନି ଡେଙ୍ଗୁରକ । ବିଯୋଗୀ ଶୁଣି ଉତ୍ସୁକ । ୧ ।
ତୁଷାର ଜଳରେ ପ୍ରଳୟ ହେଲା ବିଦେଶୀ ନ ପାଇ ସ୍ଥଳ ।
ମକର ମୁଖରୁ ଅଜ କି ବଞ୍ଚିବା ଭାବି ସେ ହେଲେ ବିକଳ ।
ଘୋ, ରଜନୀ ପାଶରେ ଜନ । ବନ୍ଧନ ପରି ଶୟନ । ୨ ।
ଏମନ୍ତ ଋତୁକୁ ଚାହିଁ ନୃପସୁତ ଲୋଚନେ ଲୋତକ ଭରି ।
ଯେଣୁ ମାଘକୁ ବାଘ କରି ମନରେ କହୁଅଛୁ ପୁରଃସରି ।
ଘୋ, ପୋତେ ତ କଲେ ଅଦ୍ଧାର । ପୁରବ ତୁମ୍ଭ ଉଦାର । ୩ ।

୩୫ । ଜନକ ନନ୍ଦନୀ—ସୀତା, କାମିନୀ—ସ୍ତ୍ରୀ,



## ଚତୁଃଚତ୍ୱାରିଂଶ ଛାନ୍ଦ ।

୧ । ଶିଶିର କାଳ—ପୁଷ ମାଘ, ଦିନବନ୍ଧୁ—ସୂର୍ଯ୍ୟ, ଡେଙ୍ଗୁରକ—ଧେଣ୍ଡରା, ବିଯୋଗୀ—ବିଚ୍ଛେଦ, ଉତ୍ସୁକ—ଉତ୍କଣ୍ଠିତ, ଦୁଃଖିତ ।

୨ । ତୁଷାର—କାକର, ମକର—କୁମ୍ଭୀର ଜାତୀୟ; ଶୀତରେ ସମସ୍ତେ ଯାକ ଯୁକ ହୋଇ ଶୋଇଲେ,

୩ । ପୁରଃସର—ଅଗକର ।

ବାଳା ଦୁଃଖେ ଦୁଃଖୀ ବାଳା ସୁଖେ ସୁଖୀ ସମସ୍ତ ପ୍ରକାରେ ମୁହିଁ ।
ମୋ ଅଦୃଷ୍ଟ ପାଇ ଜୀଇଥାଉ ପଛେ ଶରଦ ଅମ୍ବୁଜମୁହିଁ ।
ହୋ, ଏରୂପେ ଯେଉଁ ବାଳାକୁ । ଦେଖିବ ଚେତାଇବ ତାକୁ । ୪ ।
ଶ୍ରାବଣଗିରି ଶୋଭାକୁ ବହିଥିବ ଯାହାର ଉତ୍ତୁଙ୍ଗସ୍ତନ ।
ଲୋତକଜଳରେ ଜରଜର ହୋଇ ନ ଥିବ ପନାଳି ପୁନଃ ।
ହୋ, ସ୍ମରି କାମକୋପଭରୁ । ବିଗତ ପଲ୍ଲବ ତରୁ । ୫ ।
ଅର୍ଦ୍ଧ ଶଶି ଅର୍ଦ୍ଧ ନବଜଳଧର ଖଣ୍ଡେ ଗଲା ପ୍ରାପ୍ତ ପଣି ।
ବଟି ଯାହାର ଅଳକ ବଳାଥିବ ଝଳା ଅଳକକୁ ଗ୍ରାସି ।
ହୋ, ତାଟଙ୍କ କଙ୍କଣ ଦୁଇ । ଯେ ମାନଙ୍କ ଥିବ ବହି । ୬ ।
ସଖୀ ଅବା ବଳେ ଲେଖି ଦେଇଥିବେ ନୟନେ କଜ୍ଜଳଗାର ।
ମଧୁକ ପୁଷ୍ପେ ଭୃଙ୍ଗପର ସେ ଜଳ ଗଣ୍ଡେ ବହିଥିବ ଯାର ।
ହୋ, ଦେଖି ଯେ କମଳନାଡ଼ । ସ୍ମରୁଥିବ ଗରୁଡ଼ । ୭ ।
କଷଟି ପାଷାଣେ ବାରବାଣିସୁନା ଗିରପର ହୋଇ ଯେହି ।
ପଙ୍କଜପଲ୍ଲବ ଶେଯେ ଶୋଇଥିବ ମୋହର ବଲ୍ଲଭା ସେହି ।
ହୋ, କହିବ ତାକୁ ମାତର । ଏତିକି ପ୍ରାର୍ଥନା ମୋର । ୮ ।
ତୁ ଅବା ବୋଲିବୁ ଭୋ ସୃଷ୍ଟି ବୁଡ଼ିବ ଗଙ୍ଗାଠାରୁ ତୋର ଜୀବ ।
ତା ଶୁଭ ଏଥିକି ବାଞ୍ଛା କରଇଁ ମୁଁ ମୋତେ ସେ ଗତି କରିବ ।
ହୋ, ଜଳ ଦାନ ଲୋଚନରେ । ତିଳଦାନ ସ୍ୱନ ବାକ୍ୟରେ । ୯ ।

---

୪ । ଅମ୍ବୁଜ—ଚନ୍ଦ୍ର, ପଦ୍ମ; ବାଳା—ସୁନ୍ଦରୀ ।
୫ । ଶ୍ରାବଣ ଗିରି—ଶ୍ରାବଣ ମାସରେ ପର୍ବତ, ଉତ୍ତୁଙ୍ଗସ୍ତନ—ଉନ୍ନତ କୁଚ, ପନାଳି—ପଣସରୁ, ଛତାସରୁ, ବିଗତ—ବର୍ଜ୍ଜିତ, ତରୁ—ବୃକ୍ଷ ।
୬ । ଅର୍ଦ୍ଧଶଶୀ—ଅଧାଚନ୍ଦ୍ର, ନବଜଳଧର—ମେଘ, ଖଣ୍ଡେ—ଉପରେ, ଅଳକ—ଚୂନାବାଳ, ମୁଣ୍ଡର ସୁନା ଅଳକା, ତାଟଙ୍କ—କାନଗହଣା, କଙ୍କଣ—ହାତଗହଣା, ଅଧାଚନ୍ଦ୍ର ମେଘ ଉପରେ ପଡ଼ିଗଲେ ଯେପରି ଦିଶେ, ତାର ଚୂନାବାଳ ମୁଣ୍ଡର ସୁନା ଅଳକାକୁ ଘୋଡ଼ାଇ ବାରୁ ସେହିପରି ଦିଶୁଛି । କାନରେ ସୁନାର ତାଟଙ୍କ ହାତରେ ଖଡ଼ୁ ଛଡ଼ା ଅନ୍ୟକିଛି ପିନ୍ଧି ନଥିବ,
୭ । ମଧୂକ—ସୂର୍ଯ୍ୟ ମୁଖିଫୁଲ, ଭୃଙ୍ଗ—ଭଅଁର, ବିରହ ଉପଶମକୁ ପଦ୍ମନାଡ଼ ଦେବାରେ ତାକୁ ସାପ ମନେ କରି ଗରୁଡ଼କୁ ଡ଼ାକିବ ।
୮ । ପଙ୍କଜ ପଲ୍ଲବ—ପଦ୍ମପତ୍ର, କଷଟି ପାଷାଣ—କଷଟି ପଥର, ବାରବାଣିକୁ—ଉତ୍ତମ ସୁନାକୁ,
୯ । ତୁ କହିବୁ ତୁ ମଲେ ଗଙ୍ଗା, ମାତ୍ର ମୁଁ ତା ଶୁଭ ଇଚ୍ଛା କରେ ପିଣ୍ଡଦାନ ଜଳ ତର୍ପଣ ପରି ମୋ ମନ୍ତ୍ରପରେ ତାର ଲୋତକ ବହି ମୋତେ ମୁକ୍ତ କରିବ ।


Digitized by srujanika@gmail.com

ଅନ୍ତର କଥାଏ ଯଥା ଏକ ନାମ ଅଶ୍ୱିନୀକୁମାର ଦୁଇ ।
ସେହିପ୍ରକାରେ ତା ମୋର ଏକପ୍ରାଣ କେବଳ ଯୁଗଳ ଦେହୀ ।
ହୋ, ଯେବେ ମୋର ପ୍ରାଣ ଯିବ । ତାହା ଦେହେ ସମ୍ଭାଇବ ।୧୦।
ତବାଧଣ୍ଡ ଦେହ ଇତର ନୁହଇ ଯୁବା ବଇକୁଣ୍ଠପୁର ।
ପରମପଦବୀ ଏମନ୍ତ ହୋଇଲେ ରୋଗ ନୋହିବ କି ମୋର ।
ହୋ, ଏସନ ଭାବନା କରି । ଶଶିର-ଋତୁକୁ ହରି । ୧୧ ।
ଏ ଅନ୍ତେ ମନୋହର ହୋଇ ପ୍ରବେଶ ହୋଇଲା ଋତୁରାଜନ ।
ପଞ୍ଚମସ୍ୱରରେ ପରଭୃତ କଲେ ମଙ୍ଗଳଗୀତ ଗାୟନ ।
ହୋ, ଝଙ୍କାର ଝଙ୍କାରପୂର । ବାଜଇ କି ବାଦତୂର ।୧୨।
ନବପଲ୍ଲବ ଚଳିତ ଛଳେ ଚୁଳେ ଖେଦ ତରୁ ପରକର ।
କୁବେଲକୁଳ ଭ୍ରମର ପରି ସେହୁ ନିରତେ କରି ଆଦର ।
ହୋ, ଉଡେ କୁସୁମ ପରାଗ । ପ୍ରକାଶ ଚର୍ଚ୍ଚରୀରଙ୍ଗ ।୧୩।
ଭୃଙ୍ଗଧ୍ୱନି ଛଳେ ନବକମଳିନୀମାନେ ହେଲେ ହୁଳହୁଳି ।
ନାଗକେଶର ପାଦପ ପୁଷ୍ପଛଳେ ଧଇଲା କି ଛତ୍ର ତୋଳି ।
ହୋ, କାନନ ନଗରେ ଝଳି । ସୁନାରୀ ବଜ୍ର ପାଟଳୀ ।୧୪।
ମଲ୍ଲିକାଅଳକା ଚମ୍ପା ନିଅଳିକା ନବୀନକୁସୁମବତୀ ।
ତଥାପି ମହଷୀ ସଲିଳ ଅଙ୍କରେ ଶଯନେ ବଳାଇ ମତି ।
ହୋ, ମଳୟ ପବନ ଗୁରୁ । ସଧୀରେ ଆଗେ ପ୍ରଗୁରୁ ।୧୫।

---

୧୦ । ଅଶ୍ୱିନୀ...କୁମାର, ଏ ଦୁଇନାମ ହେଲେ ମଧ୍ୟ ବୈଦ୍ୟପଣରେ ଏକ, ସେହିପରି ତା ପିଣ୍ଡ ମୋ ପିଣ୍ଡ ପୃଥକ ହେଲେ ମଧ୍ୟ ଜୀବ ଏକ; ମୋ ଜୀବଗଲେ ତା ପିଣ୍ଡରେ ରହିବ ।

୧୧ । ତାର ଦେହତ ଅନ୍ୟ କିଛି ନୁହେଁ ସାକ୍ଷାତ ବୈକୁଣ୍ଠ ପୁର ତେଣୁ ସେଠାକୁ ମୁଁ ଗଲେ ମୋତେ ଶ୍ରେଷ୍ଠ ମୁକ୍ତି ମିଳିବ । ଏହିପରି ଭାବିଲା ।

୧୨ । ଋତୁରାଜନ—ବସନ୍ତକାଳ, ପରଭୃତ—କୋଇଲି, ତୂର—ତୁରୀ,

୧୩-୧୪-୧୫ । ପରକର—ଶୁକର, ଚର୍ଚ୍ଚରୀ—ଗୃତେରଖେଳ, ( ଫଗୁଖେଳ ) ନବକମଳନୀ—ନୂଆ ଫୁଟିଥିବା ପଦଫୁଲ, ଓ ଯୁବତୀ, ହୁଳ ହୁଳ ପଡ ଭ୍ରମରର ଗୁଣୁ ଗୁଣୁ ଶବ୍ଦ, ପାଦପ—ବୃକ୍ଷ, ଛତ୍ର—ଛତା, ନଗର—ରାଜପୁରୀ, ସୁନାରୀ—ସୁନାରୀଫୁଲ ଓ ସୁନ୍ଦରୀ ସ୍ତ୍ରୀ, ବଜ୍ର—ହୀରାଫୁଲ, ମଲ୍ଲିକାଅଳକା-ମଲ୍ଲୀଫୁଲ ସବୁ, ନିଅଳକା—ନିଅଳିଫୁଲ, ଅଙ୍କ—କୋଳ, ସଲିଲେ—କ୍ରୀଡ଼ା କୌତୁକରେ, ସଲିଲେ—ଜଳରେ, ଏ ଋତୁରେ ମଲ୍ଲୀ, ଚମ୍ପା, ନିଅଳିଫୁଲ ନୂଆ ହୋଇ ଫୁଟିଲେ, ଖରା ତେଜ ହେଲା—ମହିଷୀମାନେ ପାଣିରେ ବୁଡ଼ିଲେ । ଅନ୍ୟାର୍ଥ ସହଜରେ ବୁଝା ଯାଉଛି ।

କାମସେନା କ କେତକୀକଢ଼ ଯମଦାଢ଼କୁ କର ବକୋଷ ।
ବଦେଶୀ ପରେ ତର୍ଜନା ଏକ କରେ ଏଥିରେ କରବ ନାଶ ।
ହୋ, ଛୁରଅନା ହୋଇ ବାଣୀ । ପ୍ରକଟ ହୋଇଲ ପୂର୍ଣ୍ଣ ।୧୬।
କାମମିତ୍ରମନ୍ତ୍ରୀ ଏମନ୍ତ ଶିଖାଇ ବଦେଶୀଗୋତ୍ର ନ ରଖ ।
ଜ୍ଞାନ ଧନମାନ ଲୁଟି କରିବାକୁ ଲେଖିବା ସନ୍ତକ ଲେଖ ।
ହୋ, ସମ୍ବାଦ ଏଣୁ କେତକୀ । ବଯୋଗୀ ଅଡପାଡକୀ ।୧୭।
ଏ ରସମଧୁ ସମୟକୁ ଅନାଇଁ ବଢଲ ଲାବଣ୍ୟବତୀ ।
ବଗୃହେ ଏ ସ୍ୱଭାବସୂଚେ ଏ ମାସେ ମୋର କୋଳେ ନାହିଁ ପତ ।
ଗୋ, କେମନ୍ତେ ବଞ୍ଚିବ ଧନ । କ କଲେ ପଦ୍ମଲୋଚନ ।୧୮।
ଚନ୍ଦନପିଚକା ସନ୍ଧାଡ ମାରନ୍ତ ମୋ ଉର ଭର ଯେ ଲଖ ।
ତାହା ବଞ୍ଚାଇ ମୁଁ ନଗୃହଲେ ଭୂରୁ ଛନମନ୍ତ କେଉଁ ସୁଖ ।
ଗୋ, ବୋଲନ୍ତ ଗୃପରେ ବାଣ । ସନ୍ଧ କରବୁ କ ରଣ ।୧୯।
ରତଶ୍ରମରେ ଘର୍ମହେଲେ ବାହାର ପୃଚ୍ଛନ୍ତ ବାଧିଲ କ ରେ ।
ଶେଷରେ ବାସରେ ପୋଛିଦେଲ ଚୁମ୍ବ ଦଅନ୍ତ କେଉଁ ସ୍ନେହରେ ।
ଗୋ, ଲେପନ୍ତ ଚନ୍ଦନ ତନୁ । ଏସ ଭାବ କ ଯିବ ମନୁ ।୨୦।

---

କୁସୁମପରାଗ—ଫୁଲରେଣୁ, ଚର୍ଚ୍ଚାଙ୍ଗରଙ୍ଗ, ଫଗୁ ଖେଳପର ରଙ୍ଗ ହେବା,

୧୬ । କାମସେନା—କନ୍ଦର୍ପ ସୈନ୍ୟ, କେତକୀକଢ଼—ଯମଦାଢ଼, କେତକୀଫୁଲ କଢ଼ହେଲା ଯମଦାଢ଼ ଖଣ୍ଡା ବା ଏକମୁନା, ବକୋ କୋଷରୁ ବାହାର କର, ବଦେଶୀ—ବଦେଶରେ ଥିବା, ବା ଅନ୍ୟଦେଶ ଲୋକ,
ଛୁରଅନା—ଛୁରଅନା ଫୁଲ—ଛୁରକୁ ଅନାଇ ଦେଖ,ପ୍ରକଟ—ପ୍ରକାଶ,

୧୭ । କାମମିତ୍ର ମନ୍ତ୍ରୀ—ବସନ୍ତ ମନ୍ତ୍ରୀ, ଏଣେ ବସନ୍ତରାଜା—ତା ମନ୍ତ୍ରୀଙ୍କୁ କହୁଛୁ କାମରେ ଯେମାନେ ଜ୍ଞାନ ହରାଇଛନ୍ତ ସେମାନଙ୍କ ତଥ ଲେଖ, କନ୍ଦର୍ପରେ ଯେମାନେ ଅମ୍ପହରା ସେମାନଙ୍କ ତାଲକା କର,

୧୮ । ପଦ୍ମଲୋଚନ—ବଷ୍ଣୁ,

୧୯ । ଚନ୍ଦନପିଚକା—ଚନ୍ଦନରେ ପିଚକାର ମାରବା, ଉର—ବକ୍ଷ, ଗୃପ—ଧନୁ,

୨୦ । ଘର୍ମ—ଝାଳ, ବାସରେ—ଲୁଗାରେ, ତନୁ—ଦେହ,

ଏ ଭାବ ସୁମରି ନିଷ୍ଟେ ଏବେ ମଲି ଧନେ ନାଗେଶ୍ୱର ଗୁଣ୍ଠି ।
ମୁଚୁଳା କରିବା ବ୍ୟାଜରେ ଅଣାଇ ଘୋର ଉରଜରେ ମଣ୍ଡି ।
ଗୋ, ଅଲିଙ୍ଗନରେ ପ୍ରମୋଦେ । ହୃଦ ଲଗାଇଲେ ହୃଦେ ।୨୧।
ମୃଦୁ ଅଳପ ହସିଲା ହୋଇଲାକୁ ବୋଇଲେ ଦଶିବ ଶୋଭା ।
ନିଜ ଅଧମକୁ ଯାଇଁ ଏହୁପରି କରିବା କନକ—ପ୍ରଭା ।
ଗୋ, ଦହିଲି ମୁଁ ଲାଜ ପାଇ । ବୋଇଲେ କର ତୁ ହୋଇ ।୨୨।
ଏମନ୍ତ କହୁଁ ସେ ସମ୍ଭାକ ମହୀକ ମହୀଳାରତନ ହଳି ।
ଏ ରତ୍ନ ଅଗମେ ଭାଳି ନ ପାରିଲା ବଲ୍ଲଭ ବଲ୍ଲଭୀ କେଳି ।
ଗୋ ସୁମର ଶ୍ରୀରାମଚନ୍ଦ୍ର । କହେ ଭଞ୍ଜ ଉପେନ୍ଦ୍ର ।୨୩।



## ପଞ୍ଚଚତ୍ୱାରିଂଶ ଛାନ୍ଦ ।

ରାଗ—ବଭ୍ରମଗୁଞ୍ଜରୀ ।

( ଚନ୍ଦ୍ରଭାନୁର କୀର୍ତ୍ତି ଓ ଯୁଦ୍ଧ ବର୍ଣ୍ଣନା )

ଏ ଅନ୍ତେ ଶୁଣ କୋବଦେ ଚନ୍ଦ୍ରଭାନୁ କୀର୍ତ୍ତି ଉଦେ ଏତେସ୍ଥାନେ ଚନ୍ଦ୍ର ପ୍ରାପ୍ତ ହେବ ହେ । ଜମ୍ବୁ ପ୍ଲକ୍ଷ କୁଶ କ୍ରୌଞ୍ଚ ଶାକ ଶାଲ୍ମଳୀରେ ଘଞ୍ଚ ହୋଇ ମୃଷ୍ଟକୁ ବୋଲି ଯିବ ହେ ।୧। ଏଥିରେ ନୁହନ୍ତେ ଠାବ ବଳେ ପଣି ତଳେ ଯିବ ଅତଳ ବିତଳ ବିତଳକୁ ହେ । ଗଗସ୍ତି ମହାକ୍ଷ ଯେନ ସୁତଳ ପାତାଳ ସ୍ଥାନ ନିରତେ କରିବ ଉଜ୍ଜ୍ୱଳକୁ ହେ ।୨। ପାଦ ବଧୂ

---

୨୧ । ମୁଚଳ—ମୁଚୁଳା, ବ୍ୟାଜରେ—ଛଳନାରେ, ଅଲିଙ୍ଗନ କରେ—କୋଳରେ,

୨୨ । ଅଧମ—ବଗିଶ୍ଚ,

୨୩ । ମହୀଳାରତନ—ସ୍ତ୍ରୀ ଶ୍ରେଷ୍ଠ, ମହୀକ—ପୃଥ୍ୱୀକ ଦଳକୁ,



ପଞ୍ଚଚତ୍ୱାରିଂଶ ଛାନ୍ଦ ।

୧ । କୋବଦେ—ପଣ୍ଡିତମାନେ, କୀର୍ତ୍ତି—ଯଶ, ଘଞ୍ଚ—ଲଗାଲଗି,

୨ । ବଳେ—ଶାଢରେ, ଉଜ୍ଜ୍ୱଳ—ପରସ୍ପର,

ପାତଚ୍ଛରେ ପେଲି ଗଡିବ ସ୍ୱଚ୍ଛରେ ଉର୍ଦ୍ଧ୍ୱକୁ କୀର୍ତ୍ତିପଟଳ ତାର ହେ । ଭୂର୍ଭୁବ ସ୍ୱ ମହ ଜନ ତପ ସତ୍ୟାଦି ଭୁବନ ଗ୍ରାସେ ହୋଇ ପୃଥୁକଳେବର ହେ ।୩। ଫୁଟିବ ବ୍ରହ୍ମାଣ୍ଡଭାଣ୍ଡ ଅତି ବୃଦ୍ଧ ହୋଇ ପିଣ୍ଡ ଉପରକୁ ଯିବ ସେ ବାହାର ହେ । ତ୍ରିଲୟରେ ଅବକାଶ ଯହିଁରେ ନାହିଁତ ଯଶ ଚିର ହୋଇ ରହିବ କହିବ ହେ ।୪। ଯେବଣ ଉତ୍ତର କୁରୁବାସୀ ଅସୁର-ଭୟରୁ ରମ୍ୟକ ଭଦ୍ରାଶ୍ୱେ ନିଦ୍ରା ନୋହି ଯେ । କମ୍ପୁଥାଇ କିଂପୁରୁଷ ଏଳାବୃତ ହରିବର୍ଷ କେତୁମାଳ ଉଚ୍ଛନ୍ନ କରିଲ ଯେ ।୫। ପାଦଘାତେ ଟଳେ ଯାର ହିରଣ୍ମୟ ନିରନ୍ତର ହିମାଳୟତଳ ରଷି ଗ୍ରାସି ହେ । ହେ ଭରତ ଖଣ୍ଡବୀର ଚନ୍ଦ୍ରଭାନୁ ରକ୍ଷାକର କୋଟିପରିମିତ ଉଚ୍ଚେ ଭାଷି ହେ ॥ ଉପସ୍ଥିତ ଅଦଭୁତେ ସ୍ୟନ୍ଦନେ ହେଲ ପୁରତେ ଦିବ୍ୟାୟୁଧେ ହୋଇଛି ମଣ୍ଡିତ ଯେ । ସୂତ ହେଲ ମନ୍ତ୍ରୀ ସୁତ ପାଶେ ଅଜ ଭଣିମିତ ଗଲ ସେ ଅରି କରି ଖଣ୍ଡିତ ଯେ ।୭। ରିପୁବଳ ଗୃହଁ ବପୁ ପ୍ରକାଶ କରଣେ ହୋପୁଁ ଅଟ୍ଟହାସ ପରକାଶ କଲ ହେ । ସ୍ଫୁଟ କୋକନଦ ପ୍ରାୟେ ନେତ୍ରଯୁଗ ଶୋଭାପାଏ ବାହାସ୍ଫୋଟ ପୁନଃପୁନଃ କଲ ହେ ।୮। ଅଧରେ ରଦନ ତହିଁ ଚାପରେ ରୋପ ବସାଇ ବୀରକେଶରେ ପକାଇ କର ହେ । ଅଶନି ଅଭେଦ୍ୟ ପିଣ୍ଡମାନ କଲ ଖଣ୍ଡ ଖଣ୍ଡ ଶର ଉପରେ ପ୍ରହାର ଶର ହେ ॥

---

୩ । ବଧୂ—ଚନ୍ଦ୍ର ଓ ଧଳା, ପାବଚ୍ଛ—ପାତାଳ, ଭୂ, ଭୁବ, ସ୍ୱ, ମହ, ଜନ, ତପ, ସତ୍ୟ—ଏ ସପ୍ତ ସ୍ୱର୍ଗ, ପୃଥୁ—ବଡ଼, କଳେବର—ଦେହ,

୪ । ବୃଦ୍ଧ—ବଡ଼, ପିଣ୍ଡ—ଦେହ, ଅବକାଶ—ଫୁରସତ,

୫ । ଅସୁରଭୟରୁ—ଅସୁରଙ୍କ ଭୟରୁ, ରମ୍ୟକ—ଦ୍ୱୀପ, ଭଦ୍ରାଶ୍ୱ—ଦ୍ୱୀପ, କିଂପୁରୁଷ—କିନ୍ନର ସବୁ, ଏଳାବୃତ—ହରିବର୍ଷ, କେତୁମାଳ—ଗୋଟିଏ ଗୋଟିଏ ଦେଶ,

୬ । ହିରଣ୍ମୟ—ସୁନାପର୍ଣ୍ଣି ମେରୁ, କୋଟିପରିମିତ—ସହସ୍ର ସହସ୍ରବାର, ଉଚ୍ଚେଭାଷି—ବଡ଼ପାଟିରେ ଡ଼ାକିବା,

୭ । ଦିବ୍ୟାୟୁଧେ—ଉତ୍ତମ ଅସ୍ତ୍ର ସବୁ, ସ୍ୟନ୍ଦନ—ରଥ, ପୁରତେ—ଆଗରେ. ସୂତ—ସାରଥି,

୮ । ରିପୁବଳ—ଶତ୍ରୁସୈନ୍ୟ, ବପୁ—ବଳ, ଦେହ, ଅଟ୍ଟହାସ—ଉଚ୍ଚହାସ, ସ୍ଫୁଟ—ଫୁଟିଥିବା, କୋକନଦ—ଲାଲକଇଁ,

୯ । ଅଧର—ଓଠ, ରଦନ—ଦାନ୍ତ, ଚାପ—ଧନୁ, ରୋପ—ଶର; ଖରକେଶ-ନଖ, ଅଶନି—ବଜ୍ର, ଅଭେଦ୍ୟ—ଭେଦନ୍ତୁଏ ନାହିଁ,

ଛନ୍ଦ ଛାଣ୍ଡ ଜଳଧାର ଧନୁ ଇନ୍ଦ୍ରଧନୁ ପଣ ପୁଣ ଗୁଣଧ୍ୱନିତ ସ୍ତନିତ ହେ ।
କର କୃପାଣ ଝଟକ ଶମ୍ପା ଚହଟ ଛଟକ ବାଦୁଲ ତକ୍ରଭାବଳୀ ମତ ହେ ।୧୦।
ଏମନ୍ତ ବୃଷ୍ଟି ସମ୍ପାଦ ଚଳାଲେ ଏମନ୍ତ ନଦୀ କବନ୍ଧ ନାଚ ପ୍ରକଟ ହୋଇ
ଯେ । କୀଲାଲ କି ଲାଲ ଫଳ ଜମ୍ବାଳ ହେଲ ଅବଲ ପତାକା ଲହରୀ ଶୋଭା
ଯହିଁ ହେ । ୧୧ । ସ୍ୟନ୍ଦନ ତରଣୀସାର ଦ୍ୱିପୃନ୍ଦ କୁମ୍ଭୀ କୁମ୍ଭୀର ମୀନ
ତୁରଙ୍ଗ ବସନ ଫେନ ହେ । ଚର୍ମଅଡ଼ଣୀ କମଠ ଭୁଜ ଭୁଜଙ୍ଗ ପ୍ରକଟ ପତ୍ତି
ଅର୍ବ୍ବର ଭେକସ୍ୱନ ହେ । ୧୨ । ପତ୍ତିପନ୍ତି ଦମ୍ଭ ତଃବଃପୀ ହୋଇଲେ
ଭୃଷ୍ଟ ନୃତ୍ତେ ଦୁଷ୍ଟକୂଳ ଗୃହିଁବାର ହେ । ରବିରଥ ମଧ୍ୟପଥ ପୂର୍ଣ୍ଣ ହେଲ
ଦେବସୁତ ଶ୍ରମ ହେଲେ ରଥ ବାହିବାର ଯେ । ୧୩। ଗୃଲନ କର ଗୃମର
ବ୍ୟଥା ଅପସରୀବାର ମଳୟ୍ୱାଦ ଗନ୍ଧସାର ଶେଷ ହେ। ଚଇତ୍ରରଥ ନନ୍ଦନ
ହୋଇଲେ ପୁଷ୍ପବସ୍ଥାନ ଅତ ସଘନ ଶମନବାସ ହେ । ୧୪ । କେଶ ମୁକ୍ତଳା

---

୧୦ । ଗୁଣଧ୍ୱନି—ଧନୁରେ ଦିଅଯାଇଥିବା ଦଉଡ଼ିର ଶବ୍ଦ, ସ୍ତନିତ—ଘଡ଼ଘଡ଼ି, ଶମ୍ପା—ବିଜୁଳି, କରକାବଳୀ—କୁଆପଥର ସବୁ,

୧୧ । ବର୍ଷାରେ ନଈବଢ଼େ—ଏଠାରେ ନଈ ବହିଲା, କବନ୍ଧ—ଜଳ—ମୁଣ୍ଡ ନଥିବା ଗଣ୍ଡି, ନଈରେ ଜଳ ନାଚ ନାଚ ଯାଏ—ଏଠାରେ କବନ୍ଧ ନାଚନାଚ ଯାଏ, କୀଲାଲ—ଲାଲକଇଁ, ଲାଲପଦାର୍ଥ, ରକ୍ତ; ଗଣ୍ଡରେ ରକ୍ତବର୍ଣ୍ଣ କଇଁଅଢ଼ ଦେଖାଯାଏ ଏଠାରେ ହେଲ ରକ୍ତମୁଣ୍ଡା ଭାସୁଥାଏ, ଜମ୍ବାଳ—କାଦୁଅ, ଅବଳ—ଗୋଳଅ, ଅପରିଷ୍କାର, ନଈରେ କାଦୁଅ ପାଣି ଗୋଳଅ ହୁଏ, ଏଠାରେ ରକ୍ତରେ କାଦୁଅ ହୋଇ ଅପରିଷ୍କାର ହୁଏ, ନଈରେ ଲହରୀ ହୁଏ ଏଠାରେ ପତାକା ସବୁ ଲହରୀ—

୧୨ । ତରଣୀ—ଡଙ୍ଗା, ଦ୍ୱିପୃନ୍ଦ—ଜାତ, କୁମ୍ଭୀ—ହାତୀ, ତୁରଙ୍ଗ—ଘୋଡ଼ା, ମୀନ—ମାଛ,କମଠ—କଇଞ୍ଛ, ଫେନ—ଫେଣ,ଚର୍ମଅଡ଼ଣୀ—ଚମଢାଲ ଭୁଜ—ହାତ, ଭୁଜଙ୍ଗ—ସାପ, ପତ୍ତି—ପାଇକ, ଅର୍ବ୍ବର—ବକଲ ଡ଼ାକ, ଭେକ—ବେଙ୍ଗ, ରଥ—ଡ଼ଙ୍ଗା, ହାତୀ=କୁମ୍ଭୀର, ଘୋଡା= ମାଛମଗର, ଲୁଗା=ଫେଣ, ବାହୁ=ସର୍ପ, ବକଲଡ଼ାକ=ବେଙ୍ଗଶବ୍ଦ ।

୧୩ । ବିଟପୀ—ଗଛ, ପାଇକଙ୍କ ଦମ୍ଭଭାଙ୍ଗିଲା ବୁଇକୂଳ ଗଛ ବଢିରେ ଉପୁଡିଲା ପରି ପାଇକଙ୍କ ଦମ୍ଭ ଭାଙ୍ଗିଲା, ରବିର—ସୂର୍ଯ୍ୟର, ମଧ୍ୟପଥ —ମଝିବାଟ, ବା ଅକାଶ, ଦେବସୁତ—ଅରୁଣ ସାରଥି ।

୧୪ । ଅପସରୀବାର—ସ୍ୱର୍ଗବେଶ୍ୟାମାନେ, ମଳୟ୍ୱାଦ—ବାସନା ଛନସ, ଗନ୍ଧସାର —ଚନ୍ଦନ, ଚଇତ୍ରରଥ—ଇନ୍ଦ୍ର, ନନ୍ଦନ—ନନ୍ଦନ ବନ, ପୁଷ୍ପ ବସ୍ଥାନ— ଫୁଲସ୍ଥାନ, ସଘନ—ଶୀଘ୍ର, ଶମନବାସ—ଯମ ଭୁବନ ।


Digitized by srujanika@gmail.com

ବବାସ ଦଶନେ ଭୂଷଣ ଅଜସ୍ର ପଲାଇତ ରିପୁ କଣ୍ଠବଶେ ହେ । ସ୍ନିଗ୍ଧ ବେଣୀ ଧର ନାସ୍ତିମଧ୍ୟେ ତେ ନିବାସ କର ଲତା ବୃକ୍ଷ ଶୀତ ପ୍ରାପ୍ତେ ଦଶେ ହେ । ୧୫ । ଅରିନାରୀ ଏ ଭ୍ରମନ୍ତ ସ୍ୱେଦନସ୍ୱରେ ପୂରନ୍ତ ହରଡମାନଙ୍କୁ ଛାଡ଼ି ଚଳେ ହେ । ଅଶ୍ରୁରେ ପଙ୍କିଳ ମହୀ ହୋଇବାରେ ହାଳକେ ଗୃହ ଦ୍ରୁଷ୍ଟି ଚରଣେ ଉଦ୍ୟାପ୍ତି ହୋଇଲେ ହେ । ୧୬ । କରୁଣ୍ଡୁଁ କଟକଙ୍କଣ ବନ୍ଧି ହେଲେ ବନୃଗଣ କ୍ଳିଣ୍ଣାଙ୍କର ପ୍ରାପ୍ତ ଶତ୍ୟ-ବୀଜ ହେ । ଶିରରେ କରୁଣା ଭର ଘୃଣ-ଦେଲା କେତେ ଅର ମହାକାରୁଣିକ ଯୁବରାଜ ହେ । ୧୭ । ଦେଖି ନୃପଜ ଚରିତ ଦେବଙ୍କୁ ହେବେ କଥିତ ନବରସେ ନବଗ୍ରହ ଏହି ହେ । କୃପାରେ ସୁର ନିଷ୍ଠୁର ବୀରରସେ ତେଜ୍ଞ ପ୍ରାପ୍ତ ଅଦରସେ କଟକଣ ବହି ହେ ।୧୮। ଅଦ୍ଭୁତେ ମଙ୍ଗଳ ସତ ହାସ୍ୟରେ ମନ୍ଦ ବଢନ୍ତ ଭୟାନକେ ଡମ ପରମାଣ ହେ । ଗ୍ରହବର ବିଭତ୍ସରେ ବୁଧ ଏ ରୌଦ୍ରରସରେ ଶାନ୍ତରେ ଚନ୍ଦ୍ରମାପର କାଣ ହେ । ୧୯ । ଏ ଶନୁ ସିଂହସ୍ଥିତିରେ କୀର୍ତ୍ତେ ଅମ୍ବ ଉପକାରେ ଏବେ ହେଉ କନ୍ୟାରେ ଏ ଯୋଗ ହେ । ଶାପକାଳ ହେଲା ଲୋପ ବନାଣ ମାନସ ତାପ ପୂରେ କରୁ ମହାମହ ଭୋଗ ହେ ॥ ଏସନ ସନ୍ତୋଷ ସନ୍ତୋଷ ରଥ ଉଡ଼ିଲା ଗଗନେ ଉଡଖଣ୍ଡେ ଘୃଣ ଅନ୍ତର୍ଦ୍ଧାନ ହେ । ପିଶାଚ ପ୍ରେତ କୁଷ୍ମାଣ୍ଡ ଜମ୍ବୁକ ଡ଼ାକିନୀ ରୁଣ୍ଡ ଗୃଧ୍ରବୃନ୍ଦ ମଣ୍ଡିଲେ ଶ୍ମଶାନ ହେ । ଭୂତ ମଧ୍ୟରେ ଅଧିପ ଏ ତିନିହେଁ ଚଣ୍ଡରୂପ ଅଘୋର ଘଣ୍ଟ କପୋଳଘଣ୍ଟ ହେ । ଗୃହ ବସ୍ତୁ ହୋଇଲେ କି କୃତ୍ୟ କଲା ବୋଇଲେ ଏବେକାଳେ ପ୍ରେତେ ହେବେ

---

୧୫ । ବାଳ—କେଶ, ବବାସ—ଲଙ୍ଗଳା, ଅଜସ୍ର—ଅସଂଖ୍ୟ,

୧୬ । ଅରିନାରୀ—ଶତ୍ରୁମାନଙ୍କ ସ୍ତ୍ରୀ, ସ୍ୱେଦନ—କାନ୍ଦିବା, ହରଡ—ହଗ, ପଙ୍କିଳ—କାଦୁଅ, ହାଳକ—ଚଷା,

୧୭ । ଯସ୍ୟବୀଜ—ବାହନ, କାରୁଣିକ—ଦୟାଳୁ,

୧୮ । କୃପା—ଦୟା, ସୁର—ସୂର୍ଯ୍ୟ, କ୍ରୂର—ବୀର, ରସ—୯ ପ୍ରକାର, ଅଦ୍ଭୁତ ବୀର, କରୁଣ, ହାସ୍ୟ, ରୌଦ୍ର, ଭୟାନକ, ଶୃଙ୍ଗାର, ବିଭତ୍ସ, ଓ ଶାନ୍ତ ମାନସତାପ—ମନଦୁଃଖ, ମହାମହ—ଅତ୍ୟନ୍ତ ଆନନ୍ଦ ।

୨୧ । ପିଶାଚ—ପ୍ରେତ, କୁଷ୍ମାଣ୍ଡ ଏସବୁ ପ୍ରେତ, ଜମ୍ବୁକ—ବିଲୁଆ. ଗୃଧ୍ରବୃନ୍ଦ—ଶାଗୁଣା ସବୁ ।

୨୨ । ଭୂତମାନଙ୍କ ମଧ୍ୟରେ ଏ ତିନିଜଣ ରାଜା । ଯଥା—ଚଣ୍ଡରୂପ, ଅଘୋର ଘଣ୍ଟ, କପୋଳ ଘଣ୍ଟ । ତୁଷ୍ଟ—ସନ୍ତୋଷ,

ତୃଷ୍ଣ ହେ । ୨୨ । ଭରତେ ଏ ରୂପେ ରକ୍ତନଦୀ ହୋଇଥିଲା ବ୍ୟକ୍ତ ବୋଲି ଚଣ୍ଡରୂପ ପରିଷ୍କାର ଯେ । କଲ୍କି ମରଣରେ ଏତେ ଶବ ଦେଖିଥିଲି ନେହେ ଅଲୋକତ ଭୋଜ ପ୍ରେତେ ଦେଲା ଯେ । ୨୩ । ପିଇଲେ ରୁଧିରପଣା ପରରେ ଓପ୍ରତ ଅଗଣା ପଣ୍ଡପର ମୁଣ୍ଡ ଗୋବାଇଲେ ଯେ । ପାଇଲେ ସେ ଭୁଜ ପାଦୁଁ ପଦ୍ମଜପଦାର ସ୍ୱାଦୁ ନଖ କଣ୍ଟକ ବାହାର କଲେ ଯେ । ୨୪। ଘୃତପର ପ୍ରେତ ଲେହ ନୃତ୍ୟ କଲେ ଗୀତ ଗାଇ ହୁଦ ମେଦ ବ୍ୟଞ୍ଜନ ସୁସ୍ୱାଦେ ହେ । ମାତଲେ ଜରତମାନେ ପିଞ୍ଜାମାଂସେ ଶର ମୂନେ ପ୍ରବ- ର୍ତ୍ତିଲେ ବୀର ଆଶୀର୍ବାଦେ ହେ । ୨୫ । ପ୍ରେତରଙ୍କ ନିଃଶଙ୍କରେ ଶବ ପକାଇ ଅଙ୍କରେ ଚରଣ ଲମ୍ବାଇ ବସିଛନ୍ତି ଯେ । କରନ୍ତି କବଳ ପଳ ଦେଖାଇ ଆପଣା ବଳ ମାଉ ପାଦେ ଶବ ଶିବାପନ୍ତି ଯେ । ୨୬ । ଶ୍ୱାନ ପାଞ୍ଚସାତ ରୁଣ୍ଡ ଓଟାରନ୍ତି ଏକପିଣ୍ଡ ଖଣ୍ଡଖଣ୍ଡ କରି ଘେନି ଯାଇ ହେ । ଲୁଗୁଇ ଗୁଳୁତଳରେ ପୁଣିହିଁ ସେହି ପ୍ରକାରେ କୌଣପ ପଧକୁ ଅଧେ ଧାଇଁହେ । ୨୭ । ଗୃଧ୍ରେ ଯେ ହୋଇ ଫୁଲୁଣା ଚଞ୍ଚୁକୁ ବିସ୍ତାରି ଡେଣା ହଲାଇ ପତ୍ରିଶିତାଶନେ ଯେ । ଯେତେଯତେ ପାଇଲେ ତେତେ ବହିଲେ ଭୋଜନ ଅନ୍ତେ ପ୍ରେତେ ବହୁତକାଳ ବଞ୍ଚନେ ହେ । ୨୮ । ଭଲେ ସ୍ୱ ଦେଖି ଶୂନ୍ୟ ଜାଣିଲେ ପଞ୍ଚବଦନ କେତେ ସୁକଲ୍ୟାଣ କଲେ ତୋଷେ ସେ । ଆଶୀର୍ବାଦ କରିବାକୁ ମୁନି ନ ଦେଖି ବୀରକୁ ପ୍ରବେଶ ହେଲେ କର୍ଣ୍ଣାଟଦେଶେ ସେ । ୨୯ ।

---

୨୩ । କଲ୍କି ମରଣରେ—କଲ୍କି ଅବତାର ବେଳେ ଯେତେବେଳେ ମ୍ଳେଚ୍ଛ ନାଶ ହେଲେ, ବ୍ୟକ୍ତ—ପ୍ରକାଶ,

୨୪ । ଅଗଣା—ଅସଂଖ୍ୟ, ମତ୍ସ୍ୟ—ମାଛ ।

୨୫ । ଲେହ—ଚାଟିବା, ମେଦ—ମାଂସ, ବ୍ୟଞ୍ଜନ—ତରକାରୀ ।

୨୬ । ପ୍ରେତରଙ୍କ—ପ୍ରେତଙ୍କ ମଧ୍ୟରେ ଯେଉଁମାନେ ରଙ୍କଲା, ନିଶଙ୍କରେ— ନିର୍ଭୟରେ, ଶବ—ମୂର୍ଦାର, ଅଙ୍କରେ—କୋଳରେ, ଚରଣ—ଗୋଡ଼ କବଳ—ଗ୍ରାସ, ପଳ—ମାଂସ, ଶିବାପନ୍ତି—ବିଲୁଆ ମାନେ ।

୨୭ । କୌଣପ—ଅସୁର ।

୨୮ । ଫୁଲୁଣା—ଅନନ୍ଦ, ଚଞ୍ଚୁ—ଥଣ୍ଟ, ପିଶିତାଶନେ—ମାଂସ ଖାଇବାରେ ଅନ୍ତେ—ଶେଷେ ।

୨୯ । ପଞ୍ଚବଦନ—ମହାଦେବ, ସୁକଲ୍ୟାଣ—ଆଶୀର୍ବାଦ ।

ଜଗଠ ବନ୍ଧୁ ଅଧର ଭରତଜ୍ୟେଷ୍ଠ ସୋଦର ନିରତେ ମୋ ଚିତ୍ତେ ଭଜ ସଦ୍ମ ହେ । କହେ ଉପେନ୍ଦ୍ର ଭଞ୍ଜ ପ୍ରଭେ ରଘୁବଂଶରାଜ ଅଯୋଧ୍ୟାରାଜନ ପରଂବ୍ରହ୍ମ ହେ । ୩୦ ।



## ଷଟ୍‌ଚତ୍ୱାରିଂଶ ଛାନ୍ଦ ।

ରାଗ—କଳସା ।

( ଚନ୍ଦ୍ରଭାନୁର ସ୍ୱଦେଶରେ ଲାବଣ୍ୟବତୀ ନିକଟରେ ପ୍ରବେଶ )

ଗୁଣବନ୍ତେ ଏ ଗୀତମଣିକି ମାଳା କର । ନିର୍ଗୁଣେ ନ ଦେଇବାକୁ ନାହିଁ ମୋ ବର୍ତ୍ତିବ ହେ ॥ କୁମର ଦେଖି ସ୍ୱଦେଶାଗତ ପୁରୁଷକୁ । ପଚାରିଲେ ନିଜ ରାଜ୍ୟ ଶୁଭ ସନ୍ଦେଶକୁ ଯେ ॥ ସେ କହିଲା ସର୍ବଶୁଭ ମନ୍ଦ ଏତେ ମାତ୍ର । ସିଂହଳ ନୃପତି ଜେମା ଅତିକ୍ଷୀଣ ଗାତ୍ର ହେ । ୩ । ନ ରହୁଛି ନିଜ ନୟନରେ ଅଜ ନୀର । ନ ଉଠୁଛି ଅବନୀଶୟନୁ ନିରନ୍ତର ଯେ । ୪ । ନବଦ୍ୟ ତାପ ଲଭୁଛି ନୃପତିକୁମାରୀ । ବିଳାପକଳାପ ତାର ଭୂତାବେଶ ପରି ଯେ । ୫ । ପଦ୍ମିନୀରେ ଉପଚାର କରିବାକୁ ଯେନ ।

---

୩୦ । ଜରଠ—ବୁଢ଼ା, ପାଚିଲା; ସୋଦର—ଭାଇ, ନିରତେ—ସର୍ବଦା, ସଦ୍ମ—ଘର ।

ଚନ୍ଦ୍ରଭାନୁ ଦୂରଦେଶରେ ରହି ସେଠାରେ ଯୁଦ୍ଧକରି ଅନେକ ଦୁଷ୍ଟମାନଙ୍କୁ ମାରି ସମସ୍ତଙ୍କୁ ଅଭୟଦେବାରୁ ଓ ସପ୍ତଦ୍ୱୀପ ଭୂମି ଦୁଷ୍ଟନାଶିବାରୁ ତାର ଯଶ ସମସ୍ତ ସଂସାର ମର୍ତ୍ତ୍ୟ, ପାତାଳ ଓ ସ୍ୱର୍ଗରେ ମଧ୍ୟ ବ୍ୟାପିଲା ଦେବତାମାନେ ତାର ତେଜ ଧୈର୍ଯ୍ୟ ଧାର୍ମିକତା ଦେଖି ଶାପ ତ୍ୟାଗ କଲେ ତହୁଁ ସ୍ୱଦେଶକୁ ଆସିଲା ।



## ଷଟ୍ ଚତ୍ୱାରିଂଶ ଛାନ୍ଦ ।

୨ । ସ୍ୱଦେଶାଗତ—ନିଜଦେଶରୁ ଆସିଥିବା, ସନ୍ଦେଶ—ଖବର ।

୩ । ସିଂହଳ ନୃପତିଜେମା—ସିଂହଳ ରାଜ କନ୍ୟା ଲାବଣ୍ୟବତୀ ।

୪ । ଅବନୀ—ପୃଥିବୀ, ନିରନ୍ତର—ସର୍ବଦା ।

୫ । ନବଦ୍ୟ—ଅତ୍ୟନ୍ତ, ତାପ—କଷ୍ଟ,( କାମକଷ୍ଟ) ଭୂତାବେଶ—ଭୂତଲାଗିବା ବିଳାପ କଳାପ—କାନ୍ଦିବା ସବୁ ।

୬ । ପଦ୍ମିନୀରେ—ଲାବଣ୍ୟ ବତୀଠାରେ, ସରସୀ—ପୋଖରୀ ।


Digitized by srujanika@gmail.com

ସରସୀପାଳେ ହେଲେଣି ପଦ୍ମିନୀବିହୀନ ଯେ ॥ କାଳିପରି ପରଶେ ଥେଜିବା ପରି ଦେହ । ଦେହଳୀ ବଳି ଚଳିବା ଭଳି ବଳ ନାହିଁ ଯେ । ୭ । ହାରିବରେ ସଦନ ତ ଦଣ୍ଡେ ଶୂନ୍ୟ ନାହିଁ । ହାରି ବରେ ଭୁଜଙ୍ଗମ ଭ୍ରମ ହୃଦୁଜାଇ ଯେ । ୮ । ଚଞ୍ଚରେ ଦେଖଇ ପୁଚ୍ଛିବାକୁ ତୁମ୍ଭ ବାର୍ତ୍ତା । ବଳିଭୃଙ୍ଗେ ବଳିଦେଇ ତ୍ରିବଳୀଶୋଭିତା ଯେ । ୯ । ଯେତିକି ବିଲମ୍ବ ତୁମ୍ଭ ପ୍ରଲମ୍ବ-କୁନ୍ତଳା । ସେତିକି ସେତିକି କରୁଅଛି ଜୀବେ ଛହଳା ଯେ । ୧୦ । କେତେଁଭାବେ ଜୀବଅଛି ନୁହଇ ଗୋଚର । ଦୂର କଲଣି ସମସ୍ତ ଆହାର ବିହାର ଯେ । ୧୧ । ବିହାର ଏତିକି ତୁମ୍ଭ ରୂପ ଦିଶେ ଦିଶେ । ଜଠି କୋଳ ଭରିବାକୁ ହୁଅଇ ଲାଳସୀ ଯେ ।୧୨। ଅଧର ଏତିକି ଅଧରରସ ଆସ୍ୱାଦକୁ । ତଳୁଁଛି ଲଭିବା ଲୋଭ ଅଛି କି ଜୀବକୁ ଯେ । ୧୩ । ବେନି ଅଳଙ୍କାରୁ ବେନି ହୋଇଛି ମଣ୍ଡନ । କରବେ ଅତୁଲ୍ୟ ପ୍ରତିଅଙ୍ଗରେ ତପନ ଯେ ।୧୪। ଜୀବେ ଅଛି ଶୁଣିବାକୁ ହରଷଲହରୀ । ବିରସ ସବୁଁ ତାର ବାହାର ବିହର ଯେ । ୧୫ । ସେ ରତିଙ୍କ ସିନ୍ଧୁଜାତ ତୁରଙ୍ଗ ଅଣାଇ । ଅରୋହଣେ ପବନ ପରାପ୍ଲୁ ଜଡ଼ଯାଇ ଯେ । ୧୬ । ଯାଜ ଯାଜ ବିଗୁର କରଇ ମନେ ମନ । କରିବରଗମନା କରିବ ପରା ମାନ ଯେ । ୧୭ । ସେତିକି ବେଳକୁ ବୁଦ୍ଧିସ୍ଥ ଲକ୍ଷ୍ଣ ସୋତେ । ବନ୍ଧୁ ମୁଁ ବିଚ୍ଛେଦ ହୋଇଥିଲି କି ଅଯୁତେ ଟୋ । ୧୮ । ଶିବ କରିବେ ଏ ଶିବ ଏମନ୍ତ ବେଳରେ । ଭେଟ ହୋଇବଟି ମୋର ବାନ୍ଧବୀ ତୁଳିରେ ଯେ । ୧୯ । ମୋ ପାଶକୁ ଦୂତ କରୁଥିବ

---

୭ । ଦେହଳୀ—ଦ୍ୱାରବନ୍ଧ ।

୮ । ହାରିବରେ—ହାଣ୍ଡିରେ—ବେକରେ ପିନ୍ଧିଥିବା ହାର ଶ୍ରେଷ୍ଠରେ, ସଦନ—ଘର ।

୯ । ଚଞ୍ଚରେ—ଶୀଘ୍ର, ବଳିଭୃଙ୍ଗେ—ଭ୍ରୁଆମାନେ, ବଳି—ବୃତ୍ତିଦେବା ।

୧୦ । ତ୍ରିବଳୀଶୋଭିତା—ଲାବଣ୍ୟବତୀ, ପ୍ରଲମ୍ବକୁନ୍ତଳା—ଘନ ଲମ୍ବାଲଯୁକ୍ତା

୧୧ । ଆହାର—ଖାଇବା, ବିହାର—ଖେଳାବୁଲା,

୧୪ । ଅତୁଲ୍ୟ—ହାତଖଡ଼ୁ, ପ୍ରତିଅଙ୍ଗରେ—ଦେହଯାକ, ତପନ—ତାତିଲା ।

୧୬ । ସିନ୍ଧୁଜାତ ତୁରଙ୍ଗ—ଶୀଘ୍ର ଦୌଡ଼ ପାରିବା ଘୋଡ଼ା, ଅରୋହଣ—ଚଢିବା ।

୧୭ । କରିବର ଗମନା—ଗଜଗମନା ।

୧୯ । ଶିବ—ମହାଦେବ, ମଙ୍ଗଳ ।

ମଦାଳସୀ । ଭୃଙ୍ଗ ଅବା କୋକିଳ ସରସରସଭାଷୀ ଯେ । ୨୦ । ଅଜାଣେ ମୁଁ ପଶୁଁ ଯାଇ କରିବ ଅଶ୍ଳେଷ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ । ୨୨ । ଅହେ ନବଗ୍ରହେ ବନ୍ଧୁ ଦରଶନ ବେଳେ । ମୋର ଗ୍ରହି ଏକାଦଶେ ରହ ଏକମେଳେ ଯେ । ୨୨ । ଲେଖୁଥିବ ମୋ ପ୍ରାଣଙ୍କୁ ସପ୍ରେମ ଚିହ୍ନାଇ । ନ ଜାଣୁ ତା ନିକଟକୁ ସୌଭାଗ୍ୟ ଭେଟାଇ ଯେ । ୨୩ । ବେଗେ ବୋଲିବ ଅଇଲ୍ଲ ତୋ ଲେଉଲ ଦାସ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ । ୨୦ । ଦୁର୍ଗାମାଧବ କରିବେ ଏମନ୍ତ ମଙ୍ଗଳ । ମୋ ସ୍ୱରୂପ ପଟେ ବଦଶି ହୋଇ ଭାବେ ହୋଇ ଦେହେ । ୨୫ । ଗୋଜ କରୁଥିବ ନିଜ ଅଧର ଚୁମ୍ବନେ । ଜଗଜମୂଳକୁ ଗୃହି ଦେବ ନଗମନେ ଯେ । ୨୬ । ଚମକି ଗୃହିଁବାବେଳେ ଜନ୍ମ ର ହରଷ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ । ୨୭ । ଯେତେ ଜନ୍ମେ ଯେତେ ପୁଣ୍ୟ କରିଛୁ ମୁଁ ତୁଲେ । ମିଳିଥିବଟି ସୁଦଶା ମେଳ ହେବାକାଳେ ଯେ । ୨୮ । କେଉଁଦିନ ଅସିବେ ମୋ କାନ୍ତ ପରବାସୀ । ବୋଲି ଦେବାବେଳେ ବାଳା ଖଣ୍ଡୀକ ମନାଜି ଯେ । ୨୯ । ଅଗେ ମିଳି ବୋଲିବ ମୋର ସ୍ମର ଅପରାଧ । ଲୁଚିଯାଉ ତୋ ପ୍ରଭୁପଣକୁ କୃପାନିଧି ଗୋ । ୩୦ । ଶୁଣି ଏ ବାଣୀ ଅଧିକ ଦ୍ରବିବ ମୋନସ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ । ଲକ୍ଷ୍ମୀସହ ନୃସିଂହ କରନ୍ତି ଶୁଭଏବେ । ଯେତେବେଳେ ସଖୀ ଶୁଭ ସ୍ୱପ୍ନ କହୁଥିବେ ହେ । । ୩୨ । ଆଜ ଅସିବେ ବଲ୍ଲଭ ଶୁଣି ତୋଷ ହୋଇ । ବାଳା ମାଳା ତୁଡ଼ ରଖୁଥିବେ ସଭଯାଇଁ ଯେ । ୩୩ । ସାକ୍ଷୀ ହେଉଥିବ ଜଣେ ମିଳି ସହ-ଚରୀ । ତେତେବେଳେ ପ୍ରବେଶ ମୁଁ ହେଲେ ଯାଇଁ କରି ଯେ । ୩୪ । ସଖି ଡ଼ାକଦେବ ଅନଳିକଜ୍ଜଳ ଅସ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ । ୩୫ । ଏସନ ବଗ୍ରଚମାନ କରଇ ମାନସ । ସରଳ ସରଣୀ କାନ୍ତି-ନଗ୍ରେ ପରବେଶ ଯେ । ୩୬ । ଠାବେ ଠାବେ ପଡ଼ଅଛୁ ସମର ଚରିତ ।

---

୨୦ । ମଦାଳସୀ—ରସିକା, ସରସ ରସଭାଷୀ—ଚତୁରଭାବରେ କଥା କହୁବା ସ୍ତ୍ରୀ ।

୨୧ । ଅଶ୍ଳେଷ—ଆଲିଙ୍ଗନ, ଅବକାଶ—ପୁରୁଷେର ସମୟ ।

୨୨ । ଲଗ୍ନର ଏକାଦଶରେ ସବୁଗ୍ରହ ରହିଲେ ଶୁଭହୁଏ ।

୩୫ । ଜଜ୍ଜଳଇ—ବଳାଇବାକୁ ।

୩୬ । ସରଣୀ—ବାଟ ।

ସଂସପ୍ତକ କାଳକେୟ କରବର ହତ ଯେ । ୩୭ । ବୀର ଅଦଭୁତ କୀର୍ତ୍ତି କରନ୍ତି ବଚନେ । ସ୍ଥାନେ ସ୍ଥାନେ ପଢୁଛନ୍ତି ବୋଧକାରମାନେ ଯେ ।୩୮। ସେ କରନ୍ତି ଆବେଶରେ ତୁଷ୍ଟ ନରେଶ୍ୱର । ପ୍ରବେଶରେ ଅଭିଷେକ କରବେ କୁମର ହେ । ୩୯ । ଶୁଣି ମନେ କରୁଅଛି ସେ ଯୁବା ଭୁଜାନ । ଅଶୀର୍ବାଦ କର ନୀକ ଗଲେ ପୁରମ୍ଭନୀ ଯେ । ୪୦ । ଯିବାର ଛଟକ କେହୁ ନ ଦେଖିବେ କେବେ । ଧନ୍ୟ ଅଶ୍ୱ ଧନ୍ୟ ସାଦୀ ହୋଇଲେ ସମସ୍ତେ ଯେ । ୪୧ । ସଦରଦ୍ୱାର ଦ୍ୱାଃସ୍ଥରେ ନମସ୍କାର ପର । ଉତ୍ତର ସେ ଶୁଦ୍ଧାନ୍ତ ଗମନେ କ୍ଷିପ୍ର ହୋଇ ଯେ ।୪୨। ତହିଁ ଶିଳ୍ପକାରକାଏ କଥା ପରସ୍ପର । କି କରବାଟି ହୋଇଲା ଅସର ବାସର ଯେ । ୪୩ । ଅସର ହୋଇବ କେବେ ମନସିଜ ସୁଖ । ପାଞ୍ଚ ନୋହେ ପାଞ୍ଚ ପାଞ୍ଚ କୋଟି ତା ବିଶିଖ ଯେ । ୪୪ । ମାଳିନୀ ବୋଲୁଛି ନିତମାନ ଅସୁଥାଇ । ବରଷେ ହୋଇଲା ପୁଷ୍ପବାଟୀ ନ ସରଇ ଗୋ । ଚେଟୀଏ ବୋଲନ୍ତି ବନ୍ଦୀ ମୋକ୍ଷ ଶୁଭ ସାଗ୍ର । ବଟି ବାଟି ଉଶୀର ଗନ୍ଧିଣି ହସ୍ତ ସବ ଗୋ ୪୬ । ପ୍ରୌଢ଼ା ସଜନୀଙ୍କ ତହିଁ ନବୋଢ଼ା ପଶୁରେ । ଫୁଲଶର ଭେଦେ କେହୁ ଗିରସ୍ତନା ଉରେ ଗୋ । ୪୭ । ସେ ତାହାଙ୍କୁ ପ୍ରତିଭାତ କରୁଛି ତହିଁକ । ଗଣନାରେ

---

୩୭ । ସଂସପ୍ତକ—ପ୍ରତିଜ୍ଞାବଦ୍ଧ ଯୋଦ୍ଧା, କାଳକେୟ—ଦୁର୍ଦ୍ଧର୍ଷ ରାକ୍ଷସମାନେ ।

୩୮ । ବୋଧକର—ଭାଟ ।

୪୦ । ଯୁବା ଭୁଜାନ—ଯୁବକର ଭୁଜବଳ, ଅଶୀର୍ବାଦ—କଲ୍ୟାଣ ।

୪୧ । ସାଦୀ—ଘୋଡ଼ସବାର ।

୪୨ । ଦ୍ୱାଃସ୍ଥ—ଦ୍ୱାରୀ, ଶୁଦ୍ଧାନ୍ତ—ଉଆସ ।

୪୩ । ଶିଳ୍ପକାରକାଏ—ସଖୀମାନେ ।

୪୪ । ଅସର—ଅସରନ୍ତି, ବାସର—ଦିନ, ମନସିଜ—କନ୍ଦର୍ପ, ପାଞ୍ଚ—ଜାଣିବା, ପାଞ୍ଚଟି ।

୪୫ । ପୁଷ୍ପବାଟୀ—ଫୁଲ ବଗିଚା ।

୪୬ । ଚେଟୀଏ—ଦାସୀମାନେ, ବନ୍ଦୀମୋକ୍ଷ—ବନ୍ଧରୁ ଛିଟିବା, ଉଶୀର—ବେଣା ।

୪୭ । ପ୍ରୌଢ଼ା—ବୟସ୍ଥା, ପୁରୁଣା, ନବୋଢ଼ା—ନୂଆସଙ୍ଗି, ଗିରସ୍ତନା—ପର୍ବତ ସ୍ତନୀ, ଉର—ବକ୍ଷ ।

୪୮ । ପ୍ରତିଭାତ—ଉଜ୍ଜ୍ୱଳ, ଅମ୍ବୁଜ—ପଦ୍ମ, ଚନ୍ଦ୍ର, କାମର ପଞ୍ଚଶରରେ ମଧ୍ୟ ପଦ୍ମ ଓ କଇଁ ଅଛି ।

ଅମୁକ ଯୋଡ଼ାଏ ଅଛୁ ଝିକ ଗୋ । ୪୮ । ଶୁଖିଲ୍ଲ ମୃଣାଳ ନାଳେ ଚତ୍ଵର ସଘନ । ପାକ କଲ୍ଲ ଶାକପତ୍ର ନବଛଦମାନ ଗୋ । ୪୯ । ଭର୍ତ୍ସି ବଦନ କେ ଗୋଡ଼ୁଛୁ କେ ଛଡ଼ୁଛୁ । ସ୍ଫୋଟକ ଜନ୍ମିବ ଏଥି ନୁହଇ ଏ କଛୁ ଗୋ । ୫୦ । ବ୍ୟଜନ ଧରୁଁ କେ ବଞ୍ଚିବାକୁ ସ୍ନେହଭରେ । ଉଡ଼ ଯାଉଥାଇ ନିକ ବୋଲ କେଁ ନବାରେ ଯେ । ୫୧ । କେ ବୋଲେ ତାହାକୁ ମୁଁ ଯାଉଛୁ ସ୍ନାନ କର । ମୋହ ଗଲେ ମୁଖେ ନ ସିଞ୍ଚିବ ଶୀତ ବାର ଗୋ । ୫୨ । ବରଷା ପ୍ରାୟ ମଣିଲେ ପ୍ରମାଦ ପଡ଼ିବ । ଅଙ୍କରେ ପକାଇ ଶ୍ରବଣରେ ଫୁଙ୍କ ଦେବ ଗୋ । ୫୩ । କେବଣ ସଜଣୀ ହୋଇ ସଜଳଲୋଚନା । ନବପଲ୍ଲବରେ ଶେଯ କରୁଛୁ ରଚନା ଯେ । ୫୪ । କେ ସଖୀ ପାଶରେ ବସିକରେ ଅଶ୍ଵାସନା । ବୋଲେ କଥା ତ ନ କହୁ କରକରଦନା ।୫୫। ଭଲ ନ ଦେଖିଲୁ ଧନେ ନାଗସ୍ତ୍ରୀତଳକ । ଏହି କଥାହିଁ ତୋହର ନ ଗଲା କାଳକ ଗୋ । ୫୬ । କ୍ରୋଧଭର ହୋଇ କେହୁଁ ସଜଣୀ ବୋଲୁଛୁ କେ ତାହା ଭୁଞ୍ଜିବ ଯାହା ଅପେ ଅରଜୁଛୁ ଗୋ ।୫୮। ଅଜ କେ କହିଲା ଏହା ବୋଇଲ କ କର । ସମଦ୍ରବେ ଅନୁରାଗୀ ହୋଇଲା ସୁନ୍ଦରୀ ଯେ ॥ ରଶାଣହେମ ଅଙ୍ଗୀକ ଥିଲା କ ଗୋଚର । ବଲ୍ଲଭ ହୃଦୟ ହେବ ପାଷାଣ

---

୪୯ । ମୃଣାଳନାଳେ—ପଦ୍ମନାଡ଼ରେ, ଚତ୍ଵର—ଅଗଣା, ଶାକ—ଶାଗ, ପାକ—ସିଝ, ନବଛଦ—କଅଁଳଅ ପତ୍ର, ଖରକ ତାପଦେବୁ ଲାବଣ୍ୟବତୀ ଦେହରେ ପଦ୍ମନାଡ଼ ଦେବାରୁ ସେ ଶୁଖିଯାନ୍ତେ ତୁଅରକୁ ଫୋପଡ଼ା ହୋଇଛୁ । ପତ୍ରସବୁ ସିଝା ହେଲା ପର ହୋଇଛୁ ।

୫୦ । ଛଡ଼ୁଛୁ—ଗାଳ ଦେଉଛୁ, ସ୍ଫୋଟକ—ଫୋଟକା ।

୫୧ । ବ୍ୟଜନ—ବଚଣା ।

୫୨ । ଶୀତ—ଥଣ୍ଡା, ବାର—ଜଳ ।

୫୩ । ଅଙ୍କ—କୋଳ, ଶ୍ରବଣ—କାନ ।

୫୪ । ସଜଳ ଲୋଚନା—ଲୁହଯୁକ୍ତ ଅଖି ( କାନ୍ଦ କାନ୍ଦ ଅବସ୍ଥା ), ରଚନ—ତିଆରିବା ।

୫୫ । ଅଶ୍ଵାସନା—ବୋଧଦେବା, କରକ ରଦନା—ଡ଼ାଳିମ୍ବଦନ୍ତ ।

୫୬ । ନାଗସ୍ତ୍ରୀ ତଳକ—ସ୍ତ୍ରୀ ଶ୍ରେଷ୍ଠ ।

୫୮ । କ୍ରୋଧଭର—ରାଗ ।

୫୯ । ସମଦ୍ରବେ—ସମାନ ଜନଷରେ, ଅନୁରାଗୀ—ସ୍ନେହୀ ।

୬୦ । ରସାଣ ହେମଅଙ୍ଗୀ—ପାଲସ ସୁନାଦେହୀ, ଗୋଚର—ଜଣା, ପାଷାଣ—ପଥର ।

ପ୍ରକାର ଓଗା । ୬୦ । କେ ବୋଲନ୍ତି ରସିକ ରଞ୍ଜନ ରଘୁକୁଳ ଦେଶଦେଶୀ
ହୋଇଲେ ସୀତା ଓଘେନି ସଙ୍ଗତର ଯେ । ୬୧ । ଏହି [illegible]ର
ସୋପାନେ ଝାର ମିଳ । ମଦନସୁନ୍ଦର ବଳେ କଲେ ଜ[illegible]ଲି ଯେ ।
ଏ ବାଣୀ ଶ୍ରବଣେ ବିମ୍ବଓଷ୍ଠୀ ଉଠିବାକୁ । ମନ [illegible] ସମୀପେ
ସେଠାକୁ ଯେ । ମଲି ମଲି ଅନାସ୍ଥିତ ହେଲି ଏହା କଲି । ଲବଣୀ ପିତୁ-
ଳାକୁ ବିଷମଶରେ ହେଲି ଯେ । ୬୪ । ଯେ କଲା ବିଚ୍ଛେଦ ବଜ୍ରପଡୁ ତାର
ଶିରେ । ଏତେ ବୋଲି କୋଳ କରି ଡାକିଲା ସଖୀରେ ଯେ । ୬୫ ।
ହୃଦରେ ଲଗାଇଁ ଶୀତଳକୁ ଲଭି ବାଳା । ବିବେକ ପ୍ରସର କାନ୍ତ ମୁଖକୁ
ଗ୍ଭହିଁଲା ଯେ । ୬୬ । ବେନି ନେତ୍ର ଚକୋର ଚନ୍ଦ୍ରହିଁ ମୁଖ ସତ । ଆନନ୍ଦ
ଅଶ୍ରୁଜଳରେ କଲା ଦ୍ରବୀଭୂତ ହେ । ୬୭ । ଶୋଭି ରତ୍ନମୟ ଭୂମି
ବେନି ଅପଘନେ । ଛଦ୍ମ ନୋହେ ସଦ୍ମଲେ ନୟନ ଖଞ୍ଜନେ ଯେ ।
ପଦ୍ମିନୀର ଆଲିଙ୍ଗନ ଦୋହଦ ହୋଇଲା । ପୁଂସତନୁ ନୀପଫୁଲ ପୁଲକାଇ
ଦେଲା ଯେ । ୬୯ । ପ୍ରଥମା ପରାୟେ ବେନିଦଣ୍ଡ ସ୍ତମ୍ଭୀଭୂତ । ରାମଚନ୍ଦ୍ର ଶାନ୍ତ
ରୂପଇନ୍ଦ୍ର କହେ ଗୀତ ହେ । ୭୦ ।



୬୨ । ସୋପାନ—ପାହାଚ ।

୬୩ । ପ୍ରାଣନାଥ—ସ୍ୱାମୀ ।

୬୪ । ବିଷମଶରେ—କନ୍ଦର୍ପ ଶରରେ ।

୬୬ । ଶୀତଳ—ଥଣ୍ଡା, ବିବେକ ପ୍ରସର—ଜ୍ଞାନ ପାଇବା, ଚେତାହୋଇ ।

୬୭ । ଦ୍ରବୀଭୂତ—ତରଳାଇବା ।

୬୮ । ଅପଘନ—ଦେହ, ଛଦ୍ମ—ଛଳନା ।

୬୯ । ଦୋହଦ—ଅକାଳେ ଫୁଲ ଫୁଟିବା, ନୀପଫୁଲ—କଦମ୍ବଫୁଲ, ପଦ୍ମିନୀ ସ୍ତ୍ରୀ ଲାବଣ୍ୟବତୀ ଆଲିଙ୍ଗନ ହେତୁ ପୁନର୍ବାର ପୁଷ୍ପ ଫୁଟିଲା । ପୁରୁଷ କଦମ୍ବ ଫୁଲ ଭଳିହେଲା ମାନେ ପୁରୁଷର ଲୋମ ଠାଆରେ ଉଠିଲା ।

କାନ୍ତ ବିଚ୍ଛେଦରେ ଲାବଣ୍ୟବତୀ ଘଡଘଡି ମୋହ ହୋଇ ମଲା ପ୍ରାୟ ହେବାରୁ ସଖୀମାନେ ନାନାଦି ଯତ୍ନ କରୁଥିଲେ ଚନ୍ଦ୍ରଭାନୁ ନିଜ ଦେଶରୁ ଫେରି ଏ ସ[illegible] ଶୁଣି ଲାବଣ୍ୟବତୀଙ୍କ ଯାଇ କୋଳ କରନ୍ତେ ସେ ପୁନର୍ବାର ଆନନ୍ଦ ହେଲା ।




Digitized by srujanika@gmail.com

# ସପ୍ତଚତ୍ୱାରିଂଶ ଛାନ୍ଦ ।

ରାଗ—ଖଣ୍ଡକାମୋଦୀ ।

( ଚନ୍ଦ୍ରଭାନୁ ସ୍ୱଦୁଃଖ କଥନ କୀଡ଼ା ବର୍ଣ୍ଣନ )

ରାମା ବସାଇ ଆଗେ ରସାଇ ଅନୁରାଗେ ଗୃଢ଼ୁ କରୁଛୁ ପଚ୍ଛ ଯେ । ବିଚ୍ଛେଦ ହେଲା ଦିନୁ କି ଦଣ୍ଡ ଫୁଲଧନୁ ଦେଲାଟି ଦିନ ରାତ୍ର ଓର । ପ୍ରାଣବନ୍ଧୁ । କେମନ୍ତେ ବଞ୍ଚିଥିଲୁ ରେ । ସ୍ୱପନେ ଦୁଃଖ ଦେଖିନାହୁଁ ଅଜନ୍ମ ସୁଖୀ ମୋ ଲାଗି ଦୁଃଖୀ ହେଲୁ ରେ । ୧ ।

ଯେଣିକ ଗୃହେଁ ମୁହିଁ ସେ ଦଗେ ଦଶୁ ତୁହି ଯେମନ୍ତ ହସୁଥାଉ ରେ । ଅଭିଜାଇ ଅଙ୍କରେ ବସିବ ପଲ୍ୟଙ୍କରେ ନ ଥିଲା ମନେ ଆଉ ରେ । ପ୍ରାଣବନ୍ଧୁ । ସର୍ବ ଲାବଣ୍ୟସିନ୍ଧୁ ରେ । ମୋର କି ଭାଗ୍ୟ ଥିଲା ଧାତା ତୋତେ ରଖିଲା ମଦନ ବନ୍ଧୁ ବନ୍ଧୁରେ । ୨ ।

ଯେଉଁ ନୟନଭଙ୍ଗୀ ଯୋଗୀନ୍ଦ୍ର ଯୋଗଭଙ୍ଗୀ ଅଙ୍ଗୀକାର କରିଛୁ ରେ । ଭବ ସୁମର ତହିଁ ଅଶ୍ରୁ ଥିଲୁ ପୂରାଇ ଏ ଗୁଣ ହେବ ମୂର୍ଚ୍ଛିରେ । ପ୍ରାଣବନ୍ଧୁ । ମଲାଟି ଏତେ ଷୀଣେ ରେ । ବଳୟ ଅଛି କରେ ତୋ ଭଣା ରଢଟିରେ ଦେଉଛୁ ପ୍ରେମ୍ବୀପଣେ ରେ । ୩ ।

ଅବନୀରେ ଅଞ୍ଚଳ ପାଡି ପଡି ଚଞ୍ଚଳ ହୋଇ ଶୟନ କରୁ ରେ । ସେ କଥାମାନ ଗୁଣି ୨ କହୁଛୁ ପୁଣି ଧିକ ମୋଜୀଇବାରୁ ରେ । ପ୍ରାଣବନ୍ଧୁ । ଏ କଥା ଅଛୁ ତୁଣ୍ଡ ରେ । ତୋ ବନୁ ଜୀଇବାର ଦୋଷକୁ କ୍ଷମା କର କହୁଛୁ କର ଯୋଡି ରେ । ୪ ।

କି ଦେଖିଲା ଏ ଆଖି ଫୁଟି ନ ଯାଇ ସଖି ହୃଦ ଫାଟି ନ ଯାଇ ରେ । ମୃତ କରଦଶନ ପିଡୁଲା ପରସନ୍ନ ତୁ ପୁଣି ଅଛୁ ବହି ରେ । ପ୍ରାଣବନ୍ଧୁ । କାଳ କି ନ କରଇ ରେ । ସବୁ ସହଇ ଅନାୟତ୍ତ ମୀନ-ନୟନା ଯେନ ବବେକୀ ତୁହି ରେ । ୫ ।

---

## ସପ୍ତ ଚତ୍ୱାରିଂଶ ଛାନ୍ଦ ।

୧ । ଅନୁରାଗ—ସ୍ନେହ, ଗୃଢ଼ୁ—ବିନୟ କଥା, ବିଚ୍ଛେଦ—ପୃଥକ ।
୨ । ଲାବଣ୍ୟ ସିନ୍ଧୁ—ଶୋଭା ସମୁଦ୍ର ।
୩ । ଯୋଗୀନ୍ଦ୍ର—ବଡ଼ଋଷି, ବଳୟ—ଖଡ଼ୁ ।
୫ । କର—ହାତ, ଦଶନ—ଦନ୍ତ, ପରସନ୍ନ—ଶୋଭାଦେଖାଇବା ।

କେତେ ପ୍ରସନ୍ନମୁଖ ପଦ୍ମ ଶୀତମୟୂଖ ଦର୍ପଣ ଦର୍ପହାରୀ ରେ । ଚରଣ ପରଶ୍ୱର ପାଇଁ ନାଗଶ୍ରବର ହେଲୁ ତ ଏତେସବ ରେ । ପ୍ରାଣବନ୍ଧୁ । ନୋହିଲେ ସହରଷ ରେ । ଲବ ଅନ୍ତର ସୁଦ୍ଧା ନ ଯାଉଥିଲା ଅହା ପୂର୍ଣ୍ଣ ହେଲା ବରଷ ରେ । ୬ ।

ଭିନ୍ନଦିନୁ ଚନ୍ଦନ କରି ନାହୁଁ ସୁମନ ଦେବାର ଥାଉଁ କେଶେ ରେ । ଲୁଚିଯାଇ ତୋ ଭାବ କେବେ ଶୁଝେ ନୋହିବ ସହସ୍ରେ ଅଂଶୁ ଅଂଶେ ରେ । ପ୍ରାଣବନ୍ଧୁ । ମଦନ ବଶ୍ୟରୁଥାଇଁ ରେ । ଇନ୍ଦ୍ର ସମ୍ପତ୍ତି ଦେଲା ଦରିଦ୍ରୁ ହୀନ କଲା କି ଅବିବେକ ବନ୍ଧୁ ରେ । ୭ ।

ପାଶେ ଥିଲା ଦିନରେ ମୋ ଭୋଜନ ଉତ୍ତରେ ତୁହି ଭୋଜନ କରୁ ରେ । ଦୂରେ କମ୍ପ ଅହାର ନ କରିଥିବୁ ଦୂର ଜାଣିଲି ଦୁର୍ବଳରୁ ରେ । ପ୍ରାଣବନ୍ଧୁ । କେଉଁ ଧର୍ମେ ବର୍ତ୍ତିଲୁ ରେ । ପରାଣ ପ୍ରତିଅଶା ସତେ ଲଜ୍ଜିତ ଯୋଷା ମୋତେ ବୁଡ଼ାଇଥିଲୁ ରେ । ୮ ।

ଗରଳ ହୋଏ ହିତ ବେଗବଶେ ଯେମନ୍ତ ତୋ ରକ୍ଷା ସେହି ଭାବ ରେ । ବରଷାକାଳେ ଘନଗର୍ଜନିକୁ ବର୍ଜନ ମୋହ ହିଁ ହୋଇଥିବ ରେ । ପ୍ରାଣବନ୍ଧୁ । ନୟନେ ଅଶ୍ରୁ ପରି ରେ । ଶରଦ ଶଶଧର ନୋହିଥିବ ତୋହର ଦରଶନ ଶର୍ବସ୍ୱ ରେ । ୯ ।

ବରହଅଗ୍ନି କାତ ହୁଦୁଁ ହୋଇ ସନ୍ତତ ଜାଣି ନ ଥିବୁ ଶୀତ ରେ । ଶୁଣି ବେଦନଧ୍ୱନି ପିକ ଦେବା ମଜନ ବଞ୍ଚାଇଲା ବସନ୍ତରେ । ପ୍ରାଣବନ୍ଧୁ । ନ ବଞ୍ଚାଇଲେ ତୋତେ ରେ । ସହିଲେ ମଧୁହାସ୍ୟ ମୋର ଯେଣ୍ଣ ଗୁହାରି କହିଁଛି କୃପାଚିତ୍ତେ ରେ । ୧୦ ।

ନ ଆସୁଥିବ ନିଦ ନିଶିରେ ଲଭି ଖେଦ ଚିତ୍ତେ ପଡ଼ି ମୋ ସ୍ନେହ ରେ । କି ବୋଲୁଥାଉ ମୋତେ ମନେ ମନେ ତୁ ସତେ ଅନ ଅଚ୍ଛୁଟି ଦେହରେ । ପ୍ରାଣବନ୍ଧୁ । ଯାହା ବୋଲନ୍ତି ଜନ ରେ । ପ୍ରିୟାର ମୁଁ କୋପୂର ବାଲ୍ୟଚାନ୍ଦ୍ରୁଁ ତୋହର ମୂର୍ତ୍ତିଟି ଏକା ଯେନ ରେ । ୧୧ ।

---

୬ । ଶୀତମୟୂଖ—ଚନ୍ଦ୍ର, ଚରଣ—ଗୋଡ଼ପାଦ, ପରଶ୍ୱର—ଶଙ୍କର ।
୭ । ସୁମନ—ଫୁଲ, ଅଂଶୁ—ଭାଗରୁ, ଅବିବେକ—ନିର୍ବୁଦ୍ଧିଆ ।
୮ । ଭୋଜନ—ଖାଇବା, ବର୍ତ୍ତିଲୁ—ବଞ୍ଚିଲୁ, ଯୋଷା—ସ୍ତ୍ରୀ ।
୯ । ଗରଳ—ବିଷ, ଘନ—ମେଘ, ଶଶଧର—ଚନ୍ଦ୍ର,
୧୦ । ବେଦନ ଶବ୍ଦ—କାନ୍ଦିବା ଶବ୍ଦ, ମଧୁହାସ୍ୟ—ଶ୍ରୀକୃଷ୍ଣ,
୧୧ । ଅନ—ବ୍ରଣ, କୋପୂର—ଶଙ୍କର,

ବୋଲିବାକୁ ନିଷ୍ଠୁର ଯୋଭ ନାହିଁ ମୋହର ମନକୁ ଭିର ସାକ୍ଷୀ ରେ । ତୋତେ ଧିଅଇ ଯେତେ ଅକୁଳ ହୋଇ ଚିତ୍ତେ ଜାଣୁ ତ ଥିବୁ ଦେଖି ରେ । ପ୍ରାଣବନ୍ଧୁ । ଦୁଃଖକାଳେ ତୋହର ରେ । ସେବାକୁ ଅସି ନାହିଁ ଏଣୁ ଅପ୍ରାଧୀ ମୁହିଁ ବଗୃର ଦଣ୍ଡ ଭର ରେ । ୧୨ ।

ଥାଉଁ ମୋର ଅପୂର୍ବ କେହ୍ନ ଚଳନ୍ତା ଚିତ୍ତ ଭିନ୍ନ ହେବାକୁ ସହି ରେ । ତେବେ ଦୂରେ ରହିଣ ମନ ନୟନ ପ୍ରାଣ ତୋହର ପାଶେ ଥାଇ ରେ । ପ୍ରାଣବନ୍ଧୁ । ଏବେ ସେ ଅନୁଭବ ରେ । ବିପତ୍ତି ବିଚ୍ଛେଦରୁ ବଡ଼ ହୋଇ ରମ୍ଭୋରୁ ଧାତା ବିହି ନ ଥିବ ରେ । ୧୩ ।

ଦେହ ଉପରେ ମନ ପ୍ରଭୁ ପ୍ରମାଣ ଧନ ମନର ପ୍ରଭୁ ପ୍ରୀତ ରେ । ପ୍ରୀତର ପ୍ରଭୁ ନାଗ୍ର ତାକୁ ପୁଣ ପାସୋରି କେହ୍ନୁ ଧରିବ ଧୃତ ରେ । ପ୍ରାଣବନ୍ଧୁ । ପୁଣି ଅବଜ୍ଞା ମୁହିଁ ରେ । ମନକୁ ଅନୁରୂପେ ଯୁବଜ୍ଞା ମିଳେ ତପେ ଏଣୁ ଦୁର୍ଲ୍ଲଭ କହିରେ । ୧୦ ।

ଯେଉଁ ରୂପ ଅନାଇଁ ପଶୁ ପାଷାଣ ଦ୍ରବ ବଶ ଉଚଳ ହେବେ ରେ । ପୁରୁଷମଧ୍ୟେ ସାର ଲୋକ ବୋଲନ୍ତି ମାର ଚିହ୍ନ ମଣୁଛୁ ଏବେ ରେ । ପ୍ରାଣବନ୍ଧୁ । ତୋହ ସମ୍ମୁଖେ ରହୁ ରେ । ପ୍ରହାର କଲା ଶର ସେ ଏଣିକି ନିଷ୍ଠୁର ହାତ ଚଳିଲା କେହ୍ନୁ ରେ । ୧୫ ।

ଦେହ ମନ ଭିତର କ୍ଷଣେ ରହୁ ମାତର ଏମନ୍ତ ପାଞ୍ଚେ ନିତ ରେ । ବେଗେ ଦେବାକୁ ବାତେ ସୂତ କରଇ କେତେ ପାଶେ ଅସିବା ମତି ରେ । ପ୍ରାଣବନ୍ଧୁ । ତୋ ରୂପ ପଟେ ଲେଖି ରେ । ପ୍ରାତୁଁ ଉଠି ଅନାଇଁ ନାମ ତୋର ଜପଇଁ ଗତ ନ ଥାଇ ପକ୍ଷି ରେ । ୧୬ ।

---

୧୨ । ଯୋଭ—ଦୁଃଖ, ଧିଅଇ—ଭାଳ,

୧୪ । ଧୃତ—ଧୈର୍ଯ୍ୟ, ଅନୁରୂପେ—ସମାନରେ, ଦୁର୍ଲ୍ଲଭ—କଷ୍ଟ,

୧୫ । ପାଷ ଣ—ପଥର, ନିଷ୍ଠୁର—ନିର୍ଦ୍ଦୟ,

ଲୋକେ ମନେକରନ୍ତି ପୁରୁଷ ମଧ୍ୟରେ କନ୍ଦର୍ପ ସୁନ୍ଦର ଶ୍ରେଷ୍ଠ କିନ୍ତୁ ମୁଁ ମନେ କରୁଛି ସେ ତୋର ଅତି ସୁନ୍ଦର ମୁର୍ତ୍ତି ଦେଖି ପଥର ପାଣି ଓ ପଶୁ ମଧ୍ୟ ବଶ ହେବ ସେ ଏ ମୂର୍ତ୍ତି ଦେଖି ତୋତେ ଶର ମାରିଲା ତେଣୁ ସେ ବଡ଼ ହୀନ ଅଟେ—

୧୬ । ବାତେ—ପବନେ, ପ୍ରାତୁ—ସକାଳୁ,

ମୁଁ ହେବାର ଏମନ୍ତ କେଙ୍କ ଅଧିକ ପଛ ଥାଇ ତୋ ଅବଧାନେ ରେ । ଏ କଥା ବଡ଼ ସିନା ମୋତେ ଗୁଣି ବେଦନା ସହୁ ତୁ ଦନେ ୨ ଦରେ । ପ୍ରାଣବନ୍ଧୁ । ତୋତେ ତୁ ପଣ୍ଟାନ୍ତର ରେ । ମୋହ ଅଶେଷ ଉପ ସ୍ପୃଶ୍ୟ ନାସ୍ତି ସ୍ୱରୂପ ହୋଇଛୁ ସମାବର ରେ । ୧୭ ।

ଯେ ଜନ ନାସ୍ତିହତେ ରହେ ପୁଣ ଜୀବିତେ ଦନମାନଙ୍କୁ ବଞ୍ଚେ ରେ । ଇନ୍ଦ୍ର ହରେ ଯେ ଥାଇ ସେ କୁଳଶ ନୁହଇ ସେହୁ କୁଳଶ ନାଷ୍ଟେ ରେ । ପ୍ରାଣବନ୍ଧୁ । ନାସ୍ତି ପୁରୁଷ ଦୁଇ ରେ । ଯେଣି ଏକ ଜୀବନ କେବଳ ତନୁ ଭଲ ଯୋଗେ ଏକତ୍ୱ ହୋଇ ରେ । ୧୮ ।

ନବରସରେ ସାର ଆଦ୍ୟେ ଲେଖି ଶୃଙ୍ଗାର ରତି ପରମ ସୁଖ ରେ । ପିବା ପାଇଁ ପାସୋର ବଲ୍ଲଭି ନାମ ସାର ଦେଇଛୁ ଶାସ୍ତ୍ରେ ଉଦାଶ ରେ । ପ୍ରାଣବନ୍ଧୁ । ସେ କାକ ମୂର୍ଚ୍ଛିବାର ରେ । ଥିଲା କେଙ୍କ ଦୁର୍ଦ୍ଦଶା ରଥାଙ୍ଗ ପ୍ରାୟ କଣା ନେବାକୁ ତୋର ମୋର ରେ । ୧୯ ।

ଦରଶନରୁ ଦୂର ହେଲାଣି ପାଇବାର ମୋର ଅଶେଷ ବ୍ୟଥା ରେ । ଭଲ ନୋହେ ଏ ଖେଦ ତୋର ମୋର ବିଚ୍ଛେଦ ହୋଇ ରହିଲା କଥା ରେ । ପ୍ରାଣବନ୍ଧୁ । ଲଭିବେ ପର ହାସ୍ୟରେ । ରସିକେ ପ୍ରିୟହୀନେ ଏ ବହିଲା ଜୀବନେ ଏଥି କଧାୟ କସ ରେ । ୨୦ ।

ବଲ୍ଲଭ ମୃଦୁବାଣୀ ଶୁଣି ତରୁଣୀମଣି ଧୀରେ କହେ କ ସ୍ନେହା ସେ । ଏସେ ଦୁଃଖ ଯୋଉ ଯାଜ ଶତ୍ରୁହିଁ ତା ନ ପାଜ ଚିନ୍ତୁଁ ପାଶୋର ତାହା ଯେ । ପ୍ରାଣବନ୍ଧୁ । ଚିତ୍ତକୁ କୁନ୍ତ ପର ସେ । ଏମନ୍ତ ବୋଲି ହସି ବକେ ଗୃହିଁଲା ରସି ରମଣୀରତ୍ନହୀର ସେ । ୨୧ ।

---

୧୭ । ଅବଧାନ—ଜାଣିବା, ବେଦନା—କଷ୍ଟ,

୧୮ । ନାସ୍ତିହତେ—ସ୍ତ୍ରୀ ମରିବାରୁ, ବିଚ୍ଛେଦ ହେବାରୁ

୧୯ । ନବରସ—ନଅଟିରସ ମଧ୍ୟରେ ପ୍ରଥମରେ ଶୃଙ୍ଗାର କ ଆଦରସକୁ ଲେଖନ୍ତି,
କନର୍ପ କାଳେ ଭୁଲିଯିବ ବୋଲି ତା ବଲ୍ଲଭୀ ଯେ ସ୍ତ୍ରୀକୁ ରତିନାମ ଦେଇଛି, ରଥାଙ୍ଗ—ଚକ୍ରୁଆ ଚକୋଇ ରାମଙ୍କ ଶାପରେ ରାତିରେ ଏକାଠି ରହନ୍ତି ନାହିଁ—

୨୦ । ପ୍ରିୟାହୀନ—ସ୍ତ୍ରୀ ହୀନ ବା ସ୍ତ୍ରୀ ବିଚ୍ଛେଦ,

୨୧ । ଚିନ୍ତୁଥାଅ—ମନେ କରୁଥାଅ

ଦ୍ୱନ୍ଦ୍ୱେ ଦୁହିଁଙ୍କ ବେଶ କରିବାରେ ଲାଳସ ଏମନ୍ତେ ଦିନ ଶେଷ ଯେ । ଭାସ୍ୱରଜସ୍ୱକାଳ ହେଲାଟି ଯୁବାକୁଳ ଶୁଭିଲା ଦର ନିଘୋଷ ଯେ । ଶଠଭୃଙ୍ଗା । ଛଟିଲେ ପଦ୍ମ ନେଳ ଯେ । ଗୃଢ଼ ଏକ ସୁହାଗ ଆରବେ ଅନୁରାଗ ପ୍ରାପ୍ତେ କୁମୁଦ ଭଜ ଯେ । ୨୨ ।

ଅଭିସାରିକା ଦୀପ ଫଣିମଣିକଲାପ ମଣି ତେଜବେ ଶ୍ୱାସ ଯେ । ଧରି ପଙ୍କଜ ଗୃହ ପ୍ରାପ୍ତ ଗଣିକାବର ମନେ ଜନ୍ମିଛି ତ୍ରାସ ଯେ । ଦ୍ୱିଜମାନେ । ସନ୍ଧ୍ୟା ଚନ୍ଦନ ସାଧୁ ଯେ । ସାରଣା କଲେ ଧନ ଧନଅଳି ରାଜନ ପରାସ୍ତ ବାରବଧୂ ଯେ । ୨୩ ।

ନବଟସେ ରସିକ ରାମାମଣି ଗୁଣିକ ଭୋଜନେ ହେଲେ ତୋଷ ଯେ । ତହିଁ ଉତ୍ତରେ ହାସଗର୍ଭ ବଚନ ରସବଶରେ ପରକାଶ ଯେ । କାନ୍ତା- କାନ୍ତ । ସଉଧେ ପରବେଶ ଯେ । ଦୀର୍ଘ ପର୍ଯ୍ୟଙ୍କ ଅଙ୍କେ ପ୍ରମୋଦରେ ନିଃଶଙ୍କେ ପ୍ରକାଶ କଲେ ରସ ଯେ । ୨୪ ।

ଖାଟିଏ ଗୃହ ବନ୍ଧ ବଗୃହ ହେଲେ ବୋଧ ଛଳଇ ରାମା ପୁଂସ ଯେ । ନିଦ୍ରାନାଶେ ସ୍ୱପନ ବପତ୍ତ ଯଥା ଭିନ୍ନ ତଥା ବସ୍ତୁର କ୍ଳେଶ ଯେ । ନିଶାପ୍ରାନ୍ତ । ପୂର୍ବେ ସବିତା ସ୍ଥିତ ଯେ । ଦିନ ଧରିଲ୍ ପାଟେଛନ୍ତି ହୋଇଲା ରାଟ ଏ କଥା ଅଦଭୁତ ଯେ । ୨୫ ।

---

୨୨ । କାମବଳସ୍ୱ କାଳ—କାମ ଆସିବା ସମସ୍ୱ ବ ରାତ୍ରି, ଦର—ଶଙ୍ଖ, ଶଠ— ଠକ, ଅନୁରାଗ—ସ୍ନେହ

୨୩ । ଫଣି—ସାପ, ମଣିକଲାପ—ମଣିସବୁ, ଗଣିକାବର—ବାଟପୀ ସ୍ତ୍ରୀ, ତ୍ରାସ— ଭୟ, ସାରଣ—ଅସୁଲ୍, ଧନୀଅଳି—ଧନୀ, ବାରବଧୂ—ବେଶ୍ୟା
ସାପ ତାର ମଣି ତେଜକୁ ଦେଖି କଏ ବା ଲୋକ ଆସିଲା ମନେ କଲାପର ବାଟ ସ୍ତ୍ରୀ ଗୋପନରେ ଯେଉଁ ପୁରୁଷ ପାଖକୁ ଯାଇ କନ୍ କନ୍ ହୁଏ, ପ୍ରତାପୀ ରାଜାକୁ ବନା ଆପତ୍ତିରେ କର ଦେଲାପର ବାଟ ପୁରୁଷ ବେଶ୍ୟାକୁ ଧନ ଦଅନ୍ତି ।

୨୪ । ସଉଧେ—କୋଠାଘରେ, ପର୍ଯ୍ୟଙ୍କ—ପଲଙ୍କ, ପ୍ରମୋଦରେ—ଆନନ୍ଦରେ, ନିଃଶଙ୍କେ—ନିର୍ଭୟେ

୨୫ । ସବିତା—ସୂର୍ଯ୍ୟ, ରାଟ—ରାଜା, ନିଶାପ୍ରାନ୍ତ—ଶେଷରାତ୍ର, ସ୍ୱପ୍ନରେ ଦେଖିବା ଜିନିଷ ନିଦପରେ ଭୁଲିଯାନ୍ତି—ସେହିପରି ଆନନ୍ଦରେ ମତ୍ତ ହେଲେ ଦୁଃଖ ମନେ ପଡ଼େନାହିଁ—

ଏଣୁ କି ପାଇ ଲଙ୍କା ଚରମାଚଳେ ରାଜା ଲୁଚିଲେ ଅତି ବେଗେ ସେ । ତାର ତା ଦାରା ଯେଣି ମଳିନ ବେଶ ତେଣୁ କୌଶିକ ପନ୍ତୀ ଭ୍ରମେ ସେ । ସେହି କାଳେ । ଦାନଭ୍ରିଗରା କାକ ଯେ । ଗଳାରେ ଧର ମାର କହିଲେ ନିରନ୍ତର ଉଠେ ଯା ଦେଲେ ଡାକ ସେ । ୨୬ ।

ଏକାଳେ ତେଜ କଟାଏଁ କାଟିଲାଟିକି ରାଜା ଅସେ ମନ୍ତ୍ରୀଜ ମିଳାଯେ । ଅଦ୍ଭୁତପ୍ରାନ୍ତ ପର୍ଯ୍ୟନ୍ତେ ସର୍ବ କହୁଁ ପୁରତେ ତୋଷ-ସିନ୍ଧୁ ଉଚ୍ଛୁଳ ଯେ । ନପତିର । ନଗର ଜନେ ସୁଖୀ ଯେ । ମୃଦୁସୁଲିରେ ଶୁଣି ଆନନ୍ଦ ହେଲେ ରାଣୀ ସଫଳ କଲେ ଆଖି ଯେ । ୨୭ ।

କୁମର କୀର୍ତ୍ତି ସ୍ୱଚ୍ଛ ହୋଇ ପ୍ରକଟ ମର୍ତ୍ତ୍ୟ ମଧ ଆଦ ଦେଶରେ ଯେ । ମିତ୍ର ନୃପତି ଯେତେ ହରଷ ହେଲେ ଚିତ୍ତେ ଭୟ ଲଭିଲେ ପରେ ଯେ । ସାଧୁଜନେ । ଶୁଭେ ଏ ଛାନ୍ଦ ଶେଷ ଯେ । ଶରଣ ରାମଚନ୍ଦ୍ର କହଇ ଉପଇନ୍ଦ୍ର ବାରବର ଏ ରସ ହେ । ୨୮ ।

—✱—

## ଅଷ୍ଟଚତ୍ୱାରିଂଶ ଛାନ୍ଦ ।

ରାଗ—ମଙ୍ଗଳ ।

( ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର ଅଭିଷେକ ଓ ରାଜ୍ୟ ଶାସନ । )

ମଣୋହି ଭଅଇ ଜନକ ରାଯ୍ୟେ—ବାଣୀରେ ।

ଶୁଣ ହେ ଚରିତ ଅବଶେଷରେ । କର୍ଣ୍ଣାଟ ମହୀପତି ତୋଷରେ । ୧ ।

---

୨୬ । ଚରମାଚଳ—ଅସ୍ତଗିରି, ଦାରା—ସ୍ତ୍ରୀ, କୌଶିକ—ପେଚ୍ଚା,

୨୭ । କାଠିଲାଗି—ଦାନ୍ତଘଷା, ପୁରତେ—ଆଗରେ

୨୮ । କୀର୍ତ୍ତି—ଯଶ, ପ୍ରକଟ—ବିଖ୍ୟାତ, ପରେ—ଶତ୍ରୁମାନେ

ଚନ୍ଦ୍ରଭାନୁ ଲାବଣ୍ୟବତୀଙ୍କ ନାନାଦି ଗୁଣ କହି ତା ମନ ବୋଧ କରୁ ହୁଦେଁଯାକ ସନ୍ତୋଷରେ ପ୍ରେମରେ ମାତିଲେ । ରାଣୀ ଏହାଶୁଣି ଖୁସି ହେଲେ ।

ମିତ୍ର ରାଜା ଆନନ୍ଦ ହେଲେ । ଶତ୍ରୁ ରାଜାଏ ଭୟ କଲେ ॥

—○—

## ଅଷ୍ଟଚତ୍ୱାରିଂଶ ଛାନ୍ଦ ।

୧ । ମହୀପତି—ରାଜା ।


Digitized by srujanika@gmail.com

ଦାନ ପିଶିତଙ୍କୁ ଦାନ ପ୍ରେତଙ୍କୁ । ଦେବାଇ ଅଣି ଚିତ୍ର ଚିତ୍ରଙ୍କୁ । ୨ ।

ଏହାଙ୍କେ ଯଶରେ ମଣ୍ଡିଲା ଧରା । ଶ୍ରୀରାମ ପାର୍ଶ୍ୱେ ମାରୁତି ପରା । ୩ ।

ଏଣୁ ଅନନ୍ଦ ହୋଇ ଦଣ୍ଡଧର । ସଚିବ ସଙ୍ଗେ କରି ବିଚାର । ୪ ।

ନୃପତିପଦବୀ ଦେଇଣ ପୁତ୍ରେ । ଚଳିଲେ ପୁରୁଷୋତ୍ତମ କ୍ଷେତ୍ରେ । ୫ ।

ଯାହା ସମାନରେ ଅସମ ରତି । ହେଲାରୁ ଅଲପକୁ କହନ୍ତି । ୬ ।

ପଟ୍ଟମହିଷୀ ସେ ଲାବଣ୍ୟବତୀ । ହୋଇଲା ଗୁଣନିଧାନ ମନ୍ତ୍ରୀ । ୭ ।

ବସନ୍ତକ ହେଲା ଜ୍ୟୋତିଷରାଜ । ପୁରୋଧା ରତ୍ନରାଜ ଅଗ୍ରୂର୍ଯ୍ୟ । ୮ ।

ସେ ନରେଶ୍ୱର ପାଳିବାର ଦେଶ । ନୋହିଲେ ଅଉ ମିଥ୍ୟାବକାଶ । ୯ ।

ଦିବସ ନାମରେ ଦୀନ ରହିଲା । ଦିନକୁ ଦଣ୍ଡ ଆଶ୍ରୟ କଲା । ୧୦ ।

ଭସ୍ମ ଚିତାରେ ମାତ୍ର ଶୋଭା ବହି । ଯାଜ୍ଞିକ ଦ୍ୱିଜ ଲଲାଟେ ତହିଁ । ୧୧ ।

ଅନ୍ତେ କଲା ମନ୍ଦ ମଳୟାନିଳେ । କଳଙ୍କଯୋଗ ଚନ୍ଦ୍ର ମଣ୍ଡଳେ । ୧୨ ।

କୁଟିଳ ନଦୀ ବୀଚିରେ ଲଭିଲେ । ବିଟପି ବୃକ୍ଷ ହୋଇ ବଢ଼ିଲେ । ୧୩ ।

କଳୀ ସ୍ଥାନ କଲା ପୁଷ୍ପବଲ୍ଲୀକି । ମଧୁପପଦ ଶୋଭା ଅଳକି । ୧୪ ।

---

୨ । ପିଶିତ—ମାଂସ, ଚିତ୍ର—ଆଶ୍ଚର୍ଯ୍ୟ ।

୩ । ଧରା—ପୃଥିବୀ, ମାରୁତି—ହନୁମାନ ।

୪ । ଦଣ୍ଡଧର—ରାଜା, ସଚିବ—ମନ୍ତ୍ରୀ ।

୫ । ନୃପତି ପଦବୀ—ରାଜଗାଦୀ, ରାଜ ଉପାଧି ।

୬ । ରତି—ଊଣା, ଅରସ—ନ୍ୟୂନ ।

୭ । ପଟ୍ଟମହିଷୀ—ପାଟରାଣୀ ।

୮ । ପୁରୋଧା—ପୁରୋହିତ ।

୯ । ନରେଶ୍ୱର—ରାଜା, ମିଥ୍ୟାବକାଶ—ମିଛ କହିବା ।

୧୦ । ଦୀନ—ଦୁଃଖି, ଦଣ୍ଡ—ସଜା ।

୧୧ । ଭସ୍ମ—ନଷ୍ଟ. ଯଜ୍ଞ କରିବା ବ୍ରାହ୍ମଣଙ୍କ ମୁଣ୍ଡରେ ଭସ୍ମ ରହିଲା, ଆଉ କେହି ନଷ୍ଟହେଲେ ନାହିଁ ।

୧୨ । ମଳୟାନିଳ—ବସନ୍ତ ପବନ ବା ସୁଗନ୍ଧ ପବନ, ମନ୍ଦ—ଧୀର, ସେଠାରେ ମନ୍ଦ କିଛି ରହିଲା ନାହିଁ କେବଳ ବସନ୍ତ ପବନରେ ଧୀର ଗୁଣ ରହିଲା ।

୧୩ । କୁଟିଳ—ଦୁଷ୍ଟଲୋକ, ବୀଚି—ଲହରୀ; ବିଟପୀ—ଅସତୀ, ଗଛ, ବୃକ୍ଷ—ଗଛ ।

୧୪ । କଳୀ—ଫୁଲକଢ଼ି, କଳି—କଳିଆ କରିବା, ଅନୁମାନ କର ।



Digitized by srujanika@gmail.com

ଶରଣ କଲା ବୈଦ୍ୟଙ୍କୁ ମାରଣ । ଇନ୍ଧନେ ଦେଖାଦେଲା ବାରଣ ।୧୫।
ରହିଲା କୂଳ ଲଙ୍ଘନ ସରିତେ । ଶ୍ରୁତରେ ଶୌର ଶବଦସତେ ।୧୬।
ବିଷଭକ୍ଷଣ ହଂସେ ରହେ ଏକା । ସ୍ତନରେ କରପୀଡ଼ା ଆଶଙ୍କା ।୧୭।
ବନ୍ଧନ ରହିଲା ବାହୁରେ ମାତ୍ର । ମୃଗସ୍ତ୍ରୀରେ ହିଁ ରହିଲା ଚିତ୍ର ।୧୮।
ରଣନିପୁଣେ ରହିଲେ ପ୍ରମୋଦେ । ନାଗରୀ କଟୀ କିଙ୍କିଣୀ ନାଦେ ।୧୯।
କେବଳ ମଦନ ବଇରୀ ପଦେ । ପାଞ୍ଚଇ ତାଙ୍କୁ ଜିଣିବା ବାଦେ ।୨୦।
ନ୍ୟାୟବଳ ରାଜା ଅଗ ପଦାତି । ଦୁର୍ବଳ ଶଙ୍କା ତହିଁରେ ସ୍ଥିତି ।୨୧।
ଜାତ ହୋଇ ଲୋଭ ପ୍ରେମଧନରେ । ଉଚ୍ଛନ୍ନ ରତ୍ନ ଭଳି ଦାନରେ ।୨୨।
ନୀବୀମୋକ୍ଷକାଳେ ଉପୁଜେ ନାହିଁ । ମାଗିବା ଦ୍ରବ୍ୟ ଚୁମ୍ବନ ଯହିଁ ।୨୩।
ଲାଳସ ହୋଇଣ ପରସ୍ତ୍ରୀରେ । ଗୃହିଁବା ରହେ ଚିତ୍ର ନାରୀରେ ।୨୪।
ନ ଶୁଣିଲା ମାତ୍ର ପଣାପାରରୁ । ବିମୁଖ କର୍ଣ୍ଣେଜପବାବରୁ ।୨୫।
ଶୁଭ ଶକୁନ ଚରଣରେ ଦେଖି । ଶିକୁଳୀ ପର ଶାଙ୍କୁଡ଼ି ଯୋଖି ।୨୬।
କାରା ହୋଇ ଯହିଁ ପଞ୍ଜରୀ ଅଛି । ଉତ୍ତଙ୍କ ଏକା ଗୃହ ଧରଛି ।୨୭।

---

୧୫ । ମାରଣ—ଲୋକଙ୍କୁ ମାରିବା, ଔଷଧକୁ ଜାରଣ କରିବା, ବାରଣ—ହାତୀ, ମନାକରିବା, ଇନ୍ଧନ—ଜାଳକାଠ ।
୧୬ । ଲଙ୍ଘନ—ନଈକୂଳକୁ ଟପିବା, କୁଳଲଙ୍ଘନ—ବଂଶ ବୁଡ଼େଇବା, ସରିତ—ନଈ, ଶ୍ରୁତରେ—କାନରେ
୧୭ । ବିଷଭକ୍ଷଣ—ବିଷ ଖାଇବା, ପଦ୍ମନାଡ଼ ଖାଇବା, କରପୀଡ଼ା—ଚିପୁଡ଼ା ମାରିବା, ଦଳିବା, ଖଜଣାରେ କଷ୍ଟ
୧୯ । ରଣ ନିପୁଣେ—ଯୁଦ୍ଧ କରିବା ଲୋକ, କିଙ୍କିଣୀ—କଟିଗହଣା, ପ୍ରମୋଦେ—ଆନନ୍ଦରେ, ନାଦେ—ଶବ୍ଦରେ
୨୦ । ବଇରୀ—ଶତ୍ରୁ, ବାଦେ—ବିପକ୍ଷଭାବେ, କଳହରେ
୨୧ । ପଦାତି—ପାଇକ ସୈନ୍ୟ, ରାଜାଙ୍କୁ ପାଇକ ଭୟଙ୍କରେ—ମାତ୍ର ଏଠାରେ ଭୟ ନାହିଁ
୨୩ । ନୀବୀମୋକ୍ଷ—କଛ ଖୋଲିବା
୨୪ । ଲାଳସା—ଇଚ୍ଛା, ଚିତ୍ରରେ—ଛବିରେ
୨୫ । କର୍ଣ୍ଣେଜପ—ଖଚୁଆ ବା କାନକୁହା
୨୬ । ଶକୁନ—ଶାଗୁଣା, ଶାଙ୍କୁଡ଼ୀ—ବେଡ଼ି
୨୭ । କାରା—ବନ୍ଦଘର, ପିଞ୍ଜରା, ଉତ୍ତ—ବାଘ, ଭୀତ—ଭୟ

ବନ୍ଦୀ ଯହିଁ କୀର୍ତ୍ତି ବନ୍ଦନ ଜନ । ଏହାହିଁ ଜଣା ଯିବ ଏମାନ । ୨୮ ।
ଭରମ ହୋଇଛନ୍ତି ଶୁଦ୍ଧ ସୁବର୍ଣ୍ଣ । ଭୂତହିଁ ପଞ୍ଚପ୍ରକାରେ ସେନ । ୨୯ ।
କୁଣ୍ଡ ଦେଖା ଦୁର୍ଗୋତ୍ସବେ ସହଜେ । ଗୁଡ଼ରୁ ଖଣ୍ଡ ମାନ ଉପୁଜେ । ୩୦ ।
ପରାପର ଭାବ ଏକ ଅଛାର । ଭରନ୍ତି ଯେଉଁ ନର ଈଶ୍ୱର । ୩୧ ।
ଚନ୍ଦ୍ର ସୂର୍ଯ୍ୟ ଗ୍ରାସ ଶିରେ ରାଜିତ । ସର୍ବଦା କଞ୍ଚୁକରେ ବେଷ୍ଟିତ । ୩୨ ।
ସଘନ ପୃଥୁ କାର୍ତ୍ତସ୍ୱରପାତ୍ର । ରଜନୀକରେ ଭୂଷିତ ଗାତ୍ର । ୩୩ ।
ମହିଷୀ ସଙ୍ଗେ ନଗରେ ଶଳପି । କେବଳ ଜନମନକୁ ତୋଷି । ୩୪ ।
ମର୍ତ୍ତ୍ୟେ ତ ଏହାର ଅସାଧ ନାହିଁ । ସ୍ୱର୍ଗେ ବା କଟକାଇ କରାଇ । ୩୫ ।
ନିତ ଦେବାର୍ଚ୍ଚନ ସରବାଯାଏ । କରଇ ମେରୁ ଦାନକୁ ଉପେ୍ଯ । ୩୬ ।
ବ୍ରହ୍ମା ବୋଧ ଯହୁଁ ଦେବଶାସନ । ସେ କପାଁ ସ୍ୱର୍ଗ ଦେବ ଭବନ । ୩୭ ।
ହୟ ଅରୋହିଲେ ଯେଉଁ ନୃପତି । ଲଭଇ ହରିହୟ ଏ ଖ୍ୟାତି । ୩୮ ।
ବଳୀ ଯେବେ ତୁମ୍ଭେ ବଳକୁ ମାର । କହିବା ଜୀବ କହେ ଶଶୁର । ୩୯ ।

---

୨୮ । ବନ୍ଦୀ—ଭାଟ, ଅଟକ ହୋଇଥିବା ଲୋକ
୨୯ । ଭରମ—ସୁନା, ଭୁଲିଯିବା, ଭୂତ—ପଞ୍ଚଭୂତ, କ୍ଷିତି, ଅପ, ତେଜ, ମରୁତ, ବ୍ୟୋମ
୩୦ । କୁଣ୍ଡ—ଅଣ ବାଲୁଅ, ମାଟିକୁଣ୍ଡ
୩୧ । ନରେଶ୍ୱର—ରାଜା, ନର—ଲୋକ, ଈଶ୍ୱର—ମହାଦେବ
୩୨ । ଗ୍ରାସ—ଭସ୍ମ; ଶିରେ—ମୁଣ୍ଡରେ, ରାଜିତ—ଶୋଭିତ, କଞ୍ଚୁକ—ସାପ, ନହରରକ୍ଷକ, ବେଷ୍ଟିତ—ଆବୃତ, ସଘନ—ବଳିଷ୍ଠ, ପୃଥୁ—ମୋଟା
୩୩ । କାର୍ତ୍ତସ୍ୱର—ସୁନାରୂପ, ରଜନୀକର—କର୍ପୂର
୩୪ । ମହିଷୀ—ପାଟରାଣୀ, ଜନମନ—ଲୋକମାନଙ୍କମନ
୩୫ । ମର୍ତ୍ତ୍ୟେ—ପୃଥିବୀରେ, କଟକାଇ—ଅଭିଯାନ
୩୬ । ଦେବାର୍ଚ୍ଚନ—ଦେବପୂଜା, ମେରୁଦାନ—ମେରୁ ଯେ ସୁନାପର୍ବତ ଏଠାରେ ସୁନାଦାନ
୩୭ । ଦେବଶାସନ—ଦେବତାମାନଙ୍କୁ ରକ୍ଷା କରିବା, ଭବନ—ସ୍ଥାନ—ଏଠାରେ ଦେବତାଙ୍କ ସ୍ଥାନ—ଅର୍ଥାତ୍ ମେରୁ
୩୮ । ହୟ—ଘୋଡ଼ା, ଅରୋହିଲେ—ଚଢିଲେ, ନୃପତି—ରାଜା, ହରିହୟ—ଗରୁଡ଼
୩୯ । ବଳୀ—ଯୋଦ୍ଧା ଓ ବଳୁଆ

ଅଶ୍ୱଖୁର ରେଣୁ ଉଡ଼ିବା ଗୁହିଁ । ପୋତବ ପୋତେ ସାଗର ଯାଏଁ ।୪୦
ଧାତା ହୁଡ଼ ଯହୁଁ ରତନାକର । ବୋଇଲା ଥାଉ ଏହା ଭଣ୍ଡାର ।୪୧।
ସାର୍ବଭୌମପଦ୍ବୀ ବୀର ବହିଲା । ଉତ୍ତର ଦନ୍ତୀ ଭୟ ପାଇଲା । ୪୨ ।
ମୁଁ ନୁହଇ ବୋଲି ଗୁଣିଲା ରଡ଼ି , ବରଷାକାଳେ ସେ ଘଡ଼ଘଡ଼ି । ୪୩।
ହୋଇଲା ସେ ରାଜା ଏମନ୍ତ ତ୍ୟାଗୀ । ଜାଣିଲେ ନାହିଁ ଯାଚକେ ମାଗି ।୪୪।
କେ ଯିବ କଳ୍ପତରୁ ସନ୍ନିଧାନ । କାମନା ହେଲା ଉତ୍ତରୁ ପୂର୍ଣ୍ଣ । ୪୫।
ଉଚ୍ଚ ନୋହିଥିଲେ ପଲ୍ଲବମାନ । କରନ୍ତେ ଅବା ମୃଗ ଅଶନ । ୪୬ ।
ମିଳନ୍ତେ ଫଳ ଥିଲେ ପକ୍ଷୀଗଣ । ବ୍ୟର୍ଥ ହେଲା ତା ଦାତାପଣ ।୪୭।
ପ୍ରତାପ ନାଶିଲା ବଡ଼ବାନଳେ । ପଡ଼ିଲା ଯାଇଁ ସମୁଦ୍ରଜଳେ । ୪୮ ।
କେ ଦେଖିବ ତାକୁ ଯେ ଲୁଚିଅଛି । ହୃଦୟ ସନ୍ତାପ ତା ଜଳୁଅଛି । ୪୯ ।
ଯଶକୁ ହାରଣି କୁମୁଦ ବନ୍ଧୁ । ହୋଇଲେ ପରସ୍ପରରେ ବନ୍ଧୁ ।୫୦।
ଅଳି କଳଙ୍କ କାଳିକି ଧଇଲେ । ଗଙ୍ଗାହିଁ ଅଙ୍କେ ପଙ୍କକୁ ବହିଲେ ।୫୧
ହର ବରୁଣିଲେ ଗଙ୍ଗା ଚନ୍ଦ୍ରକୁ । ପ୍ରଭବ କୀର୍ତ୍ତି କଳ୍ପବେଲକୁ । ୫୨ ।

---

୪୦ । ଅଶ୍ୱଖୁର—ଘୋଡ଼ା-ଗୋଡ଼ ଖୁରା
୪୧ । ସାଗର—ସମୁଦ୍ର, ରତ୍ନାକର—ସମୁଦ୍ର, ହୁଡ଼—ଭୁଲ, ଧାତା ଭୁଲରେ ସମୁଦ୍ରରେ ରତ୍ନଭଣ୍ଡାର ରଖିଛି—
୪୨ । ସାର୍ବଭୌମ—ସର୍ବଶ୍ରେଷ୍ଠ, ଏକାଙ୍ଗଚକ୍ରବର୍ତ୍ତୀ, ଉତ୍ତରଦନ୍ତୀ—ଉତ୍ତର ଦିଗ ହସ୍ତୀ
୪୩ । ରଡ଼ି—ଶବ୍ଦ
୪୪ । ଯାଚକେ—ଭିକାରି
୪୫ । କଳ୍ପତରୁ—କାମନା ପୂର୍ଣ୍ଣ କରିବା ଗଛ, ସନ୍ନିଧାନ—ପାଖ
୪୬ । ପଲ୍ଲବମାନ—ପତ୍ରସମୂହ, ଅଶନ—ଭକ୍ଷଣ, ଖାଇବା
୪୭ । ବ୍ୟର୍ଥ—ଅକାରଣ, ଦାତାପଣ—ଦାନପଣିଆ
୪୮ । ପ୍ରତାପ—କ୍ଷମତା, ନାଶିଲା—ଭସ୍ମକଲା, ବଡ଼ବାନଳେ—ସମୁଦ୍ରମଧ୍ୟସ୍ଥ ଅଗ୍ନି
୫୦ । ଯଶ—ସମ୍ମାନ, କୁମୁଦବନ୍ଧୁ—କଇଁଫୁଲ ଓ ଚନ୍ଦ୍ର, ପରସ୍ପରରେ—ଆପଣା ଆପଣା ମଧ୍ୟରେ
୫୧ । ଅଳି—ଭ୍ରମର, ଅଙ୍କେ—ଦେହରେ, କଳଙ୍କ—ନିନ୍ଦା ସୂଚକ ଚିହ୍ନ
୫୨ । ହର—ମହାଦେବ, କୀର୍ତ୍ତି—ଯଶ

ଅବଶ୍ୟ ଏହାଙ୍କୁ ଥିବ ତ ଛୁଇଁ । ଥିବେ ଏ କିଛି ଶୀତଳ ପାଇ । ୫୩ ।
ପୁଣି ତା କୀର୍ତ୍ତିଶାନ୍ତି ସେଠାବ । ଗରଳ ତାପ ଶାନ୍ତି କରିବ । ୫୪ ।
ଏମନ୍ତ ବୋଲିଣ ବହିଲେ ଶୀର୍ଷେ । ଚନ୍ଦ୍ରମାଚୂଡ଼ ଗଙ୍ଗାଧର ସେ । ୫୫ ।
ବଣରେ କେଳି କଜ୍ଜଳକ ତାର । କଳଙ୍କ ହୋଇ ଉଚ୍ଛଳଇ । ୫୬ ।
କିଂ ପୁରୁଷଙ୍କୁ ଅନୁସ୍ୱାର ଦୂର । କରିଣ ଦେଲେ ପ୍ରାନ୍ତେ ଏକାର । ୫୭ ।
ସ୍ୱାଧୀନଭର୍ତ୍ତୃକା ନାରୀ ପାଇଛି । ନାୟକ ଅନୁକୂଳ ହୋଇଛି । ୫୮ ।
ସବୁ ଏକଠାକୁ କରିଛି ବିହି । ମଞ୍ଜିଷ୍ଠା ରାଗ ଉଦିତ ତହିଁ । ୫୯ ।
ଯାହା ଗୁଣ ରତ୍ନାଲଙ୍କାର ହେଲା । ମଣ୍ଡନ ଲୋକମାନେ ସେ କଲା । ୬୦ ।
କହୁଥିଲେ ସେ ତ ନୋହିବ ଶେଷ । ସମ୍ପୂର୍ଣ୍ଣ ଛନ୍ଦ ଅଠଚାଳିଶ । ୬୧ ।
ନାନା ଅବଧାନ ବିଧାନ ପର । ନାଟକ କାବ୍ୟ ଅଙ୍ଗେ ମାଧୁରୀ । ୬୨ ।
ଦୃଷ୍ଟି ସୃଷ୍ଟିରେ ହୋଇଛି ବିଚିତ୍ର । ରସିକ ଚିତ୍ତ ମୋହନ ମନ୍ତ୍ର । ୬୩ ।
ଖଳ ଗର୍ବ-ତୃଣ ଦାବ ଦହନ । ପଥିକ ମୂର୍ଖ ଅଗମ୍ୟ ବନ । ୬୪ ।
ଧନ୍ୟ ବର୍ଣ୍ଣିବ ପସରା ସମାନ । ବିବିଧ ରସଦ୍ରବ୍ୟରେ ପୂର୍ଣ୍ଣ । ୬୫ ।

---

୫୩ । ଶୀତଳ—ଥଣ୍ଡା

୫୪ । ଗରଳ—ବିଷ ।

୫୫ । ଶୀର୍ଷେ—ମୁଣ୍ଡଉପରେ, ଗଙ୍ଗାଧର—ମହାଦେବ ।

୫୬ । ଶ୍ରବଣ—ଶୁଣିଲା ଷଣି କାନ ।

୫୭ । କିଂପୁରୁଷ—କୁତ୍ସିତ ନର, କିଂ—ପୁରୁଷ ଚନ୍ଦ୍ରଭାନୁ ଠାରୁ ଅସୁନ୍ଦର ହେଲେ,

୫୮ । ସ୍ୱାଧୀନ ଭର୍ତ୍ତୃକା—ଯେଉଁ ସ୍ତ୍ରୀର ସ୍ୱାମୀ ତାର ଅନୁଗତ ଓ ସେ ସ୍ତ୍ରୀ କଥାରେ ଚଳେ । ଅନୁକୂଳ ନାୟକ—ଯେ ପୁରୁଷ ସ୍ତ୍ରୀ ଠାରେ ବେଶି ଆଶକ୍ତ କ ଲୋଭକର ସର୍ବଦା ତାର ପାଖରେ ଥାଏ ।

୫୯ । ମଞ୍ଜିଷ୍ଠାରାଗ—ସ୍ତ୍ରୀ ଓ ପୁରୁଷ ମଧ୍ୟରେ ଯେଉଁ ଅଭେଦ ପ୍ରୀତି ।

୬୦ । ରତ୍ନାଲଙ୍କାର—ସୁନାର ଗହଣା ।

୬୧ । ବିଧାନ—ନିୟମ, ପାଠ ମାଧୁରୀ—ମଧୁରତା ।

୬୩ । ଦୃଷ୍ଟି—ଦେଖିବା, ସୃଷ୍ଟି—ବ୍ରହ୍ମାଣ୍ଡ, ବିଚିତ୍ର—ଆଶ୍ଚର୍ଯ୍ୟ ।

୬୪ । ଖଳଗର୍ବ ତୃଣ—ଦୁଷ୍ଟ ମାନଙ୍କର ଗର୍ବରୂପ ଘାସ, ଦାବ—ବଣ, ଦହନ—ପୋଡିବା, ପଥିକ—ବାଟୋଇ


Digitized by srujanika@gmail.com

ଉପଇନ୍ଦ୍ର ଭଞ୍ଜ ମନକୁମୁଦ । ବଣର୍ଣ୍ଣ କର୍ମା ଶାସ୍ତ୍ରପଟଳ । ୭୬ ।
ରଚନା ଦବସେ ବକାଶ ଭଷ୍। । ଅଧିକ ପ୍ରକୃ ଏକ୍କ ବର୍ଦ୍ଧର । ୭୭ ।
ପ୍ରବନ୍ଧ ଦୁଇସହସ୍ର ଊନଶ । ... ଶେଷ । ୭୮ ।



୭୬ । ମନକୁମୁଦ—ହୃଦପଦ୍, ବଚନ କର୍ମା—ଅଷ୍ଟ ବର୍ଯ୍ୟ ଚନକର ।
୭୭ । ବକାଶ—ପ୍ରକାଶ ।

ଚନ୍ଦ୍ରଭାନୁ ଦେଶକୁ ଫେରବାରୁ ରାଜା ଅତ୍ୟନ୍ତ ଆନନ୍ଦ ହୋଇ ଲାବଣ୍ୟବତୀ ସହତ ଚନ୍ଦ୍ରଭାନୁଙ୍କୁ ରାଜଗାଦୀରେ ବସାଇ ନଜେ ଶ୍ରୀକ୍ଷେତ୍ରକୁ ଗଲେ ।

ଚନ୍ଦ୍ରଭାନୁ ଅତ୍ୟନ୍ତ ଭଲ ଭାବରେ ଦେଶ ଶାସନ କର ପ୍ରଜାମାନଙ୍କୁ ପାଳଲେ । ତାଙ୍କ ରାଜତ୍ୱରେ କେହ ଦୁଃଖୀ ରହଲେ ନାହିଁ । ସମସ୍ତେ ଆମୋଦ ପ୍ରମୋଦରେ ଦନ କଟାଇଲେ । ତାଙ୍କର ଯଶକୁ ସମସ୍ତେ ଗାଇଲେ ।

ସ ମା ପ୍ତ ।



କଟକ ମନମୋହନ ପ୍ରେସରେ ଶ୍ରୀମୋହନ ଚରଣ ଦାସଙ୍କ ଦ୍ୱାରା
ମୁଦ୍ରିତ । ୧୯୩୯ ।

ନୂଆ ସରସ ସୁନ୍ଦର ରଙ୍ଗୀନ ଛବି ଭରା ବନ୍ଧା ସବୁ

# ବୈଦେହୀଶ ବିଳାସ

ବୈଜୟନ୍ତୀ ଟୀକାସହ ପୃ ୮୭୬ ମୂଲ୍ୟ ଟ ୫୲

# ବିବିଧରତ୍ନ ସଂଗ୍ରହ

ମୂଲ୍ୟ ଟ ୩୲

# ଟଙ୍କା ତିଆରି କଳ

ମୂଲ୍ୟ ଟ ୧୲

# ଉତ୍କଳ ଗୃହଲକ୍ଷ୍ମୀ

୧ମ ଟ ୦ ୳     ୨ୟ ଟ ୧୲

# ବିବାହ ବିଜ୍ଞାନ

ମୂଲ୍ୟ ଟ ୧।

# ରତି ବିଜ୍ଞାନ

ମୂଲ୍ୟ ଟ ୦ ୳୵

ପାଇବାର ଠିକଣା :—

ମନମୋହନ ପୁସ୍ତକାଳୟ
ପୋ: ଚାନ୍ଦନୀଚୌକ, କଟକ ।

ନାରାୟଣ ପୁସ୍ତକାଳୟ
ପୋ: ଚାନ୍ଦନୀଚୌକ, କଟକ ।


Digitized by srujanika@gmail.com